# କାହ୍ନୁଚରଣ ଦାସ

ରହସ୍ୟ
ଉପନ୍ୟାସ
ସମଗ୍ର

# ଇନ୍ଦ୍ରଜାଲ



କସ୍ତୁରିଚରଣ ଦାସ

# ଇନ୍ଦ୍ରଜାଲ

କସ୍ତୁରିଚରଣଙ୍କୁ ମନେରଖିବାର ଅନେକ କାରଣ ।

ଅଦ୍ଭୁତ ଏକ ଜଳତରଂଗର କଳଧ୍ୱନି ତାଂକର ଅଧିକାଂଶ ରହସ୍ୟ-ଉପନ୍ୟାସକୁ ବିବର୍ତ୍ତିତ କରିଦେଇପାରିଥିଲା ଗୋଟିଏ ଗୋଟିଏ ଉଦାସ-ଉପନ୍ୟାସରେ ! ଗଳଦ୍‌ଘର୍ମ ଗୋଏଂଦା ଗଳ୍ପର ଗୋଳଂଦାଜୀ ଗୋଲକଧଂଦାରୁ ଶତପ୍ରତିଶତ ମୁକ୍ତ ଥିଲା, ତାଂକ ଅର୍ଦ୍ଧଶତାଧିକ ଶୀର୍ଷକାଧୀନ ଅପୂର୍ବ କଥନ-କଳା । ତାଂକର ଅନେକ ରହସ୍ୟ-ଉପନ୍ୟାସରେ ସେଥିପାଇଁ ବୁଂଦାଏ ବି ରକ୍ତ ବୋହିନି କେଉଁଠି - ଅଥଚ ଧାରଧାର ଅଶ୍ରୁ ଝରିଯାଇଛି ନିଃଶବ୍ଦରେ । ମନ ମଂଥିହୋଇଚି ଗୁଣୁଗୁଣୁ ଗୀତିନାୟିକାର ଗୋପନ ବ୍ୟଥାରେ । ଗୋଟିଏ ବି ଗୁଳି ଫୁଟିନି କେଉଁଠି ... ବହୁତ ବେନାମୀ ଫୁଲ କିଂତୁ ଫୁଟିଉଠିଚି ପଥପ୍ରାଂତରେ - ଝୁରିଝୁରି ଝରିପଡ଼ିବାର ମୁହୁର୍ମୁହୁ ମର୍ମବେଦନାରେ ।

କେତେ କଥାକୁହା କଳାଆଖିର କୋହଲା କାରୁଣ୍ୟ... ହଁ, ଏଇଠି ହିଁ ଅଲଗା ଭାବରେ ଉକୁଟି ଉଠଂତି ଉନ୍ନିଦ୍ର ରାତ୍ରିର ରହସ୍ୟକାର କସ୍ତୁରିଚରଣ !

ଅର୍ଦ୍ଧପ୍ରସ୍ଫୁଟିତ ଓଡ଼ିଶାର କୈଶୋରକୁ ସେଦିନ କସ୍ତୁରିଚରଣ ହିଁ କରିପାରିଥିଲେ ମଧ୍ୟରାତ୍ରିର ପଠନ-ପ୍ରେମିକ ।

କନ୍ଦୁରୀଚରଣଦାସ

# ଇନ୍ଦ୍ରଜାଲ

। ରହସ୍ୟ-ଉପନ୍ୟାସ ପଞ୍ଚକ ।

ପ୍ରକାଶକ :

କାହାଣୀ

କଲ୍ୟାଣୀନଗର, କଟକ-୭୫୩୦୧୩, ଓଡ଼ିଶା

ପ୍ରଥମ ସଂସ୍କରଣ : ୨୦୧୫

ମୁଦ୍ରଣ :

ଟେକ୍‌ନୋ ଆର୍ଟସ୍ ଅଫ୍‌ସେଟ୍

କଲ୍ୟାଣୀ ନଗର, କଟକ-୭୫୩୦୧୩, ଓଡ଼ିଶା

ମୂଲ୍ୟ : ₹ ୪୨୫/-

## INDRAJALA

[an anthology of 5 mistery novels]

by **Kanduri Charan Das**

Published by

K A H A N I

Kalyani Nagar, Cuttack-753013, Odisha

cell : 8260004392 / 9438280447

e-mail :gbaliarsingh@gmail.com

First edition : 2015

Price: ₹ 425/-

ISBN 978-93-81756-23-2



ଡ଼. ଶ୍ରୀ କୃଷ୍ଣଚରଣ ଦାସ

ପ୍ରବେଶ : ୨୫ ଡିସେମ୍ବର ୧୯୨୯ ● ପ୍ରସ୍ଥାନ : ୨୬ ମେ ୨୦୧୪

# ବିଦାୟ, ରହସ୍ୟ ଉପନ୍ୟାସର ଶେଷ ବାଦଶାହ ! ବିଦାୟ !

## ଶ୍ରୀ ସଂଜୟ

'ମହାଭାରତ'ର 'ଶାନ୍ତିପର୍ବ'ରେ ଶରଶଯ୍ୟାଶାୟୀ ଭୀଷ୍ମ ଇଚ୍ଛାମୃତ୍ୟୁ ବରଣ କରିବା ପୂର୍ବରୁ ଯୁଧିଷ୍ଠିରଙ୍କୁ ଯେଉଁ ଧର୍ମୋପଦେଶ ପ୍ରଦାନ କରିଛନ୍ତି, ସେଥିରେ ବୁଦ୍ଧିକୁ ବଳ ବୋଲି କୁହାଯାଇଛି । କିନ୍ତୁ ବୁଦ୍ଧି ଉଭୟ ବିକାଶକାରୀ ଓ ବିନାଶକାରୀ ହୋଇଥାଏ ବୋଲି ସେଥିରେ କୁହାଯାଇଛି । ଭୀଷ୍ମ କହିଛନ୍ତି- ହେ ରାଜା ଯୁଧିଷ୍ଠିର ! ତୀକ୍ଷ୍ଣ ବୁଦ୍ଧିସଂପନ୍ନ ବ୍ୟକ୍ତି ବୁଦ୍ଧିଦ୍ୱାରା କୁପ୍ରତିପାଳିତ ହେଲେ ବିନଷ୍ଟ ହୁଅନ୍ତି ଏବଂ ବୁଦ୍ଧିଦ୍ୱାରା ସୁପ୍ରତିପାଳିତ ହେଲେ ବିକଶିତ ହୁଅନ୍ତି । ଶତ୍ରୁକୁ ବୁଦ୍ଧିବଳରେ ଦମନ କରାଯାଏ ଏବଂ ସେହି କର୍ମ ଯୋଗୁଁ ସଂପୃକ୍ତ ବ୍ୟକ୍ତି ପ୍ରଶଂସିତ ହୁଅନ୍ତି ।

କେବଳ ଏତିକି ନୁହେଁ; ଜଣେ ରାଜାର ନୀତିପୂର୍ଣ୍ଣ ଓ ଧର୍ମାନୁକୂଳ ଆଚରଣ ସଂପର୍କରେ ମଧ୍ୟ ପିତାମହ ଭୀଷ୍ମ, ରାଜା ଯୁଧିଷ୍ଠିରଙ୍କୁ ଉପଦେଶ ଦେଇଛନ୍ତି । କହିଛନ୍ତି, ଶତ୍ରୁର ଛିଦ୍ର ଦେଖିପାରିବା ରାଜାର ଏକ ଗୁଣ । ଯେଉଁ ରାଜାଙ୍କର ଗୁପ୍ତଚର, ଗୁପ୍ତ ବିଚାର, ସେ କରିବାକୁ

ସ୍ଥିର କରିଥିବା କର୍ମ ଏବଂ କରୁଥିବା କାର୍ଯ୍ୟ ଶତ୍ରୁପକ୍ଷ ନିକଟରେ ଅଜ୍ଞାତ ରହେ, ସେ ହିଁ ରାଜ୍ୟପ୍ରାପ୍ତିର ଯୋଗ୍ୟ ଅଧିକାରୀ ହୁଅନ୍ତି । ଯେ ବୁଦ୍ଧିମାନ, ଶତ୍ରୁର ଦୁର୍ବଳତା ଜାଣିବାରେ ଦକ୍ଷ, ସେ ହିଁ ଶ୍ରେଷ୍ଠ ରାଜା ରୂପେ ବିବେଚିତ ହୁଅନ୍ତି ।

ଓଡ଼ିଆରେ ହେଉ କି ଭାରତରେ ବା ବିଦେଶରେ, ଯେଉଁଠି ଯେତେ ରହସ୍ୟ ଉପନ୍ୟାସ ଲେଖାଯାଇଛି- ସେଥିରେ ମୁଖ୍ୟତଃ ଏହି କଥାଟି ହିଁ ପ୍ରତିପାଦିତ ହୋଇଛି । ଅପରାଧୀ ନିଜକୁ ଖୁବ୍ ବୁଦ୍ଧିମାନ୍ ବୋଲି ଭାବିଛି ଏବଂ ନିଜର ବୁଦ୍ଧି ଖଟାଇ ଏପରି ଧୂର୍ତ୍ତତାର ସହିତ ଅପରାଧ କରିଛି ଯେ ଭାବିଛି କେହି ତାକୁ ଧରି ପାରିବେ ନାହିଁ । କିନ୍ତୁ ଶେଷକୁ ତା'ର ସବୁ ପ୍ରଚେଷ୍ଟା ପଣ୍ଡ ହୋଇଛି । ଅନୁସନ୍ଧାନକାରୀ ଗୋଇନ୍ଦା ନିଜର ବୁଦ୍ଧିମତ୍ତା ଦ୍ୱାରା ସବୁ ରହସ୍ୟ ଭେଦକରି ତାକୁ ଧରିବାରେ ସକ୍ଷମ ହୋଇଛି ।

'ଗୋଇନ୍ଦା' ଶବ୍ଦଟି ସୃଷ୍ଟି ହୋଇଛି ସଂସ୍କୃତ 'ଗୁପ୍ତଦୂତ'ରୁ । ଏହି ଗୁପ୍ତଦୂତ ହିଁ ଗୋଇନ୍ଦା ଉପନ୍ୟାସର ଅନୁସନ୍ଧାନକାରୀ ଚରିତ୍ର । ସେହିପରି 'ରହସ୍ୟ' ଶବ୍ଦଟିର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି, 'ରହସ୍' ବା ଗୋପନ+ଯ; ଅର୍ଥାତ୍ ଯାହା ଗୋପନୀୟ ବା ଏକ ଗୁପ୍ତ ବିଷୟ । ଶାସ୍ତ୍ରୋକ୍ତି ଅଛି ଯେ ରହସ୍ୟ ତ୍ରିବିଧ- ୧. ଧର୍ମରହସ୍ୟ, ୨. ଅର୍ଥ ରହସ୍ୟ ଓ ୩. କାମ ରହସ୍ୟ । ପ୍ରକୃତରେ ଦେଖିଲେ, କୌଣସି ରହସ୍ୟଗଳ୍ପ ବା ରହସ୍ୟଉପନ୍ୟାସର ପ୍ରସଙ୍ଗ ଯାହା ବି ହେଉ ନା କାହିଁକି, ତାହା ଏହି ତ୍ରିବିଧ ରହସ୍ୟର ଅଙ୍ଗୀଭୂତ । ଅନ୍ୟ ଭାବରେ କହିଲେ, ସବୁ ଗୁଇନ୍ଦା କାହାଣୀର ପ୍ରାଣ ହେଉଛି ରହସ୍ୟ । ସେସବୁରେ ଏପରି ଘଟଣାଟିଏ ଘଟେ ଯାହା ସହଜରେ ବୁଝାଯାଏନି । ଅପରାଧୀ ନିଜକୁ ଖୁବ୍ ବୁଦ୍ଧିମାନ ବୋଲି ଭାବିଥାଏ; ମାତ୍ର ସେ ଘଟାଇଥିବା ଅପରାଧ ଭିତରେ ହିଁ ରହସ୍ୟଭେଦର ସୂତ୍ର ରହିଥାଏ । ସେହି ସୂତ୍ର ସାଧାରଣ ଆଖିରେ ଧରା ପଡ଼େନାହିଁ । କିନ୍ତୁ ବୁଦ୍ଧିମାନ ଗୁଇନ୍ଦା ସେ ସୂତ୍ରର ସନ୍ଧାନ ପାଏ ଏବଂ ସେଇ ସୂତ୍ରରେ ଅଗ୍ରସର ହୋଇ ଅପରାଧୀକୁ ଧରିବାରେ ସକ୍ଷମ ହୁଏ । ଏଣୁ ରହସ୍ୟ ଉପନ୍ୟାସକୁ ଅନେକେ ହୁଏତ ଉଚ୍ଚାଙ୍ଗ ସାହିତ୍ୟକୃତିଠାରୁ ନ୍ୟୂନ ମନେ କରୁଥାଇ ପାରନ୍ତି; ମାତ୍ର ତାହାର ଭିତ୍ତିରେ ଥାଏ ନୈତିକ

ମୂଲ୍ୟବୋଧ । ସେଥିପାଇଁ 'ଡିଟେକ୍ଟିଭ୍ କାହାଣୀ' ଶୀର୍ଷକ ଏକ ଆଲୋଚନାରେ ଓଡ଼ିଆ ଗଳ୍ପ ସାହିତ୍ୟର ସୁପରିଚିତ ଆଲୋଚକ, କବି ସୌରୀନ୍ଦ୍ର ବାରିକ କହିଛନ୍ତି, "ଗୋଇନ୍ଦା କାହାଣୀର ଆଉ ଗୋଟିଏ ଦିଗ ହେଲା ଏହାର ନୈତିକ ମୂଲ୍ୟବୋଧ । ଅପରାଧୀ ଧରାପଡ଼ି ଦଣ୍ଡିତ ହେବ ଏବଂ ଶେଷରେ ନ୍ୟାୟ ପ୍ରତିଷ୍ଠିତ ହେବ; ଏପରି ଧାରଣା ଉପରେ ପ୍ରତିଷ୍ଠିତ ଏହି ଗୋଇନ୍ଦା କାହାଣୀ । ଏହା ସାଧାରଣ ମଣିଷର ନୀତିବୋଧକୁ ଆଲୋଡ଼ିତ କରୁଥିବାରୁ ଏହା ଏତେ ଲୋକପ୍ରିୟ ହୋଇ ପାରିଛି ।"

ବିଶ୍ୱସାହିତ୍ୟରେ ଡିଟେକ୍‌ଟିଭ୍ କାହାଣୀ ବା ଉପନ୍ୟାସର ଜନ୍ମକାଳ ଊନବିଂଶ ଶତାବ୍ଦୀ । କିନ୍ତୁ ଅନେକ ଆଲୋଚକ ଆମ ଭାରତବର୍ଷର 'ରାମାୟଣ', 'ମହାଭାରତ' ଓ 'ଭାଗବତ'ରେ ମଧ୍ୟ ସେହି ରହସ୍ୟ ଓ ରୋମାଞ୍ଚର ସୂତ୍ର ସନ୍ଧାନ କରନ୍ତି । 'ରାମାୟଣ'ରେ ସୀତାଙ୍କର ଅପହରଣ, ତାଙ୍କର ଅନୁସନ୍ଧାନ ଏବଂ ରାବଣର ଅଶୋକବନରେ ହନୁମାନଙ୍କ ଦ୍ୱାରା ତାଙ୍କର ଠାବ ମଧ୍ୟରେ ଏହାର ବୀଜ ନିହିତ ବୋଲି ସେମାନଙ୍କର ମତ । ସେମିତି 'ଭାଗବତ'ରେ କଂସ ବନ୍ଦୀଶାଳାରେ କୃଷ୍ଣଙ୍କର ଜନ୍ମ ଏବଂ ବର୍ଷଣମୁଖର ଅନ୍ଧକାର ରାତ୍ରିରେ ତାଙ୍କୁ ଗୋପପୁରକୁ ଏବଂ ଗୋପପୁରର କନ୍ୟାଙ୍କୁ କଂସର ବନ୍ଦୀଶାଳାକୁ ବଦଳ କରାଯିବାର କାହାଣୀ ବି ବେଶ୍ ରହସ୍ୟ ଓ ରୋମାଞ୍ଚ ବହନ କରେ ବୋଲି ସେମାନେ କହନ୍ତି । ସେହିପରି 'ମହାଭାରତ'ରେ ପାଣ୍ଡବ ପାଞ୍ଚ ଭାଇ ଓ ମାତା କୁନ୍ତୀଙ୍କୁ ଛଳରେ ଶିବୋତ୍ସବ ଦେଖିବାକୁ ବାରୁଣାବନ୍ତକୁ ପଠାଯିବା, ସେଠାରେ ସେମାନଙ୍କୁ ପୋଡ଼ି ମାରିଦେବା ପାଇଁ ଗୋପନରେ ଲାକ୍ଷାଗୃହ ନିର୍ମାଣ କରାଯିବା ଏବଂ ପାଣ୍ଡବ ପାଞ୍ଚଭାଇ ଓ କୁନ୍ତୀ ଗୋପନ ସୁଡ଼ଙ୍ଗ ପଥରେ ଖସି ପଳାଇବା ସତ୍ତ୍ୱେ ପାଞ୍ଚପୁତ୍ର ଓ ମାତାଙ୍କର ଦଗ୍ଧ ଦେହାବଶେଷ ବହ୍ନିସାତ୍ ଲାକ୍ଷାଗୃହରୁ ଉଦ୍ଧାର କରାଯିବା ମଧ୍ୟ କିଛି କମ୍ ରହସ୍ୟ, ରୋମାଞ୍ଚଭରା ନୁହେଁ ବୋଲି ସେମାନେ ମତ ଦିଅନ୍ତି । କିନ୍ତୁ ବିଧିବଦ୍ଧ ଭାବରେ ସାହିତ୍ୟର ଏକ ପ୍ରାରୂପ (ଜାଁର୍) ଭାବରେ ବିଶ୍ୱସାହିତ୍ୟରେ ଊନବିଂଶ ଶତାବ୍ଦୀକୁ ହିଁ ଡିଟେକ୍‌ଟିଭ୍ ଉପନ୍ୟାସର ସୃଷ୍ଟିଲଗ୍ନ ଭାବରେ ଗ୍ରହଣ କରାଯାଏ ।

ଅନେକଙ୍କ ମତରେ ଆଧୁନିକ କ୍ଷୁଦ୍ରଗଳ୍ପର ପିତା ରୂପେ ସ୍ୱୀକୃତ ଏଡ୍‌ଗାର ଆଲେନ୍ ପୋ ହିଁ ବିଶ୍ୱସାହିତ୍ୟରେ ଡିଟେକ୍‌ଟିଭ୍ କାହାଣୀର ଜନକ । ୧୯୪୫ରେ ରଚିତ ତାଙ୍କ 'ମିଷ୍ଟ୍ରି ଅଫ୍ ମେରୀ ରୋଜେଟ୍'କୁ ଏହାର ଆଦି ନିଦର୍ଶନ ରୂପେ ଗ୍ରହଣ କରାଯାଏ । କିନ୍ତୁ ବିଧିବଦ୍ଧ ଭାବରେ ଫରାସୀ ଲେଖକ ଏମିଲ୍ ଗାବୋରିଓ ହିଁ ନିଜର 'ଲେରାଇଟି' (୧୮୬୬) ଉପନ୍ୟାସ ମାଧ୍ୟମରେ ଏହାର ସୂତ୍ରପାତ କରିଛନ୍ତି । ତାଙ୍କଦ୍ୱାରା ସୃଷ୍ଟ ଗୋଇନ୍ଦା 'ଲେକକ୍' ହିଁ ପରବର୍ତ୍ତୀ କାଳରେ ହୋଇଛି ଆର୍ଥର କୋନେନ୍ ଡୟଲଙ୍କର ବିଶ୍ୱପ୍ରସିଦ୍ଧ ଗୋଇନ୍ଦା 'ଶେରଲକ୍‌ହୋମ୍‌ସ'ର ପ୍ରେରଣା । ପରବର୍ତ୍ତୀ କାଳରେ 'ଗୋଇନ୍ଦା ଉପନ୍ୟାସର ଚାରିରାଣୀ' (ଫୋର୍ କ୍ୱିନ୍‌ସ୍ ଅଫ୍ କ୍ରାଇମ୍) ଭାବରେ ପ୍ରସିଦ୍ଧି ଲାଭ କରିଛନ୍ତି ମାର୍ଗେରୀ ଆଲିଙ୍ଗ୍‌ହାମ୍, ଅଗାଥା କ୍ରିଷ୍ଟି, ନଗିଓ ମାର୍ସ ଓ ଡୋରୋଥି ଏଲ୍ ସେୟର୍ସ୍ । ବହୁ ରହସ୍ୟ-ରୋମାଞ୍ଚ ଲେଖକ ଲେଖିକାଙ୍କ କୃତିରେ ସମୃଦ୍ଧ ବିଂଶ ଶତାବ୍ଦୀର କୋଡ଼ିଏ ଓ ତିରିଶ ଦଶକ, ପରିଚିତ ଓ ପ୍ରତିଷ୍ଠିତ ହୋଇଛି ରହସ୍ୟ ଉପନ୍ୟାସର ସୁବର୍ଣ୍ଣଯୁଗ ଭାବରେ ।

ଏଥିରେ କୌଣସି ସନ୍ଦେହ ନାହିଁ ଯେ ବିଶ୍ୱସାହିତ୍ୟର ସେହି ରହସ୍ୟ ଉପନ୍ୟାସର ସ୍ୱର୍ଣ୍ଣଧାରା, ବଙ୍ଗଳା ସାହିତ୍ୟ ବାଟଦେଇ ଓଡ଼ିଆ ସାହିତ୍ୟରେ ଆସି ପହଞ୍ଚିଛି ପ୍ରାୟ ବିଂଶ ଶତାବ୍ଦୀ ପ୍ରାରମ୍ଭରେ । ତେବେ ବଙ୍ଗଳା ସାହିତ୍ୟର ଇତିହାସକାରମାନେ ଏହାର ଆଦି ନିଦର୍ଶନ ଭାବରେ ଉପସ୍ଥାପିତ କରନ୍ତି ପ୍ରିୟନାଥ ମୁଖାର୍ଜୀଙ୍କ 'ଦାରୋଗାର ଦପ୍ତର'କୁ । ଜଣେ ଅବସରପ୍ରାପ୍ତ ପୋଲିସ୍ ଅଫିସର ଭାବରେ ୧୮୯୦ରେ ସେ ବଙ୍ଗଳାର ଗୋଟିଏ ମାସିକ ପତ୍ରିକାରେ ନିଜର ବ୍ୟକ୍ତିଗତ ଅନୁଭୂତିକୁ ଧାରାବାହିକ ଭାବରେ ଲେଖିବା ଆରମ୍ଭ କରିଥିଲେ । ପରେ, ବିଂଶ ଶତାବ୍ଦୀର ଆଦ୍ୟପାଦରେ ଆବିର୍ଭୂତ ହୋଇଥିଲେ ପାଞ୍ଚକଡ଼ି ଦେ । ଆର୍ଥର କୋନେନ ଡୟାଲଙ୍କ ହୋମ୍‌ସ-ୱାଟ୍‌ସନ୍‌ଙ୍କ ପ୍ରଭାବରେ ସେ ହିଁ ପ୍ରଥମେ ଉପନ୍ୟାସରେ ଆଣିଥିଲେ ଗୁଇନ୍ଦା ଓ ସହକାରୀ ଗୁଇନ୍ଦା ଯୋଡ଼ି - ଦେବେନ୍ଦ୍ରବିଜୟ ଓ ଅରିନ୍ଦମଙ୍କୁ । ପରବର୍ତ୍ତୀ କାଳରେ, ଆମ ଲକ୍ଷ୍ମୀ ନାରାୟଣ ମହାନ୍ତିଙ୍କ ପରି ସେ ହିଁ ଥିଲେ ବଙ୍ଗଳା ସାହିତ୍ୟରେ ପ୍ରଥମ

ଶେର୍ଲକ୍ ହୋମ୍‌ସ ସିରିଜ୍‌ର ଅନୁବାଦକ । ପରେ ପରେ ଆବିର୍ଭୂତ ହୋଇଥିଲେ ଶ୍ରୀ ଅରବିନ୍ଦଙ୍କର ଘରୋଇ ଟ୍ୟୁଟର ତଥା ଜଣେ ସ୍କୁଲ୍ ଶିକ୍ଷକ ଦିନେଶ କୁମାର ରାୟ । ବିଶ୍ୱସାହିତ୍ୟର ପ୍ରସିଦ୍ଧ ସେକ୍ସଟନ୍ ବ୍ଲେକ୍‌ସିରିଜ୍‌ର ଅନୁବାଦ ମଧ୍ୟ ସେ କରିଥିଲେ; ମାତ୍ର ତାହା ବିଶେଷ ଆଦୃତ ହୋଇ ନଥିଲା । କାରଣ ବଙ୍ଗଳା ପାଠକ ଚାହୁଁଥିଲେ ଦେଶୀ ରୋମାଞ୍ଚ । ଚାହୁଁଥିଲେ, ତାଙ୍କ ଗୋଇନ୍ଦାଟି ହାବ, ଭାବ, ଚିନ୍ତା ଓ ଅନୁସନ୍ଧାନର ଧାରାରେ ବଙ୍ଗଳା ବଙ୍ଗଳା ଲାଗୁଥିବ- ଇଂରେଜି ଗୁଇନ୍ଦାଙ୍କ କଲମୀ ବା ଗରିବଙ୍କ ଶେର୍ଲକ୍ ହୋମସ୍ ହୋଇ ନଥିବ । ପ୍ରାୟ ସମକାଳରେ ଆହୁରି ବି ଏ କ୍ଷେତ୍ରରେ ଆସିଲେ ଟାଗୋର ପରିବାର ସହ ସଂପୃକ୍ତ ହେମେନ୍ଦ୍ର କୁମାର ରାୟ । ତାଙ୍କର ପ୍ରସିଦ୍ଧ ଅନୁସନ୍ଧାନକାରୀ ଯୋଡ଼ି ଥିଲେ ଜୟନ୍ତ-ମାନିକଲାଲ୍ ଏବଂ ତାଙ୍କ ସହିତ ମିଶିଥିଲେ ମଉଜିଆ ସ୍ୱଭାବର ଇନସ୍ପେକ୍ଟର ସୁନ୍ଦରବାବୁ । ପରେପରେ ପରିସରକୁ ଆସିଥିଲେ ଶରଦିନ୍ଦୁ ବନ୍ଦ୍ୟୋପାଧ୍ୟାୟଙ୍କ 'ବ୍ୟୋମୋକେଶ ବକ୍ସି', ନୀହାର ରଂଜନ ଗୁପ୍ତଙ୍କ 'କିରୀଟି ରାୟ' ଓ ସତ୍ୟଜିତ୍ ରାୟଙ୍କ 'ଫେଲୁଦା' ପ୍ରମୁଖ ।

ଏହି ପରିପ୍ରେକ୍ଷୀରେ ଆମ ଓଡ଼ିଆ ରହସ୍ୟ ଉପନ୍ୟାସର ପୃଷ୍ଠଭୂମି ଓ ପରିସର ଆଲୋଚ୍ୟ । ଓଡ଼ିଆ ସାହିତ୍ୟର ଉପନ୍ୟାସକାରମାନେ ବଡ଼ମ୍ବାର ବାସୁଦେବ ମିଶ୍ର ପଞ୍ଚାନନଙ୍କ 'ପୋଟଖୋଲର ପାନ୍ଥନିବାସ' (୧୯୩୩)କୁ ଏହାର ଆଦି ନିଦର୍ଶନର ମାନ୍ୟତା ଦିଅନ୍ତି । ତାଙ୍କର 'ତମ୍ବାମୁଦି ରହସ୍ୟ' ଓ 'ଶିଖର ଶିଖରୀ ଦୁର୍ଗରେ ବନ୍ଦୀ' ଏ ପର୍ଯ୍ୟାୟର ଆଉ ଦୁଇଟି କୃତି । ତେବେ 'ନରବଳି' ସିରିଜ୍‌ରେ ଏକାଧିକ ରହସ୍ୟ ଉପନ୍ୟାସ ରଚନା କରି ଏ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ଧାରା ସୃଷ୍ଟି କରିବାର ଶ୍ରେୟ ଦିଆଯାଏ ଚନ୍ଦ୍ରମଣି ଦାସଙ୍କୁ । ପରେପରେ ଏ ପରିସରକୁ ଆସିଛନ୍ତି ଗିରିଧାରୀ ମହାରଣା, ଗୋବିନ୍ଦ ତ୍ରିପାଠୀ, ଯମେଶ୍ୱର ମିଶ୍ର, ଲକ୍ଷ୍ମୀନାରାୟଣ ମହାନ୍ତି, ଆଶୁତୋଷ ରାୟ, କଣ୍ଟୁରିଚରଣ ଦାସ, ଭୂପେନ୍ ଗୋସ୍ୱାମୀ, ଯୋଗେନ୍ଦ୍ର କୁମାର ମହାନ୍ତି, ଦ୍ୱାରିକା ନାଥ ଦାସ ଓ ପ୍ରମୋଦ କିଶୋର ପଣ୍ଡା ପ୍ରମୁଖ ଅନେକ । ଏପରିକି ବାମାଚରଣ ମିତ୍ର ମଧ୍ୟ ବେଶ୍ କେତୋଟି ଡିଟେକ୍ଟିଭ୍ କାହାଣୀ ରଚନା କରିବା ଲକ୍ଷ୍ୟ

କରାଯାଇଛି । ଏପରିକି ପରବର୍ତ୍ତୀ କାଳରେ ଅଖିଳ ମୋହନ ପଟ୍ଟନାୟକ ଛଦ୍ମନାମରେ ଲେଖିଛନ୍ତି ଅସମାପ୍ତ ଧାରାବାହିକ ରହସ୍ୟ-ଉପନ୍ୟାସ 'ସୁନ୍ଦର ବନରେ ହତ୍ୟାର ବିଭୀଷିକା' ।

'ରବିନ୍‌ହୁଡ୍‌' ଏହି ଧାରାର ଏକ ଭିନ୍ନ ଦିଗ । ଅପରାଧୀର ଶାସ୍ତିବିଧାନ ମାଧ୍ୟମରେ ମୂଲ୍ୟବୋଧର ପ୍ରତିଷ୍ଠା ରହସ୍ୟ ଉପନ୍ୟାସର ଏକ ବିଶେଷତ୍ୱ । ଧନଠୁଳକାରୀଙ୍କଠାରୁ ଧନ ଲୁଣ୍ଠନକରି ଗରିବଙ୍କୁ ବିତରଣ କରିଦେବାପାଇଁ ଇଂରାଜୀ ଲୋକକଥାର ପ୍ରେରଣାରେ ଉନବିଂଶ ଶତାବ୍ଦୀର ଆରମ୍ଭରେ ଆବିର୍ଭାବ ଘଟିଥିଲା 'ରବିନ୍‌ହୁଡ୍‌' ଚରିତ୍ରର । ତାହାର ଉପସ୍ଥିତି ବଙ୍ଗଳା ରହସ୍ୟ ଉପନ୍ୟାସ ସମେତ ଓଡ଼ିଆ ରହସ୍ୟ ଉପନ୍ୟାସରେ ମଧ୍ୟ ଲକ୍ଷ୍ୟ କରାଯାଇଥିଲା । ବଙ୍ଗଳା ସାହିତ୍ୟର ଶଶଧର ଦତ୍ତଙ୍କ 'ମୋହନ' ସିରିଜ୍‌ର ଧାରାରେ ଓଡ଼ିଆରେ ଆବିର୍ଭୂତ ହୋଇଥିଲେ ଦ୍ୱାରିକାନାଥ ଦାଶଙ୍କ ରବୀନ୍ ଓ ରତନ୍ । ଏମାନେ ଆଇନ୍ ଆଖିରେ ଦୋଷୀ; ମାତ୍ର ଲୋକଙ୍କ ଆଖିରେ ଦେବତା । 'ଚକ୍ରାନ୍ତ' ପରି ମାସିକ ପତ୍ରିକାର ଆବିର୍ଭାବ ଏ ପ୍ରବାହକୁ କରିଥିଲା ଗତିଶୀଳ । ନିକଟ ଅତୀତର 'ମାସିକ ଡିଟେକ୍‌ଟିଭ୍' ପରି ପତ୍ରିକାକୁ ମଧ୍ୟ ଏହି ଧାରାର ଅନ୍ୟତମ ଉଲ୍ଲେଖନୀୟ ସଂଯୋଜନ ଭାବରେ ଗ୍ରହଣ କରାଯାଏ ।

ତେବେ ଏହି ରହସ୍ୟ-ଉପନ୍ୟାସ ଧାରାର ଏକ ଅବିସ୍ମରଣୀୟ ନାମ ଭାବରେ ବିଗତ ଶତାବ୍ଦୀର ମଧ୍ୟଭାଗରେ କଣ୍ଢୁରି ଚରଣ ଦାସଙ୍କର ଏବଂ ଷାଠିଏ ଦଶକର ମଧ୍ୟଭାଗରେ ତାଙ୍କ 'ରାଜଶ୍ରୀ ପକେଟ୍ ବୁକ୍‌ସ'ର ଆବିର୍ଭାବ ଏ ଇତିହାସର ଏକ ସର୍ଣ୍ଣିମ ଅଧ୍ୟାୟ । ତାଙ୍କ 'ରକ୍ତତାଣ୍ଡବ' (୧୯୫୦) ଓ 'କଳାରାତିର ଶୟତାନି' (୧୯୫୧)ଠାରୁ ଆରମ୍ଭ କରି ପ୍ରସିଦ୍ଧ 'ଲାଲ' ସିରିଜ୍ ଏବଂ ଅଶୀଦଶକର 'ଅନ୍ଧକାର' ପର୍ଯ୍ୟନ୍ତ ଅନେକ ରହସ୍ୟ ଉପନ୍ୟାସ ବିପୁଳ ପାଠକୀୟତା ଦୃଷ୍ଟିରୁ ତାଙ୍କ ପାଇଁ ଏକ ସତନ୍ତ୍ର ସ୍ଥାନ ସୃଷ୍ଟି କରିଛି ।

ପ୍ରସଙ୍ଗତଃ ଉଲ୍ଲେଖନୀୟ ଯେ ସତ୍ୟଜିତ୍ ରାୟଙ୍କ ପ୍ରସିଦ୍ଧ 'ଫେଲୁଦା' ଓରଫ୍ ପ୍ରଦୋଷ ଚନ୍ଦ୍ର ମିତ୍ରଙ୍କ କାହାଣୀ ବର୍ଣ୍ଣିତ ବାସସ୍ଥାନ ଥିଲା କଲିକତା ବାଲିଗଞ୍ଜର ୨୧ ରଜନୀ ସେନ୍ ରୋଡ୍ । ତରଳ ବୟସରେ କେନ୍ଦ୍ରାପଡ଼ା ଜିଲ୍ଲାର ପଟାମୁଣ୍ଡାଇ ଅନ୍ତର୍ଗତ ଖଡ଼ିଅଣ୍ଟାରୁ ସେ

ଯାଇଥିଲେ କଲିକତା । ସେଠି ନିଜର ଘର କରି ରହି, ପ୍ରତିଷ୍ଠିତ ହେବା ପରେ, କଣ୍ଟୁରି ଚରଣଙ୍କର ଠିକଣା ଥିଲା- ୨୦/୩, ବାଲିଗଞ୍ଜ ପ୍ଲେସ୍ । କଣ୍ଟୁରି ଚରଣ ଅବଶ୍ୟ ସତ୍ୟଜିତ୍ ରାୟଙ୍କ 'ଫେଲୁଦା' ପରି ନିର୍ଦ୍ଦିଷ୍ଟ କୌଣସି ପରିକଳ୍ପିତ ରହସ୍ୟାନୁସନ୍ଧାନୀ ସୃଷ୍ଟି କରି ନଥିଲେ; କିନ୍ତୁ 'ଫେଲୁଦା'ଙ୍କ ପରିକଳ୍ପିତ ନିବାସସ୍ଥାନ ସହ ତାଙ୍କ ନିଜ ବାସସ୍ଥାନର ସାମ୍ୟ ସୂତ୍ରରୁ, ତାଙ୍କୁ କୁହାଯାଇ ପାରିବ 'ବାଲିଗଞ୍ଜର ଓଡ଼ିଆ ଫେଲୁଦା' !

ପ୍ରସଙ୍ଗତଃ ସ୍ମରଣୀୟ ଯେ କେନ୍ଦ୍ର ସାହିତ୍ୟ ଏକାଡେମୀ ପକ୍ଷରୁ ଚାରିବର୍ଷ ତଳେ 'ବାଳସାହିତ୍ୟ ପୁରସ୍କାର' ପ୍ରବର୍ତ୍ତନ ହେବା ପରେ, ଯେଉଁ ପୁସ୍ତକଟି ପ୍ରଥମ ବର୍ଷର ପୁରସ୍କାର ପାଇଥିଲା, ତାହା ଥିଲା ପୁଣ୍ୟପ୍ରଭା ଦେବୀଙ୍କର 'କୁନି ଗୋଇନ୍ଦା' । ଏବେ ସାରା ଭାରତବର୍ଷର କୌତୂହଳୀ କିଶୋରମାନେ ଟେଲିଭିଜନ ପରଦାରେ କମିକସ୍, ଭିଡ଼ିଓ ଗେମ୍ ଓ କଂପ୍ୟୁଟର ପରଦାରେ ଇଣ୍ଟରନେଟ୍‌ର ମାୟାରେ ବାୟା । ସେମାନଙ୍କ ଆଖିରେ ଆଉ ଆମ ଚନ୍ଦ୍ରମଣି, ଗିରିଧର ବା କଣ୍ଟୁରି ଚରଣମାନେ ମୋହାଞ୍ଜନ ଲଗାଇ ପାରୁ ନାହାନ୍ତି । ବିଶ୍ୱର ରହସ୍ୟ ଉପନ୍ୟାସ ଧାରାରେ ବିଗତ ଶତାବ୍ଦୀର ଚାଳିଶ ଦଶକରେ ହିଁ ଡିଟେକ୍‌ଟିଭ୍ ଉପନ୍ୟାସର ମୃତ୍ୟୁଲେଖ ଲେଖାହେବା ଆରମ୍ଭ ହୋଇଥିଲା । ତାହାର ଅନୁଲେଖ ଏବେ ଭାରତରେ ଲେଖା ହେଉଛି । ଏ କ୍ଷେତ୍ରରେ ଗୋଟିଏ 'କୁନି ଗୋଇନ୍ଦା' ଯେ ଆମର ବିଶ୍ୱ-ମନସ୍କ କିଶୋରଙ୍କୁ ଆଉ ରହସ୍ୟ ଉପନ୍ୟାସର କଳାଧଳା ଅକ୍ଷର ପାଖକୁ ଟାଣି ଆଣି ପାରିବ ନାହିଁ- ଏହା ନିଶ୍ଚିତ । ଏଣୁ ଏଇ ମେ ମାସ ୨୬ ତାରିଖରେ ଆମ ଗହଣରୁ କଣ୍ଟୁରି ଚରଣଙ୍କର ବିଦାୟକୁ 'ରହସ୍ୟ-ଉପନ୍ୟାସର ଶେଷ ବାଦ୍‌ଶାହଙ୍କର ବିଦାୟ' ବୋଲି ହିଁ କୁହାଯାଉ !

୦୩ ଜୁନ୍ ୨୦୧୪


ସୂଚୀ ଓ ସୂତ୍ର



ଭିତରଟା କିନ୍ତୁ ଅନ୍ଧକାର ନୁହେଁ । ହାଲ୍‌କା ଆଲୋକରେ ସତ୍ୟବ୍ରତ ଦେଖିଲେ, ଘର ଭିତରଟା ନିର୍ଜନ । ସେ ଯେଉଁ ଦୁଆର ଠେଲି ଯେଉଁଠି ପହଞ୍ଚିଲେ, ତାହା ଗୋଟିଏ ଛୋଟ ହଲ୍ ପରି ମନେ ହେଉଥିଲା । ତା'ପରେ ସେ ଡାହାଣକୁ ଚାହିଁ ଦେଖିଲେ, ସେଠାରେ ଆହୁରି ଗୋଟିଏ ଦରଜା । ସେଇ ଦରଜାଟାକୁ ସତ୍ୟବ୍ରତ ଠେଲିଲେ । ଖୋଲିଗଲା ।

ଆଶ୍ଚର୍ଯ୍ୟ !

ସେଇ ଘରଟା ଭିତରେ ସେ କ'ଣ ଏଇଆ ଆଶା କରିଥିଲେ !

ଭିଜିଟିଂ କାର୍ଡଟା ଉପରେ ଆଖି ପଡ଼ିବା ମାତ୍ରକେ ସତ୍ୟବ୍ରତ ମହାପାତ୍ର ଯେପରି ଚମକି ଉଠିଲେ ।

"ପଙ୍କଜ କୁମାର ମଲ୍ଲିକ ।"

ମଲ୍‌ଟିମିନିଅନର ପଙ୍କଜ ମଲ୍ଲିକ ନିଜେ ସତ୍ୟବ୍ରତର ଚେମ୍ବରକୁ ଆସିବେ, ଏ କଥା ସତ୍ୟବ୍ରତ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ।

ନିଜେ ସେ ଉଠିଗଲେ ଅଫିସ୍ ରୁମ୍‌ରୁ ।

ପଙ୍କଜ ମଲ୍ଲିକ ରିସେପ୍‌ସନିଷ୍ଟ ନୀଳିମା ସହିତ କ'ଣ କଥାବାର୍ତ୍ତା କରୁଥିଲେ ।

ସତ୍ୟବ୍ରତକୁ ଦେଖିବା ମାତ୍ରକେ ମୁହଁରେ ହସ ଫୁଟାଇ ଆଗେଇ ଆସିଲେ । କରମର୍ଦ୍ଦନ କଲେ ।

ସତ୍ୟବ୍ରତ କହିଲା : ଆସନ୍ତୁ ସାର୍, ମୁଁ କିନ୍ତୁ ଏତେଟା ଆଶା କରିପାରି ନଥିଲି । ଆପଣ ଫୋନ୍‌ଟା କରିଦେଇ ପାରିଥାଆନ୍ତେ । ମୁଁ ନିଜେ ଯାଇ ଆପଣଙ୍କ ସହିତ ସାକ୍ଷାତ କରିଥାଆନ୍ତି ।

ମିଷ୍ଟର ମଲ୍ଲିକ ହସି ହସି ଯାଇ ସତ୍ୟବ୍ରତର ଅଫିସ୍ ରୁମ୍‌ରେ ବସିଲେ । କହିଲେ : ମୁଁ ଜାଣେ ମିଷ୍ଟର ମହାପାତ୍ର । ମୁଁ ଇଚ୍ଛା କରିଥିଲେ ଆପଣଙ୍କୁ ମୋ' ଅଫିସ୍‌କୁ ଡକେଇ ପାରିଥାଆନ୍ତି । କିନ୍ତୁ ଜାଣିଶୁଣି ମୁଁ ତାହା କରିନାହିଁ । ତା'ର କାରଣ ଅଛି ।

: ଆପଣ ନିଶ୍ଚୟ କିଛି ଅସୁବିଧାରେ ପଡ଼ି...

: ହଁ, ଅସୁବିଧା ତ ନିଶ୍ଚୟ, ମିଷ୍ଟର ମଲ୍ଲିକ ପକେଟରୁ ଗୋଟିଏ ମୂଲ୍ୟବାନ ସିଗାରେଟ କେସ୍ ବାହାର କରି ନିଜେ ଗୋଟିଏ ସିଗାରେଟ୍ କାଢ଼ି କେସ୍‌ଟି ସତ୍ୟବ୍ରତ ଆଡ଼କୁ ବଢ଼ାଇ ଦେଉ ଦେଉ କହିଲେ, କିନ୍ତୁ ଘଟଣାଟା ମୋତେ ଅଲୌକିକ ପରି ମନେହେଉଛି । ବହୁତ ଭାବିଚିନ୍ତି ମୁଁ ଆପଣଙ୍କ ନିକଟକୁ ଆସିଛି ।

ସତ୍ୟବ୍ରତ ଗଭୀର ମନଯୋଗ ସହକାରେ ପଙ୍କଜ ମଲ୍ଲିକଙ୍କ କଥା ଶୁଣୁଥିଲେ । କହିଲେ, ଘଟଣାଟା ମୋତେ ବିସ୍ତାରିତ ଭାବେ କହିବାକୁ ହେବ ଯେ !

ନିଶ୍ଚୟ, ମୁଁ ଆପଣଙ୍କୁ ଘଟଣାଟା କହିବି । କିନ୍ତୁ ଗୋଟାଏ ସର୍ତ୍ତରେ । ସର୍ତ୍ତଟା ହେଉଛି, ଆପଣ ମୋ' ଠାରୁ ଯାହା ଶୁଣିବେ, ସବୁ ଗୋପନ ରହିବ । ଏପରିକି ଆପଣଙ୍କର ସହକାରୀ କିମ୍ବା ଷ୍ଟେନୋ କେହି ଏ କଥା ଜାଣିପାରିବେ ନାହିଁ । ଆଉ ମୁଁ ଏଠାକୁ ଆସିଛି ବା ଆପଣ ମୋର କୌଣସି କେସ୍‌ର ଭାର ନେଇଛନ୍ତି, ଏ କଥା ମଧ୍ୟ କେହି ଜାଣିପାରିବେ ନାହିଁ ।

ସତ୍ୟବ୍ରତ କିଛି ସମୟ ମିଷ୍ଟର ମଲ୍ଲିକଙ୍କ ମୁହଁକୁ ଚାହିଁ, ସ୍ମିତ ହସି କହିଲେ : ବେଶ୍, ସେଇଆ ହେବ । ଆପଣ ଏଥର କୁହନ୍ତୁ ।

ମିଷ୍ଟର ମଲ୍ଲିକ କହିଲେ : ଗତ ଛଅ ମାସ ମଧ୍ୟରେ ମୋର ପ୍ରାୟ ଦଶ ଲକ୍ଷ ଟଙ୍କା ମୂଲ୍ୟର ସଂପତ୍ତି ଅଦୃଶ୍ୟ ହୋଇଛି । ଏବଂ ତାହା ଏପରି ଜାଗାରୁ ଅଦୃଶ୍ୟ ହୋଇଛି, ଯେଉଁଠି ମୋ' ଛଡ଼ା ଆଉ କାହାରି ହାତ ଯାଏ ନାହିଁ ।

ମାନେ ? କଥାଟା ମୁଁ ଠିକ୍ ବୁଝିପାରିଲି ନାହିଁ ।

ଘଟଣାଟା ବଡ଼ ଜଟିଳ ମିଷ୍ଟର ମହାପାତ୍ର । ଯେଉଁଥିପାଇଁ ମୋତେ ଆପଣଙ୍କ ପାଖକୁ ଦଉଡ଼ି ଆସିବାକୁ ହୋଇଛି । କିନ୍ତୁ ଆପଣ ଯଦି ମୋ'ପରି କେବଳ ଘଟଣାର ପରିଣତି କଥା ଚିନ୍ତା କରିବସନ୍ତି, ଆପଣ କେବଳ ବିବ୍ରତ ହେବା ଛଡ଼ା କୌଣସି ସମାଧାନରେ ପହଞ୍ଚିବା ସମ୍ଭବ ହେବ ନାହିଁ ।

: ତଥାପି ଆପଣ କହନ୍ତୁ ।

: କହିବି ଯେ, କିନ୍ତୁ କେଉଁଠୁ ଆରମ୍ଭ କରିବି ଠିକ୍ ଭାବିପାରୁ ନାହିଁ । କଥା ହେଉଛି, ଘଟଣାଗୁଡ଼ିକ ଏପରି ଘଟୁଛି, ଯାହାକୁ ବିଶ୍ଳେଷଣ କରିବାକୁ ଗଲେ ମନେହେବ, ଯେପରି ସମସ୍ତ ଘଟଣାର ମୂଳପିଣ୍ଡ ହେଉଛି ନିଜେ ମୁଁ । ଅଥଚ ମୁଁ ଆସିଛି ପ୍ରତିକାର କରିବା ପାଇଁ ।

ମିଷ୍ଟର ମଲ୍ଲିକ ମୁହୂର୍ତ୍ତେ ନୀରବ ରହି ପୁଣି କହିଲେ : ଆମ ଘରେ ଷ୍ଟ୍ରଙ୍ଗ୍ ରୁମ୍‌ରେ ଆମର ଯାବତୀୟ ମୂଲ୍ୟବାନ ଜିନିଷପତ୍ର ରହେ । ଅଳଙ୍କାର ଠାରୁ ଆରମ୍ଭ

କରି, ନଗଦ ଟଙ୍କା, ଦଲିଲ ପତ୍ର, ସେଆର କାଗଜ ଇତ୍ୟାଦି ଇତ୍ୟାଦି ସବୁ ପ୍ରକାର ମୂଲ୍ୟବାନ ପଦାର୍ଥ ଥାଏ । ଆଉ ଆମର ସେଇ ଷ୍ଟ୍ରଙ୍ଗ୍ ରୁମ୍‌ର ତାଲା ନମ୍ବର ମିଳାଇ ଖୋଲିବାକୁ ହୋଇଥାଏ ।

ସେ ନମ୍ବର ଏକା ମୁଁ ଜାଣେ । ଆଉ ଜାଣିଥିଲେ ମୋର ସ୍ତ୍ରୀ ।

ଅଥଚ ଆଶ୍ଚର୍ଯ୍ୟର କଥା, ଆମର ସେଇ ଷ୍ଟ୍ରଙ୍ଗ୍‌ରୁମ୍ ମଧ୍ୟରୁ ଗତ ଛଅ ମାସ ମଧ୍ୟରେ ପ୍ରାୟ ଦଶଲକ୍ଷ ଟଙ୍କାର ମୂଲ୍ୟବାନ ଅଳଙ୍କାର ଅପହରଣ ହୋଇଗଲାଣି । ଅଥଚ, ମୁଁ କାହାରିକୁ ସନ୍ଦେହ କରିପାରୁ ନାହିଁ । ପୋଲିସ୍‌ରେ ଖବର ଦେଇପାରୁ ନାହିଁ । ଅଥଚ ଦିନ ପରେ ଦିନ...

ମିଷ୍ଟର ମଲ୍ଲିକ କଥା ଅସମାପ୍ତ ରଖି ନୀରବରେ ସତ୍ୟବ୍ରତ ମୁହଁକୁ ଚାହିଁଲେ ।

ସତ୍ୟବ୍ରତ ସ୍ମିତ ହସି କହିଲେ : ବାସ୍ତବିକ ଘଟଣାଟା ଚିନ୍ତାର କଥା । ଆପଣଙ୍କ ଷ୍ଟ୍ରଙ୍ଗ୍ ରୁମ୍‌ର ଚାବି ଖୋଲିବାର କୌଶଳ ଆପଣଙ୍କ ଛଡ଼ା ଅନ୍ୟ କେହି ଜାଣନ୍ତି ନାହିଁ । ଅଥଚ...

ସତ୍ୟବ୍ରତ ମଧ୍ୟ କଥା ଅସମାପ୍ତ ରଖି କିଛି ସମୟ ନୀରବ ରହି କହିଲେ, ଘଟଣାଟା ଆଉ ଯାହା ହେଉନା କାହିଁକି ଅଲୌକିକ ନୁହେଁ । ଏଥର ଆପଣଙ୍କୁ ମୋର କେତୋଟି ପ୍ରଶ୍ନର ଉତ୍ତର ଦେବାକୁ ହେବ ।

ପଙ୍କଜ ମଲ୍ଲିକ ସିଧା ହୋଇବସିଲେ ।

ସତ୍ୟବ୍ରତ କହିଲେ : ଆପଣଙ୍କ ଘରେ ଆପଣ, ଆପଣଙ୍କ ସ୍ତ୍ରୀ ଏବଂ ଆପଣଙ୍କର ସନ୍ତାନସନ୍ତତି ମିଶି...

: ସର୍ବ ମୋଟ ତିନ୍ । ପଙ୍କଜ ମଲ୍ଲିକ କହିଲେ, ଗୋଟିଏ ପୁଅ, ଗୋଟିଏ ଝିଅ ଏବଂ ମୁଁ । ସ୍ତ୍ରୀ ଦୁଇବର୍ଷ ପୂର୍ବରୁ ଆମକୁ ଛାଡ଼ି ଯାଇଛନ୍ତି । ପୁଅ ପଢ଼େ ଆମେରିକାରେ । ଝିଅ ଥାଏ ମୋ' ପାଖରେ ।

: ହୁଁ ।

ମନେହେଲା ହଠାତ୍ ଯେପରି ସତ୍ୟବ୍ରତ ମହାପାତ୍ରଙ୍କର ମନଟା ମଉଳି ପଡ଼ିଲା । ସେ ଆଉ କିଛି ସମୟ ନୀରବ ରହି କହିଲେ : ଆପଣଙ୍କ ଘରେ ଚାକର ବାକରନିଶ୍ଚୟ ଅନେକ ଥିବେ ?

: ନା, ତା' ମଧ୍ୟ ନୁହେଁ । ଦୁଇଜଣ ଚାକର, ଅବଶ୍ୟ ଏମାନଙ୍କ ଛଡ଼ା ଘରେ ଆଉ କେହି ନାହାନ୍ତି । ତେବେ ମୋର ଯେତେ ଦୂର ଧାରଣା, ଏମାନେ କେହି ଏ କାମ ସହିତ ସଂଶ୍ଳିଷ୍ଟ ହୋଇ ନ ପାରନ୍ତି । ତା'ଛଡ଼ା ଅସଲ କଥା କ'ଣ ହେଉଛି

ଜାଣନ୍ତି ମିଷ୍ଟର ମହାପାତ୍ର ? ମୁଁ ବୁଝିପାରୁ ନାହିଁ । ଷ୍ଟ୍ରଙ୍ଗ୍‌ରୁମ୍ ଭିତରୁ କିପରି ଆମର ମୂଲ୍ୟବାନ ଅଳଙ୍କାରଗୁଡ଼ିକ ଗୋଟିକ ପରେ ଗୋଟିଏ ଅପହରଣ ହେଉଛି ।

ସତ୍ୟବ୍ରତ କହିଲେ : ଏହି ଯେ ଦଶଲକ୍ଷ ଟଙ୍କା ମୂଲ୍ୟର ପଦାର୍ଥ ଅପହରଣର କଥା ଆପଣ କହୁଛନ୍ତି, ତାହା କେତେ ଥରରେ ହୋଇଛି ବୋଲି ଆପଣଙ୍କର ଧାରଣା ?

: ପ୍ରାୟ ତିନି ଥରରେ । ଏଗୁଡ଼ିକ ସବୁ ମୋ' ସ୍ତ୍ରୀଙ୍କର ଗହଣା । ଏବେ ପ୍ରାୟ ଛଅସାତ ମାସ ପୂର୍ବରୁ ମୁଁ ଥରେ ସେହି ଗହଣାବାକ୍‌ସ ଖୋଲି ଦେଖିଥିଲି ସବୁ ଠିକ୍ ଥିଲା । ତା'ପରେ ଚାରିମାସ ତଳେ ଥରେ ଖୋଲି ଦେଖିଲା ବେଳକୁ ଗୋଟିଏ ନେକ୍‌ଲେସ ନାହିଁ । ଅବଶ୍ୟ ସେଦିନ ମୁଁ ବେଶୀ ଚିନ୍ତିତ ହୋଇ ନଥିଲି, ଭାବିପାରି ନଥିଲି ଅପହରଣ ହୋଇଛି ବୋଲି । ମୋର ମନେ ହୋଇଥିଲା, ଅନ୍ୟ କେଉଁଠି ରଖିଦେଇଛି, ପରେ ଖୋଜିଲେ ମିଳିବ । ତା' ଦୁଇମାସ ପରେ ପୁଣି ସେହି ଗହଣାବାକ୍‌ସ ଖୋଲି ଦେଖିଲି, ଆଉ ଗୋଟାଏ ଗହଣା ନାହିଁ ! ଆଶ୍ଚର୍ଯ୍ୟ । ମନେ ମନେ ସେଇ ଦିନଠାରୁ ଭୀଷଣ ଚିନ୍ତିତ ହୋଇପଡ଼ିଥିଲି । ଆଉ କାଲି ଖୋଲି ଦେଖିଲି, ମୋ' ସ୍ତ୍ରୀଙ୍କର ସବୁଠାରୁ ପ୍ରିୟ ଗୋଟିଏ ମୟୂରକଣ୍ଠୀହାର, ଯେଉଁଟା ବହୁ ମୂଲ୍ୟବାନ ରନ୍ ସହଯୋଗରେ ତିଆରି ହୋଇଥିଲା, ସେଇଟା ବି ଅଦୃଶ୍ୟ ହୋଇଛି । ଏହାପରେ ଆଉ କ'ଣ ସ୍ଥିର ହୋଇ ବସିବା ସମ୍ଭବ ?

ପଙ୍କଜ ମଲ୍ଲିକ ପ୍ରଶ୍ନବାଚୀ ନୟନରେ ସତ୍ୟବ୍ରତ ମୁହଁକୁ ଅନାଇଲେ ।

ସତ୍ୟବ୍ରତ କହିଲେ : ଆପଣ କ'ଣ ମଝିରେ ମଝିରେ ଷ୍ଟ୍ରଙ୍ଗ୍‌ରୁମ୍ ଖୋଲି ସମସ୍ତ ମୂଲ୍ୟବାନ ଜିନିଷପତ୍ରଗୁଡ଼ିକ ଚେକ୍ କରନ୍ତି ?

: ନା, ତେବେ ସ୍ତ୍ରୀଙ୍କ ଅଳଙ୍କାରପତ୍ର ମଝିରେ ମଝିରେ ମୁଁ ଦେଖିଥାଏଁ । ସେଇଟା ମୋର ଗୋଟିଏ ଦୁର୍ବଳତା । ଯେଉଁ ଦିନ ସ୍ତ୍ରୀଙ୍କ କଥା ଖୁବ୍ ମନେପଡ଼ିଯାଏ, ସେଦିନ ମୁଁ ସ୍ଥିରହୋଇ ରହିପାରେ ନାହିଁ । ତାଙ୍କର ଗହଣାପତ୍ର ଓ ଶାଢ଼ୀ ବ୍ଲାଉଜ ଇତ୍ୟାଦି ଖେଳେଇ ଦେଖିଲେ ମୋର ମନ ଭିତରଟା କ୍ରମଶଃ ଶୀତଳ ହୋଇଆସେ । ମୁଁ ପୁଣି ଧୀରେଧୀରେ ପ୍ରକୃତିସ୍ଥ ହୁଏ । ଏଇଟା ମୋର ପୁରୁଣା ଅଭ୍ୟାସ । ତେଣୁ ମଝିରେ ମଝିରେ ମୋତେ ସ୍ତ୍ରୀଙ୍କର ଗହଣାପତ୍ର ଦେଖିବାକୁ ପଡ଼ିଥାଏ ।

ପଙ୍କଜ ମଲ୍ଲିକଙ୍କ ସ୍ୱରଟା କିପରି ଅପ୍ରାକୃତିକ ମନେହେଲା ।

ସତ୍ୟବ୍ରତ କହିଲେ : ବୁଝିଲି । ତା'ହେଲେ ନିଶ୍ଚୟ କିଛି ଗୋଟାଏ ଅଘଟଣ ଘଟୁଛି । ମୋର ଗୋଟାଏ ଅନୁରୋଧ ଆପଣ ରଖିବେ ?

: କୁହନ୍ତୁ ।

: ମୋତେ ଥରେ ଆପଣଙ୍କ ସଙ୍ଗରେ ନେଇ ଆପଣଙ୍କ ଷ୍ଟ୍ରଙ୍ଗ୍‌ରୁମ୍‌ଟା ଦେଖେଇ ପାରିବେ ?

ପଙ୍କଜ ମଲ୍ଲିକ ହଠାତ୍ କିଛି ଉତ୍ତର ଦେଲେ ନାହିଁ । କିଛି ସମୟ କ'ଣ ଯେପରି ଚିନ୍ତାକରି ଧୀରେ ଧୀରେ କହିଲେ : ଆପଣଙ୍କୁ ମୋର ଷ୍ଟ୍ରଙ୍ଗ୍‌ରୁମ୍ ଦେଖେଇବାରେ କିଛି ଆପତ୍ତି ନାହିଁ, କିନ୍ତୁ ଆମ ଘରର ଲୋକମାନେ ତାହା ଜାଣିବେ । ଏଇଠାରେ ହିଁ ମୋର ଭୀଷଣ ଆପତ୍ତି । ତେବେ ମୁଁ ଟିକିଏ ଚିନ୍ତା କରେ ମିଷ୍ଟର ମହାପାତ୍ର ! ଆପଣଙ୍କୁ ଏପରି ଏକ କୌଶଳରେ ନେଇ ଦେଖାଇବାକୁ ହେବ, ଯେପରି ଘରେ ସମସ୍ତେ ଜାଣିଲେ ବି ଆପଣଙ୍କୁ କେହି ସନ୍ଦେହ କରିବେ ନାହିଁ ।

: ତେବେ ବେଶୀ ଡେରି କରିବା ଉଚିତ ନୁହେଁ । ତା'ହେଲେ ଆହୁରି କିଛି ମୂଲ୍ୟବାନ ସମ୍ପଦର ଅପହରଣ ହେବାର ସମ୍ଭାବନା ରହିଛି ।

ପଙ୍କଜ ମଲ୍ଲିକ ହଠାତ୍ ଉଲ୍ଲସିତ ହୋଇଉଠିଲେ । କହିଲେ ଠିକ୍ ଅଛି । ସେଲିର ଜନ୍ମଦିନ ଆଗାମୀ ଶୁକ୍ରବାର ଦିନ । ସେଦିନ ଆମ ଘରକୁ ତା'ର ବନ୍ଧୁ ବାନ୍ଧବ ଆସିବେ । ସେଇଦିନ ମୁଁ ଆପଣଙ୍କୁ ନିମନ୍ତ୍ରଣ କରି ନେଇଯିବି । ତା'ହେଲେ କେହି ସନ୍ଦେହ କରିବେ ନାହିଁ । କିମ୍ବା ଆପଣଙ୍କୁ ଆମ ଷ୍ଟ୍ରଙ୍ଗ୍‌ରୁମ୍ ବୁଲି ଦେଖିବାରେ କୌଣସି ଅସୁବିଧା ରହିବ ନାହିଁ ।

: କିନ୍ତୁ ସେଇ ଲୋକଗହଳ ଭିତରେ...।

: ନା ନା ମିଷ୍ଟର ମହାପାତ୍ର, ଲୋକଗହଳ ହେବ ତଳ ତାଲାରେ । ଆମର ଷ୍ଟ୍ରଙ୍ଗ୍‌ରୁମ୍ ଉପର ତାଲାରେ । ତେଣୁ ତଳ ତାଲାର ଆନନ୍ଦମୁଖର ମୁହୂର୍ତ୍ତରେ ଉପର ତାଲାରେ ଆମେ କାମ ଶେଷ କରିପାରିବା । ହଁ ସେଇ ହେବ ଉପଯୁକ୍ତ ସୁଯୋଗ । ମଝିରେ ଆଉ ଚାରିଟା ଦିନ । ଆପଣ ମନେରଖିବେ, ଶୁକ୍ରବାର ଛଅଟା ବେଳକୁ ନିମନ୍ତ୍ରଣ ରହିଲା । ସେଲିର ସେଦିନ ଜନ୍ମଦିନ । ଆପଣ ସେଲିର ସମ୍ମାନିତ ଅତିଥି ।

ପଙ୍କଜ ମଲ୍ଲିକ ଉଠି ଠିଆ ହେଲେ । ତାଙ୍କର ସମସ୍ତ ଦେହମନରେ କିପରି ଏକ ଉତ୍ତେଜନା ସୃଷ୍ଟି ହୋଇଥିଲା । ମନେ ହେଉଥିଲା ସେ ଯେପରି କେଉଁ ଏକ ବିଜୟ ଗର୍ବରେ ଗର୍ବିତ ।

ସତ୍ୟବ୍ରତ ମହାପାତ୍ରଙ୍କ ସହିତ କରମର୍ଦ୍ଦନ କରି ଘରୁ ବାହାରି ଯାଉଥିଲେ । ଦରଜା ପାଖରୁ ପୁଣି ଫେରିଆସିଲେ ।

: କିନ୍ତୁ ଗୋଟାଏ କଥା ମିଷ୍ଟର ମହାପାତ୍ର । ଆପଣଙ୍କ ପରିଚୟ ସେଦିନ ସେଠାରେ କ'ଣ ହେବ ?

ସତ୍ୟବ୍ରତ ଟିକିଏ ଚିନ୍ତାକରି କହିଲେ : ଧରନ୍ତୁ ମୋର ପରିଚୟ ହେବ, ମୁଁ ଜଣେ ସାହିତ୍ୟିକ ।

: ବେଶ୍ ବେଶ୍ । ଆପଣ ଜଣେ କବି, ଚମତ୍କାର ପରିଚୟ । ପୁଣି ଟିକିଏ ନୀରବ ରହି କହିଲେ, କିନ୍ତୁ ଆପଣଙ୍କର କୌଣସି ପରିଚିତ ଲୋକ ଯଦି ସେଠାରେ ଦେଖା ହୋଇଯାଆନ୍ତି ?

ସତ୍ୟବ୍ରତ ସ୍ମିତ ହସି କହିଲେ : ଆପଣ ଚିନ୍ତା କରନ୍ତୁ ନାହିଁ । ମୋତେ ସେଠାରେ ଆପଣ ବି ଚିହ୍ନି ପାରିବେ ନାହିଁ ।

ସତ୍ୟବ୍ରତ ପଙ୍କଜ ମଲ୍ଲିକଙ୍କ ଦୁଆରେ ପହଞ୍ଚି ସ୍ତବ୍‌ଧ ହୋଇଯାଇଥିଲେ ।

ଆଲୋକମାଳାର ଅପୂର୍ବ ଦୃଶ୍ୟସଜ୍ଜା ଦେଖି ସେ ବିମୋହିତ ହୋଇପଡ଼ିଥିଲେ । ଜଣକ ଜନ୍ମଦିନରେ ଯେ ଏହିପରି ଏକ ଉତ୍ସବର ଆୟୋଜନ କରାଯାଇପାରେ ସେ ହୁଏତ ଚିନ୍ତା କରିପାରୁ ନଥିଲେ ।

ଠିକ୍ ସେଇ ମୁହୂର୍ତ୍ତରେ ଦୁଇଜଣ ସୁବେଶା ଝିଅ ଆସି ସତ୍ୟବ୍ରତଙ୍କୁ ନମସ୍କାର କରି, ଭିତରକୁ ଡାକିନେଲେ ।

ପଙ୍କଜ ମଲ୍ଲିକଙ୍କ ଘରର ତଳ ତାଲାଟାରେ ଯେପରି ପ୍ରାଣପ୍ରାଚୁର୍ଯ୍ୟର ବନ୍ୟା ଖେଳି ବୁଲୁଥିଲା । ଝିଅପୁଅମାନେ ପଞ୍ଝା ପଞ୍ଝା ହୋଇ ପ୍ରଜାପତି ପରି ଉଡ଼ି ବୁଲୁଥିଲେ ।

ସେହି ଉନ୍ମତ୍ତ ଆନନ୍ଦ ମଧ୍ୟରେ ସତ୍ୟବ୍ରତ ଯେପରି କୁଆଡ଼େ ହଜି ଯାଇଥିଲେ । କେହି ତାଙ୍କ ଆଡ଼େ ଚାହୁଁ ନଥିଲେ କିମ୍ବା କାହାରି ତାଙ୍କର ସହିତ କଥା କହିବାର ଅବକାଶ ନଥିଲା ।

କିନ୍ତୁ ପଙ୍କଜ ମଲ୍ଲିକ ? ସେ ଗଲେ କୁଆଡ଼େ ? କାହାକୁ ପଚାରିବେ, କିଏ ବା ଉତ୍ତର ଦେବ ତାଙ୍କ ପ୍ରଶ୍ନର ?

ପରମୁହୂର୍ତ୍ତରେ ସତ୍ୟବ୍ରତ ଦେଖିଲେ, ପଙ୍କଜ ମଲ୍ଲିକ ସେହି ଭିଡ଼ ଠେଲି ବାହାରକୁ ବାହାରି ଆସୁଛନ୍ତି । ସେ ସତ୍ୟବ୍ରତଙ୍କର ପାଖ ଦେଇ ଚାଲିଗଲେ । କିନ୍ତୁ ଆଶ୍ଚର୍ଯ୍ୟ...

ପର ମୂହୂର୍ତ୍ତରେ ସତ୍ୟବ୍ରତ ମନେ ମନେ ହସିଉଠିଲେ । ନା ନା, ସେ ଯେ ଛଦ୍ମବେଶରେ ଏଠାକୁ ଆସିଛନ୍ତି । ଛଦ୍ମବେଶଟା ଛଦ୍ମ ଆବରଣରେ ଖୁବ୍ ଗୋଟାଏ ଆବୃତ ନ ଥିଲେ ମଧ୍ୟ, ଯେଉଁ କେତୋଟି ପରିବର୍ତ୍ତନ ସେ ତାଙ୍କ ଦେହମୁହଁର କରିଛନ୍ତି, ସେଥିରେ ଖୁବ୍ ପରିଚିତ ଲୋକ ମଧ୍ୟ ସତ୍ୟବ୍ରତଙ୍କ ଆଡ଼େ ଗଭୀର ଦୃଷ୍ଟି ଦେଇ ନ ଚାହିଁଲେ ସହଜରେ ଚିହ୍ନିପାରିବ ନାହିଁ ।

ସତ୍ୟବ୍ରତ ଫେରି ଯାଉଥିଲେ ପଙ୍କଜ ମଲ୍ଲିକଙ୍କ ପଛେ ପଛେ । କିନ୍ତୁ କ'ଣ ଭାବି ପୁଣି ଅଟକିଗଲେ । ତାଙ୍କର ମନେହେଲା, ଏହି ଉତ୍ସବ ଉନ୍ମାଦନାର ସ୍ରୋତ ଭିତରେ ସେ ଥରେ ସମସ୍ତ ଆଗନ୍ତୁକମାନଙ୍କୁ ଦେଖି ନେଲେ କେମିତି ହୁଅନ୍ତା !

ପଙ୍କଜ ମଲ୍ଲିକଙ୍କ ପଛ ଛାଡ଼ି ସେ ବିପରୀତ ଦିଗକୁ ଆଗେଇଲେ ।

ଯେଉଁ ହଲ୍ ଘରଟି ମଧ୍ୟରେ ସେ ଯାଇ ପାଦ ଦେଲେ, ସେ ଘରେ ଯେପରି ଆନନ୍ଦର ବନ୍ୟା ବହିଯାଉଛି । ଦଳେ ଦଳେ ଯୁବକ ଯୁବତୀ, ନାନା ବେଶ, ନାନା ପୋଷାକରେ, ନାନା ନୃତ୍ୟରେ, ନାନା ଗୀତରେ ମତ୍ତ ଅଛନ୍ତି । କାହାରିକୁ କାହାରି ଆଡ଼କୁ ଚାହିଁବାର ଫୁରୁସତ୍ ନାହିଁ ।

ସତ୍ୟବ୍ରତ କାହାକୁ ଦେଖିବେ ? କାହାକୁ ସଂଦେହ କରିବେ ? ସେ କେବଳ ଘେରାଟିଏ ବୁଲିଆସିଲେ ସମସ୍ତଙ୍କ ମଝିରେ । ଅନେକେ ତାଙ୍କୁ ଦେଖି ବି ଦେଖିଲେ ନାହିଁ । ଆଉ ଅନେକଙ୍କର ତାଙ୍କ ଆଡ଼କୁ ଚାହିଁବାର ବି ଫୁରୁସତ୍ ନ ଥିଲା ।

ସତ୍ୟବ୍ରତ କିନ୍ତୁ ମନେ ମନେ ଖୋଜୁଥିଲେ ସେଲିକୁ । ପ୍ରଥମେ ସେ ଯାହାକୁ ସେଲି ବୋଲି ଅନୁମାନ କରିଥିଲେ, ପରେ ତାଙ୍କର ଧାରଣା ହେଲା, ନା ସେ ସେଲି ନୁହେଁ । ତା'ପରେ ଆଉ ଯେଉଁ ଜଣେ ଦୁଇଜଣଙ୍କୁ ଅନୁମାନ କରିଥିଲେ, ସେମାନେ ଯେ ସେଲି ହୋଇ ନ ପାରନ୍ତି, କିଛି କ୍ଷଣ ପରେ ତାଙ୍କର ଦୃଢ଼ ଧାରଣା ହୋଇଥିଲା ।

କିନ୍ତୁ ସେଲି କାହିଁ ?

ଉତ୍ସବମୁଖରିତ ଏହି ବାତାବରଣ ତ୍ୟାଗ କରି ସେଲି ବା ଗଲା କେଉଁଆଡ଼େ ?

ସତ୍ୟବ୍ରତ ସେହି ରଙ୍ଗରଙ୍ଗିଆ ପ୍ରଜାପତି ମେଳରେ ଉଡ଼ି ବୁଲୁଥିଲେ । ସେ ଯେପରି ଖୋଜି ବୁଲୁଥିଲେ କାହାକୁ ବା କେଉଁମାନଙ୍କୁ ।

କିନ୍ତୁ କିଏ ସେମାନେ ?

ସତ୍ୟବ୍ରତ ଯାଇ ଗୋଟିଏ ଖାଲି ଚେଆରରେ ବସିଲେ ।

ଆଉ କିଛି ସମୟ ସେ ସେହି ମତ୍ତ ଉନ୍ମତ୍ତତା ଆଡ଼େ ଅନାଇ ରହି, ଧୀରେ ଧୀରେ ଉଠି ବାହାରିଗଲେ ବାହାରକୁ । ଏଥର ପଙ୍କଜ ମଲ୍ଲିକଙ୍କ ସହିତ ତାଙ୍କର ଦେଖା ହେବା ଉଚିତ ।

ସେ ବାହାରିଗଲେ ସେଇଆଡ଼େ ।

ପଙ୍କଜ ମଲ୍ଲିକ ସଦର ଦରଜା ମୁହଁରେ ଠିଆହୋଇ କାହାର ପ୍ରତୀକ୍ଷା କରିଥିଲେ ।

ସତ୍ୟବ୍ରତ ମନେ ମନେ ହସିଉଠିଲେ ।

ଧୀରେ ଧୀରେ ଯାଇ ପଙ୍କଜ ମଲ୍ଲିକଙ୍କ କାନ ପାଖରେ କହିଲେ : ମୁଁ ହେଉଛି ଗୁଇନ୍ଦା କବି ସତ୍ୟବ୍ରତ ମହାପାତ୍ର ।

ପଙ୍କଜ ମଲ୍ଲିକଙ୍କ ଆଖିଯୋଡ଼ାକ ମୁହୂର୍ତ୍ତକ ପାଇଁ ଜଳିଉଠିଲା । ସେ ସତ୍ୟବ୍ରତ ମହାପାତ୍ରଙ୍କ ଧୂତି ପଞ୍ଜାବ ଆଡ଼େ ଚାହିଁ, ଯେତେବେଳେ ତାଙ୍କର ଦରପାଚିଲା ମୁଣ୍ଡବାଳ ଆଡ଼େ ଅନାଇଲେ, ସତେରେ ସେ ଅବାକ୍ ହୋଇ ଯାଇଥିଲେ । ଓଠ ତଳେ ନିଶ ହଳକ ବି ଭଲ ମାନୁଥିଲା ସତ୍ୟବ୍ରତଙ୍କୁ । ଦୁଇ ହାତରେ ସେ ସତ୍ୟବ୍ରତଙ୍କୁ କୁଣ୍ଢେଇ ଧରି କହିଲେ : ବାସ୍ତବିକ ଆପଣଙ୍କର ତୁଳନା ହୁଏ ନାହିଁ ମିଷ୍ଟର ମହାପାତ୍ର ।

ଦୁଇଜଣ ନିମନ୍ତ୍ରିତ ଅତିଥି ଆଗେଇ ଆସୁଥିଲେ ସେମାନଙ୍କ ଆଡ଼କୁ । ସତ୍ୟବ୍ରତ ପଙ୍କଜ ମଲ୍ଲିକଙ୍କୁ ସାବଧାନ କରାଇ ଦେଇ କହିଲେ : ମୋ' ନାଁ କିନ୍ତୁ କବି ସରୋଜ ପଟ୍ଟନାୟକ । ଆପଣଙ୍କର ଯେପରି ମନେ ରୁହେ ।

ନିମନ୍ତ୍ରିତ ଅତିଥି ଦୁଇଜଣ ପଙ୍କଜ ମଲ୍ଲିକଙ୍କ ପାଦ ଛୁଇଁ ପ୍ରଣାମ କଲେ । ସତ୍ୟବ୍ରତଙ୍କୁ ନମସ୍କାର କରି ଆଗେଇ ଗଲେ ଭିତରକୁ ।

ସତ୍ୟବ୍ରତ କହିଲେ : ମୁଁ କିନ୍ତୁ ସେଲିକୁ କାହିଁ ହଲ୍ ଭିତରେ ଦେଖିଲି ନାହିଁ ତ ?

: ସେଲି ହଲ୍ ଭିତରେ ନାହିଁ ? ପଙ୍କଜ ମଲ୍ଲିକଙ୍କ ସ୍ୱରରେ ଟିକିଏ ବିବ୍ରତ ଭାବ ଫୁଟିଉଠିଲା ।

: ନା, ଦେଖିଲି ନାହିଁ ! ତେବେ ସେଲିକୁ ମୁଁ ଇତିପୂର୍ବରୁ କେବେ ଦେଖିନାହିଁ ।

: ଓଃ, ପଙ୍କଜ ମଲ୍ଲିକ ହସିଉଠିଲେ । ଆପଣ ତା'ହେଲେ ସେଲିକୁ ଚିହ୍ନିପାରି ନାହାନ୍ତି । ଚାଲନ୍ତୁ ମୁଁ ଆପଣଙ୍କ ସହିତ ତା'ର ଓ ତା' ବଂଧୁମାନଙ୍କର ପରିଚୟ କରାଇଦେଉଛି ।

ଦୁହେଁ ପୁଣି ହଲ୍ ଘର ଭିତରକୁ ପଶିଲେ ।

ପଙ୍କଜ ମଲ୍ଲିକ ଭିତରକୁ ଆସୁଥିବାର ଦେଖି ମୁହୂର୍ତ୍ତକ ପାଇଁ ଯେପରି ଆନନ୍ଦ ଉତ୍ସବରେ ସାମାନ୍ୟ ଭଟ୍ଟା ଦେଖା ଦେଇଥିଲା । ପଙ୍କଜ ମଲ୍ଲିକ କ୍ଷିପ୍ର ଚାହାଣରେ ଜଣ ଜଣକୁ ଚାହିଁ ଯାଉଥିଲେ । କିନ୍ତୁ ପ୍ରକୃତରେ ସେଲି କାହିଁ ?

ସେ ସତ୍ୟବ୍ରତ ମୁହଁକୁ ଶଙ୍କିତ ଆଖିରେ ଚାହିଁ କହିଲେ : ଆପଣଙ୍କ ଅନୁମାନ ସତ୍ୟ । ସେଲି ବୋଧହୁଏ ଉପରକୁ କୌଣସି କାମରେ ଯାଇଛି ।

ସତ୍ୟବ୍ରତ କିଛି ମନେ କଲେ ନାହିଁ । କହିଲେ : ଆସନ୍ତୁ ଆମେ ଏଠାରୁ ବାହାରିଯିବା । ନହେଲେ ଏମାନେ ମନ ଖୁସିରେ ଉତ୍ସବକୁ ଉପଭୋଗ କରିପାରିବେ ନାହିଁ ।

ସତ୍ୟବ୍ରତ ଓ ପଙ୍କଜ ମଲ୍ଲିକ ହଲ୍ ଘରୁ ବାହାରି ଯାଉଥିଲେ ।

ମିଷ୍ଟର ମଲ୍ଲିକଙ୍କର ଚିନ୍ତିତ ମୁହଁଆଡ଼େ ଚାହିଁ ସତ୍ୟବ୍ରତ କହିଲେ : ଆପଣ କିଛି ଅଶୁଭ କଥା ଚିନ୍ତା କରୁଛନ୍ତି ବୋଧେ !

: ଅଶୁଭ ! ମାନେ ? ନା ନା, ସେଲିର ଆଜି ଜନ୍ମଦିନ । ସେଲି ନିଶ୍ଚୟ ତା'ର କୌଣସି ବାନ୍ଧବୀ ସହିତ ବସି ଗପ କରୁଛି । ଆପଣ ଆସନ୍ତୁ । ପ୍ରଥମେ ମୁଁ ଆପଣଙ୍କୁ ଆମର ଷ୍ଟଡ଼ି ରୁମ୍‌ଟା ଦେଖାଇ ଦିଏ ।

ସତ୍ୟବ୍ରତ ନୀରବରେ ପଙ୍କଜ ମଲ୍ଲିକଙ୍କ ପଛେ ପଛେ ଆଗେଇ ଗଲେ ।

ଦୋତାଲାରେ ସେମାନେ ପହଞ୍ଚିବା ପରେ, ମିଷ୍ଟର ମଲ୍ଲିକ ନିର୍ଦ୍ଦିଷ୍ଟ ଏକ ଘର ଭିତରେ ପଶି ସତ୍ୟବ୍ରତଙ୍କୁ ଭିତରକୁ ଡାକିଲେ ଏବଂ ଘରର ଦରଜାଟା ଭିତରୁ ବନ୍ଦ କରିଦେଲେ ।

ଘର ଭିତରର ସବୁଗୁଡ଼ିକ ଲାଇଟ୍ ଜଳାଇ ଦେଇ ପଙ୍କଜ ମଲ୍ଲିକ ଯେପରି ସ୍ୱସ୍ତିର ନିଃଶ୍ୱାସ ପକାଇ ସତ୍ୟବ୍ରତ ଆଡ଼େ ଚାହିଁଲେ । କହିଲେ : ଆପଣ ଆମର ଏହି କେସ୍ ସମ୍ବନ୍ଧରେ କିଛି ଭାବିଛନ୍ତି ମିଷ୍ଟର ମହାପାତ୍ର ?

ସତ୍ୟବ୍ରତ କହିଲେ : କିଛି ଭାବି ନାହିଁ । ତେବେ ଏସବୁ କାମରେ ଇଚ୍ଛାକରି କିଛି ଭାବି ହୁଏ ନାହିଁ । ଭାବନା ଆପଣା ଛାଏଁ ମନକୁ ଆସେ ।

: ଆଚ୍ଛା ମିଷ୍ଟର ମହାପାତ୍ର, ମୋ' ମୁହଁରୁ ଆମ ଷ୍ଟ୍ରଙ୍ଗ୍ ରୁମ୍ ଭିତରୁ ଏହି ମୂଲ୍ୟବାନ ଜିନିଷଗୁଡ଼ିକର ଅପହରଣ କାହାଣୀ ଶୁଣିବା ପରେ ଆପଣଙ୍କର କାହାରି ପ୍ରତି ସନ୍ଦେହ ହୋଇନାହିଁ ?

ସତ୍ୟବ୍ରତ ହସିଲେ । କହିଲେ : ଆପଣଙ୍କ ମନରେ ଏପରି ଉତ୍‌କଣ୍ଠା ଜନ୍ମିବା ଅତି ସ୍ୱାଭାବିକ । ଯାହାହେଉ ମୁଁ ଆପଣଙ୍କ କେସ୍‌ଟାକୁ ଖୁବ୍ ସତର୍କତାର ସହିତ ନରୀକ୍ଷଣ କରିବି । କାରଣ ଆପଣଙ୍କର ଏହି କେସ୍‌ଟି ଯେ ଏକ ଜଟିଳ ସମସ୍ୟା, ତାହା ମୁଁ ବେଶ୍ ଅନୁଭବ କରିପାରୁଛି । କିନ୍ତୁ ଆପଣ ମୋଟେ ଚଞ୍ଚଳ ହୁଅନ୍ତୁ ନାହିଁ । ହୁଏତ ଏହା ମଧ୍ୟରେ ଆହୁରି କିଛି ଘଟଣା ଘଟିପାରେ । ତେବେ ନ ଘଟିବା ପାଇଁ ଆମେ ସାବଧାନ ରହିବା ।

ପଙ୍କଜ ମଲ୍ଲିକ ଅପେକ୍ଷାକୃତ ଚିନ୍ତିତ ମନେ ହେଉଥିଲେ ।

କିଛି ସମୟର ନୀରବତା ପରେ ସେ ଧୀରେ ଧୀରେ କହିଲେ ଆସନ୍ତୁ । ମୁଁ ଆପଣଙ୍କୁ ଏଥର ଆମର ଷ୍ଟ୍ରଙ୍ଗ୍ ରୁମ୍‌ଟା ଦେଖେଇ ଆଣେ ।

ସେମାନେ ସେହି ଘର ମଧ୍ୟରୁ ଆଉ ଗୋଟାଏ ଘର ମଧ୍ୟରେ ପ୍ରବେଶ କଲେ । ସତ୍ୟବ୍ରତ ଦେଖିଲେ ସାମ୍‌ନାରେ ଏକ ବିରାଟ ଲୁହାର ଦରଜା ।

ପଙ୍କଜ ମଲ୍ଲିକ ସତ୍ୟବ୍ରତଙ୍କ ଆଡ଼େ ବୁଲି ଅନେଇ କହିଲେ : ଏହି ଲୁହା ଦହଜା ସେପାଖରେ ଆମର ଷ୍ଟ୍ରଙ୍ଗ୍ ରୁମ୍ । ଏହି ଦରଜାର ତାଲା ଖୋଲିବା ପାଇଁ କୌଣସି ଚାବି ଲାଗେ ନାହିଁ । ନମ୍ବର ମିଳେଇ ତାଲା ଖୋଲିବାକୁ ହୋଇଥାଏ । କିନ୍ତୁ ତାଲାର ଏହି ନମ୍ବର ମୋ' ଛଡ଼ା ଆଉ କାହାରିକୁ ଜଣାନାହିଁ । ମୁଁ ଆଶ୍ଚର୍ଯ୍ୟ ହେଉଛି, ଏହି ତାଲା ଖୋଲା ହେଉଛି କିପରି ।

ପଙ୍କଜ ମଲ୍ଲିକ ଧୀରେ ଧୀରେ ଯାଇ ତାଲାର ନମ୍ବର ଘୁରାଇବାକୁ ଲାଗିଲେ । କେତୋଟି ସେକେଣ୍ଡ ମଧ୍ୟରେ 'ଠୁକ୍' କରି ଗୋଟିଏ ଶବ୍ଦ ହେଲା । ତା'ପରେ ସେ ହ୍ୟାଣ୍ଡଲ ମୋଡ଼ି ଲୁହାଦରଜାଟା ଖୋଲିଲେ ।

ଭିତରେ ଗୋଟିଏ ଛୋଟ ଘର । କେତେଗୁଡ଼ିଏ ଲୁହାର ଥାକ ·। ସେହି ଥାକମାନଙ୍କ ଉପରେ ବନ୍ଧୁ କାଠ ବାକ୍ସ ରଖାହୋଇଛି ।

ପଙ୍କଜ ମଲ୍ଲିକ ଷ୍ଟ୍ରଙ୍ଗ୍‌ରୁମ୍ ଭିତରକୁ ପଶି କହିଲେ : ଆପଣ ଆସନ୍ତୁ ମିଷ୍ଟର ମହାପାତ୍ର । ଏହାରି ଭିତରେ ଆମ ସାତପୁରୁଷର ଅର୍ଜିତ ଧନସମ୍ପଦ ଗଚ୍ଛିତ ଅଛି । ସେଗୁଡ଼ିକର ମୂଲ୍ୟ କେତେ ହେବ, ମୁଁ କହିପାରିବି ନାହିଁ । କିନ୍ତୁ ଏଗୁଡ଼ିକର ତତ୍ତ୍ୱାବଧାନର ଦାୟିତ୍ୱ ମୋର ।

ସତ୍ୟବ୍ରତ ଷ୍ଟ୍ରଙ୍ଗ୍ ରୁମ୍ ଭିତରକୁ ପଶି ଗୋଟିକ ପରେ ଗୋଟିଏ ପଦାର୍ଥ ଆଡ଼େ କ୍ଷିପ୍ର ଦୃଷ୍ଟି ବୁଲାଇ ଯାଉଥିଲେ । ବିଭିନ୍ନ ଧାତୁନିର୍ମିତ ବହୁ ପଦାର୍ଥ ଘର ଭିତରେ ପୂରି ରହିଥିଲା ।

କିନ୍ତୁ କାଠବାକ୍ସଗୁଡ଼ିକରେ ବୋଧହୁଏ ମୂଲ୍ୟବାନ ପଦାର୍ଥ ସବୁ ସଜଡ଼ା ହୋଇ ରହିଥିଲା ।

ପଙ୍କଜ ମଲ୍ଲିକ ଗୋଟିଏ କାଠ ବାକ୍ସ ପାଖରେ ଠିଆହୋଇ ଢାଙ୍କଣା ଖୋଲିଲେ ।

ସତ୍ୟବ୍ରତ ବାକ୍ସ ଭିତରେ ବହୁ ମୂଲ୍ୟବାନ ଅଳଙ୍କାର ଦେଖିବାକୁ ପାଇଲେ ।

ସେହି ବାକ୍ସ ଭିତରେ ଆହୁରି ବହୁ ଛୋଟବଡ଼ ବାକ୍ସ ପୂରି ରହିଥିଲା ।

ସତ୍ୟବ୍ରତ ପଚାରିଲେ : ଏଇ ଯେଉଁ ବାକ୍ସଟି ଆପଣ ଖୋଲିଛନ୍ତି, ଏହାରି ଭିତରୁ କ'ଣ ସେଇ ମୂଲ୍ୟବାନ ମୟୂରକଣ୍ଠୀ ହାରଟି ଚୋରି ଯାଇଛି ।

: ହଁ ମିଷ୍ଟର ମହାପାତ୍ର । ଏହି ବାକ୍ସଟି ଭିତରେ ମୋର ସ୍ତ୍ରୀଙ୍କର ସମସ୍ତ ଅଳଙ୍କାର ରହିଛି । ଏ ବାକ୍ସଟି ମୋର ସବୁଠାରୁ ବେଶୀ ପ୍ରିୟ ।

ସତ୍ୟବ୍ରତ ନିଜ ହାତରେ ସେହି କାଠବାକ୍ସର ଡାଲାଟି ଖୋଲିଲେ ଏବଂ ବନ୍ଦ କରିଦେଲେ । ବାକ୍ସ ଭିତରେ ଥିବା ଅଳଙ୍କାରଗୁଡ଼ିକ ଉପରେ ଆଖି ବୁଲାଇ ନେଇ କହିଲେ : ତା'ହେଲେ ଆପଣଙ୍କର ଦୃଢ଼ ଧାରଣା ଯେ ଏହି ବାକ୍ସ ଭିତରୁ ସେଇ ହାରଟି ଏବଂ ଅନ୍ୟାନ୍ୟ ଅଳଙ୍କାର ଅପହୃତ ହୋଇଛି ?

: ହଁ ମିଷ୍ଟର ମହାପାତ୍ର ।

ସତ୍ୟବ୍ରତ ଅନ୍ୟାନ୍ୟ ବାକ୍ସଗୁଡ଼ିକ ଆଡ଼େ ଚାହିଁ କହିଲେ  ଏହିସବୁ ବାକ୍ସମାନଙ୍କରେ କ'ଣ ଅଛି ?

: ସେ ସବୁ ଅଲଗା ଜିନିଷ । ଅବଶ୍ୟ ଧାତୁନିର୍ମିତ କେତେକ ମୂଲ୍ୟବାନ ପଦାର୍ଥ ଏହିସବୁ ବାକ୍ସମାନଙ୍କରେ ଅଛି । ହେଲେ ସେଗୁଡ଼ିକ ଉଠାଇ ଅନ୍ୟତ୍ର ନେଇଯିବା ମୋଟେ ସହଜ ନୁହେଁ । ଖୁବ୍ ଓଜନ ଓ କଷ୍ଟସାଧ୍ୟ । ତା'ଛଡ଼ା ଅଧିକାଂଶ ବାକ୍ସରେ ସେଆର ସାର୍ଟିଫିକେଟ, ସେଭିଂ ସାର୍ଟିଫିକେଟ, ଦଲିଲ, ଦସ୍ତାବିଜ ଆହୁରି ମୂଲ୍ୟବାନ କାଗଜପତ୍ରମାନ ରହିଛି ।

: ହୁଁ, ସତ୍ୟବ୍ରତ ଗହଣା ବାକ୍ସଟିକୁ ଆଉଥରେ ଦେଖିଲେ । ବିଭିନ୍ନ ଗହଣାଗୁଡ଼ିକ ଭିନ୍ନ ଭିନ୍ନ ସୌଖୀନ ବାକ୍ସମାନଙ୍କରେ ଭର୍ତ୍ତି ହୋଇ ରହିଛି ।

ତା'ପରେ ସେ ସବୁଗୁଡ଼ିକ ଯଥା ସ୍ଥାନରେ ରଖି ବାକ୍ସ ବନ୍ଦ କରିବାକୁ କହିଲେ ଏବଂ ଷ୍ଟ୍ରଙ୍ଗ୍ ରୁମ୍‌ଟିକୁ ଭଲ ଭାବରେ ଦେଖିବାକୁ ଲାଗିଲେ ।

ଷ୍ଟ୍ରଙ୍ଗ୍ ରୁମ୍‌ଟି ଲମ୍ୱା ଚଉଡ଼ାରେ ବଖରାଏ ଛୋଟଘର ହେବ । କିନ୍ତୁ ଷ୍ଟ୍ରଂ ରୁମ୍‌ର କାନ୍ଥ ପରୀକ୍ଷା କରି ଦେଖିଲେ, ପ୍ରକୃତରେ ଷ୍ଟ୍ରଙ୍ଗ୍ । ଢଳେଇ କରା ହୋଇ ତିଆରି ହୋଇଛି । ତା'ପରେ ସେହି ରୁମ୍‌ର ଅନ୍ୟ କେତୋଟି ପଦାର୍ଥ ପରୀକ୍ଷା କରି କହିଲେ : ଆସନ୍ତୁ ସାର୍ । ମୋର ସବୁ ଦେଖା ହୋଇଯାଇଛି ।

ପଙ୍କଜ ମଲ୍ଲିକ ଆଶାୟୀ ଆଖିରେ ସତ୍ୟବ୍ରତଙ୍କ ଆଡ଼କୁ ଚାହିଁ ପଚାରିଲେ : କିଛି ବୁଝିପାରିଲେ ?

ସତ୍ୟବ୍ରତ ହସିଉଠି କହିଲେ : ବର୍ତ୍ତମାନ କିଛି ବୁଝିପାରି ନାହିଁ । ତେବେ ଧୀରେ ଧୀରେ ସବୁ ବୁଝିପାରିବି । ଆପଣ ଚାଲନ୍ତୁ । ବାହାରେ ବସି ଏ ସମ୍ବନ୍ଧରେ ଆଲୋଚନା କରିବା ।

ଦୁହେଁ ଷ୍ଟ୍ରଂ ରୁମ୍‌ରୁ ବାହାରକୁ ବାହାରି ଆସିଲେ ।

ପଙ୍କଜ ମଲ୍ଲିକ ଷ୍ଟ୍ରଂ ରୁମ୍‌ର ଲୁହା ଦରଜା ଟାଣି ବନ୍ଦ କଲେ । ତା'ପରେ ତାଲାଟାକୁ ବୁଲାଇଦେଇ ସତ୍ୟବ୍ରତଙ୍କ ପଛେପଛେ ଆଗେଇ ଆସିଲେ ।

ସତ୍ୟବ୍ରତ କହିଲେ : ଆପଣ କହୁଛନ୍ତି, ଆପଣଙ୍କର ଏହି ଷ୍ଟ୍ରଂ ରୁମ୍‌ର ତାଲା ଖୋଲିବାର କୌଶଳ ଆପଣଙ୍କ ଛଡ଼ା ଅନ୍ୟ କେହି ଜାଣନ୍ତି ନାହିଁ ?

ନା, ମିଷ୍ଟର ମହାପାତ୍ର । ମୋ' ସ୍ତ୍ରୀ ଜାଣିଥିଲେ । କିନ୍ତୁ ସେ ତ ବର୍ତ୍ତମାନ୍ ସନ୍ଦେହର ବାହାରେ । ତେଣୁ ମୁଁ କେବଳ ଅବାକ୍ ହୋଇ ଭାବୁଛି । ବେଳେ ବେଳେ ଭାବନାର ଖିଅ ହରେଇ ଦେଉଛି, ମନେହେଉଛି ଏହା ଅଲୌକିକ କାଣ୍ଡ ଛଡ଼ା ଆଉ କ'ଣ ହୋଇପାରେ ?

ସତ୍ୟବ୍ରତ ନୀରବରେ କିଛି ସମୟ ଚିନ୍ତାକରି କହିଲେ : ଏଥର ଚାଲନ୍ତୁ, ତଳକୁ ଯିବା । ଆପଣ ମୋତେ ସେଲିର ବନ୍ଧୁମାନଙ୍କ ସହିତ ପରିଚୟ କରାଇ ଦେବେ । ତା'ଛଡ଼ା ସେଲି ସହିତ ମୋର ତ ଏତେବେଳଯାଏ ପରିଚୟ ହେଲା ନାହିଁ ।

ମିଷ୍ଟର ମଲ୍ଲିକ ଟିକିଏ ବ୍ୟସ୍ତ ହେଲାପରି କହିଲେ : ହଁ ହଁ ଚାଲନ୍ତୁ । ସେହି ମୋର ଏକମାତ୍ର କନ୍ୟା । ଆମ ଘରେ ଯେଉଁ ଭୌତିକ କାଣ୍ଡ କାରଖାନା ଆରମ୍ଭ ହେଲାଣି, ପରିସ୍ଥିତି କେତେବେଳେ ଯେ କ'ଣ ହେବ ତା'ର କିଛି ଠିକ୍‌ଠିକଣା ନାହିଁ । ତା' ପୂର୍ବରୁ ସେଲି ସହିତ ମୁଁ ଆପଣଙ୍କୁ ପରିଚୟ କରାଇ ରଖିଥାଏ । ଅନ୍ତତଃ ତା' ନିରାପତ୍ତା ଦୃଷ୍ଟିରୁ...

ସତ୍ୟବ୍ରତ ବାଧା ଦେଇ କହିଲେ : ଏସବୁ ଆପଣ କ'ଣ ଭାବୁଛନ୍ତି ସାର୍ । ଘଟଣା ଗୋଟାଏ ନିଶ୍ଚୟ କିଛି ଘଟିଛି । ତା' ବୋଲି ଏପରି କିଛି ଘଟିନାହିଁ, ଯେଉଁଥିପାଇଁ ଆପଣ ଏତେ ବିଚଳିତ ହୋଇପଡ଼ିବେ ।

:ଡାଡି, ଡାଡି...

ପୂର୍ବରୁ ସେଲିର ପାଟି ଶୁଣି ପଙ୍କଜ ମଲ୍ଲିକ ଚଞ୍ଚଳ ହୋଇଗଲେ ।

ସତ୍ୟବ୍ରତ ବ୍ୟସ୍ତ ହୋଇ କହି ପକାଇଲେ : ମୋ' ନାଁ କିନ୍ତୁ ସରୋଜ ପଟ୍ଟନାୟକ ।

ସେଲି ସେଆଡୁ ଦଉଡ଼ି ଦଉଡ଼ି ଆସି ହଠାତ୍ ସ୍ତବ୍ଧ ହୋଇଗଲା ।

ବୋଧହୁଏ ସେଇ ମୁହୂର୍ତ୍ତରେ ଡାଡିଙ୍କ ସହିତ ଏପରି ଜଣେ ଅପରିଚିତ ଲୋକଙ୍କୁ ଆଶା କରି ନ ଥିଲା ।

ପଙ୍କଜ ମଲ୍ଲିକ ମଧ୍ୟ ଏପରି ଏକ ଆକସ୍ମିକ ପରିସ୍ଥିତି କାମନା କରି ନ ଥିଲେ । ସେ ହଠାତ୍ କହି ଉଠିଲେ : ଏହାଙ୍କୁ ଚିହ୍ନିଚୁ ସେଲି ? ଏ ହେଉଛନ୍ତି କବି ସରୋଜ ପଟ୍ଟନାୟକ । ବେଶ୍ ଜଣେ ସ୍ୱନାମଧନ୍ୟ ସାହିତ୍ୟିକ । ତାଙ୍କ ବହି ନିଶ୍ଚୟ ତୋ' ଲାଇବ୍ରେରୀରେ ଥିବ ।

ସେଲି କିନ୍ତୁ ଖୁବ୍ ଅନ୍ୟମନସ୍କ ଓ ବିଚଳିତ ମନେ ହେଉଥିଲା । ବାବା ସତ୍ୟବ୍ରତଙ୍କର ପରିଚୟ କରାଇ ଦେଇଥିଲେ ମଧ୍ୟ ସେ ଗୋଟିଏ ନମସ୍କାର କରିବାକୁ ବି ଭୁଲି ଯାଇଥିଲା ।

କିନ୍ତୁ...

ମୁହୂର୍ତ୍ତକ ପାଇଁ ତିନିଜଣଯାକ ମୂକ ପାଲଟି ଯାଇଥିଲେ । ତିନିଜଣଙ୍କ ମନରେ ତିନି ପ୍ରକାରର ଭାବନା ବହିଚାଲିଥିଲା ।

ପଙ୍କଜ ମଲ୍ଲିକ ଭାବୁଥିଲେ, ସେଲି ହୁଏତ ସତ୍ୟବ୍ରତ ମହାପାତ୍ରଙ୍କୁ ତାଙ୍କର ଏହି ନିଭୃତ କକ୍ଷରେ ଦେଖି ସହ୍ୟ କରିପାରି ନାହିଁ । ସାଧାରଣତଃ ଏହି କକ୍ଷକୁ ପଙ୍କଜ ମଲ୍ଲିକଙ୍କର ଖୁବ୍ ଅନ୍ତରଙ୍ଗ ଓ ବିଶ୍ୱାସୀ ଲୋକ କେହି ନ ହେଲେ ସେ ଆଣନ୍ତି ନାହିଁ ।

ସତ୍ୟବ୍ରତ ଭାବୁଥିଲେ, ଯେମିତି କେଉଁଠି କିଛି ଗୋଟାଏ ଅଘଟଣ ଘଟି ଯାଇଛି ।

ଆଉ ସେଲି ?

ସେ ନିଜକୁ ଆଉ ସଂଯତ କରି ନ ପାରି ପଙ୍କଜ ମଲ୍ଲିକଙ୍କୁ ସେଠାରୁ ଟାଣି

ଘରର ଅପର ପ୍ରାନ୍ତକୁ ନେଇଯାଇ, ଏକ ଆଡୁଆଳ ସ୍ଥାନରେ କ'ଣ ଯେପରି କହିଲା ।

ସତ୍ୟବ୍ରତ ବୁଝିଲେ, ସେଲି ତା' ଡାଡି ସହିତ କୌଣସି ଗୋପନ ପରାମର୍ଶ କରିବାକୁ ଚାହେ ।

କିନ୍ତୁ ପର ମୁହୂର୍ତ୍ତରେ ସତ୍ୟବ୍ରତ ଦେଖିଲେ, ସେଲି ସହିତ ମିଷ୍ଟର ମଲ୍ଲିକ ଉତ୍ତେଜିତ ହୋଇଉଠିଛନ୍ତି ଏବଂ ସତ୍ୟବ୍ରତ ଆଡ଼େ ସେମାନେ କେହି ଆଉ ଥରେ ନ ଚାହିଁ କ୍ଷିପ୍ରପାଦ ଚାଲି ଘରୁ ବାହାରି ଯାଉଛନ୍ତି ।

ସତ୍ୟବ୍ରତ ଅବାକ୍ ହୋଇ ସେମାନଙ୍କ ଯିବା ପଥକୁ ମୁହୂର୍ତ୍ତେ ଅନାଇ ରହି, ତା'ପରେ ସେମାନଙ୍କ ପଛେ ପଛେ ଆଗେଇ ଚାଲିଲେ ।

କିନ୍ତୁ ସତ୍ୟବ୍ରତ ଲକ୍ଷ୍ୟ କଲେ, ବାପଝିଅଙ୍କର ସେ କି ଉଦ୍‌ବେଗ । ସେମାନେ ଯେପରି ସେହି ଜନଗହଳ ମଧ୍ୟରେ ଉତ୍‌କଣ୍ଠିତ ହୋଇ କାହାକୁ ଖୋଜୁଛନ୍ତି । ଜଣ ଜଣ କରି । ତନ୍ନତନ୍ନ କରି ।

କିନ୍ତୁ କିଏ ସେ ?

କାହିଁକି ବା ସେମାନଙ୍କର ଏତେ ଉତ୍‌କଣ୍ଠା !

ନିମନ୍ତ୍ରିତ ଅତିଥିମାନଙ୍କ ମଧ୍ୟରୁ ଅଧିକାଂଶ ବାପ ଝିଅଙ୍କର ଏହି ଚଞ୍ଚଳତା ଲକ୍ଷ୍ୟକରି ଧରିନେଇଥିଲେ କିଛି ନା କିଛି ଗୋଟାଏ ଘଟିଛି । ଶେଷରେ ସେମାନେ ଘରୁ ବାହାରକୁ, ଏବଂ ବାହାରୁ ରାସ୍ତାଯାଏ ଯାଇ ହତାଶ ହୋଇ ଫେରିଆସିଲେ ।

ପଙ୍କଜ ମଲ୍ଲିକ କହିଲେ : ତୁ ଠିକ୍ ଦେଖିଥିଲୁ ତ ସେଲି ?

: ହଁ ଡାଡି । ମୁଁ ଅବାକ୍ ହୋଇ ଦେଖିଥିଲି । କିନ୍ତୁ ଏହା କିପରି ସମ୍ଭବ ହେଲା ଡାଡି ?

ଠିକ୍ ସେମାନଙ୍କ ପଛଆଡ଼େ ସତ୍ୟବ୍ରତ ମହାପାତ୍ରଙ୍କୁ ଦେଖି ପଙ୍କଜ ମଲ୍ଲିକ କହିଲେ : ହଉ ହଉ ତୁ ଯା, ତୋ' ବନ୍ଧୁମାନେ ସେଠାରେ ଅପେକ୍ଷା କରୁଥିବେ । ଆଜିର ଉତ୍ସବ ଶେଷ ହେଉ । ପରେ ସେ ସମ୍ବନ୍ଧରେ ଆଲୋଚନା କରିବା ।

ଏତେବେଳ ପରେ ସେଲି ଯେପରି ପ୍ରକୃତିସ୍ଥ ମନେ ହୋଇଥିଲା ।

ସତ୍ୟବ୍ରତ ମହାପାତ୍ରଙ୍କୁ ନମସ୍କାର କରି କହିଲା : ମୋତେ କ୍ଷମା କରିବେ ସାର୍ । ମୁଁ ଗୋଟାଏ କାରଣରୁ...

: ନା ନା, ତୁମେ ବର୍ତ୍ତମାନ ଯାଅ । ତମର ବନ୍ଧୁବାନ୍ଧବମାନେ ଭୀଷଣ ଭାବରେ ତମର ଅନୁପସ୍ଥିତ ଅନୁଭବ କରୁଥିବେ । ପରେ କଥାବାର୍ତ୍ତା ହେବା । ମୁଁ ପୁଣି ଆସିବି । ଅନେକ ଥର ଆସିବି ।

ସେଲି ହାତ ଯୋଡ଼କରି ପଛକୁ ପଛକୁ ପାଦ ପକାଇ ଘର ଭିତରକୁ ଚାଲି ଯାଉଥିଲା, ଯେଉଁ ଘରେ ନିମନ୍ତ୍ରିତ ଅତିଥିମାନେ ଗୁଣ୍ଡହୋଇ ଆମୋଦ ପ୍ରମୋଦରେ ମତ୍ତ ଥିଲେ ।

ପଙ୍କଜ ମଲ୍ଲିକ ସତ୍ୟବ୍ରତ ଆଡ଼େ ଥରଟିଏ ଚାହିଁ ଅନ୍ୟ ଘର ଭିତର ଆଡ଼େ ଆଗେଇ ଯାଉ ଯାଉ କହିଲେ : ଆସନ୍ତୁ, ମୁଁ ଆପଣଙ୍କୁ ଘଟଣାଟା କହୁଛି ।

ସତ୍ୟବ୍ରତ ପୁଣି ଆଗେଇ ଗଲେ, ଦୋ'ତାଲାର ସେହି ନିଭୃତ କକ୍ଷ ଆଡ଼କୁ ।

ନୀରବରେ କିଛି ସମୟ ଚୁପ୍‌ଚାପ୍ ବସି ରହିବା ପରେ ପଙ୍କଜ ମଲ୍ଲିକ କହିଲେ : ସେଲି କହୁଥିଲା, ତା' ମା'ର ସେଇ ମୟୂରକଣ୍ଠୀ ହାରଟି ଅନ୍ୟ ଜଣେ ପିନ୍ଧିଥିବାର ଦେଖିଲା ।

: ମାନେ ? ହଠାତ୍ ଯେପରି ଗୋଟାଏ ବିସ୍ଫୋରଣ ହେଲା । ସତ୍ୟବ୍ରତ ଚମକି ଉଠିଲେ ।

: ଘଟଣାର କେତେଟା ସତ୍ୟତା ଅଛି ମୁଁ କହିପାରିବି ନାହିଁ । ସେଲିର ବି ଭ୍ରମ ହୋଇପାରିଥାଏ । ପଙ୍କଜ ମଲ୍ଲିକ ସହଜ କଣ୍ଠରେ କହିଲେ ।

: ଆପଣ କିନ୍ତୁ ଘଟଣାଟା ମୋତେ ବିସ୍ତାରିତ ଭାବରେ କୁହନ୍ତୁ । ଆପଣଙ୍କ ଷ୍ଟ୍ରଙ୍ଗ୍ ରୁମ୍‌ରୁ ଅପହୃତ ହୋଇଥିବା ସେଇ ମୟୂରକଣ୍ଠୀ ହାରଟି କଥା କ'ଣ ସେଲି ଜାଣେ ? ସତ୍ୟବ୍ରତ ପଚାରିଲେ ।

: ନା ନା, ସେଲି ହାର ଅପହୃତ ହୋଇଥିବା ସମ୍ବନ୍ଧରେ କିଛି ଜାଣିନାହିଁ । ସେ ଆଶ୍ଚର୍ଯ୍ୟ ହୋଇଛି ତା' ମା'ର ହାରଟି ଅନ୍ୟ ଜଣକ ଗଳାକୁ ଗଲା କିପରି !

: କିଏ ପିନ୍ଧିଥିଲା ସେ ହାରଟି ?

: ସେଲି ତାକୁ ଚିହ୍ନି ନାହିଁ । ଜଣେ ଭଦ୍ରମହିଳା । ବୋଧହୁଏ ନିମନ୍ତ୍ରିତା । କିନ୍ତୁ ସେଲି ପ୍ରଥମେ ସେଇ ହାରଟି ଦେଖି ଅବାକ୍ ହୋଇଯାଇଛି । ତା'ପରେ ଛୁଟିଆସିଛି ମୋ' ପାଖକୁ । ଆମେ ଦୁହେଁଯାକ ଖୋଜିଲାବେଳକୁ ଭଦ୍ରମହିଳା ମଧ୍ୟ ଅନ୍ତର୍ଦ୍ଧାନ ହୋଇଛନ୍ତି । ପଙ୍କଜ ମଲ୍ଲିକ ଅତ୍ୟନ୍ତ ସହଜ କଣ୍ଠରେ କହିଲେ ।

ସତ୍ୟବ୍ରତ ମୁହୂର୍ତ୍ତେ ଚିନ୍ତାକରି କହିଲେ : ଘଟଣାଟା ତା'ହେଲେ ଅବହେଳାର

ନୁହେଁ । ବର୍ତ୍ତମାନ ଆମର ସର୍ବପ୍ରଥମ କର୍ତ୍ତବ୍ୟ ହେବ ସେହି ଭଦ୍ରମହିଳାଙ୍କୁ ଖୋଜି ବାହାର କରିବା ।

: କିପରି ସମ୍ଭବ ?

: କୌଣସି ସୂତ୍ରରୁ ଭଦ୍ରମହିଳାଙ୍କୁ ଖୋଜି ବାହାର କରିପାରିଲେ ଆମ ସମସ୍ୟା ଆଉ ଏତେଟା ରହସ୍ୟମୟ ହୋଇ ରହନ୍ତା ନାହିଁ ।

: ସେଲିର ବି ତ ଭ୍ରମ ହୋଇପାରିଥାଏ ।

: ନା, ସେଲିର ଭ୍ରମ ନୁହେଁ । ସେଲି ଠିକ୍ ଦେଖିଛି ।

: ଆପଣ କିପରି ଜାଣିଲେ ?

: ଭଦ୍ରମହିଳାଙ୍କର ପଳାୟନ ହିଁ ସେଲିର ସତ୍ୟତା ପ୍ରମାଣିତ କରିଛି ।

: ବୁଝିଲି ଯେ କିନ୍ତୁ...

: ନା, ଆଉ କିନ୍ତୁ ନୁହେଁ । ଆପଣ ଉଠନ୍ତୁ ଏବଂ ସେଲିକୁ ଯାଇ କୁହନ୍ତୁ, ସେ ତା'ର ବନ୍ଧୁବାନ୍ଧବମାନଙ୍କୁ ପଚାରି ସେହି ଭଦ୍ରମହିଳାଙ୍କର କୌଣସି ସୂତ୍ର ବାହାର କରିବା ପାଇଁ ।

: କିନ୍ତୁ ଏଇ ଲୋକଗହଳ, ଆମୋଦ ପ୍ରମୋଦ ଭିତରେ ସେଲି ପକ୍ଷରେ ତାହା କ'ଣ ସମ୍ଭବ ହେବ ? ପଙ୍କଜ ମଲ୍ଲିକ କିପରି ଦ୍ୱିଧା ପ୍ରକାଶ କଲେ ।

ସତ୍ୟବ୍ରତ କହିଲେ : ଏଇ ହେଉଛି ଉପଯୁକ୍ତ ସମୟ । ଏହାପରେ ଆଉ ହୁଏତ କୌଣସି ସୂତ୍ର ମିଳିବ ନାହିଁ । ବରଂ ଚାଲନ୍ତୁ, ଆପଣଙ୍କ ସହିତ ମୁଁ ଘଟଣାର ସମ୍ମୁଖୀନ ହେବି ।

ଅନିଚ୍ଛାସତ୍ତ୍ୱେ ପଙ୍କଜ ମଲ୍ଲିକ ଉଠିଲେ ।

ତଳେ ସେହି ପ୍ରଶସ୍ତ ହଲଘରଟା କୋଳାହଳମୁଖରିତ ହୋଇରହିଥିଲା । ଖିଆପିଆ ନାଚଗାନର ଧୁମ୍ ଚାଲିଥିଲା । ସେଲି ବୁଲି ବୁଲି ତା'ର ବନ୍ଧୁବାନ୍ଧବମାନଙ୍କର ତଦାରଖ କରୁଥିଲା ।

ହଲ୍ ଭିତରେ ସେ ପଙ୍କଜ ମଲ୍ଲିକ ଓ ସତ୍ୟବ୍ରତ ମହାପାତ୍ରଙ୍କୁ ଦେଖି ସେଇଆଡ଼କୁ ଛୁଟିଆସିଲା । ତା' ହାତରେ ଖଣ୍ଡିଏ ବହି । ସତ୍ୟବ୍ରତଙ୍କ ଆଡ଼କୁ ଚାହିଁ ସ୍ମିତ ହସି ବହିଟି ବଢ଼ାଇ ଦେଲା ।

ସତ୍ୟବ୍ରତ ବହିଟି ହାତକୁ ନେଇ ଦେଖିଲେ 'ଏକଦା ସେମାନେ' । ଲେଖିଛନ୍ତି, ସରୋଜ ପଟ୍ଟନାୟକ । ସତ୍ୟବ୍ରତ ମୁହୂର୍ତ୍ତକ [illegible]ରେ ବହିଟିକୁ ଖେଳେଇ ପକେଇ କହିଲେ : ଏଇ କବିତାଗୁଡ଼ିକ ଲେଖିଥିଲି ଅନେକ ଦିନ ତଳେ । ଏବେ ଜଣେ ପ୍ରକାଶକ ଜିଦ୍ଦିକରି ସେଗୁଡ଼ିକ ଛାପିଛନ୍ତି ।

ସେଲି କହିଲା : ମୋର ଜଣେ ବଂଧୁ ମୋତେ ଆଜି ଉପହାର ଦେଇଛନ୍ତି । ଆପଣଙ୍କର ଆହୁରି କେତେଖଣ୍ଡି କବିତା ବହି ମୋ' ଲାଇବ୍ରେରୀରେ ଅଛି ।

ସତ୍ୟବ୍ରତ କହିଲେ : ମୋ' କବିତା କିଛି ତମେ ପଢ଼ିଛ ?

ସେଲି ଲାଜ ଲାଜ ହୋଇ କହିଲା : ପଢ଼ିଛି ସାର୍, କିନ୍ତୁ ସତ କହିବାକୁ ଗଲେ କିଛି ବୁଝିପାରି ନାହିଁ ।

ସତ୍ୟବ୍ରତ ମହାପାତ୍ର ବିଜ୍ଞ ସାହିତ୍ୟିକ ପରି ଅଳ୍ପ ହସି କହିଲେ : ତମେ କବିତାଗୁଡ଼ିକ ବୁଝିବାକୁ ଚେଷ୍ଟା କରିନାହଁ । ତା' ନହେଲେ ସରୋଜ ପଟ୍ଟନାୟକର କବିତା ଏତେ ଲୋକପ୍ରିୟ ହୋଇପାରି ନ ଥାନ୍ତା ।

: ନା ସାର୍, ସତକଥା କହିବାକୁ ଗଲେ କ'ଣ ଜାଣନ୍ତି, କବିତା ମୁଁ ପଢ଼େ ନାହିଁ, କବିତା ମୋତେ ଭଲ ଲାଗେ ନାହିଁ ।

: ହଁ ସେଇ କଥା କୁହ । ମୁଁ କହୁନାହିଁ ସମସ୍ତଙ୍କୁ ସବୁ କଥା ଭଲ ଲାଗିବ । ତେବେ ଯେଉଁମାନେ କବିତା ଭଲପାଆନ୍ତି, ସେମାନଙ୍କ ନିକଟରେ ସରୋଜ ପଟ୍ଟନାୟକ ପ୍ରିୟକବି । ଆଚ୍ଛା, ଏ ବହି ଖଣ୍ଡିକ ତମ ପାଇଁ କିଏ ଆଣିଥିଲା ?

ସେଲି କହିଲା : ଏଇ ଭିଡ଼ ଭିତରେ ଏ ବହି ଖଣ୍ଡିକ ମୋତେ କିଏ ଦେଇଛି, ଖୋଜି ବାହାର କରିବା ସମ୍ଭବ ହେବନାହିଁ ସାର୍ । ତେବେ ଏ ବହି ଖଣ୍ଡିକ ଦେଖିବା ମାତ୍ରକେ ମୋର ଆପଣଙ୍କ କଥା ମନେପଡ଼ି ଯାଇଥିଲା । ସେଇଥିପାଇଁ ବହି ଲଟ୍ ଭିତରୁ ଏଇଟିକୁ ଟାଣି ବାହାର କରିଥିଲି ।

: ବେଶ୍ ବେଶ୍, ତମେ ଯାଅ । ତମର ବାନ୍ଧବୀମାନେ ତମକୁ ଅପେକ୍ଷା କରି ଠିଆ ହୋଇଛନ୍ତି ।

ସେଲି ଫେରିଯାଉଥିଲା ।

ସତ୍ୟବ୍ରତ ପଙ୍କଜ ମଲ୍ଲିକଙ୍କ କାନ ପାଖରେ କହିଲେ : ଟିକିଏ ଚେଷ୍ଟା କରନ୍ତୁ ସାର୍ । କାଳେ ଯଦି...

ପଙ୍କଜ ମଲ୍ଲିକ ସେଲିକୁ ଡାକିଲେ ।

ସତ୍ୟବ୍ରତ ଦୂରକୁ ଘୁଞ୍ଚିଗଲେ ।

ସେଲି କହିଲା : କ'ଣ କହୁଚ ଡାଡି ?

: ସେ ଭଦ୍ରମହିଳାଙ୍କ ସମ୍ବନ୍ଧରେ କିଛି ସନ୍ଧାନ ପାଇଲୁ ?

: ନା, ରୀନା କହୁଛି ମୁଁ ଯେତେବେଳେ ଉପରକୁ ଚାଲିଯାଇଥିଲି ସେ ଭଦ୍ରମହିଳା ପ୍ରେଜେଣ୍ଟେସନଟି ରୀନା ହାତକୁ ବଢ଼ାଇ ଦେଲାବେଳେ, ଜଣେ ଲମ୍ବାକଲିବାଲା

ଯୁବକ ଆସି ଭଦ୍ରମହିଳାଙ୍କ କାନରେ କ'ଣ କହିଲା । ପ୍ରେଜେଣ୍ଟେସନଟା ରୀନା ହାତରେ ଧରି ନାଁ ପଚାରିବା ପୂର୍ବରୁ ଦେଖିଲା ଭଦ୍ରମହିଳାଟି ସେହି ଲମ୍ବାକଲିବାଲା ଯୁବକ ସହିତ ଶୀଘ୍ର ଶୀଘ୍ର ବାହାରି ଯାଉଛି । ତା'ପରେ ରୀନା ଆଉ ତାକୁ ଏ ହଲ ଭିତରେ ଦେଖିନାହିଁ ।

: ହୁଁ, ତା'ହେଲେ ତ ମୁସ୍କିଲ । ପଙ୍କଜ ମଲ୍ଲିକ କିପରି ବ୍ୟଥିତ ସ୍ୱରରେ କହିଲେ ।

: ମୁସ୍କିଲ କ'ଣ ଡାଡି ? ସେଲି ପଚାରିଲା ।

: ମୁସ୍କିଲ ନୁହଁ, ତୋ' ମା'ର ମୟୂରକଣ୍ଠୀ ହାରଟା...

: ତା'ହେଲେ ସତ ଡାଡି । ଆମରି ହାର ସେ ନେଇଯାଇଛି ? ସେଲି କଣ୍ଠରେ ଉତ୍କଣ୍ଠା ଫୁଟିଉଠିଥିଲା ।

ପଙ୍କଜ ମଲ୍ଲିକ ସଚେତନ ହୋଇ କହିଲେ : ଆରେ ନା ନା, ସେ କେଉଁଠୁ ତୋ' ମା'ର ହାର ପାଇବ । ଆମ ଷ୍ଟ୍ରଙ୍ଗ୍‌ରୁମ୍ ଭିତରୁ ହାର ନେଇଯିବା କ'ଣ ଏଡ଼େ ସହଜ କଥା ? ଯା ଯା, ତୁ ଦେଖ ଯା' । ସେମାନେ ସବୁ ତତେ ଚାହିଁଛନ୍ତି ।

ପଙ୍କଜ ମଲ୍ଲିକ ଚିନ୍ତିତ ହୋଇ ଫେରିଆସୁଥିଲେ ।

ହଠାତ୍ ସତ୍ୟବ୍ରତ ତାଙ୍କ ସାମନାରେ ଠିଆହୋଇପଡ଼ି କହିଲେ : ଖବର ପାଇଲେ କିଛି ?

: ନା, କିଛି ମିଳିଲା ନାହିଁ ମିଷ୍ଟର ମହାପାତ୍ର । ତେବେ ସେଲିର ବନ୍ଧୁ ରୀନା ବି ତାକୁ ଦେଖିଛି । ରୀନା ହାତକୁ ସେ ପ୍ରେଜେଣ୍ଟେସନ ବାକ୍ସଟି ବଢ଼ାଇ ଦେବାବେଳକୁ ଜଣେ ଲମ୍ବାକଲିବାଲା ଯୁବକ ଆସି ତା' କାନରେ କ'ଣ କହିଲା ଏବଂ ଭଦ୍ରମହିଳା ଜଣକ କ୍ଷିପ୍ରପାଦରେ ତା' ପଛେପଛେ ବାହାରି ଚାଲିଗଲେ ।

: ଆଉ ସେଇ ପ୍ରେଜେଣ୍ଟେସନ ବାକ୍ସଟା ? ସତ୍ୟବ୍ରତ ମହାପାତ୍ର ଯେପରି ଚିତ୍କାର କରିଉଠିଲେ ।

: ସେଇଟା ଅଛି । ରୀନା ସେଇଟାକୁ ରଖିଛି ।

ସତ୍ୟବ୍ରତଙ୍କର ଉତ୍ସାହ ଯେପରି ଦି'ଗୁଣ ବଢ଼ି ଯାଇଥିଲା । ସେ କହିଲେ : ଆପଣ ଯାଆନ୍ତୁ, ସେଇ ପ୍ରେଜେଣ୍ଟେସନ ବାକ୍ସଟା ଘେନିଆସିବେ ।

: ସେଇଟା କ'ଣ ହେବ ? ଖଣ୍ଡେ ଶାଢ଼ି, କି ଦି'ଖଣ୍ଡ ବହି କିମ୍ବା...

: ସେ ଯାହା ଥାଉ, ଆପଣ ଯାଆନ୍ତୁ ତ, ଶୀଘ୍ର ସେହି ବାକ୍ସଟା ଆଣନ୍ତୁ । ହୁଏତ ସେଇ ବାକ୍ସ ଭିତରୁ ଆମେ ଭଦ୍ରମହିଳାଙ୍କର ସନ୍ଧାନ ପାଇପାରିବା ।

ପଙ୍କଜ ମଲ୍ଲିକ ଅନିଚ୍ଛାସତ୍ତ୍ୱେ ପୁଣି ଆଗେଇଗଲେ ସେଇ ହଲ ଘରଟା ଆଡ଼କୁ । କିଛି ସମୟ ପରେ ଫେରିଆସିଲେ ହାତରେ ଗୋଟିଏ ଛୋଟ ବାକ୍ସ ଧରି ।

ସତ୍ୟବ୍ରତ କହିଲେ : ଦୋ'ତାଲାକୁ ଚାଲନ୍ତୁ । ଆପଣଙ୍କର ସେହି ନିଭୃତ କକ୍ଷରେ ଏଇ ବାକ୍ସଟା ଖୋଲିବା ।

ଦୁହେଁ ଆଗେଇଗଲେ ଉପରକୁ ।

ସତ୍ୟବ୍ରତ ଦେଖିଲେ ବାକ୍ସଟି ଗୋଟିଏ ପ୍ୟାକିଂ ପେପରରେ ପ୍ୟାକ୍ ହୋଇଛି ଏବଂ ବାକ୍ସ ଉପରେ ଗୋଟିଏ ନାଲିଫିତା ବନ୍ଧା ହୋଇଛି । ସତ୍ୟବ୍ରତ କ୍ଷିପ୍ରହସ୍ତରେ ସେହି ନାଲିଫିତାଟିକୁ ଛିଣ୍ଡେଇ ପ୍ୟାକିଂ ପେପର ଖୋଲି ଦେଖିଲେ, ଗୋଟିଏ ପିଚବୋର୍ଡର ବାକ୍ସ । ବାକ୍ସ ଭିତରେ ଗୋଟିଏ ଜାପାନୀ ହାତପଙ୍ଖା । ବାସ୍ ସେତିକି ।

ପଙ୍କଜ ମଲ୍ଲିକ ମଧ୍ୟ ଆଗ୍ରହୀ ଦୃଷ୍ଟିରେ ସତ୍ୟବ୍ରତଙ୍କ କାର୍ଯ୍ୟକଳାପ ଲକ୍ଷ୍ୟ କରୁଥିଲେ ।

ଗୁଡ଼ାହୋଇ ରହିଥିବା ହାତପଙ୍ଖାଟିକୁ ଖୋଲିଦେଇ ସତ୍ୟବ୍ରତ ଦି'ଥର ହଲେଇ ଦେଇ କହିଲେ : ଭଦ୍ରମହିଳାଙ୍କର କିନ୍ତୁ ରୁଚି ଅଛି । ଅଳ୍ପ ପଇସା ମଧ୍ୟରେ କିପରି ସୁନ୍ଦର ଉପହାର ଦିଆଯାଇପାରେ, ଭଦ୍ରମହିଳା ବେଶ୍ ଜାଣନ୍ତି ।

ପଙ୍କଜ ମଲ୍ଲିକ ପଚାରିଲେ : କିନ୍ତୁ ଆପଣ ଭଦ୍ରମହିଳାଙ୍କର କିଛି ଖବର ପାଇଲେ ?

ସତ୍ୟବ୍ରତ ସ୍ମିତ ହସି କହିଲେ : ଆଶା କରୁଛି ।

: ଆଶା କରୁଛନ୍ତି ମାନେ ?

: ଏ ଜିନିଷଟା କେଉଁ ଦୋକାନରୁ କିଣା ହୋଇଛି, ତା'ର ଠିକଣା ଏଇ ନାଲିଫିତାରେ ଛପା ହୋଇଛି । ହେଇ ଦେଖନ୍ତୁ ।

ସତ୍ୟବ୍ରତ ତଳେ ପଡ଼ିଥିବା ନାଲିଫିତାଟି ଉଠାଇ ପଙ୍କଜ ମଲ୍ଲିକଙ୍କ ହାତକୁ ବଢ଼ାଇଦେଲେ ।

ପଙ୍କଜ ମଲ୍ଲିକ କହିଲେ  ଦୋକାନର ଠିକଣାରୁ ଆପଣ କ'ଣ ପାଇବେ ? ଦୋକାନୀ ତ ଆଉ କ୍ରେତାଙ୍କ ଠିକଣା ଜାଣି ନ ଥିବ ।

: ତା' ଅବଶ୍ୟ ନୁହେଁ । ତେବେ... ଟିକିଏ ଅଟକି ଯାଇ ସତ୍ୟବ୍ରତ ମହାପାତ୍ର କହିଲେ, ଆଜି ମୁଁ ଆସୁଛି ସାର୍ । କିନ୍ତୁ ଏଇ ପ୍ରେଜେଣ୍ଟେସନ ବାକ୍ସଟା ଆଜିକ ପାଇଁ ମୁଁ ନେଇଯାଉଛି । କାଲି ପୁଣି ଆପଣଙ୍କ ସହିତ ଦେଖା କରିବି ।

ପଙ୍କଜ ମଲ୍ଲିକଙ୍କ ଘରୁ ବାହାରି ସତ୍ୟବ୍ରତ ସିଧା ଚାଲିଲେ 'ଫ୍ୟାସନ ହାଉସ'କୁ । କଟକର ବିଖ୍ୟାତ ମନୋହାରୀ ଦୋକାନ । ଦେଶୀ ବିଦେଶୀ ସବୁ ରକମର ମନୋହାରୀ ଜିନିଷ ସେଠାରେ ମିଳେ । ତେବେ ଦେଶୀ ଅପେକ୍ଷା ବିଦେଶୀ ପଦାର୍ଥର ଖରିଦ୍‌ଦାର 'ଫ୍ୟାସନ ହାଉସ'ରେ ବେଶୀ ।

ସତ୍ୟବ୍ରତ ପହଞ୍ଚିଲାବେଳକୁ ପ୍ରାୟ ଆଠଟା ବାଜି ଯାଇଥିଲା । ଖରିଦ୍‌ଦାରଙ୍କର ଭିଡ଼ କମି ଯାଇଥିଲା । 'ଫ୍ୟାସନ ହାଉସ'ର ମାଲିକ ଜଣେ ଦି'ଜଣ ବନ୍ଧୁଙ୍କ ସହିତ ବସି ଗପ କରୁଥିଲେ । କର୍ମଚାରୀମାନେ ଦୋକାନ ବନ୍ଦ କରିବା ପାଇଁ ତତ୍‌ପର ହୋଇଉଠିଥିଲେ । ସତ୍ୟବ୍ରତଙ୍କୁ ଭିତରକୁ ପଶୁଥିବାର ଦେଖି ଜଣେ କର୍ମଚାରୀ କହିଲା : ବର୍ତ୍ତମାନ ଦୋକାନ ବନ୍ଦ ହୋଇଯିବ ସାର୍ । ଆପଣ ବରଂ...

କିନ୍ତୁ ସତ୍ୟବ୍ରତ କିଛି କଥା ନ ଶୁଣି ଆଗେଇ ଯାଇ କାଉଣ୍ଟର ଉପରେ ସେଇ ଜାପାନୀ ହାତପଙ୍ଖାର ପ୍ୟାକେଟଟି ରଖି ଖୋଲିବାକୁ ଆରମ୍ଭ କଲେ ।

ପାଖ କାଉଣ୍ଟରରୁ ଆଉ ଜଣେ କର୍ମଚାରୀ ଆଗେଇ ଆସି, ପ୍ୟାକେଟଟା ଆଡ଼େ ଚାହିଁଦେଇ କହିଲା : ସେଇଟା କ'ଣ ଖରାପ ପଡ଼ିଲା ସାର୍ ?

ସତ୍ୟବ୍ରତ ସ୍ମିତ ହସି କହିଲେ : ନା, ଖରାପ ନୁହେଁ, ଏଇ ପ୍ୟାକେଟଟି ମୁଁ ରାସ୍ତାରୁ ପାଇଲି । ନିଶ୍ଚୟ ଅସାବଧାନତା ଯୋଗରୁ କାହାରି ହାତରୁ ଖସିପଡ଼ିଛି । ଏଥିରେ ଆପଣଙ୍କ ଦୋକାନର ନାଁ ଦେଖି ଚାଲିଆସିଲି ।

ଏହିପରି କଥାବାର୍ତ୍ତା ମାଲିକଙ୍କର ଦୃଷ୍ଟି ଆକର୍ଷଣ କରିଲା । ସେ ବସିଥିବା ଜାଗାରୁ କାଉଣ୍ଟର ପାଖକୁ ଉଠିଆସି କହିଲେ : ଏଇଟା ଜଣେ ଭଦ୍ରମହିଳା କିଣିଥିଲେ, ଏଇ ଆଜି ତ ! ବୋଧହୁଏ ତିନି ଚାରି ଘଣ୍ଟା ପୂର୍ବରୁ । ଭଦ୍ରମହିଳାଙ୍କ ସଙ୍ଗରେ ଜଣେ ଭଦ୍ରଲୋକ ମଧ୍ୟ ଥିଲେ ।

ଜଣେ କର୍ମଚାରୀ କହିଲା : ସେ ଭଦ୍ରଲୋକ ଜଣକ ଆମ ଦୋକାନକୁ ମଝିରେ ମଝିରେ ଆସନ୍ତି । ଜାପାନୀ ଜିନିଷ କିଣିବାରେ ତାଙ୍କର ଝୁଙ୍କ୍ ଅତି ବେଶୀ ।

ସତ୍ୟବ୍ରତ ଉତ୍ସାହିତ ହୋଇ ପଚାରିଲେ : ଆପଣ ତାଙ୍କୁ ଚିହ୍ନନ୍ତି ?

ସେଲ୍‌ସମ୍ୟାନଟି କହିଲା : ଚିହ୍ନେ ମାନେ ସେ ଭଦ୍ରଲୋକ ମଝିରେ ମଝିରେ ଆସି କିଣାକିଣି କରନ୍ତି । ଆଉ ଆପଣ ଯଦି ତାଙ୍କର ନାଁ ଠିକଣା ପଚାରନ୍ତି ତା'ହେଲେ କହିବା ସମ୍ଭବ ନୁହେଁ ।

ଦୋକାନର ମାଲିକ କହିଲେ ଏ କ୍ଷେତ୍ରରେ ଆପଣଙ୍କର ବା ଆମର କରିବାର କିଛି ନାହିଁ । ଆପଣ ଯଦି ଇଚ୍ଛା କରୁଥାଆନ୍ତି ଭଦ୍ରମହିଳାଙ୍କ ଜିନିଷ ସେ ଫେରିପାଆନ୍ତୁ, ତା'ହେଲେ ଏ ଜିନିଷଟି ଆପଣ ଆମ ଦୋକାନରେ ରଖିଦେଇ ଯାଇପାରନ୍ତି । ସେ ଭଦ୍ରଲୋକ ଆସିଲେ ଆମେ ତାଙ୍କୁ ଫେରାଇ ଦେବୁ ଏବଂ ସେ ତାଙ୍କର ବାନ୍ଧବୀଙ୍କୁ ଦେଇଦେବେ । ଆଉ ଆପଣଙ୍କ ଠିକଣାଟା ଦେଇଯାଆନ୍ତୁ । କହିବୁ, ସେ ଯାଇ ଆପଣଙ୍କୁ କୃତଜ୍ଞତା ଜଣାଇ ଆସିବେ ।

ସତ୍ୟବ୍ରତ ଟିକିଏ ହସିବାକୁ ଚେଷ୍ଟାକରି କହିଲେ, ମୋତେ କୃତଜ୍ଞତା ଜଣାଇବା ଆବଶ୍ୟକ ନାହିଁ । ତେବେ ଘଟଣାଟା ଟିକିଏ ଅନ୍ୟ ପ୍ରକାର ଘଟିଛି ।

: ଅନ୍ୟପ୍ରକାର ମାନେ ? ଫ୍ୟାସନ ହାଉସର ମାଲିକଙ୍କ କଣ୍ଠରେ ସାମାନ୍ୟ ବିସ୍ମୟ ଫୁଟିଉଠିଲା ।

ସତ୍ୟବ୍ରତ ନୀରବରେ କିଛି ସମୟ ଠିଆହୋଇ ପକେଟରୁ ଖଣ୍ଡିଏ ଭିଜିଟିଂ କାର୍ଡ ବାହାର କରି ସେହି ଭଦ୍ରଲୋକଙ୍କ ହାତକୁ ବଢ଼ାଇଦେଲେ ।

ଦୋକାନର ମାଲିକ ଭିଜିଟିଂ କାର୍ଡଟି ଉପରେ ଆଖି ବୁଲାଇ ନେଇ ମୁହୂର୍ତ୍ତେ ଚିନ୍ତାକରି ଶାନ୍ତ ସ୍ୱରରେ କହିଲେ : ଭିତରକୁ ଆସନ୍ତୁ ।

ସତ୍ୟବ୍ରତ ଧୀରେ ଧୀରେ ଦୋକାନ ଭିତରକୁ ପଶୁ ପଶୁ କହିଲେ : ନିରୋଳାରେ ଟିକେ ଆପଣଙ୍କ ସହିତ ଦି'ଚାରି କଥା ହୋଇ ଚାଲିଯିବି ।

ଦୋକାନର ମାଲିକ ସତ୍ୟବ୍ରତ ମହାପାତ୍ରଙ୍କୁ ଭିତରକୁ ଡାକି ନେଇ ଗୋଟିଏ ଛୋଟ ଘର ଭିତରେ ବସିବାକୁ କହିଲେ ।

ସତ୍ୟବ୍ରତ କହିଲେ : ଆପଣଙ୍କର ଚିନ୍ତାର କିଛି କାରଣ ନାହିଁ । ତେବେ ଏଇ ଜିନିଷଟି ଏପରି ଗୋଟିଏ ଜାଗାରୁ ଉଦ୍ଧାର କରାହୋଇଛି, ଯେଉଁଠି ଏହାର ମାଲିକ ସନ୍ଦେହର ପାତ୍ର ହୋଇ ଉଠିଛନ୍ତି । ସେଇଥିପାଇଁ ଏହାର ମାଲିକର ସନ୍ଧାନରେ ମୋତେ ଆପଣଙ୍କ ଦୋକାନ ଯାଏ ଛୁଟିଆସିବାକୁ ହୋଇଛି ।

ଦୋକାନୀ ଭଦ୍ରଲୋକ କିପରି ଟିକିଏ ବିଚଳିତ ହୋଇ ଉଠିଥିଲେ । ପଚାରିଲେ : କୌଣସି ଖୁଣ୍ ଖରାବୀ ହୋଇନାହିଁ ତ !

ସତ୍ୟବ୍ରତ ସ୍ମିତ ହସି କହିଲେ : ଆପଣ ଚିନ୍ତା କରୁଛନ୍ତି କାହିଁକି ? ଖୁଣ୍

ଖରାବୀ ହେଲେ ବି ଆପଣଙ୍କର କିଛି କ୍ଷତି ହେବନାହିଁ । ତେବେ ଏଇ ଜିନିଷ ଯିଏ କିଣିଥିଲେ, ତାଙ୍କର ଗତି ସେଇ ବିଶେଷ ସ୍ଥାନ ଯାଏ ରହିଛି, ତା' ବୋଲି ସେ ଯେ ଖୁଣୀ ବା ଅପରାଧୀ, ସେକଥା ମୁଁ କହୁନାହିଁ । ସେ ଭଦ୍ରଲୋକ ବା ଭଦ୍ରମହିଳା ନିରପରାଧ ଓ ଅତ୍ୟନ୍ତ ସରଳ ହୋଇପାରନ୍ତି, ତଥାପି ତାଙ୍କୁ ଟିକିଏ ଖୋଜି ବାହାର କରିପାରିଲେ ସୁବିଧା ହୁଅନ୍ତା ।

ଦୋକାନୀ ଭଦ୍ରଲୋକ କହିଲେ : ଅବଶ୍ୟ ତାଙ୍କର ନାଁ ଠିକଣା ଜଣାଥିଲେ ଆପଣଙ୍କୁ ତାହା ଦେବାରେ ଆମର କିଛି ଆପତ୍ତି ନ ଥିଲା । ସେ ଭଦ୍ରଲୋକ ପୁଣି କେବେ ଆମ ଦୋକାନକୁ ଜିନିଷ କିଣିବାକୁ ଆସିବେ, ତା'ର ମଧ୍ୟ କିଛି ନିଶ୍ଚୟତା ନାହିଁ । ତେବେ ଆପଣ ଯଦି କୁହନ୍ତି, ସେ ଭଦ୍ରଲୋକ ଯେଉଁଦିନ ଆସିବେ ଆମେ ତାଙ୍କର ନାଁ ଠିକଣା ପଚାରି ରଖିବୁ ।

ସତ୍ୟବ୍ରତ ସାମାନ୍ୟ ନୀରବତା ପରେ କହିଲେ : ସେମାନେ ଆଜି ଏହି ପଦାର୍ଥଟି କିଣିବା ବେଳେ ଆପଣ ଦୁଇଜଣଙ୍କୁ ଦେଖିଛନ୍ତି ?

: ହଁ, ମୁଁ ନିଜେ ଏଇଟାକୁ ବିକ୍ରି କରିଛି ।

: ସେ ଭଦ୍ରଲୋକ ଓ ଭଦ୍ରମହିଳା ଦୁଇଜଣଙ୍କର ଟିକିଏ ବର୍ଣ୍ଣନା ଆପଣ ଦେଇପାରିବେ ?

: ନିଶ୍ଚୟ, ଭଦ୍ରମହିଳା ଜଣକ ଖୁବ୍ ଆଧୁନିକା । ବୟସ ବାଇଶି ତେଇଶି ହେବ । ମୁହଁଟି ହସ ହସ । ମୁଣ୍ଡର ବାଳ ବବ୍‌କରା । ଭଦ୍ରମହିଳା ଖୁବ୍ ସମ୍ଭବତ ଅଣଓଡ଼ିଆ । ଆଉ ଭଦ୍ରଲୋକ ଜଣକ ଅବଶ୍ୟ ପଛରେ ଆସିଲେ । ସେତେବେଳକୁ ଭଦ୍ରମହିଳାଙ୍କର ଜିନିଷ କିଣା ହୋଇଯାଇଥିଲା । ଭଦ୍ରଲୋକ ଜଣକ ଖୁବ୍ ଲମ୍ବା ଚଉଡ଼ା ମଣିଷ । ସୁଟ୍ ପିନ୍ଧିଥିଲେ । ଭଦ୍ରଲୋକଙ୍କୁ ଦୋକାନ ଭିତରକୁ ଆସୁଥିବାର ଦେଖି ଭଦ୍ରମହିଳା ପ୍ୟାକେଟଟି ଧରି ସିଧା ବାହାରିଗଲେ ।

: ସେମାନେ କେଉଁ ଭାଷାରେ କଥାବାର୍ତ୍ତା ହେଉଥିଲେ ?

: ନା, ଆମ ଦୋକାନରେ କିଛି କଥାବାର୍ତ୍ତା ହୋଇନାହାନ୍ତି ।

: ଭଦ୍ରଲୋକ କ'ଣ ଲମ୍ବାକଲି ରଖିଛନ୍ତି ?

ଦୋକାନର ମାଲିକ ଟିକିଏ ଦୁଶ୍ଚିନ୍ତାରେ ପଡ଼ିଗଲେ । ସେ କହିଲେ : ମୁଁ ଠିକ୍ ଲକ୍ଷ୍ୟ କରିନାହିଁ । ତେବେ ରୁହନ୍ତୁ ମୁଁ ଚଣ୍ଡୀକୁ ଡାକୁଛି, ସେ ହୁଏତ କହିପାରିବ । ସଙ୍ଗେ ସଙ୍ଗେ ସେ କଲିଙ୍ଗ୍ ବେଲ୍ ଟିପିଲେ ଏବଂ କିଛି ସମୟ ପରେ ଯିଏ ଘରେ ପ୍ରବେଶ କଲା, ତା'ରି ନାଁ ଚଣ୍ଡୀ ।

ଦୋକାନର ମାଲିକ ଚଣ୍ଡୀକୁ ପଚାରିଲେ : ତମେ କହୁଥିଲ ସେ ଭଦ୍ରଲୋକ ଆମ ଦୋକାନରୁ ମଝିରେ ମଝିରେ ଜାପାନୀ ଜିନିଷ ସବୁ କିଣନ୍ତି, ସେ କ'ଣ ପ୍ରାୟ ଆସନ୍ତି କିଣିବାକୁ ?

ଚଣ୍ଡୀ କ'ଣ କହିବାକୁ ଯାଉଥିଲା । ସତ୍ୟବ୍ରତ ବାଧାଦେଇ କହିଲେ : ସେ ଭଦ୍ରଲୋକ ତମ ସହିତ କେଉଁ ଭାଷାରେ କଥାବାର୍ତ୍ତା କରନ୍ତି ?

: ଓଡ଼ିଆରେ କୁହନ୍ତି, କିନ୍ତୁ ସେ ଓଡ଼ିଆ ନୁହନ୍ତି ।

: ଆଉ ତାଙ୍କର ସେ ମହିଳା ବାନ୍ଧବୀଟି ? ସତ୍ୟବ୍ରତ ପଚାରିଲେ ।

: ମୁଁ ଆଜି ତାଙ୍କୁ ପ୍ରଥମ ଦେଖିଲି ।

: ଆଚ୍ଛା, ସେ ଭଦ୍ରଲୋକ କି ଧରଣର ଜିନିଷ କିଣନ୍ତି ?

: ସେମିତି କିଛି ଦାମୀ ଜିନିଷ ନୁହେଁ । କୋଉଦିନ ଗୋଟାଏ ଲାଇଟର, କୋଉଦିନ ଗୋଟାଏ ସିଗାରେଟ୍ କେସ୍, ଆଉ ବେଶୀ ସେ କିଣନ୍ତି ଜାପାନର 'ଥ୍ରୀ ଡାଇମନ୍‌ସନ୍ ପ୍ରିଣ୍ଟ୍‌କରା' ଯେଉଁ ପ୍ଲାଷ୍ଟିକ୍ ଛବିଗୁଡ଼ିକ ବାହାରିଛି, ସେଇଥିରୁ ସେ ଆମ ଦୋକାନରୁ ପ୍ରାୟ ଆଠ ଦଶଟା କିଣିଲେଣି ।

ସତ୍ୟବ୍ରତ ପୁଣି ପଚାରିଲେ  ତମେ ତାଙ୍କୁ କେତେ ଦିନ ହେବ ଦେଖୁଛ ?

: ପ୍ରାୟ ପାଞ୍ଚ ଛଅ ମାସ ହେବ । ମାସରେ ଅନ୍ତତ ଥରେ ଦୁଇଥର ସେ ଆମ ଦୋକାନକୁ ଆସନ୍ତି ।

: ସବୁଥର ସେ ଏକା ଆସନ୍ତି ନା ତାଙ୍କ ସହିତ କୌଣସି ବନ୍ଧୁ ବା ବାନ୍ଧବୀ ଆସନ୍ତି ?

: ନା, ସେ ଏକା । ଏଇଥର ଖାଲି ଯାହା ବ୍ୟତିକ୍ରମ ଘଟିଲା ।

: ସେ ଭଦ୍ରଲୋକ କ'ଣ ଲମ୍ବାକଲି ରଖିଛନ୍ତି ?

: ହଁ, ହଁ, ଆପଣ ଠିକ୍ ଧରିଛନ୍ତି । ଆପଣ ତା'ହେଲେ ତାଙ୍କୁ ଦେଖିଛନ୍ତି କେଉଁଠି ?

ସତ୍ୟବ୍ରତ କିଛି ସମୟ ନୀରବ ରହି କହିଲେ : ଠିକ୍ ଅଛି । ତୁମେ ଏଥର ଯାଇପାର ।

ଚଣ୍ଡୀ ଆଉ ଦ୍ୱିତୀୟ କଥା ନ କହି ସେଠାରୁ ଚାଲିଗଲା ।

ଦୋକାନର ମାଲିକ ଭଦ୍ରଲୋକଙ୍କ ମୁହଁକୁ କିଛି ସମୟ ନୀରବରେ ଅନାଇ ରହି ସତ୍ୟବ୍ରତ କହିଲେ : ମୁଁ ତା'ହେଲେ ଆଜି ଉଠୁଛି । ଆପଣ ସେମାନଙ୍କୁ

କହିଥିବେ ସେହି ଭଦ୍ରଲୋକଙ୍କ ଖବର ରଖିବା ପାଇଁ । ସେ ଆସିଲେ ମୋତେ ଫୋନ୍ ବି କରିପାରନ୍ତି ।

ସତ୍ୟବ୍ରତ ଉଠି ଠିଆ ହେଲେ ।

ଦୋକାନୀ ଭଦ୍ରଲୋକ ମଧ୍ୟ ଉଠିଲେ ।

ସତ୍ୟବ୍ରତ ଯିବା ଆଗରୁ ପଚାରିଲେ : ଆପଣଙ୍କ ନାଁଟା ତ ଜାଣିପାରିଲି ନାହିଁ ।

: ମୋ' ନାଁ ସଦାନନ୍ଦ ସାମନ୍ତରାୟ ।

: ଧନ୍ୟବାଦ । ଆପଣଙ୍କର ଅନେକ ସମୟ ନଷ୍ଟ କଲି । କିନ୍ତୁ ସେହି ଭଦ୍ରଲୋକଙ୍କର ଠିକଣା ମୋର ଏକାନ୍ତ ଆବଶ୍ୟକ ।

: ପାଇବେ । ଯେପରି ହେଉ ମୁଁ ଯୋଗାଡ଼ କରିଦେବି ।

: କଥା ଦେଉଛନ୍ତି ?

ସଦାନନ୍ଦ ବାବୁ ଅଳ୍ପ ହସିବାକୁ ଚେଷ୍ଟାକରି କହିଲେ : ଭଦ୍ରଲୋକ ଆମ ଦୋକାନକୁ ଆସନ୍ତି ଯେତେବେଳେ, ନିଶ୍ଚୟ ଆସିବେ ।

ସତ୍ୟବ୍ରତ ସଦାନନ୍ଦ ସାମନ୍ତରାୟଙ୍କ ସହିତ କରମର୍ଦ୍ଦନ କଲେ ।

ଦୋକାନରୁ ବାହାରି ଆସିବାବେଳେ ପଛରୁ କିଏ ଡାକିଲା : ସାର୍ !

ସତ୍ୟବ୍ରତ ବୁଲି ଅନେଇଲେ । ଚଣ୍ଡୀ ପଛରୁ ଡାକୁଛି ।

: ମୋତେ କିଛି କହୁଛ ?

: ହଁ ସାର୍ ।

ଚଣ୍ଡୀ ସତ୍ୟବ୍ରତ ପାଖରେ ଆସି ଠିଆହୋଇ କହିଲେ : ମୁଁ ଭୁଲିଯାଇଥିଲି ସାର୍ । ଭଦ୍ରଲୋକ ପ୍ରତି ମାସରେ ଗୋଟିଏ ଶିଶି କରି 'ବ୍ଲୁ ହେଭେନ' କିଣନ୍ତି । ସେଇଟା ମଧ୍ୟ ଜାପାନର । ଆଉ ସେ ସେଇ ସେଣ୍ଟଟା ସବୁବେଳେ ବ୍ୟବହାର କରନ୍ତି । ସେ ଯେଉଁଦିନ ଆମ ଦୋକାନକୁ ଆସନ୍ତି, ସେଦିନ ମୁଁ ତାଙ୍କ ଦେହରୁ 'ବ୍ଲୁ ହେଭେନ୍'ର ଗନ୍ଧ ପାଏ ।

ସତ୍ୟବ୍ରତ ମୁହୂର୍ତ୍ତେ ନୀରବ ରହି କହିଲେ : ବ୍ଲୁ ହେଭେନ, ବର୍ତ୍ତମାନ ଅଛି ଦୋକାନରେ ?

: ହଁ ଅଛି ସାର୍ । ଦେଖିବେ ?

ସତ୍ୟବ୍ରତ ପୁଣି ଚଣ୍ଡୀ ସହିତ ଦୋକାନକୁ ଉଠିଲେ ।

ଚଣ୍ଡୀ ଗୋଟିଏ ସୁନ୍ଦର ପ୍ୟାକିଂ ହୋଇଥିବା ଶିଶି ବାହାର କରି ସତ୍ୟବ୍ରତଙ୍କୁ ଦେଖାଇଲା ।

: ହୁଁ, ଏଇ ଶିଶିଟିରେ କେତେ ସେଣ୍ଟ ଅଛି ?

: ପ୍ରାୟ ଦୁଇ ଆଉନ୍‌ସ ହେବ ।

: ଦାମ୍ ?

: ଆମେ ଶହେ ପଚିଶ ଟଙ୍କା ବିକୁଛୁ ?

: ଏତେ ଦାମ୍ ?

: ହଁ ସାର୍ ।

ସଦାନନ୍ଦବାବୁ ପୁଣି ଆଗେଇ ଆସିଥିଲେ । ସେ ସେଣ୍ଟ ଶିଶିଟା ଚଣ୍ଡୀ ହାତରୁ ନେଇ ପ୍ୟାକେଟଟା ଖୋଲିଲେ ଏବଂ କହିଲେ : ଖୁବ୍ ମୃଦୁଗନ୍ଧ । ଦେଖିବେ ?

ସଦାନନ୍ଦବାବୁ ଶିଶିଟି ବାହାର କରି ସତ୍ୟବ୍ରତଙ୍କ ଛାତିରେ ସେହି ସେଣ୍ଟ ସ୍ପ୍ରେ କରିଦେଲେ ।

ସତ୍ୟବ୍ରତ ଅନୁଭବ କଲେ ପ୍ରକୃତରେ ସେଣ୍ଟର ଗନ୍ଧଟି ଭାରି ମଧୁର ।

ସଦାନନ୍ଦ ବାବୁ କହିଲେ : ଆଗେ ଏସବୁ ସେଣ୍ଟର ଚଳନ ଆମ ଏଠାରେ ବେଶୀ ନ ଥିଲା । ଏବେ ଧୀରେ ଧୀରେ ହେଉଛି । ତେବେ ଏଇସବୁ ଦାମୀ ଜିନିଷର ବଜାର ଖୁବ୍ ସୀମିତ ।

ସତ୍ୟବ୍ରତ କହିଲେ : ଆପଣମାନେ ଏଇସବୁ ଜିନିଷ ପାଉଛନ୍ତି କେଉଁଠୁ ?

ସଦାନନ୍ଦ ବାବୁ ଅଳ୍ପ ହସି କହିଲେ : ଏସବୁ ସ୍ମଗଲିଙ୍ଗ୍ ଜିନିଷ ସାର୍ । ଅବଶ୍ୟ ଏପରି ବିକିବାର କଥା ନୁହେଁ । ତେବେ କଲିକତା, ବମ୍ବେ ଇତ୍ୟାଦି ବଡ଼ବଡ଼ ସହରରେ ଖୋଲାବଜାରରେ ବିକ୍ରି ହେଉଛି ।

: ଆଚ୍ଛା, ମୁଁ ତା'ହେଲେ ଆଜି ଆସୁଛି । ଆପଣ ଟିକେ ମୋ' କଥା ମନେରଖିଥିବେ ।

ସତ୍ୟବ୍ରତ ଏଥର ରାସ୍ତାକୁ ବାହାରି ଆସିଲେ ।

ଦିନ ପ୍ରାୟ ଦଶଟା ବାଜି ଯାଇଥିଲା । ଇନ୍ଦ୍ରଜାଲରେ ବସି ବସି ସତ୍ୟବ୍ରତ କେବଳ ଚିନ୍ତା କରୁଥିଲେ । ପଙ୍କଜ ମଲ୍ଲିକଙ୍କର କେସ୍‌ଟା ତାଙ୍କ ମୁଣ୍ଡରେ କୌଣସି ସୂତ୍ରର ଖିଅ ବାହାର କରିପାରୁ ନ ଥିଲା ।

କିନ୍ତୁ ଘଟଣାଟା ଯେ ଅଲୌକିକ ନୁହେଁ, ଏହା ନିଶ୍ଚିତ । ସତ୍ୟବ୍ରତ ମହାପାତ୍ରଙ୍କର କୌଣସି ଅଲୌକିକ ଯୁକ୍ତି ଉପରେ କେବେ ବିଶ୍ୱାସ ନ ଥିଲା, ଆଜି ବି ନାହିଁ ।

ସତ୍ୟବ୍ରତଙ୍କ ଟେଲିଫୋନ୍‌ଟା ବାଜିଉଠିଲା ।

ସେ ରିସିଭର ଉଠାଇଲେ ।

ଅପର ପ୍ରାନ୍ତରୁ ରିସେପ୍‌ସନିଷ୍ଟ ନୀଳିମା କହୁଛି ।

: ସାର୍ ଆପଣଙ୍କର ଦଶଟା ପନ୍ଦର ମିନିଟ୍‌ରେ ବାହାରିବାର ଅଛି ।

: ହଁ ମୋର ମନେଅଛି । ଆଉ କିଛି ଖବର ଅଛି ନୀଳିମା ?

: ନା, ସେପରି କିଛି ନାହିଁ ।

: ଡାକ ଆସିଲାଣି ?

: ଆସି ନାହିଁ ସାର୍ ।

: ହଁ ଶୁଣ, ମୁଁ ବର୍ତ୍ତମାନ ବାହାରିଯିବି । ଫେରୁ ଫେରୁ କେତେ ଡେରି ହେବ କହିହେଉ ନାହିଁ । ତମେ ଦୁଇ ତିନିଟା ଟେଲିଫୋନ୍ ନମ୍ବର ଲେଖି ରଖ, ଦରକାର ହେଲେ, ମୋତେ ସେଇ ସେଇ ନମ୍ବରରେ ଖୋଜିବ ।

: କୁହନ୍ତୁ ସାର୍ । ନୀଳିମା ନୋଟ୍ ବୁକ୍ ବାହାର କରି ନମ୍ବର ଟିପିଲା ।

ସତ୍ୟବ୍ରତ ରିସିଭରଟା ରଖିଦେଇ ଉଠି ଠିଆ ହେଲେ । ଚିନ୍ତା କରୁଥିଲେ, ପ୍ରଥମେ ସେ କେଉଁଠାକୁ ଯିବେ ? ଫ୍ୟାସନ ହାଉସ ? ଆଜି ଆଉ ଫ୍ୟାସନ ହାଉସ ଯାଇ ଲାଭ କ'ଣ ହେବ ?

ତଥାପି ଥରେ ସେଇବାଟେ ମୁହଁମାରି ଗଲେ କ୍ଷତି କ'ଣ ?

ପୁଣି ଟେଲିଫୋନ୍‌ଟା ବାଜିଉଠିଲା ।

: ହ୍ୟାଲୋ ?

: ପଙ୍କଜ ମଲ୍ଲିକ ଟେଲିଫୋନ୍ କରିଛନ୍ତି । ଧରନ୍ତୁ । ନୀଳିମା କହିଲା ।

: ହ୍ୟାଲୋ ? ମର୍ଣ୍ଣି' ସାର୍ । ମୁଁ ବର୍ତ୍ତମାନ ବାହାରୁଥିଲି । କାଲି ସେଲିର ବାର୍ଥଡେ ଉତ୍ସବ ଭଲରେ ଭଲରେ ସମାପ୍ତ ହୋଇଗଲା ତ ?

: ହଁ, ତା' ହୋଇଛି । ରାତି ଏଗାରଟାଯାଏ ଉତ୍ସବ ଚାଲିଥିଲା ।

: ଆଉ କିଛି ନୂଆ ଖବର ଅଛି ? ସତ୍ୟବ୍ରତ ପଚାରିଲେ ।

: ମୁଁ ତ ଆପଣଙ୍କୁ ସେଇକଥା ପଚାରୁଛି ।

: ନାଁ ସାର୍, ମୋ' ପାଖରେ କିଛି ନାହିଁ ।

: ଆଚ୍ଛା ମିଷ୍ଟର ମହାପାତ୍ର, ସେଇ ଦୋକାନର ସନ୍ଧାନ ପାଇଲେ ?

: ହଁ ହଁ, ପାଇଛି ସାର୍ । ଆଶା ବି ପାଇଛି ସେଠୁ । ହୁଏତ ସେଇ ସୂତ୍ରରେ କୌଣସି ଏକ ସନ୍ଧାନ ମିଳିବାର ସମ୍ଭାବନା ଅଛି । ମୁଁ ଯାଉଛି ବାଟରେ ଟିକିଏ କାମସାରି ଘଣ୍ଟାକ ଭିତରେ ଆପଣଙ୍କ ପାଖରେ ପହଞ୍ଚିଯିବି । ଆପଣଙ୍କର କୁଆଡ଼େ ବାହାରିବାର ଅଛି ?

: ନା ନା, ଆଜି ମୁଁ କୁଆଡ଼େ ବାହାରୁ ନାହିଁ ।

: ସେଲି କ'ଣ କରୁଛି ?

: ସେ ଶୋଇଛି । ଏତେବେଳେଯାଏ ଉଠିନାହିଁ ।

: ଆଚ୍ଛା, ମୁଁ ଅଳ୍ପ ସମୟ ମଧ୍ୟରେ ଆସୁଛି ।

ସତ୍ୟବ୍ରତ ରିସିଭରଟା ରଖିଦେଇ ଅଫିସ୍ ଘରୁ ବାହାରକୁ ବାହାରି ଆସିଲେ ।

ଅଳ୍ପ ସମୟ ମଧ୍ୟରେ ଲୁଗାପଟା ପିନ୍ଧି ପ୍ରସ୍ତୁତ ହୋଇପଡ଼ିଲେ ।

ତଳକୁ ଓହ୍ଲେଇ ରିସେପ୍‌ସନ ରୁମ୍‌ରେ ନୀଳିମାକୁ କହିଲେ ମୁଁ ଆସୁଛି । ସେପରି କିଛି ବିଶେଷ ଦରକାରୀ କଥା ଥିଲେ ମୋତେ ସେଇ ସବୁ ଫୋନ୍ ନମ୍ବରରେ ଖୋଜିବ । ସବ୍ୟସାଚୀ ବି କଲିକତାରୁ ଟ୍ରଙ୍କକଲ୍ କରିପାରେ । ସେ ଯାହା ମାସେଜ୍ ଦେବ ନୋଟ୍‌କରି ରଖିବ । ମୁଁ ବାରଟା ସାଢ଼େ ବାରଟା ମଧ୍ୟରେ ଫେରିବି ।

: ଇଏସ୍ ସାର୍ ।

ସତ୍ୟବ୍ରତ ରିସେପ୍‌ସନ ରୁମ୍‌ରୁ ବାହାରି ଗ୍ୟାରେଜ ଆଡ଼େ ଆଗେଇ ଗଲେ ।

ଗାଡ଼ି ବାହାର କରି ଲନ୍‌ରେ ଠିଆ କରାଇ ଗ୍ୟାରେଜ୍‌ର ଦରଜା ବନ୍ଦ କରୁଛନ୍ତି, ନୀଳିମା ତେଣୁ ସାର୍ ସାର୍ ଡାକି ଛୁଟିଆସିଲା । କହିଲା : ଆପଣଙ୍କର ଫୋନ୍ ସାର୍ ।

: କିଏ କରିଛି ?

: ସେ ନାଁ କହୁ ନାହାନ୍ତି । ଆପଣଙ୍କ ସହିତ ତାଙ୍କର ଦରକାର ।

ସତ୍ୟବ୍ରତ ଛୁଟିଯାଇ ଫୋନ ଧରିଲେ ।

: ହ୍ୟାଲୋ ମୁଁ ସତ୍ୟବ୍ରତ ମହାପାତ୍ର କହୁଛି ।

: ମୁଁ ସଦାନନ୍ଦ ସାମନ୍ତରାୟ ଆଜ୍ଞା, ଫ୍ୟାସନ ହାଉସ୍‌ରୁ କହୁଛି ।

: ଓଃ ସଦାନନ୍ଦ ବାବୁ, ହଁ ହଁ କୁହନ୍ତୁ । କିଛି ଖବର ଅଛି ?

: ଅଛି ସାର୍ । ସେଇ ଭଦ୍ରଲୋକ ଏଇ ଅଳ୍ପ ସମୟ ଆଗରୁ ଆସିଥିଲେ ।

ତାଙ୍କୁ ଅଟକେଇ ରଖିହେଲା ନାହିଁ । ସେ ଖୁବ୍ ବ୍ୟସ୍ତ ଥିଲେ । ଗୋଟାଏ ଦୁଇଟା ଜିନିଷପତ୍ର କିଣି ଚାଲିଗଲେ । କ୍ୟାସମେମୋ କାଟିବାକୁ ନାମ ପଚାରିବାରୁ କହିଲେ, ଶ୍ରୀ ବାସ୍ତବ । ଠିକଣା କହିଲେ କାଣ୍ଟନ୍‌ମେଣ୍ଟ ରୋଡ । ଏହାଛଡ଼ା ଆଉ ତାଙ୍କୁ ଡିଟେଲ୍‌ସ କିଛି ପଚାରି ହେଲା ନାହିଁ ।

: ଆପଣ ଟିକେ ତାଙ୍କୁ ଅଟକେଇ ପାରିଲେ ନାହିଁ ?

: ମୁଁ ଆସି ନଥିଲି । ବର୍ତ୍ତମାନ ଆସିଲି । କର୍ମଚାରୀମାନେ ତାଙ୍କୁ ଅଟକେଇ ପାରିଲେ ନାହିଁ ।

: ହୁଁ, ତା'ହେଲେ ଆପଣଙ୍କର ସେଠାକୁ ଯାଇ ଆଉ ଲାଭ ନାହିଁ । ମୁଁ ବାହାରିଥିଲି । ଭଦ୍ରଲୋକ ତା'ହେଲେ କାଣ୍ଟନ୍‌ମେଣ୍ଟରେ ରୁହନ୍ତି ?

: ସେଇଆ ତ କହିଲେ, ତେବେ ସତ ହୋଇଥିବ । ମିଛ କହିବାର ତ କିଛି କାରଣ ନାହିଁ ।

: ହଉ, ଆଜି ପରେ ମୁଁ ଥରେ ଆପଣଙ୍କ ଦୋକାନ ଆଡ଼କୁ ଯିବି । ଆଚ୍ଛା, ସଦାନନ୍ଦ ବାବୁ, ଭଦ୍ରଲୋକ ଆଜି କ'ଣ କିଣିଲେ ?

ଅପର ପ୍ରାନ୍ତରୁ ସଦାନନ୍ଦ ବାବୁ କହିଲେ : ଟିକିଏ ଅପେକ୍ଷା କରନ୍ତୁ ମୁଁ କହୁଛି ।

ସତ୍ୟବ୍ରତ ରିସିଭରଟି କାନରେ ଦେଇ ନୀରବରେ ଠିଆହେଲେ । ଅପର ପ୍ରାନ୍ତରୁ ସଦାନନ୍ଦ ବାବୁ କହିଲେ : ଆଜି ସେ ଦୁଇଟା ପେନ୍ କିଣିଲେ ସାର୍ ।

: ପେନ୍ ? କି ପେନ୍ ?

: ଦୁଇଟା ଜାପାନୀ ପାଇଲଟ ।

: ଆଚ୍ଛା ।

ସତ୍ୟବ୍ରତ ଟେଲିଫୋନ୍ ରିସିଭରଟା ରଖିଦେଲେ ଏବଂ ନୀରବରେ ଆଗେଇ ଯାଇ ଗାଡ଼ିରେ ବସିଲେ । ଗାଡ଼ି ଷ୍ଟାର୍ଟ କଲେ । ସଙ୍ଗେସଙ୍ଗେ ବାହାରିଗଲେ ରାଜପଥକୁ ।

ତାଙ୍କ ଗାଡ଼ିଟା ଯାଇ କଟକ ହୋଟେଲ ସାମ୍ନାରେ ଠିଆହେଲା । ସେ ଗାଡ଼ିରୁ ଓହ୍ଲେଇଲେ । ସିଧା ଯାଇ ମ୍ୟାନେଜରଙ୍କ ରୁମ୍‌ରେ ପଶିଲେ ।

: ଆରେ ଆସନ୍ତୁ ମିଷ୍ଟର ମହାପାତ୍ର । ଅନେକ ଦିନ ପରେ ଯେ । ଆପଣ କ'ଣ ନ ଥିଲେ କଟକରେ ? ହୋଟେଲର ମ୍ୟାନେଜର କିସାନ ପଟ୍ଟନାୟକ ପଚାରିଲେ ।

ସତ୍ୟବ୍ରତ ସ୍ମିତ ହସି କହିଲେ : ଠିକ୍ ନଥିଲି ନୁହେଁ, ତା'ପରେ, ଆପଣଙ୍କ ଖବର ସବୁ କ'ଣ କୁହନ୍ତୁ । କିମିତି ଚାଲିଛି ।

: ଭଲ, ଆପଣଙ୍କୁ ଦେଖି ମୋ' ପ୍ରାଣ ଭିତରଟା କମ୍ପିଉଠିଲାଣି । ଏଠାରେ କିଛି ରହସ୍ୟର ଗନ୍ଧ...

: ଆରେ ନା ନା, ଆପଣଙ୍କର ଚିନ୍ତାର କିଛି ନାହିଁ । ଏଇବାଟେ ଯାଉଥିଲି, ହଠାତ୍ ଆପଣଙ୍କ କଥା ମନେପଡ଼ିଗଲା । ସିଟ୍ ଫିଟ୍ କିଛି ଖାଲି ଅଛି ?

: ନା, ମୋଟେ ନାହିଁ । କାହିଁକି ଆପଣଙ୍କର ଦରକାର ଅଛିନା କ'ଣ ?

: ନା ନା, ଆପଣଙ୍କ କଷ୍ଟମର ରେଜିଷ୍ଟାରଟା ଟିକିଏ ଦେଖାନ୍ତୁ ତ ! ଆପଣ ତ ଜାଣନ୍ତି, ସେଇଟା ମୋର ପୁରୁଣା ଅଭ୍ୟାସ । ଯେବେ ମୁଁ ଏଠାକୁ ଆସେ, କେଜାଣି କାହିଁକି ରେଜିଷ୍ଟରଟା ଦେଖିବାକୁ ମୋର ମନ ହୁଏ ।

କିସାନ ପଟ୍ଟନାୟକ ଟେବୁଲ ଉପରୁ ଗୋଟାଏ ମୋଟା ବନ୍ଧେଇ ରେଜିଷ୍ଟର ସତ୍ୟବ୍ରତଙ୍କ ହାତକୁ ବଢ଼ାଇ ଦେଇ କହିଲେ : ସତରେ ଆପଣ ବଡ଼ ଅଦ୍ଭୁତ ମିଷ୍ଟର ମହାପାତ୍ର । ଏଇ ରେଜିଷ୍ଟରରୁ ଆପଣ କ'ଣ ଯେ ପାଆନ୍ତି, ମୁଁ କିନ୍ତୁ...

: ଆରେ ଏଇ ଭଦ୍ରଲୋକ, ମାନେ ରଜନୀ ପଟେଲ, ବର୍ତ୍ତମାନ ହୋଟେଲରେ ଅଛନ୍ତି ନା କ'ଣ ? ସତ୍ୟବ୍ରତଙ୍କ ସ୍ୱରଟା ଆଗ୍ରହରେ ପୂରି ଉଠିଥିଲା ।

କିସାନ ପଟ୍ଟନାୟକ ହୋଟେଲ ରେଜିଷ୍ଟର ଉପରେ ନଇଁପଡ଼ି ନାଁଟା ପଢ଼ିନେଇ କହିଲେ : ଏଇ ଭଦ୍ରଲୋକଙ୍କ ସହିତ ଆପଣଙ୍କର ପରିଚୟ ଅଛି ନା କ'ଣ ?

: ଥିଲା ପରି ମନେହେଉଛି । ଇଏ ସେଇ ବିଖ୍ୟାତ ଆଡଭୋକେଟ ରଜନୀ ପଟେଲ ତ ?

ମ୍ୟାନେଜର ଅଳ୍ପ ହସି କହିଲେ : ନା ନା ସେ ନୁହଁନ୍ତି । ଏ ଜଣେ ବମ୍ବେବାଲା । ନିଜକୁ ଫିଲ୍ମ ପ୍ରଡ୍ୟୁସର ବୋଲି କହୁଛନ୍ତି । ପ୍ରାୟ ସାତ ଆଠଦିନ ହେବ ସେ ହୋଟେଲରେ ଅଛନ୍ତି ।

: ଉଦ୍ଦେଶ୍ୟ ? ସତ୍ୟବ୍ରତଙ୍କ ସ୍ୱରଟା କିପରି ରହସ୍ୟମୟ ଶୁଣାଗଲା ।

: ସାଇଟ୍ ଠିକ୍ କରିବାକୁ ଆସିଛନ୍ତି । ତାଙ୍କର ଗୋଟାଏ ଛବି ସେ ପୁରୀ ଓ କୋଣାର୍କ ଲୋକେସନରେ ସୁଟିଂ କରିବେ । ସେଇଥିପାଇଁ...

କିସାନ ପଟ୍ଟନାୟକଙ୍କ ପାଟିକଥା ପାଟିରେ ରହିଗଲା । ଜଣେ ସୌଖୀନ ମଧ୍ୟବୟସୀ ଭଦ୍ରଲୋକ ଗାଡ଼ିରୁ ଓହ୍ଲାଇବାର ଦେଖାଗଲା । ସେ ସେଇଆଡ଼େ ଚାହିଁ କହିଲେ : ସ୍ୱୟଂ ରଜନୀ ପଟେଲ । ଏହାଙ୍କ ସହିତ ପରିଚୟ ଅଛି ?

ରଜନୀ ପଟେଲ ଗାଡ଼ିରୁ ଓହ୍ଲାଇ ସିଧା ମ୍ୟାନେଜରଙ୍କ ରୁମ୍‌କୁ ପଶି ଆସିଲେ । କହିଲେ : ଆଜି ବିଲ୍‌ଟା ରେଡି କରି ଦେବେ । ମୁଁ ଦୁଇ ତିନିଘଣ୍ଟା ପରେ ପୁରୀ ଚାଲିଯିବି ।

ମ୍ୟାନେଜରଙ୍କର କୌଣସି ଉତ୍ତରକୁ ଅପେକ୍ଷା ନ କରି, ରଜନୀ ପଟେଲ ମ୍ୟାନେଜରଙ୍କ ରୁମ୍‌ରୁ ବାହାରି ଶିଡ଼ିବାଟେ ଦୋ'ତାଲାକୁ ଉଠିଗଲେ ।

ସତ୍ୟବ୍ରତ କିଛି ସମୟ ତାଙ୍କର ଯିବା ପଥକୁ ଅନାଇ ରହି ଧୀରେ ଧୀରେ କହିଲେ : ଆଡଭୋକେଟ ରଜନୀ ପଟେଲ କିନ୍ତୁ ମୋର ଜଣେ ଘନିଷ୍ଠ ବନ୍ଧୁ, ଆଉ ପ୍ରତ୍ୟୁସର ରଜନୀ ପଟେଲ...

ହଠାତ୍ ଟେବୁଲ ଉପରର ଟେଲିଫୋନ୍‌ଟା ବାଜିଉଠିଲା ।

କିସାନ ପଟ୍ଟନାୟକ ରିସିଭର ଉଠାଇଲେ – ହ୍ୟାଲୋ ? ...କିଏ ମିଷ୍ଟର ମହାପାତ୍ର ? ହଁ ହଁ, ଟିକିଏ ରହି କହିଲେ, ଆପଣଙ୍କର ଫୋନ୍ ମିଷ୍ଟର ମହାପାତ୍ର ।

ସତ୍ୟବ୍ରତ ରିସିଭରଟା କାନରେ ଦେଇ କହିଲେ : କୁହ ନୀଳିମା । କିଏ ଫୋନ୍ କରିଥିଲେ ? ...ହଁ ହଁ, ସାଗରଭାଇ ? କୋଉଠୁ ? ...ମାଲ ଗୋଦାମରୁ ? ...ହଁ, ...ହଁ, ...ବୁଝିଲି । ଠିକ୍ ଅଛି । ସମୟ ହେଲେ ମୁଁ ସେଇ ବାଟ ହୋଇ ଯିବି । ଆଉ କିଛି ଖବର ନାହିଁ ? ଆଚ୍ଛା ।

ସତ୍ୟବ୍ରତ ରିସିଭରଟା ରଖିଦେଲେ ।

କିସାନ ପଟ୍ଟନାୟକ କହିଲେ : ସାଗରଭାଇର ପୁଣି କ'ଣ ହେଲା ?

: ଆପଣ ତାଙ୍କୁ ଚିହ୍ନନ୍ତି ନା କ'ଣ ?

: ସେ ମାଲଗୋଦାମର ଜଣେ ବଡ଼ ବ୍ୟବସାୟୀ । ଆମ ହୋଟେଲକୁ ଅନେକ ଜିନିଷ ସପ୍ଲାଇ ଦିଅନ୍ତି ।

: ତାଙ୍କର ମୋ' ପାଖରେ କ'ଣ କାମ ଅଛି । ମୁଁ କେତେବେଳେ ଘରେ ଥାଏ ସେଇକଥା ସେ ପଚାରି ବୁଝୁଥିଲେ ।

କିସାନ ପଟ୍ଟନାୟକ ଟିକିଏ ରହି କହିଲେ : ଆପଣ ଟିକିଏ ବସନ୍ତୁ ସାର୍, ମୁଁ ଏଇ ଉପରୁ ଆସୁଛି । ଏଇ ପାଞ୍ଚ ମିନିଟ୍ ଭିତରେ ।

ସତ୍ୟବ୍ରତ କହିଲେ : ନା, ମୁଁ ବି ଉଠୁଛି । ପୁଣି ପରେ ଦେଖାହେବ ।

ସତ୍ୟବ୍ରତ ଉଠି ଠିଆହେଲେ ।

କିସାନ ପଟ୍ଟନାୟକ କହିଲେ : ଅନ୍ତତଃ କପେ କଫି ପିଇ ଯାଆନ୍ତୁ ।

: ନା ନା, ପରେ ଆସି ପିଇଯିବି ।

ସତ୍ୟବ୍ରତ ମ୍ୟାନେଜରଙ୍କ ରୁମ୍‌ରୁ ବାହାରିବା ସମୟରେ ଦେଖିଲେ ରଜନୀ ପଟେଲ ଖୁବ୍ କ୍ଷିପ୍ରପଦରେ ଶିଡ଼ିରୁ ଓହ୍ଲାଉଛନ୍ତି ।

କିସାନ ପଟ୍ଟନାୟକଙ୍କୁ ସାମ୍‌ନାରେ ଦେଖି ପଚାରିଲେ : ମୋତେ ଜଣେ ଭଦ୍ରମହିଳା ଖୋଜିବାକୁ ଆସିଥିଲେ କି ?

: ନାଁ ତ ।

: କିନ୍ତୁ ସେ ଗୋଟାଏ ଚିଠି ଲେଖି ମୋ' ରୁମ୍‌ରେ ଗଳେଇ ଦେଇ ଯାଇଛନ୍ତି । ତାଙ୍କୁ ଆପଣ ଦେଖିନାହାନ୍ତି ?

: ନା, ମଝିରେ ମୁଁ ଘଣ୍ଟାଏ ଖଣ୍ଡ ନଥିଲି । ସେତିକିବେଳେ ଯଦି ଭଦ୍ରମହିଳା ଆସି ଚାଲି ଯାଇଥାଆନ୍ତି ।

: ସେତେବେଳେ ଆଉ କିଏ ଥିଲେ ଆପଣଙ୍କ ଅଫିସରେ ? ମୋ' ରୁମ୍ ଚାବିଟା ତ ଭଦ୍ରମହିଳାଙ୍କୁ ଦେଇପାରି ଥାଆନ୍ତେ । ରଜନୀ ପଟେଲଙ୍କ କଣ୍ଠ ସ୍ୱରରେ କିପରି ବିରକ୍ତି ଫୁଟି ଉଠିଥିଲା ।

କିସାନ ପଟ୍ଟନାୟକ କହିଲେ : ଭଦ୍ରମହିଳାଙ୍କୁ ମୁଁ ତ ମୋଟେ ଦେଖିନାହିଁ । ଚାବି ଦେବା ନ ଦେବା କଥା ତ ପରର ।

: ମୋର କ'ଣ ଆପଣ ବିଲ୍ କରି ଦେଇଛନ୍ତି ?

: ନା କରି ନାହିଁ । ମୁଁ ଏଇ ଉପରୁ ଆସି କରିଦେଉଛି ।

: ନା, କରିବେ ନାହିଁ । ଏହି ଭଦ୍ରମହିଳାଙ୍କ ପାଇଁ ମୋତେ ଅପେକ୍ଷା କରିବାକୁ ପଡ଼ିବ ।

କିସାନ ପଟ୍ଟନାୟକ ଆଉ ଦ୍ୱିତୀୟ କଥା ନ କହି ଉପରକୁ ଚାଲିଗଲେ ।

ରଜନୀ ପଟେଲଙ୍କ ଦୃଷ୍ଟି ଅଟକିଗଲା ସତ୍ୟବ୍ରତ ମହାପାତ୍ରଙ୍କ ଉପରେ । ଅଭିଯୋଗପୂର୍ଣ୍ଣ ସ୍ୱରରେ ସେ କହିଲେ : ଆମ ଇଣ୍ଡିଆରେ ହୋଟେଲ ପରିଚାଳକମାନେ ଗ୍ରାହକମାନଙ୍କ ଭଲମନ୍ଦ, ସୁଖସୁବିଧା ଆଡ଼େ ମୋଟେ ନଜର ଦିଅନ୍ତି ନାହିଁ । ଖାଲି ସେମାନେ ଚାହାନ୍ତି ତାଙ୍କ ଗଣ୍ଡାକ ସେ ପାଇଯିବା ପାଇଁ ।

ସତ୍ୟବ୍ରତ ମହାପାତ୍ର ସମ୍ମତିସୂଚକ ମୁଣ୍ଡ ହଲାଇ କହିଲେ : ବାସ୍ତବରେ ସେଇଆ । ଆପଣ ରାଇଟ୍ ।

ରଜନୀ ପଟେଲ ସ୍ୱରରେ ହତାଶା ଫୁଟାଇ କହିଲେ : ଅଥଚ ଏଇ ଭଦ୍ରମହିଳାଙ୍କ ପାଇଁ ମୁଁ ଦୀର୍ଘଦିନ ହେବ ଅଧୀର ଆଗ୍ରହରେ ଅପେକ୍ଷା କରିଛି । ଛି ଛି ଛି । ସେ

ଫେରିଯାଇ କ'ଣ ଯେ ଭାବିଥିବେ । ମୁଁ ତାଙ୍କୁ କଥା ଦେଇଥିଲି ଆଜି ତାଙ୍କ ପାଇଁ ଅପେକ୍ଷା କରିବାକୁ ।

ସତ୍ୟବ୍ରତ କହିଲେ : ଭଦ୍ରମହିଳା କ'ଣ ଆପଣଙ୍କର ଆତ୍ମୀୟା ?

ରଜନୀ ପଟେଲ କହିଲେ : ଖାଲି ସେ ମୋର ଆତ୍ମୀୟା ନୁହନ୍ତି, ପରମ ଆତ୍ମୀୟା । ମାନେ ଆମ ଲାଇନ୍ କଥା ଆପଣ ଜାଣନ୍ତି ନାହିଁ । ମୋର ପରବର୍ତ୍ତୀ ଛବି ପାଇଁ ମୁଁ ଭଦ୍ରମହିଳାଙ୍କୁ ହିରୋଇନ୍ କରିବା ପାଇଁ ବହୁତ କଷ୍ଟରେ ରାଜି କରାଇଥିଲି ।

: ତା'ହେଲେ ଆପଣଙ୍କର ବ୍ୟସ୍ତ ହେବାର କ'ଣ ଅଛି ? ଭଦ୍ରମହିଳାଙ୍କର ନିଜର ତ ପୁଣି ସ୍ୱାର୍ଥ ଅଛି ।

ରଜନୀ ପଟେଲ ହତାଶ ଦୃଷ୍ଟିରେ କିଛି ସମୟ ସତ୍ୟବ୍ରତଙ୍କ ମୁହଁକୁ ଚାହିଁ ଗୋଟାଏ ଦୀର୍ଘଶ୍ୱାସ ପକାଇ ଧୀରେ ଧୀରେ ହୋଟେଲରୁ ବାହାରକୁ ବାହାରିଗଲେ ।

ତାଙ୍କ ପଛେପଛେ ସତ୍ୟବ୍ରତ ମଧ୍ୟ ।

ରଜନୀ ପଟେଲ ହୋଟେଲ ବାହାରକୁ ରାସ୍ତା ଉପରେ ଠିଆହୋଇ ମୁକ୍ତ ଆକାଶ ଆଡ଼େ ଚାହିଁ ଠିଆ ହୋଇଥିଲେ ।

ସତ୍ୟବ୍ରତ ପଛଆଡୁ ଦରଦୀ ସ୍ୱରରେ କହିଲେ : କ୍ଷମା କରିବେ ମିଷ୍ଟର ପଟେଲ । ଆପଣ ଯଦି କିଛି ମନେ ନ କରନ୍ତି, ତା'ହେଲେ ମୁଁ ଆପଣଙ୍କୁ ଗୋଟିଏ ପ୍ରସ୍ତାବ ଦିଅନ୍ତି ।

ରଜନୀ ପଟେଲ ଆଶାୟୀ ଆଖିରେ ସତ୍ୟବ୍ରତଙ୍କ ମୁହଁକୁ ଚାହିଁଲେ ।

ସତ୍ୟବ୍ରତ କହିଲେ  ଆପଣ ଯଦି ଭଦ୍ରମହିଳାଙ୍କ ଘର ଚିହ୍ନି ଥାଆନ୍ତି, ତା'ହେଲେ ଆସନ୍ତୁ, ମୁଁ ଆପଣଙ୍କୁ ଗାଡ଼ିରେ ନେଇ ତାଙ୍କ ଘରେ ଛାଡ଼ିଦେଇ ଯିବି ।

ରଜନୀ ପଟେଲ ଅଳ୍ପ ହସିବାକୁ ଚେଷ୍ଟା କରି କହିଲେ : ଆପଣଙ୍କୁ ଅସଂଖ୍ୟ ଧନ୍ୟବାଦ । ଆପଣଙ୍କର ମହାନୁଭବତା ମୁଁ ଜୀବନରେ ଭୁଲିପାରିବି ନାହିଁ । କିନ୍ତୁ ମହାଶୟ, ଭଦ୍ରମହିଳାଙ୍କର ଏଠାକାର ଠିକଣା ମୋତେ ଜଣା ନାହିଁ ।

ସତ୍ୟବ୍ରତ ଆଉ କିଛି କହିଲେ ନାହିଁ । ରଜନୀ ପଟେଲଙ୍କୁ ବିଦାୟ ସମ୍ଭାଷଣ ଜଣାଇ ଯାଇ ନିଜ ଗାଡ଼ିରେ ବସିଲେ ।

ସତ୍ୟବ୍ରତ ଗାଡ଼ି ଆଗେଇ ଦେଇ ପଛକୁ ଚାହିଁ ଦେଖିଲେ, ରଜନୀ ପଟେଲ ସେମିତି ମୁକ୍ତ ଆକାଶକୁ ଚାହିଁ ଠିଆ ହୋଇଛନ୍ତି ।

ସତ୍ୟବ୍ରତଙ୍କ ଗାଡ଼ି ଯାଇ ପଙ୍କଜ ମଲ୍ଲିକଙ୍କ ଦୁଆରେ ଠିଆହେଲା ।

ପଙ୍କଜ ମଲ୍ଲିକ ଘରେ ଥିଲେ । କିନ୍ତୁ ସେ ସତ୍ୟବ୍ରତଙ୍କୁ ଦେଖି କିପରି ଆଶ୍ଚର୍ଯ୍ୟ କଣ୍ଠରେ କହିଲେ : ମିଷ୍ଟର ମହାପାତ୍ର ! ଆପଣଙ୍କୁ ଏଇ ବେଶରେ କିନ୍ତୁ ସେଲି ଦେଖିବା ଉଚିତ ନୁହେଁ ।

ସତେ ତ ! ସତ୍ୟବ୍ରତ ନିଜର ପୋଷାକ କଥା ଚିନ୍ତାକରି ସଚେତନ ହେଲେ । କାଲି ସେ ଆସିଥିଲେ କବି ସରୋଜ ପଟ୍ଟନାୟକ ବେଶରେ । ଆଜି ସେ ଆସିଛନ୍ତି ସତ୍ୟବ୍ରତ ମହାପାତ୍ର ବେଶରେ । ସେ ସେଇ ମୁହୂର୍ତ୍ତରେ ସେଠାରେ ବସିବେ କି ପୁଣି ବାହାରି ଚାଲିଯିବେ ଚିନ୍ତାକରି ଠିକ୍ କରିବା ପୂର୍ବରୁ ପଙ୍କଜ ମଲ୍ଲିକ କହିଲେ : ସେଲି ନାହିଁ । ବର୍ତ୍ତମାନ ସେ ବାହାରକୁ ବାହାରି ଯାଇଛି । ତେଣୁ ଆପଣଙ୍କର ବ୍ୟସ୍ତ ହେବାର କିଛି ନାହିଁ । ଏଣିକି ଆପଣ ଯେବେ ଆମ ଘରକୁ ଆସିବେ, ମନେକରି କବି ସରୋଜ ପଟ୍ଟନାୟକ ବେଶରେ ଆସିବେ ।

ସତ୍ୟବ୍ରତ ମହାପାତ୍ର ଏଥର ଟିକିଏ ସ୍ୱସ୍ତି ଅନୁଭବ କଲେ । ସେ ଗୋଟିଏ ସୋଫା ଉପରେ ବସୁ ବସୁ କହିଲେ : ତା'ହେଲେ କାଲି ସେଲିର ଜନ୍ମଦିନ ଉତ୍ସବ ଭଲରେ ଭଲରେ ଶେଷ ହୋଇଯାଇଛି ।

: ହଁ । ପଙ୍କଜ ମଲ୍ଲିକଙ୍କର ସଂକ୍ଷିପ୍ତ ଉତ୍ତର ।

: ଆପଣ ଆଜି ଖୁବ୍ ଚିନ୍ତିତ ମନେ ହେଉଛନ୍ତି ସାର୍ । ଆଉ କିଛି ଅଘଟଣ ଘଟିଛି ନା କ'ଣ ?

: ନା, ମିଷ୍ଟର ମହାପାତ୍ର । ଆଉ କିଛି ଘଟିନାହିଁ ସତ, କିନ୍ତୁ ଯାହା ଘଟିଯାଇଛି ତା'ରି ପରିଣତି ମୋତେ କିପରି ବ୍ୟାକୁଳ କରିରଖିଛି । ମୁଁ ଚିନ୍ତା କରିପାରୁ ନାହିଁ ଏହି ଅସମ୍ଭବ ସମ୍ଭବ ହେଲା କିପରି !

ସତ୍ୟବ୍ରତ କିଛି ସମୟ ନୀରବତା ଭିତରେ କଟାଇଲେ । ତା'ପରେ ଧୀରେ ଧୀରେ କହିଲେ : ଆଚ୍ଛା ସାର୍, ସେଲିର ଘରଟା କିଏ ? ସେ କେଉଁ ଘରେ ରୁହେ ?

ପଙ୍କଜ ମଲ୍ଲିକ କହିଲେ : ସେ ଏଇ ତାଲାରେ ରୁହେ । ଏ ଘରଠୁ ଦୁଇଟା ଘର ଛଡ଼ାରେ ।

: ମୁଁ ଟିକିଏ ସେଲିର ଘରଟା ଦେଖିପାରେ ସାର୍ ?

: ହଁ ହଁ, ଚାଲନ୍ତୁ ମୁଁ ଆପଣଙ୍କୁ ଆମର ସବୁ ଘରଯାକ ବୁଲେଇ ଦେଖେଇ ଦେଉଛି ।

ସତ୍ୟବ୍ରତ ଉଠିଲେ । ପଙ୍କଜ ମଲ୍ଲିକ ଆଗେ ଆଗେ, ତାଙ୍କ ପଛରେ ସତ୍ୟବ୍ରତ ।

ପଙ୍କଜ ମଲ୍ଲିକ ପ୍ରଥମେ ସେଲି ଘରର ଦରଜା ଖୋଲିଲେ । ଅବଶ୍ୟ ସେଇଟା ସେଲିର ବେଡ୍‌ରୁମ୍ । ଖୁବ୍ ବିରାଟ ଘର । ଘର ଭିତରେ ପ୍ରାଚୁର୍ଯ୍ୟର ଆଧିକ୍ୟ ପୂରି ରହିଛି ।

ସତ୍ୟବ୍ରତ ଘରର ଚାରିଆଡ଼େ ଥରେ ଆଖି ବୁଲେଇ ନେଇ, ଝରକା ବାଟେ ସାମନା କୋଠା ଆଡ଼କୁ ଚାହିଁ କହିଲେ : ଏଇ ସାମ୍‌ନା ଘରେ କିଏ ରୁହନ୍ତି ?

: ସେ ଘରେ ଜଣେ ଫାଦାର୍ ରୁହନ୍ତି । ଭଦ୍ରଲୋକ ଏକା । ବେଶ୍ ଶାନ୍ତ ସାଧୁ ଜୀବନ ।

: ତାଙ୍କ ସହିତ ଆପଣଙ୍କର ପରିଚୟ ଅଛି ?

: ନିଶ୍ଚୟ । ସେ ଆମର ପ୍ରତିବେଶୀ, ପରିଚୟ ନ ରହିବ ବା କିପରି ? ନ ରହିବାଟା ବରଂ ଅସ୍ୱାଭାବିକତା ନୁହେଁ ନା ?

: ଭଦ୍ରଲୋକ ଆସନ୍ତି ଆପଣଙ୍କ ଘରଆଡ଼େ ?

: ଖୁବ୍ କମ୍ । ସେ ଏଠାରେ ରହିବା ଦିନଠାରୁ ତିନି ଚାରିଥର ଆସିଥିବେ କି ନାହିଁ ।

ସତ୍ୟବ୍ରତ ଫାଦରଙ୍କ ସମ୍ବନ୍ଧରେ ଆଉ କିଛି ପଚାରିଲେ ନାହିଁ । ସେଲି ଘରର କୌଣସି ଜିନିଷ ମଧ୍ୟ ସ୍ପର୍ଶ କରିଲେ ନାହିଁ । କେବଳ ଘରର ଆସବାବପତ୍ର ଉପରେ ଆଉଥରେ ଆଖି ବୁଲେଇ ନେଇ କହିଲେ : ଚାଲନ୍ତୁ ।

ସେମାନେ ବାହାରି ଆସିଲେ ।

ପଙ୍କଜ ମଲ୍ଲିକ ଆର ଘରର ଦରଜା ଖୋଲିବାକୁ ଯାଉଥିଲେ । ସତ୍ୟବ୍ରତ କହିଲେ : ନା ଥାଉ, ଆଉ ଦିନେ ଆସି ସବୁ ଘର ଦେଖିଯିବି । ଆଜି ମୁଁ ଆସୁଛି ।

ପଙ୍କଜ ମଲ୍ଲିକ ଘରର ଦରଜାଟା ପୁଣି ବନ୍ଦ କରୁ କରୁ କହିଲେ : ଆପଣ ପୁଣି କେବେ ଆସିବେ ?

: ଫୋନ୍‌ରେ ମୁଁ ଆପଣଙ୍କୁ ଜଣାଇବି ।

ନୀରବତା ଭିତରେ ସେମାନେ ପୁଣି ଡ୍ରଇଂରୁମ୍ ଆଡ଼କୁ ଆଗେଇ ଆସିଲେ ।

ହଠାତ୍ ନୀରବତା ଭଙ୍ଗ କରି ସତ୍ୟବ୍ରତ କହିଲେ : ଆଚ୍ଛା ସାର୍, ମୁଁ ଗୋଟାଏ କଥା ପଚାରିବି । ଆପଣଙ୍କର କିଛି ଆପତ୍ତି ନ ଥିଲେ ଉତ୍ତର ଦେବେ ।

: ପଚାରନ୍ତୁ ।

: ମାନେ, ମୁଁ ସେଲିର ଦୁଇଚାରିଜଣ ଅତି ଅନ୍ତରଙ୍ଗ ବନ୍ଧୁବାନ୍ଧବଙ୍କର ନାମ

ଠିକଣା ଜାଣିବାକୁ ଚାହେ । ଅବଶ୍ୟ ଆପଣଙ୍କର ସେଥିରେ କିଛି ଆପତ୍ତି କରିବାର ନ ଥିବ ।

ପଙ୍କଜ ମଲ୍ଲିକ ଅଳ୍ପ ସମୟ ନୀରବ ରହି କହିଲେ : ନା ନା, ମୋର ଆପତ୍ତି କରିବାର କ'ଣ ଅଛି ? ଅବଶ୍ୟ ସେଲିର କେଉଁମାନେ ଅତ୍ୟନ୍ତ ଅନ୍ତରଙ୍ଗ, ଆଉ କେଉଁମାନେ ଅଳ୍ପ ଅନ୍ତରଙ୍ଗ ସେକଥା ହୁଏତ ସେଲି କହିପାରିବ, ତେବେ ମୁଁ ତା'ର କେତେଜଣ ବନ୍ଧୁବାନ୍ଧବଙ୍କୁ ଜାଣେ ଯେଉଁମାନେ ବରାବର ଆମ ଘରକୁ ଆସନ୍ତି, ସେମାନଙ୍କ ନାମ ଠିକଣା ଆପଣ ଲେଖି ନିଅନ୍ତୁ ।

ସତ୍ୟବ୍ରତ ପକେଟରୁ ନୋଟ୍‌ବୁକ୍ ବାହାର କରି ସେଲିର ତିନିଜଣ ବନ୍ଧୁ ଓ ଚାରିଜଣ ବାନ୍ଧବୀଙ୍କର ନାମ ଠିକଣା ଟିପିଲେ ।

ପଙ୍କଜ ମଲ୍ଲିକ କହିଲେ : ଏମାନେ ସମସ୍ତେ ପ୍ରାୟ ଗତକାଲି ଜନ୍ମଦିନ ଉତ୍ସବକୁ ଆସିଥିଲେ । ଆପଣ ସମସ୍ତଙ୍କୁ ଦେଖିଥିବେ ।

ସତ୍ୟବ୍ରତ ପଙ୍କଜ ମଲ୍ଲିକଙ୍କୁ ନମସ୍କାର ଜଣାଇ ଉଠି ଠିଆ ହେଲେ । କହିଲେ : ଆଜି ମୁଁ ଆସୁଛି ସାର୍ । ଆପଣଙ୍କ କେସ୍‌ର ସାମାନ୍ୟତମ ସୂତ୍ର ପାଇଲା ମାତ୍ରେ ମୁଁ ଆପଣଙ୍କୁ ଜଣାଇବି ।

ସତ୍ୟବ୍ରତ ଘରୁ ବାହାରି ଆସିଲେ !

ଲଳିତ ପଟ୍ଟନାୟକ, ଅଡଭୋକେଟ୍ ରାମଚନ୍ଦ୍ର ପଟ୍ଟନାୟକଙ୍କର ଏକମାତ୍ର ସନ୍ତାନ । ଏମ.ଏ. ପାଶ୍ କରି ଲ' ପଢ଼ୁଛନ୍ତି ।

ରାମଚନ୍ଦ୍ର ପଟ୍ଟନାୟକ ଡଗରପଡ଼ା ଅଞ୍ଚଳର ଜଣେ ଖୁବ୍ ସ୍ୱନାମଧନ୍ୟ ଆଡଭୋକେଟ । ତାଙ୍କ ଚେମ୍ବରରେ ସବୁବେଳେ ମହକିଲମାନଙ୍କର ଭିଡ଼ ଜମି ରହିଥାଏ ।

ଲଳିତ ପଟ୍ଟନାୟକ ଭଲ ଛାତ୍ର । ଭଲ ସ୍ପୋର୍ଟସମ୍ୟାନ ।

କଲେଜରେ ସୁଖ୍ୟାତି । ପଢ଼ାରେ ମଧ୍ୟ ଖ୍ୟାତି ।

ସତ୍ୟବ୍ରତ ମହାପାତ୍ର ସେଦିନ ଲଳିତ ପଟ୍ଟନାୟକଙ୍କୁ ଭେଟିଲେ ଠିକ୍ ସଂଧ୍ୟାବେଳରେ । ସେତେବେଳେ ଲଳିତ ବାହାରୁଥିଲା କ୍ଲବକୁ ।

ସତ୍ୟବ୍ରତ ମହାପାତ୍ରଙ୍କ ପରିଚୟ ପାଇ ଲଳିତ ଉଲ୍ଲସିତ ହୋଇଉଠିଲା । କହିଲା : ମୁଁ ଆପଣଙ୍କୁ ଅନେକ ଦିନରୁ ଜାଣେ । ଆପଣଙ୍କ ସୁଖ୍ୟାତି ପତ୍ରପତ୍ରିକାରେ ବହୁତ ପଢ଼ିଛି । କିନ୍ତୁ ହଠାତ୍ ଦିନେ ଯେ ଆପଣ ମୋତେ ଖୋଜିବାକୁ ଆସିବେ, ଏ କଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବିପାରି ନଥିଲି ।

ସତ୍ୟବ୍ରତ କହିଲେ : ମଣିଷର ଭାବନାର ବାହାରେ ଯାହା ଘଟେ ସବୁଗୁଡ଼ିକ ଆକସ୍ମିକ । କିନ୍ତୁ ଆକସ୍ମିକ ଶବ୍ଦଟା ଆମ ଅଭିଧାନରେ ଅଛି ଯେତେବେଳେ, ମୋ' ମତରେ ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ଲଳିତ କହିଲା : ଆପଣ ଆସନ୍ତୁ, ବାପାଙ୍କ ସହିତ ମୁଁ ଆପଣଙ୍କର ପରିଚୟ କରାଇ ଦେବି । ବାପା ଆପଣଙ୍କୁ ଦେଖିଲେ ଭାରି ଖୁସି ହେବେ । କାରଣ ସେ ପ୍ରତିଭାବାନ ଲୋକମାନଙ୍କର ଖୁବ୍ ପ୍ରଶଂସା କରନ୍ତି ।

ସତ୍ୟବ୍ରତ କହିଲେ : ନା, ଆଉ ଦିନେ ଆସିବି । ମୁଁ ପ୍ରଥମେ ମିଷ୍ଟର ପଟ୍ଟନାୟକଙ୍କ ଚେମ୍ବର ଆଡ଼େ ଯାଇଥିଲି, ଦେଖିଲି ଭୀଷଣ ଭିଡ଼ । ହଠାତ୍ ଆପଣଙ୍କୁ ପାଇଯାଇଛି ଯେତେବେଳେ, ଟିକିଏ କଥାବାର୍ତ୍ତା ହେଇ ଚାଲିଯିବି । ଆପଣ କେଉଁଆଡ଼େ ଯିବେ ?

: ମୁଁ ଯିବି ଚଉଧୁରୀ ବଜାର । ନ ଗଲେ ବି ଚଳିବ । ଆପଣ ଆସନ୍ତୁ, ଉପରେ ମୋ' ଘରେ ବସି କଥାବାର୍ତ୍ତା ହେବା ।

ସତ୍ୟବ୍ରତ ଆପତ୍ତି କଲେ ନାହିଁ ।

ଦୁହେଁ ଶିଡ଼ିଦେଇ ଉପରକୁ ଉଠିଗଲେ ।

ସତ୍ୟବ୍ରତ ଲଳିତର ଶୋଇବା ଘରେ ପହଞ୍ଚି ଦେଖିଲେ, ରୁମ୍‌ଟି ବେଶ୍ ବଡ଼ । ଲଳିତର ଏଇଟି ବେଡ୍ କମ୍ ରିଡିଂ ରୁମ୍ । ସାମନାକୁ ଗୋଟିଏ ଛୋଟ ବାରଣ୍ଡା । ଘର ଭିତରେ ଖଟ, ଚେଆର, ଟେବୁଲ ଆଲମିରା ସବୁ ଅଛି ।

ଲଳିତ ସତ୍ୟବ୍ରତଙ୍କୁ ଗୋଟିଏ ଚେଆରରେ ବସିବାକୁ କହି ନିଜେ ଗୋଟିଏ ଚେଆରରେ ବସୁ ବସୁ କହିଲା : କୁହନ୍ତୁ ସାର୍ । ମୁଁ କିନ୍ତୁ ଆଦୌ ଖରାପ ପିଲା ନୁହେଁ । କୌଣସି ଅପରାଧମୂଳକ କାର୍ଯ୍ୟ ସଜ୍ଞାନରେ କିଛି କରିଥିବା ପରି ମୋର ମନେହେଉ ନାହିଁ ।

ସତ୍ୟବ୍ରତ ହସି ହସି କହିଲେ  ପ୍ରତ୍ୟେକ ମଣିଷ ଅପରାଧୀ ଲଳିତ ବାବୁ । ଅପରାଧ ପ୍ରବୃତ୍ତି ସବୁ ମଣିଷ ଠାରେ ଭରିରହିଛି । ତେବେ ତାହା ଆତ୍ମପ୍ରକାଶ କରେ ଖୁବ୍ କମ୍ ଲୋକଙ୍କ ଠାରେ । ତେବେ ଅପରାଧ ତତ୍ତ୍ୱ ବିଶ୍ଳେଷଣ

ମୋର ଉଦ୍ଦେଶ୍ୟ ନୁହେଁ । ମୁଁ ଖାଲି ଜାଣିବାକୁ ଆସିଛି, ଆପଣ ସେଲିର ଜନ୍ମଦିନ ଉତ୍ସବରେ ଯୋଗ ଦେଇଥିଲେ କି ନାହିଁ ।

: ସେଲି ! ହଠାତ୍ ଲଳିତର ସ୍ୱରଟା ଟିକିଏ ବଢ଼ି ଯାଇଥିଲା । ପୁଣି ସେ କହିଲା, ସେଲି, ମାନେ ପଙ୍କଜ ମଲ୍ଲିକ ଝିଅଙ୍କ କଥା ଆପଣ କହୁଛନ୍ତି ?

: ହଁ, ସତ୍ୟବ୍ରତ ହସି ହସି କହିଲେ !

: ସରି ମିଷ୍ଟର ମହାପାତ୍ର ! ସେଲିର ନିମନ୍ତ୍ରଣ ରକ୍ଷା କରିବା ମୋର ସେଦିନ ସମ୍ଭବ ହୋଇନାହିଁ । ଘଟଣାଚକ୍ରରେ ଆମ କ୍ଲବର ଗୋଟିଏ ମ୍ୟାଚ ଖେଳିବାକୁ ମୁଁ ପୁରୀ ଚାଲିଯିବାକୁ ବାଧ୍ୟ ହୋଇଥିଲି । ଫଳରେ ସେଲିର ନିମନ୍ତ୍ରଣ ରକ୍ଷା କରିହେଲା ନାହିଁ । କିନ୍ତୁ କାହିଁକି କୁହନ୍ତୁ ତ ? ସେଦିନ କ'ଣ କିଛି ଦୁର୍ଘଟଣା ଘଟିଥିଲା ନା କ'ଣ ?

: ନା ନା, ଦୁର୍ଘଟଣା କିଛି ଘଟିନାହିଁ । ମୁଁ ଜଣେ ଲୋକକୁ ଖୋଜୁଛି । ଯିଏ ସେଲିର ସେଇ ଜନ୍ମଦିନ ଉତ୍ସବରେ ଯୋଗ ଦେଇଥିଲେ, ଅଥଚ ସେଲିର ବା ତାଙ୍କ ପରିବାରର ସେ ପରିଚିତ ନୁହନ୍ତି ।

: ଆଶ୍ଚର୍ଯ୍ୟ କଥା ତ ! ଲଳିତ କିଛି ସମୟ ଚିନ୍ତିତ ହୋଇ ବସି ରହି କହିଲା, ତା' ନାଁ ଆପଣ ଜାଣନ୍ତି ?

: ପୂରା ନାଁଟା ଜାଣିନାହିଁ । ତେବେ ଏତିକି ଜାଣିଛି ଯେ ମିଷ୍ଟର ଶ୍ରୀବାସ୍ତବ ।

: ସେ କ'ଣ କରନ୍ତି ?

: ସେ କଥା ମଧ୍ୟ ଜାଣିନାହିଁ ।

ଲଳିତ ହସି ହସି କହିଲା : ଆପଣ ମିଷ୍ଟର ଶ୍ରୀବାସ୍ତବଙ୍କୁ ଖୋଜିବାକୁ ଆସିଛନ୍ତି ଲଳିତ ପଟ୍ଟନାୟକ ଘରକୁ ? ନା, ମିଷ୍ଟର ମହାପାତ୍ର । ଏହା ମୋଟେ ମୁଁ ବିଶ୍ୱାସ କରିପାରିବି ନାହିଁ । ସତ୍ୟ ଘଟଣାଟା ଆପଣ ମୋତେ କୁହନ୍ତୁ । ଘଟଣାଟା କ'ଣ ସେଲିର ବା ତା' ପରିବାର ସଂକ୍ରାନ୍ତୀୟ କିଛି ?

: ନା ନା ଲଳିତ ବାବୁ, ଆପଣ ବିଶ୍ୱାସ କରନ୍ତୁ ସେଲି ବା ତା' ପରିବାରର ଏ ଘଟଣା ସହିତ ସାମାନ୍ୟତମ ଲିଙ୍କ୍ ନାହିଁ ।

ଆପଣ ଜାଣିଲେ କିପରି ସେଲି ବା ତାଙ୍କ ପରିବାର ସହିତ ମୋର ପରିଚୟ ଅଛି ବୋଲି ?

: ମୁଁ ଜାଣିଲି ସେଲିର ନିମନ୍ତ୍ରଣ ଲିଷ୍ଟରୁ । ସେ ତା'ର ଯେତେ ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣ କରିଥିଲା, ତା' ଭିତରୁ ଆପଣ ଜଣେ ।

: ଆପଣ କ'ଣ ସେଲିର ପ୍ରତ୍ୟେକ ନିମନ୍ତ୍ରିତ ଅତିଥିମାନଙ୍କ ଘରକୁ ଯାଇ ମିଷ୍ଟର ଶ୍ରୀ ବାସ୍ତବଙ୍କୁ ଖୋଜୁଛନ୍ତି ?

: ନା, ଲଳିତ ବାବୁ, ସେଇଟା ସମ୍ଭବ ନୁହେଁ, ଉଚିତ ବି ନୁହେଁ । ମୁଁ କୋଡ଼ୋଟି ସିଲେକ୍‌ଟେଡ୍ ନିମନ୍ତ୍ରିତ ଅତିଥିମାନଙ୍କ ଘରକୁ ଯାଇ ମିଷ୍ଟର ଶ୍ରୀବାସ୍ତବଙ୍କୁ ଖୋଜିବାକୁ ମନସ୍ଥ କରିଛି । ତେବେ ସେଇ ସିରିଜ୍‌ରେ ଆପଣ ପ୍ରଥମ ।

ଲଳିତ କହିଲା : ଏ କଥା ସେଲି ଜାଣେ ?

ସତ୍ୟବ୍ରତ ହସି ହସି କହିଲେ : ଏ ବିଷୟ ସେଲି ଜାଣିବା କ'ଣ ଉଚିତ ଲଳିତ ବାବୁ ? ସେ ଜାଣିଥିଲେ ନିଶ୍ଚୟ ମୋତେ ଅନୁମତି ଦେଇ ନ ଥାନ୍ତେ ତାଙ୍କର ବନ୍ଧୁବାନ୍ଧବମାନଙ୍କୁ ବିରକ୍ତ କରିବା ପାଇଁ ।

: କିନ୍ତୁ କେସ୍‌ଟା କ'ଣ ?

: କେସ୍‌ଟା ଗୋଟାଏ ଡକାୟତି । ଘଟଣାଟା ଘଟିଛି କଲିକତାରେ, ଜଣେ ବିତ୍ତଶାଳୀ ଲୋକଙ୍କର ବହୁ ଅଳଙ୍କାରପତ୍ର ଚୋରି ହୋଇଛି । ସେଇ କେସ୍‌ଟା ମୁଁ ତଦନ୍ତ କରୁଛି । ବିଶ୍ୱସ୍ତ ସୂତ୍ରରୁ ହଠାତ୍ ଖବର ପାଇଲି ଯେ ସେଲିର ଜନ୍ମ ତିଥିରେ ଯେଉଁ ନିମନ୍ତ୍ରିତମାନେ ଆସିଥିଲେ, ସେମାନଙ୍କ ଭିତରୁ ଜନୈକା ମହିଳାଙ୍କ କଣ୍ଠରେ ଚୋରି ହୋଇଥିବା ଗୋଟିଏ ହାର ଦେଖା ଯାଇଥିଲା । ତାହା ପୁଣି ଏତେ କମ୍ ସମୟ ପାଇଁ ଯେ, ତାହାର ସଠିକତା ନିର୍ଣ୍ଣୟ କରିବା ପୂର୍ବରୁ ଭଦ୍ରମହିଳାଙ୍କୁ ମିଷ୍ଟର ଶ୍ରୀବାସ୍ତବ ନାମଧାରୀ ଜଣେ ୟଙ୍ଗମ୍ୟାନ୍ ସେଠାରୁ ଦ୍ରୁତ ବାହାର କରିନେଇ ଯାଇଥିଲେ । ଅବଶ୍ୟ ଏଗୁଡ଼ିକ ସମସ୍ତ ରିପୋର୍ଟିଂ । ଏହାର ସତ୍ୟତା ସମ୍ବନ୍ଧରେ ମୋତେ ତଦନ୍ତ କରିବାକୁ ହେଉଛି ।

ଲଳିତ ନୀରବରେ ସବୁକଥା ଶୁଣିସାରି କହିଲା : ମୋର ମନେ ହେଉଛି ଆପଣଙ୍କ ସହିତ ଏ ଘଟଣାର ତଦନ୍ତ ପାଇଁ ମୁଁ ବି ବାହାରି ପଡ଼ନ୍ତି ।

ସତ୍ୟବ୍ରତ କହିଲେ : ଆସନ୍ତୁ, ମୋର ଆପତ୍ତି ନାହିଁ । କିନ୍ତୁ ମୁଁ ଯେଉଁ ଉଦ୍ଦେଶ୍ୟରେ ଆସିଥିଲି, ଆପଣ ସେ ଉଦ୍ଦେଶ୍ୟ ପୂରଣ କରିବାକୁ ଦେଉ ନାହାନ୍ତି ।

ଲଳିତ କହିଲା : ମୁଁ ଦୁଃଖିତ ସାର୍ ! ମୋତେ ଆପଣ ଭୁଲ୍ ବୁଝିବେ ନାହିଁ । ସେଲିକୁ ମୁଁ ଚିହ୍ନେ । କିନ୍ତୁ ଦୁର୍ଭାଗ୍ୟବଶତଃ ସେଦିନ ମୁଁ ତା'ର ନିମନ୍ତ୍ରଣ ରକ୍ଷାକରିପାରି ନଥିଲି । ସେଥିପାଇଁ ମୋତେ ଅବଶ୍ୟ କୈଫିୟତ ଦେବାକୁ ପଡ଼ିଥିଲା । କିନ୍ତୁ ଏହି ଶ୍ରୀବାସ୍ତବ ଭଦ୍ରଲୋକଙ୍କ ସମ୍ବନ୍ଧରେ ମୋତେ କିଛି ଜଣାନାହିଁ ।

: ହୁଁ । ସତ୍ୟବ୍ରତ ଉଠି ଠିଆ ହେଲେ । କହିଲେ, ମୁଁ ଆଜି ଆସୁଛି ଲଳିତ ବାବୁ । ପୁଣି ଥରେ ଦି'ଥର ଆପଣଙ୍କୁ ଆସି ବିରକ୍ତ କରିପାରେ ।

ଲଳିତ ଲଜ୍ଜିତ କଣ୍ଠରେ କହିଲା : ଏ ଆପଣ କ'ଣ କହୁଛନ୍ତି ସାର୍ । ଦରକାର ହେଲେ ମୋତେ ଫୋନ୍ କରିବେ । ମୁଁ ନିଜେ ଯାଇ ଆପଣଙ୍କ ଅଫିସ୍‌ରେ ହାଜିରା ଦେଇଆସିବି ।

ସତ୍ୟବ୍ରତ ନୀରବରେ ଧୀରେ ଧୀରେ ତଳକୁ ଓହ୍ଲେଇ ଆସିଲେ ।

ପଛେ ପଛେ ଲଳିତ ମଧ୍ୟ ଓହ୍ଲାଉଥିଲା ।

ସତ୍ୟବ୍ରତ କହିଲେ  ଆପଣ ଚଉଧୁରୀ ବଜାର ଯିବେ ନା ଲଳିତ ବାବୁ ! ଆସନ୍ତୁ ମୁଁ ସେଇ ବାଟେ ଯିବି ।

ସତ୍ୟବ୍ରତ ଗାଡ଼ିର ଦରଜା ଖୋଲି ଭିତରେ ପଶିଲେ ।

ବାଁ ପାଖରେ ଲଳିତ ବସିଲା ।

ଚାନ୍ଦିନୀ ଚଉକ ଛକରେ ଟ୍ରାଫିକ୍ ଜାମ ଥିବାରୁ ସତ୍ୟବ୍ରତ ଗାଡ଼ି ବନ୍ଦ କରିବାକୁ ବାଧ୍ୟ ହେଲେ ।

ବାଟରେ ଲଳିତ ସହିତ ଆଉ କିଛି କଥାବାର୍ତ୍ତା ହୋଇ ନଥିଲା ।

ହଠାତ୍ ସତ୍ୟବ୍ରତ ପ୍ରଶ୍ନ କଲେ : ସେଲି ସହିତ ଆପଣଙ୍କର କେତେ ଦିନରୁ ପରିଚୟ ଲଳିତ ବାବୁ ?

: ଉଁ । ଲଳିତ ଟିକିଏ ଅନ୍ୟମନସ୍କ ଥିଲା । ହଠାତ୍ ଆତ୍ମସ୍ଥ ହୋଇ କହିଲା, ସେ ଅନେକ ଦିନରୁ । ସେ ମୋର କ୍ଲାସମେଟ୍ ଥିଲା ।

ସାମ୍‌ନାଟା ଫାଙ୍କା ହୋଇଯିବାରୁ ସତ୍ୟବ୍ରତ ଗାଡ଼ିରେ ଷ୍ଟାର୍ଟ ଦେଇ ଆଗେଇଲା ବେଳକୁ କିଏ ଜଣେ ଚିତ୍କାର କରି ଡାକିବାର ଶୁଣାଗଲା – ଲଳିତ, ଏ ଲଳିତ ।

ଲଳିତ ବାହାରକୁ ଚାହିଁଲା । ସତ୍ୟବ୍ରତଙ୍କ କାନରେ ମଧ୍ୟ ସେ ଡାକଟା ବାଜିଥିଲା । ସେ ଗାଡ଼ିଟା ଆଗକୁ ନ ନେଇ ମୁହୂର୍ତ୍ତକ ପାଇଁ ବାଁ ଆଡ଼କୁ ଚାହିଁଲେ ।

ସତ୍ୟବ୍ରତ ଦେଖିଲେ ଜଣେ ତରୁଣ ଛୁଟି ଛୁଟି ଗାଡ଼ି ପାଖକୁ ଆସୁଛି ।

ଲଳିତ ଗାଡ଼ିର ଦରଜାଟା ଖୋଲୁ ଖୋଲୁ କହିଲା : ମୋର ବନ୍ଧୁ ଶରଦିନ୍ଦୁ, ଆମ ଘରକୁ ବୋଧହୁଏ ଯାଉଥିଲା । ମୁଁ ଏଉଠୁ ଓହ୍ଲେଇ ଯାଉଛି ସାର୍ ।

ସତ୍ୟବ୍ରତ କିଛି କହିବା ପୂର୍ବରୁ ଶରଦିନ୍ଦୁ ଗାଡ଼ି ପାଖକୁ ଆସି ଯାଇଥିଲା । ସତ୍ୟବ୍ରତ ଶରଦିନ୍ଦୁକୁ ଦେଖିଲେ । କିନ୍ତୁ ହଠାତ୍ କେଜାଣି କାହିଁକି ସତ୍ୟବ୍ରତଙ୍କର ସର୍ବାଙ୍ଗ କିପରି ଶିହରି ଉଠିଲା ।

ଲଳିତ ଗାଡ଼ିର ଦରଜା ବନ୍ଦକରି ନମସ୍କାର ଜଣାଇ ଶରଦିନ୍ଦୁ ସହିତ ଆଗେଇ ଯାଉଥିଲା । କିନ୍ତୁ ସତ୍ୟବ୍ରତ କ'ଣ ଯେପରି ଏକ ଅମୂଲ୍ୟ ସମ୍ପଦ ହାତମୁଠାରେ ପାଇ ହରେଇ ଦେଲା ପରି ମନେ ହୋଇଥିଲା । କ'ଣ, କ'ଣ ସେଇ ପଦାର୍ଥ !

ଓ ହଁ, ସତ୍ୟବ୍ରତ ଚଞ୍ଚଳ ହୋଇଉଠିଥିଲେ । ଏ ଯେ ତାଙ୍କର ସେଇ ପରିଚିତ ଗନ୍ଧ । କ'ଣ ସେ ବିଦେଶୀ ସେଣ୍ଟ୍‌ଟିର ନାମ ? ହଁ ହଁ ମନେପଡ଼ିଲା, ବ୍ଲୁ ହେଭେନ୍ । ଫ୍ୟାସନ ହାଉସ୍‌ରେ ସଦାନନ୍ଦ ସାମନ୍ତରାୟ ସତ୍ୟବ୍ରତ ଦେହରେ ସ୍ପ୍ରେ କରି ଦେଇଥିଲେ । ଆଉ ସେଇ ବ୍ଲୁ ହେଭେନ୍‌ର ଚିହ୍ନରା ଗ୍ରାହକ ଶ୍ରୀବାସ୍ତବ । ଅଥଚ ସେଇ ବ୍ଲୁ ହେଭେନ୍‌ର ଗନ୍ଧ ହଠାତ୍ ସତ୍ୟବ୍ରତଙ୍କ ନାକକୁ ଆସିଲା କିପରି ?

ସତ୍ୟବ୍ରତ ଦୂରକୁ ଚାହିଁ ଦେଖିଲେ, ଲଳିତ ଓ ଶରଦିନ୍ଦୁ ଆଗେଇ ଚାଲିଛନ୍ତି । ଅଥଚ ଗନ୍ଧଟା ଶରଦିନ୍ଦୁ ଦେହରୁ ଆସିଲା କି ନାହିଁ, ସତ୍ୟବ୍ରତ ସ୍ଥିର ନିଶ୍ଚିତ ହୋଇପାରିଲେ ନାହିଁ ।

ଗାଡ଼ିରେ ସେ ଷ୍ଟାର୍ଟ ଦେଲେ ଏବଂ ସେମାନଙ୍କ ପାଖକୁ ଆଗେଇ ଯାଉ ଯାଉ ଦେଖିଲେ, ସେମାନେ ସାମ୍‌ନା ରେଷ୍ଟୁରେଣ୍ଟ ଭିତରକୁ ପଶି ଯାଉଛନ୍ତି । ସତ୍ୟବ୍ରତ ମହାସମସ୍ୟାରେ ପଡ଼ିଗଲେ । ରେଷ୍ଟୁରେଣ୍ଟ୍ ସାମ୍‌ନାରେ ଗାଡ଼ି ରଖି କିଛି ସମୟ ଚିନ୍ତା କଲେ । ତା'ପରେ ଟିପାଖାତାଟି ପକେଟ୍‌ରୁ ବାହାର କରି ଦେଖିଲେ, ସେଲିର ବନ୍ଧୁବାନ୍ଧବୀମାନଙ୍କ ଲିଷ୍ଟ୍‌ରେ ଶରଦିନ୍ଦୁର ନାଁ ନାହିଁ ।

କିନ୍ତୁ ରହି ରହି ବ୍ଲୁ ହେଭେନ୍‌ର ଗନ୍ଧ ଯେପରି ବାରମ୍ବାର ସତ୍ୟବ୍ରତ ମହାପାତ୍ରଙ୍କ ନାକରେ ବାଜି ଯାଉଥିଲା ।

ନା, ସେ ବି ରେଷ୍ଟୁରେଣ୍ଟକୁ ଯିବେ ଏବଂ ଗନ୍ଧଟା ଶରଦିନ୍ଦୁ ଦେହରୁ ପାଇଛନ୍ତି କି ନାହିଁ, ଏ ସମ୍ବନ୍ଧରେ ଦୃଢ଼ନିଶ୍ଚୟ ହୋଇ ଫେରିବେ ।

ରେଷ୍ଟୁରେଣ୍ଟ୍ ଭିତରେ ବେଶୀ ଲୋକ ନ ଥିଲେ ।

ସତ୍ୟବ୍ରତ ଭିତରକୁ ପଶିଯିବା ମାତ୍ରକେ ଲଳିତର ଦୃଷ୍ଟି ଆକର୍ଷଣ କଲେ ।

ଲଳିତ ଡାକିଲା : ଆସନ୍ତୁ ସାର୍ । ଆପଣ ଚା' ନାଁ କଫି କ'ଣ ପିଇବେ ?

ସତ୍ୟବ୍ରତ ରେଷ୍ଟୁରେଣ୍ଟ ଭିତରେ ପଶିବା କ୍ଷଣି ତାଙ୍କ ନାକରେ ବ୍ଲୁ ହେଭେନ୍‌ର ଗନ୍ଧ ବାଜିଥିଲା ! ସେ ଲଳିତ ଓ ଶରଦିନ୍ଦୁର ପାଖକୁ ଆଗେଇ ଗଲେ, ଗନ୍ଧଟା ତାଙ୍କୁ ଆହୁରି ପୁଲକିତ କରିଲା । ପରିଶେଷରେ ସେ ସ୍ଥିର ନିଶ୍ଚିତ ହେଲେ ଯେ

ଶରଦିନ୍ଦୁ ଦେହରୁ ସେହି ମଧୁର ଗନ୍ଧଟି ବାହାରି ସମଗ୍ର ରେଷ୍ଟୁରେଣ୍ଟକୁ ପୁଲକିତ କରୁଛି ।

ସତ୍ୟବ୍ରତ ଗୋଟାଏ ଚେଆର ଅଧିକାର କରି ବସୁ ବସୁ କହିଲେ : ଖାଲି ଚା' କିମ୍ବା କଫିରେ ମୋର ଆତ୍ମା ତୃପ୍ତି ହେବନାହିଁ । ପେଟରେ ଭୀଷଣ ଭୋକ । ବରଂ ଆପଣମାନେ କ'ଣ ଖାଇବେ କୁହନ୍ତୁ । ମୁଁ ଅର୍ଡର ଦେଉଛି ।

ଲଳିତ ସତ୍ୟବ୍ରତଙ୍କ କଥା ଆଡ଼େ କାନ ନ ଦେଇ କହିଲା : ଶରଦିନ୍ଦୁକୁ ମୁଁ ଆପଣଙ୍କ କଥା କହୁଥିଲି ।

ଶରଦିନ୍ଦୁ ନମସ୍କାର କଲା ।

ସତ୍ୟବ୍ରତ ପ୍ରତିନମସ୍କାର କଲେ ।

: ଆପଣଙ୍କ ସହିତ ହଠାତ୍ ଏପରି ଦେଖା ହେବ ମୁଁ କେବେ ଆଶା କରିପାରି ନଥିଲି । ଶରଦିନ୍ଦୁ କହିଲା ।

ସତ୍ୟବ୍ରତ ସ୍ମିତ ହସି କହିଲେ : ହଠାତ୍ ବହୁତ ଘଟଣା ଘଟେ ଏବଂ ସେହି ଘଟଣାର ମୂଲ୍ୟ ଅନେକ ସମୟରେ ଅତ୍ୟଧିକ ହୋଇଥାଏ । ଯାହାହେଉ, ଆପଣଙ୍କ ସହିତ ପରିଚୟ ହେଲା, ଆପଣ ଲଳିତବାବୁଙ୍କର ବନ୍ଧୁ, ଆନନ୍ଦର କଥା ।

ବୟ ଆସି ଟେବଲ ପାଖରେ ଠିଆ ହୋଇଥିଲା । ସତ୍ୟବ୍ରତ ତିନିଜଣଙ୍କ ପାଇଁ ତିନିପ୍ଲେଟ ଖାଦ୍ୟର ଅର୍ଡର ଦେଇ କହିଲେ : ଆପଣ ଯାହା ମନେକରନ୍ତୁ ଲଳିତବାବୁ, ଶରଦିନ୍ଦୁବାବୁଙ୍କୁ କିନ୍ତୁ ମୋତେ ଖୁବ୍ ଭଲ ଲାଗିଛି ।

: ହଠାତ୍ ମୋତେ ଆପଣଙ୍କୁ କାହିଁକି ଭଲ ଲାଗିଲା ?

: କିଏ କାହିଁକି କାହାକୁ ଭଲ ଲାଗେ ତା'ର ବିଶ୍ଳେଷଣ କରିବା ବଡ଼ ଶକ୍ତ ପାଠ ଶରଦିନ୍ଦୁ ବାବୁ । ସତ କହିବାକୁ ଗଲେ ଆପଣ ଯେଉଁ ସେଣ୍ଟ୍‌ଟି ବ୍ୟବହାର କରୁଛନ୍ତି, ସେଇ ଗନ୍ଧଟା କିନ୍ତୁ ମୋତେ ଆକୃଷ୍ଟ କରିଛି ।

: ମୋତେ ବି । ଲଳିତ କହିଲା, ମୁଁ କିନ୍ତୁ କହିବି କହିବି ହୋଇ ଏଯାଏ କହିପାରି ନଥିଲି ।

ସତ୍ୟବ୍ରତ କହିଲେ : ସେଣ୍ଟ୍‌ଟି କେଉଁ କମ୍ପାନୀର ଶରଦିନ୍ଦୁ ବାବୁ ! ମନ ହେଉଛି ମୁଁ ଗୋଟାଏ ଏଇ ମୁହୂର୍ତ୍ତରେ କିଣି ପକାଇବି ।

ଶରଦିନ୍ଦୁ ହସି ହସି କହିଲା : ସେଣ୍ଟ୍‌ଟି ଯେ ନିଶ୍ଚୟ ଉଚ୍ଚକୋଟୀର, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । କିନ୍ତୁ ସବୁଠାରୁ ଦୁଃଖର କଥା ସେଣ୍ଟ୍‌ଟିର ନାଁ, ଗାଁ, ଠିକଣା ମୋତେ କିଛି ଜଣାନାହିଁ । ଗୋଟାଏ ଦୋକାନରେ ଯାଇ ମୁଁ ଟିକିଏ ଦାମୀ

ସେଣ୍ଟ୍ ଖୋଜୁଥିଲି, ସେଇ ଦୋକାନଦାର ଭଦ୍ରଲୋକ ଏଇ ସେଣ୍ଟ୍‌ଟା ମୋ' ଦେହରେ ସ୍ପ୍ରେ କରିଦେଲେ । ସେଣ୍ଟ୍‌ଟା ଭଲ ହେଲେ କ'ଣ ହେବ, ଦାମ୍‌ଟା ଅତ୍ୟଧିକ । ମୁଁ କାଲି କିଣିବି କହି ସେଠାରୁ ଛୁଟି ପକେଇ ଆସିଛି ।

ଶରଦିନ୍ଦୁର କଥା ଶୁଣି ସତ୍ୟବ୍ରତଙ୍କର ମୁହଁଟା କିପରି ମଳିନ ହୋଇପଡ଼ିଲା । ତାଙ୍କର ଆଶାଆକାଂକ୍ଷା ସବୁ ଯେପରି ମୁହୂର୍ତ୍ତକ ମଧ୍ୟରେ ବ୍ୟର୍ଥ ହୋଇଗଲା । ସେ ହଠାତ୍ ଉଠି ଠିଆ ହୋଇପଡ଼ି ବିଚଳିତ ସ୍ୱରରେ କହିଲେ : ଆପଣମାନେ କିଛି ମନେକରିବେ ନାହିଁ । ଗୋଟାଏ ଅର୍ଜେଣ୍ଟ କାମ ମୁଁ ଭୁଲିଯାଇଛି । ଆପଣମାନେ ବସନ୍ତୁ । ମୋତେ ଏଇ ମୁହୂର୍ତ୍ତରେ ଯିବାକୁ ହେବ ।

ସତ୍ୟବ୍ରତ ଉଠିଲେ ଏବଂ ଏଣେ ତେଣେ କୁଆଡ଼େ ନ ଚାହିଁ, ସିଧା ବାହାରିଗଲେ ରାସ୍ତାଆଡ଼କୁ ।

ଲଳିତ ପଛରୁ ଡାକୁଥିଲା : ସାର୍, ବୟ ଖାଇବା ଆଣିଲାଣି, ଆପଣ ଟିକିଏ ଖାଇଦେଇ ଯାଆନ୍ତୁ ।

ସତ୍ୟବ୍ରତଙ୍କ କାନରେ ଯେପରି କିଛି କଥା ବାଜିଲା ନାହିଁ । ସେ ସିଧା ଯାଇ ଗାଡ଼ିର ଦରଜା ଖୋଲିଲେ ଏବଂ ଷ୍ଟାର୍ଟଦେଇ ଆଖି ପିଛୁଳାକେ ସେଠାରୁ ଅଦୃଶ୍ୟ ହୋଇଗଲେ ।

ସକାଳୁ ବିଛଣାରୁ ଉଠିବା ପୂର୍ବରୁ ସତ୍ୟବ୍ରତଙ୍କ ଟେଲିଫୋନଟା କାନପାଖରେ ବାଜିଉଠିଲା ।

ସତ୍ୟବ୍ରତ ବାଧ୍ୟହୋଇ ରିସିଭରଟା କାନରେ ଦେଲେ ।

: ହ୍ୟାଲୋ ?

: ମୁଁ ପଙ୍କଜ ମଲ୍ଲିକ କହୁଛି । ଅପରପ୍ରାନ୍ତରୁ ଶୁଣାଗଲା ।

ସତ୍ୟବ୍ରତ ପଙ୍କଜ ମଲ୍ଲିକଙ୍କ ନାଁ ଶୁଣି ବିଛଣାରୁ ଉଠିବସିଲେ । ସଙ୍ଗେ ସଙ୍ଗେ ପ୍ରଶ୍ନ କଲେ : ଏଥର କ'ଣ ଖୁବ୍ ବେଶୀ କିଛି ଅପହୃତ ହୋଇଛି ସାର୍ ?

ପଙ୍କଜ ମଲ୍ଲିକ ସହଜ ସ୍ୱରରେ ଉତ୍ତର ଦେଲେ : ଏଥର ମଧ୍ୟ ଗୋଟିଏ

ହାର ଯାଇଛି । କିନ୍ତୁ ଏଥରର ଏକ ବ୍ୟତିକ୍ରମ ହେଉଛି ଷ୍ଟ୍ରଂ ରୁମ୍‌ର ଦରଜା ବନ୍ଦ କରାହୋଇ ନାହିଁ । ସକାଳୁ ଷ୍ଟ୍ରଂ ରୁମ୍ ଖୋଲା ରହିଥିବାର ଦେଖି ମୁଁ ଖୁବ୍ ବିଚଳିତ ହୋଇପଡ଼ିଥିଲି । କିନ୍ତୁ ଆସାମୀ ମୋ' ସ୍ତ୍ରୀଙ୍କର ଆଉ ଗୋଟିଏ ହାର ଛଡ଼ା ଅନ୍ୟ କିଛି ନେଇନାହିଁ କିମ୍ବା କେଉଁଥିରେ ହାତ ଦେଇନାହିଁ ।

: ଆପଣ କ'ଣ ଷ୍ଟ୍ରଂ ରୁମ୍‌ର ଦରଜା ବନ୍ଦ କରିଦେଇଛନ୍ତି ? ସତ୍ୟବ୍ରତ ପଚାରିଲେ ।

: ହଁ, ମୁଁ ବନ୍ଦକରି ଦେଇଛି । ବନ୍ଦ ନ କରି ଉପାୟ ନାହିଁ । କାରଣ ସେଲି ବା ଅନ୍ୟ କେହି ଜାଣିଲେ କଥାଟା ବାହାରେ ପ୍ରକାଶ ହୋଇଯିବ । ସେଇଥିପାଇଁ...

: ସେଲି ବର୍ତ୍ତମାନ କ'ଣ କରୁଛି ? ସତ୍ୟବ୍ରତ ପଚାରିଲେ ।

: ସେଲିକୁ ମୁଁ ଦେଖିନାହିଁ । ତେବେ ସେ ଶୋଇଥିବ । ସେ ପ୍ରାୟ ସାତଟା ଆଠଟା ଯାଏ ଶୁଏ ।

: ମୁଁ ସଙ୍ଗେସଙ୍ଗେ ଯାଉଛି । ଜାଗାଟା ମୋର ଥରେ ଦେଖିବା ଏକାନ୍ତ ଦରକାର ।

ଆସନ୍ତୁ । କିନ୍ତୁ ଆପଣ କବି ସରୋଜ ପଟ୍ଟନାୟକ ବେଶରେ ଆସିବେ । ଅନ୍ୟ ବେଶରେ ଆସିଲେ ଅସୁବିଧା ଅଛି ।

: ଆଚ୍ଛା, ଆଚ୍ଛା, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ।

ସତ୍ୟବ୍ରତ ରିସିଭରଟା ରଖିଦେଇ ସଙ୍ଗେ ସଙ୍ଗେ ବିଛଣାରୁ ଉଠିଲେ ଏବଂ ସକାଳର ନିତ୍ୟକର୍ମ ଶେଷ କରିବାକୁ ବାଥ୍‌ରୁମ୍ ଚାଲିଗଲେ ।

ପନ୍ଦର ମିନିଟ୍ ମଧ୍ୟରେ ସେ ସବୁକାମ ଶେଷକରି କବି ସରୋଜ ପଟ୍ଟନାୟକ ବେଶରେ ଇନ୍ଦ୍ରଜାଲରୁ ବାହାରିପଡ଼ିଲେ ।

ପଙ୍କଜ ମଲ୍ଲିକ ସତ୍ୟବ୍ରତଙ୍କୁ ଅପେକ୍ଷା କରିଥିଲେ । ଗାଡ଼ିଟା ଦରଜାରେ ଲାଗିବା କ୍ଷଣି ସେ ବାହାରି ଆସିଲେ ଏବଂ ସତ୍ୟବ୍ରତଙ୍କୁ ସଙ୍ଗରେ ନେଇ ଉପରକୁ ଉଠିଗଲେ ।

ଷ୍ଟ୍ରଂ ରୁମ୍ ସଂଲଗ୍ନ ଘର ଭିତରେ ପ୍ରବେଶ କରି ପଙ୍କଜ ମଲ୍ଲିକ କହିଲେ : କାଲି ରାତିରେ ଶୋଇବା ପୂର୍ବରୁ ମୁଁ ଥରେ ଷ୍ଟ୍ରଂ ରୁମ୍‌ର ତାଲା ପରୀକ୍ଷା କରି ଦେଖିଥିଲି । ଏ କଥା ମୋର ମନେଅଛି । କିନ୍ତୁ ସକାଳୁ ଯେତେବେଳେ ଉଠିଆସି ଦେଖିଲି, ଷ୍ଟ୍ରଂ ରୁମ୍‌ର ଲୁହାକବାଟଟା ସଂପୂର୍ଣ୍ଣ ମୁକୁଳା, ଛାତିଟା ମୋର କମ୍ପିଉଠିଲା । ଜୀବନରେ ଏଇ ପ୍ରଥମଥର ମୁଁ ଡରି ଯାଇଥିଲି ।

ସତ୍ୟବ୍ରତ ନୀରବରେ କିଛି ସମୟ ବସିରହି କହିଲେ : ଆପଣଙ୍କ ବେଡ୍ ରୁମ୍‌ଟା ତ ଏଠାରୁ ଦୁଇଟା ରୁମ୍ ଛାଡ଼ି ?

: ହଁ ।

: ଆପଣ କାଲି କେତେ ରାତିଯାଏ ଚେଇଁଥିଲେ ?

: ସାଧାରଣତଃ ମୁଁ ଦଶଟା ଖୁବ୍ ବେଶୀ ହେଲେ ସାଢ଼େ ଦଶଟା ଯାଏ ତିଆଁଏ । କାଲି ବୋଧହୁଏ ଦଶଟା ବେଳେ ଶୋଇପଡ଼ିଥିଲି ।

: ରାତିରେ ମଝିରେ ଆଉ ଆପଣଙ୍କର ନିଦ ଭାଙ୍ଗେ ନାହିଁ ?

: ନା, କେବେ କିମିତି ଥରେ ଅଧେ ଉଠେ । ନ ହେଲେ ମୋର ନିଦ ଭାଙ୍ଗେ ଠିକ୍ ସାଢ଼େ ପାଞ୍ଚଟାରୁ ଛ'ଟା ମଧ୍ୟରେ । ଆଜି ମଧ୍ୟ ସାଢ଼େ ପାଞ୍ଚଟାରେ ମୋର ନିଦ ଭାଙ୍ଗିଥିଲା ଏବଂ ହଠାତ୍ କାହିଁକି ମୋର ମନେହେଲା ଷ୍ଟ୍ରଂ ରୁମ୍‌ଟା ଥରେ ଦେଖିଆସିବା ପାଇଁ । ଆସି ଦେଖିଲି, ଏ ଘରର ଦରଜା ମୁକୁଳା । ଷ୍ଟ୍ରଂ ରୁମ୍‌ର ଲୁହାଦରଜାଟା ମଧ୍ୟ ମେଲା ।

: ତା'ପରେ ଆପଣ କ'ଣ କଲେ ?

: ଆପଣଙ୍କୁ ଫୋନ୍ କଲି ।

: ନା, ନା, ସେ କଥା ମୁଁ କହୁନାହିଁ । ଆପଣଙ୍କ କୋଠାର ଅନ୍ୟାନ୍ୟ ଦରଜା ସବୁ ବନ୍ଦ ହୁଏ ନା ନାହିଁ ?

: ହଁ, ନିଶ୍ଚୟ ହୁଏ ।

: କେଉଁ କେଉଁ ଦରଜା ବନ୍ଦ ହୁଏ ?

: ପ୍ରଥମତଃ ମେନ୍ ଗେଟ୍‌ରେ ଚାବି ଦିଆହୁଏ । ତା'ପରେ ଏକ ତାଲାର ପ୍ରଥମ ଦରଜାଟା ଭିତରୁ ବନ୍ଦ ହୁଏ । ତଳେ ଚାକରବାକରମାନେ ରୁହନ୍ତି । ଦୋ'ତାଲାର ମେନ୍ ଗେଟ୍‌ଟା ମଧ୍ୟ ଭିତରୁ ବନ୍ଦ ହୁଏ । ଆଉ ମୁଁ ମୋ' ଘର ଏବଂ ସେଲି ତା' ଘର ଭିତରୁ ବନ୍ଦକରି ଶୋଉ ।

: ଆପଣଙ୍କର ଏହି ମେନ୍ ଗେଟ୍ ସବୁ କିଏ ବନ୍ଦ କରେ ? ସତ୍ୟବ୍ରତ ପଚାରିଲେ ।

: ତଳେ ମେନ୍ ଗେଟ୍‌ଟା ଦରୱାନ ବନ୍ଦ କରେ । ଆଉ ଏକ ତାଲାର ମେନ୍ ଦରଜାଟା ଚାକରମାନଙ୍କ ଭିତରୁ କେହି ଜଣେ ବନ୍ଦ କରେ । ଉପର ବ୍ୟବସ୍ଥା ମଧ୍ୟ ସେଇଆ । ପଙ୍କଜ ମଲ୍ଲିକ କହିଲେ ।

: କାଲି ରାତିରେ ଆପଣଙ୍କର ସବୁ ଗେଟ୍‌ଯାକ ଯଥାଯଥ ଭାବରେ ବନ୍ଦ ହୋଇଥିଲା ?

: ହୋଇଥିବ ।

: ଆପଣ ଜାଣି ନାହାନ୍ତି ?

: ନା, ତେବେ ପଚାରି ବୁଝିଲେ ହେବ !

: ନା, ବର୍ତ୍ତମାନ କାହାରିକୁ ପଚାରିବା ଦରକାର ନାହିଁ । ଉପରେ ଆପଣଙ୍କର କେଇଜଣ ଚାକରଚାକରାଣୀ ଶୁଅନ୍ତି ?

: ଉପରେ କେବଳ ଜଣେ ଶୁଏ । ରାତି ଫାତିରେ କିଛି ଦରକାର ପଡ଼ିଲେ ତାକୁ ଡକା ହୁଏ । ସେ ଉଠି କାମଦାମ କରିଦିଏ ଏବଂ ଶୋଇବା ପୂର୍ବରୁ ସେଇ ଉପରର ଗେଟ୍ ବନ୍ଦ କରେ ।

ସତ୍ୟବ୍ରତ ହାତଘଡ଼ିକୁ ଚାହିଁ ଦେଖିଲେ, ଘଡ଼ିରେ ଆଠଟା ବାଜିବାକୁ ଯାଉଛି ।

ଆଉ କିଛି ସମୟର ନୀରବତା ପରେ ସତ୍ୟବ୍ରତ କହିଲେ : ସେଲି ବୋଧହୁଏ ଉଠିନାହିଁ ।

: ନା, ଉଠିଥିଲେ ସେ ପ୍ରଥମେ ମୋ' ପାଖକୁ ଆସି ଥାଆନ୍ତା ବୋଧହୁଏ କାଲି ଅଧିକ ରାତିରେ ଶୋଇଛି । ସେଇଥିପାଇଁ...

: ଅଧିକ ରାତିରେ ମାନେ ?

: ସେଲି ସାଧାରଣତଃ ଅଧିକ ରାତିଯାଏ ଚେଇଁ ବହି ପଢ଼େ । ତା'ର ସେଇ ଗୋଟିଏ ବଦଭ୍ୟାସ । ଯେଉଁ ବଦଭ୍ୟାସଟାକୁ ମୁଁ ଅନେକ ଦିନ ଚେଷ୍ଟାକରି ମଧ୍ୟ ଛଡ଼େଇ ପାରିଲି ନାହିଁ ।

: ତା'ହେଲେ... ସତ୍ୟବ୍ରତ କ'ଣ କହିବାକୁ ଯାଇ ନୀରବ ହୋଇଗଲେ ।

: ତା'ହେଲେ ମାନେ ? ଆପଣ କ'ଣ ଭାବୁଛନ୍ତି ? ପଙ୍କଜ ମଲ୍ଲିକ ପଚାରିଲେ ।

: ନା, ମୁଁ ଭାବୁଛି, ସେଲି ଯଦି ଅଧିକ ରାତ୍ରିଯାଏ ଶୋଇ ନ ଥାଏ, ତା'ହେଲେ ସେ କୌଣସି ଶବ୍ଦ ବା ଅନୁରୂପ କିଛି ଶୁଣିଛି କି ନାହିଁ ପଚାରିବାକୁ ହେବ ।

: ସେଲିକୁ କ'ଣ ଡାକିବି ?

: ନା, ବର୍ତ୍ତମାନ ଥାଉ । ଆଗ କହିଲେ, ଆପଣଙ୍କର ଏହି ଉପରେ ଯେଉଁ ଚାକରଟି ରୁହେ, ତା'ର ନାଁ କ'ଣ ?

: ତା' ନାଁ ଶଙ୍କର । ସେ ଅନେକ ଦିନରୁ ଆମ ଘରେ ଅଛି । ପଙ୍କଜ ମଲ୍ଲିକ କହିଲେ ।

: ଆପଣ ଆଜି ନିଦରୁ ଉଠିଲା ବେଳକୁ ଶଙ୍କର ଉଠିଥିଲା ?

: ନା, ସେ ଶୋଇଥିଲା । ମୁଁ ତାକୁ ଡାକି ଉଠାଇଲି ।

ତାକୁ କିଛି ପଚାରିଲେ ?

: ପଚାରିବି ବୋଲି ଭାବିଥିଲି, କିନ୍ତୁ ପଚାରିଲି ନାହିଁ । କାଳେ କଥାଟା ଜଣାଜଣି ହୋଇଯିବ ।

: ଆପଣ ଦୋ'ତାଲାର ମେନ୍ ଦରଜାଟା ଚେକ୍ କରିଥିଲେ ? ଖୋଲା ଥିଲା ନା ବନ୍ଦ ଥିଲା ?

: ନା, ମୁଁ ଚେକ୍ କରିନାହିଁ । ତେବେ ଶଙ୍କରକୁ ପଚାରିଲେ ସେ କହିପାରିବ । ଡାକିବି ଶଙ୍କରକୁ ?

: ହଁ ଡାକନ୍ତୁ ।

ପଙ୍କଜ ମଲ୍ଲିକ କିଛିକ୍ଷଣ ପାଇଁ ବାହାରକୁ ଉଠିଗଲେ । ଶଙ୍କରକୁ ସଙ୍ଗରେ ଧରି ସେ ଆସି ସତ୍ୟବ୍ରତଙ୍କ ପାଖରେ ପୁଣି ପହଞ୍ଚିଲେ ।

ସତ୍ୟବ୍ରତ ନୀରବରେ କିଛି ସମୟ ଶଙ୍କର ମୁହଁକୁ ଚାହିଁଲେ ।

ବୟସ ହୋଇଛି ଶଙ୍କରର । ମୁଣ୍ଡର ବାଳ ପାଚିଛି । କପାଳରେ ରେଖା ପଡ଼ିଛି । କିନ୍ତୁ ସ୍ୱାସ୍ଥ୍ୟ ବେଶ୍ ଭଲ ।

ସତ୍ୟବ୍ରତ କହିଲେ : ତମ ନାଁ ଶଙ୍କର ?

: ଆଜ୍ଞା । ଶଙ୍କର ଉତ୍ତର ଦେଲା ।

: କାଲି ରାତିରେ ତମେ କେତେବେଳେ ଶୋଇଲ ?

: ଅନେକ ରାତିରେ ।

: ଅନେକ ରାତିଯାଏ କାହିଁକି ଚେଇଁଥିଲ ?

: ମୁଁ ସବୁ ଦିନ ଚିଏଁ । ଉପରେ ବଡ଼ବାବୁ ଆଉ ଦେଈ ଶୋଇସାରିବା ପରେ ମେନ୍ ଦରଜା ବନ୍ଦ କରି ଶୁଏ ।

: କାଲି ମେନ୍ ଦରଜା ବନ୍ଦ କରିଥିଲ ?

: କରିଥିଲି ଆଜ୍ଞା ।

: ନା, କାଲି ତମେ ମେନ୍ ଦରଜା ବନ୍ଦ କରିବାକୁ ଭୁଲି ଯାଇଥିଲ । ଠିକ୍‌କରି ମନେପକାଇ ଦେଖ ।

: ନା, ଆଜ୍ଞା । ମୋର ସେ ଭୁଲ କେବେ ହୋଇ ନ ଥିଲା କିମ୍ବା କାଲି ବି ହୋଇନାହିଁ ।

: କେବେ ହୁଏତ ହୋଇ ନ ଥିଲା, କିନ୍ତୁ କାଲି ହୋଇଛି ଶଙ୍କର । କାଲି ତମେ ଦୋ'ତାଲାର ମେନ୍ ଦରଜା ବନ୍ଦ କରିବାକୁ ଭୁଲିଯାଇଛ ।

: ନା ଆଜ୍ଞା । ମୋର ଭୁଲ୍ ହୋଇନାହିଁ । ମୁଁ ମେନ୍ ଦରଜା ବନ୍ଦ କରିସାରି, ଘରର ଟିକିନିଖି କାମ ଶେଷକରି ଶୋଇବା ପୂର୍ବରୁ ପୁଣିଥରେ ଦରଜା ଦେଖିଆସେ, କାଲି ବି ଦେଖି ଆସିଥିଲି ।

: ସବୁ ବୁଝିଲି ଯେ, କିନ୍ତୁ ଆଜି ସକାଳୁ ତମେ ଯେତେବେଳେ ମେନ୍ ଦରଜା ଖୋଲିବାକୁ ଗଲ, କ'ଣ ଦେଖିଲ ?

: ଆଜ୍ଞା...। ଶଙ୍କର ନୀରବ ହୋଇ ହାତ ମଳିଲା ।

ସତ୍ୟବ୍ରତ ଉତ୍ସାହିତ ହୋଇ କହିଲେ : ନିଶ୍ଚୟ ତୁମେ ଦୋ'ତାଲାର ଏହି ମେନ୍ ଦରଜା ଖୋଲା ଥିବାର ଦେଖିଲ ।

ଶଙ୍କର ମୁଣ୍ଡ ହଲାଇ ସମ୍ମତ ଜଣାଇଲା ।

ସତ୍ୟବ୍ରତ ପୁଣି ପଚାରିଲେ : ଦରଜା ଖୋଲା ଥିବାର ଦେଖି ତମର କ'ଣ ମନେହେଲା ?

: ଆଜ୍ଞା ମୁଁ ଭାବିଲି ଦେଈ କିମ୍ବା ବଡ଼ବାବୁ କେହି ଦରଜା ଖୋଲିଥିବେ ।

: ସେପରି କ'ଣ ଦିନେ ଦିନେ ହୁଏ ?

: ହୁଏ ଆଜ୍ଞା । ଅବଶ୍ୟ ଖୁବ୍ କମ୍ ।

: ତା'ହେଲେ କିଏ ଦରଜା ଖୋଲିଥିଲା ବୋଲି ତମର ମନେହେଉଛି ?

: ମୁଁ ଜାଣିନାହିଁ ଆଜ୍ଞା । ଆପଣ ବଡ଼ବାବୁ କିମ୍ବା ଦେଈଙ୍କୁ ପଚାରିଲେ ସେମାନେ କହିପାରିବେ ।

: ବଡ଼ବାବୁ ତ ଖୋଲି ନାହାନ୍ତି । ତମ ଦେଈ ଏଯାଏ ବିଛଣାରୁ ଉଠି ନାହାନ୍ତି । ତେଣୁ ଏ ଦୁଇଜଣଙ୍କ ମଧ୍ୟରୁ କେହି ଦରଜା ଖୋଲିବାର ପ୍ରଶ୍ନ ଉଠୁନାହିଁ । ତୁମେ ତ କହୁଛ ତୁମେ ଖୋଲିନାହଁ । ତା'ହେଲେ କିଏ ସେହି ଚତୁର୍ଥ ବ୍ୟକ୍ତି ଯିଏ ଦରଜା ଖୋଲିଥିଲା ? କାଲି ରାତିରେ ଏହି ଦୋ'ତାଲାରେ ରାତ୍ରି କଟାଇଥିଲା ? ତୁମେ ତାକୁ ଜାଣ ଶଙ୍କର । ତୁମେ କୁହ ।

: ନା ଆଜ୍ଞା, ସତ କହୁଛି ମୁଁ କିଛି ଜାଣିନାହିଁ । କିନ୍ତୁ ମୋର ମନେଅଛି ମୁଁ ଦରଜା ବନ୍ଦକରି ଶୋଇଥିଲି ।

ଶଙ୍କର ହାତଯୋଡ଼ି ଠିଆ ହୋଇଥିଲା ।

ସତ୍ୟବ୍ରତ ଶଙ୍କରର ଶାନ୍ତ ଓ ସରଳ ମୁହଁଟି ଆଡ଼େ କିଛି ସମୟ ନିର୍ନିମେଷ ଆଖିରେ ଚାହିଁରହି କହିଲେ : ଆଚ୍ଛା ତୁମେ ବର୍ତ୍ତମାନ ଯାଅ ଶଙ୍କର । ଯଦି ତମେ ମିଛ କଥା କହିଥାଅ, ତା'ହେଲେ ତୁମର ଶାସ୍ତି ହେବ ।

ଶଙ୍କର ନୀରବରେ ସେଠାରୁ ଚାଲିଗଲା ।

ସତ୍ୟବ୍ରତ ଆଉ କେତୋଟି ମୁହୂର୍ତ୍ତ ନୀରବ ରହି ପଙ୍କଜ ମଲ୍ଲିକଙ୍କ ଆଡ଼େ ଚାହିଁ କହିଲେ : ଶଙ୍କର କଥାରୁ ପ୍ରମାଣିତ ହେଉଛି ଯେ, ଶଙ୍କର କାଲି ଶୋଇବା ପୂର୍ବରୁ ଦୋ'ତାଲାର ମେନ୍ ଗେଟ୍‌ଟା ବନ୍ଦକରି ଶୋଇଥିଲା । କିନ୍ତୁ ସକାଳୁ ଉଠି ସେ ଦେଖିଥିଲା ଦରଜା ଖୋଲା ।

ହଁ, ଶଙ୍କର ତ ସେଇଆ କହିଲା । ସେଥିରୁ ଆପଣଙ୍କର କ'ଣ ମନେହେଉଛି ? ପଙ୍କଜ ମଲ୍ଲିକ କହିଲେ ।

ମୋର ବର୍ତ୍ତମାନ ମନେହେଉଛି ଯେ, ଘଟଣାଟା ଆଦୌ ଅଲୌକିକ ନୁହେଁ, କେହି ଜଣେ କୌଣସି ଉପାୟରେ ଦୋ'ତାଲାକୁ ଆସିଥିଲା । ଏବଂ ସେହି ଜଣକୁ ଆପଣଙ୍କ ଷ୍ଟ୍ରଂ ରୁମ୍‌ର ତାଲା ଖୋଲିବାର କାଇଦା ଜଣାଅଛି । ସେ ତାଲା ଖୋଲି ଷ୍ଟ୍ରଂ ରୁମ୍‌ରେ ପଶି, କାର୍ଯ୍ୟ ହାସଲ କରି ପୁଣି ଫେରିଯାଇଛି, ଅଥଚ ଆପଣ ତା'ର ପ୍ରବେଶ ପ୍ରସ୍ଥାନ ସମ୍ବନ୍ଧରେ କିଛି ଜାଣିପାରି ନାହାନ୍ତି ।

ନା, ମିଷ୍ଟର ମହାପାତ୍ର । ତଥାପି ମୁଁ ଆପଣଙ୍କର ଏହି ସନ୍ଦେହର ସତ୍ୟତା ଉପରେ ସନ୍ଦିହାନ । କାରଣ ଷ୍ଟ୍ରଂ ରୁମ୍‌ର ତାଲା ଖୋଲିବା କୌଶଳ ଆଉ ଦ୍ୱିତୀୟ ବ୍ୟକ୍ତି କେହି ଯେ ଜାଣିନାହିଁ, ଏ ସମ୍ବନ୍ଧରେ ମୁଁ ସ୍ଥିରନିଶ୍ଚିତ ।

: ଏହା ଆଦୌ ଅଲୌକିକ ଘଟଣା ନୁହେଁ ଏବଂ ଆପଣଙ୍କ ଷ୍ଟ୍ରଂ ରୁମ୍‌ର ଚାବି ଖୋଲା କାଇଦା କୌଣସି ଦ୍ୱିତୀୟ ଲୋକକୁ ଜଣାଅଛି ।

ପଙ୍କଜ ମଲ୍ଲିକ ସତ୍ୟବ୍ରତଙ୍କ କଥାରେ କେଜାଣି କାହିଁକି ପ୍ରତିବାଦ କରିପାରିଲେ ନାହିଁ । କେବଳ ନୀରବରେ ଅନାଇ ରହିଲେ ।

ଏହି ନୀରବତା ମଝିରେ ସେଲି ଆସି ଉପସ୍ଥିତ ହୋଇଥିଲା ।

: କ'ଣ ହୋଇଛି ଡାଡି ! ସତ୍ୟବ୍ରତଙ୍କୁ ନମସ୍କାର କରି କହିଲା, ଆପଣ ସକାଳୁ ସକାଳୁ ଯେ !

ସତ୍ୟବ୍ରତ ସ୍ମିତ ହସି କହିଲେ  ପ୍ରାତଃଭ୍ରମଣ ମୋର ଗୋଟାଏ ଅଭ୍ୟାସ । ଆଜି ଏଇଆଡ଼େ ଆସିଥିଲି । ଦେଖିଲି, ଆପଣଙ୍କ ଡାଡି ତଳେ ଠିଆହୋଇ କାହାର ପ୍ରତୀକ୍ଷା କରିଛନ୍ତି ।

: ସତେନା କ'ଣ ? ଡାଡି ତମେ ଆଜିକାଲି ସକାଳୁ ଉଠିବାର ଅଭ୍ୟାସ କଲଣି ? ସେଲି ଯେପରି ଅବାକ୍ ହୋଇ ଅନାଇଥିଲା ।

ପଙ୍କଜ ମଲ୍ଲିକ କହିଲେ  ଆଜି କାହିଁକି ଖୁବ୍ ସକାଳୁ ନିଦଟା

ଭାଙ୍ଗିଗଲା । କେଜାଣି ଭଲ ଲାଗିଲା ନାହିଁ । ତଳକୁ ଓହ୍ଲେଇ ଯାଇ ଠିଆହୋଇଛି, ଦେଖିଲି ସରୋଜ ବାବୁ...

ସେଲି ଏଥର ସ୍ୱରରେ ଟିକିଏ ବ୍ୟସ୍ତତା ଫୁଟାଇ କହିଲା : ଆପଣମାନେ ନିଶ୍ଚୟ ଚା' ପିଇ ନାହାନ୍ତି । ଶଙ୍କର ଏପର୍ଯ୍ୟନ୍ତ ଚା' ଦେଇ ନାହିଁ ?

ସେଲି ବ୍ୟସ୍ତ ହୋଇ ସେଠାରୁ ଚାଲିଗଲା ।

ସେଲି ଚାଲିଯିବା ସଙ୍ଗେ ସଙ୍ଗେ ପଙ୍କଜ ମଲ୍ଲିକ କହିଲେ : ସେଲି ଯେପରି ଘୁଣାକ୍ଷରେ ଏ କଥା ନ ଜାଣେ । ରାତିରେ କିଏ ଆମ ଘରେ ପଶିଥିଲା ବା ଆମର କ'ଣ ଚୋରି ଯାଇଛି, ଏସବୁ କଥା ଆପଣ ମୋତେ କହିବେ ନାହିଁ ।

ସତ୍ୟବ୍ରତ କୌଣସି ଉତ୍ତର ଦେବା ପୂର୍ବରୁ ଦେଖିଲେ, ସେଲି ପୁଣି ଆଗେଇ ଆସୁଛି ।

ହସି ହସି ଆସି ଗୋଟାଏ ଚେଆର ଅଧିକାର କରି ବସୁ ବସୁ କହିଲା : ଆପଣ ତ କବିଲୋକ ସରୋଜ ବାବୁ । ମଣିଷର ମନସ୍ତତ୍ତ୍ୱ ସମ୍ବନ୍ଧରେ ଆପଣଙ୍କୁ ଅନେକ କଥା ଜଣାଥିବ । ଆଚ୍ଛା କହିଲେ, ମଣିଷ ସ୍ୱପ୍ନ ଦେଖେ କାହିଁକି ?

ସତ୍ୟବ୍ରତ ମୁହୂର୍ତ୍ତେ ସେଲି ମୁହଁକୁ ନୀରବରେ ଅନାଇ ରହି କହିଲେ : ସ୍ୱପ୍ନ ମନର ଗୋଟାଏ ବିକାର । ବେଳେବେଳେ ମଣିଷର ଅବଚେନ ମନର ଭାବନା ମଧ୍ୟ ସ୍ୱପ୍ନ ମାଧ୍ୟମରେ ପ୍ରତିଫଳିତ ହୋଇଥାଏ । କିନ୍ତୁ ହଠାତ୍ ସ୍ୱପ୍ନ କଥା କାହିଁକି ? କାଲି ରାତିରେ ଆପଣ ନିଶ୍ଚୟ କିଛି ସ୍ୱପ୍ନ ଦେଖିଛନ୍ତି ।

ସେଲି ଥରେ ସତ୍ୟବ୍ରତ ମୁହଁକୁ ଓ ଥରେ ପଙ୍କଜ ମଲ୍ଲିକଙ୍କ ମୁହଁକୁ ଅନାଇ କହିଲା : ଜାଣ ଡାଡି, ମୁଁ କାଲି ରାତିରେ ଗୋଟାଏ ଅଦ୍ଭୁତ ସ୍ୱପ୍ନ ଦେଖିଛି । ଏହିପରି ଏକ ସ୍ୱପ୍ନ କେତେବେଳେ ହେଲେ ମୋ' ଅବଚେତନ ମନର ଭାବନା ହୋଇପାରେନା ।

ସତ୍ୟବ୍ରତ କହିଲେ : ଆପଣ କ'ଣ ସ୍ୱପ୍ନ ମାଧ୍ୟମରେ ଖୁବ୍ ଦୁଃସାହସିକ କାର୍ଯ୍ୟ କରିନାହିଁ, ବରଂ ମୃତ୍ୟୁ ମୁଖରୁ ବର୍ଞ୍ଚି ଯାଇଛି । ଘଟଣାଟା ଶୁଣିବେ ?

କାଲି ରାତିରେ ମୁଁ ଟିକିଏ ସଅଳ ଶୋଇପଡ଼ିଥିଲି । କେତେ ରାତି ହେବ କେଜାଣି, ହଠାତ୍ ମୋର ମନେହେଲା, କିଏ ଜଣେ ମୋତେ ମୋ' ନାଁଧରି ଡାକୁଛି । ମୁଁ ଉଠିବସିଲି । ଚାହିଁ ଦେଖିଲି, ମୋ' ସାମନାରେ ଏକ କ୍ଷୁଦ୍ର ଆଲୋକ ବିନ୍ଦୁ । ସେଇ ଆଲୋକ ବିନ୍ଦୁ ମଧ୍ୟରେ ଏକ ଶୁଭ୍ରବସନପରିହିତ ପୁରୁଷ ଲୋକ । ବୟସ୍କ, ସ୍ୱାସ୍ଥ୍ୟବାନ ଏବଂ ସୁପୁରୁଷ । ମୋତେ ସେ ହାତଠାରି ଡାକିଲେ । ମୁଁ ଯେପରି

ଆଗପଛ କିଛି ନ ବିଚାରି ତାଙ୍କ ପଛେ ପଛେ ଆଗେଇ ଗଲି । ସେ ଆଗେ ଆଗେ ଏବଂ ମୁଁ ପଛେ ପଛେ କିଛି ବାଟ ଚାଲିବା ପରେ, ଆମେ ଗୋଟାଏ ବିରାଟ ଘରେ ଯାଇ ପ୍ରବେଶ କଲୁ ।

ଆମେ ପହଞ୍ଚିବା ମାତ୍ରକେ ସେ ଘରର ଦରଜା ସାମ୍ନାରେ ଗୋଟାଏ ପେଚା ବୋବେଇ ଉଠିଲା । ତା'ପରେ ସଙ୍ଗେସଙ୍ଗେ ସେ ଘରର ଦରଜା ଆପଣାଛାଏଁ ଖୋଲିଗଲା ।

ଆମେ ଭିତରକୁ ପଶିଲୁ ।

ତଳ ତାଲାରେ ପାଞ୍ଚ ଛ'ଅଟା ଘର ।

ମୋତେ ଲୋକଟି ପ୍ରତିଟି ଘର ଭିତରକୁ ନେଇ ବୁଲେଇ ଦେଖେଇଲା ।

ମୋର ମନେହେଲା କୋଠାଟା ଗୋଟାଏ ହସ୍‌ପିଟାଲ ।

କାରଣ ତଳ ତାଲାର ପ୍ରତିଟି ଘରେ ତିନି ଚାରିଟା କରି ହସ୍‌ପିଟାଲ ପରି ବେଡ୍ ପଡ଼ିଛି ଏବଂ ସବୁ ବେଡ୍‌ରେ ଜଣେ ଜଣେ ଲୋକ ଶୋଇଛନ୍ତି । ଆଶ୍ଚର୍ଯ୍ୟର କଥା ସମସ୍ତଙ୍କ ଦେହ କିନ୍ତୁ ଧଳା ଲୁଗାରେ ଢଙ୍କା ହୋଇଛି । ମୁଁ ସବୁ ଘର ବୁଲିଦେଖିଲି । ସବୁ ଘରେ ସବୁ ଖଟିଆରେ ଜଣେ ଜଣେ ଲୋକ ଶୋଇଛନ୍ତି । ସମସ୍ତଙ୍କର ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଧଳାଚାଦରରେ ଢଙ୍କା ହୋଇଛି । ମୁଁ କାହାରି ମୁହଁ ଦେଖିପାରିଲି ନାହିଁ ।

ଶେଷରେ ସେହି ଭଦ୍ରଲୋକ ମୋତେ ଆଉ ଗୋଟିଏ ଛୋଟ ଘର ଭିତରକୁ ନେଇଗଲେ । ସେଇ ଘର ଭିତରେ ମୋତେ ଛାଡ଼ିଦେଇ ନିଜେ ସେ ବାହାରକୁ ଚାଲିଆସିଲେ ।

ସେଇ ଯେଉଁ ଛୋଟ ଘରଟା ଭିତରେ ମୁଁ ପଶିଲି ମୁହୂର୍ତ୍ତକ ମଧ୍ୟରେ ମୋ' ଆଖି ଝଲସି ଉଠିଲା । ଘର ଭିତରେ ଏତେ ସମ୍ପଦ ! ଘରଟା ଯେପରି କୁବେର ଭଣ୍ଡାର । ମଣି ମାଣିକ୍ୟ, ସୁନା ରୂପା, କ'ଣ ନାହିଁ ସେ ଘରେ ! ମୁଁ କେବଳ ସ୍ତବ୍ଧ ହୋଇ ଚାରିଆଡ଼କୁ ଚାହିଁ ଦେଖିଲି । ମୋ' ପାଖରେ କେହି ନ ଥିଲେ ।

ଶେଷରେ ମୋ' ଆଖି କ୍ଲାନ୍ତ ହୋଇପଡ଼ିଲା । ମୁଁ ଘର ଭିତରେ ଗୋଟାଏ ଚେଆର ଉପରେ ବସିପଡ଼ିଲି । ସେତେବେଳକୁ ମୁଁ ଭୀଷଣ କ୍ଲାନ୍ତ ହୋଇପଡ଼ିଥିଲି । ମୋତେ ଶୋଷ କରୁଥିଲା ।

ମୋ' ମନକଥା ଜାଣିପାରି ଯେମିତି ଆଉଜଣେ ମହିଳା ହାତରେ ଗୋଟିଏ

ସରବତ୍ ଗ୍ଲାସ ଧରି ଆଗେଇ ଆସିଲା । ତା'ର ସର୍ବାଙ୍ଗ ସେହିପରି ସାଦାପୋଷାକରେ ଆବୃତ ଥିଲା । ସେ ମୋ' ହାତକୁ ସରବତ୍ ଗ୍ଲାସଟି ବଢ଼ାଇ ଦେଇ ଟିକିଏ ଦୂରରେ ଠିଆ ହୋଇଥିଲା ।

ମୁଁ ସରବତ୍ ଗ୍ଲାସକ ଶେଷକରି, ଯେତେବେଳେ ଗ୍ଲାସଟି ଭଦ୍ରମହିଳା ହାତକୁ ବଢ଼ାଇ ଦେଲି, ସେତେବେଳେ ହଠାତ୍ ସେହି ଭଦ୍ରମହିଳାଙ୍କ ମୁହଁଟି ମୋ' ନଜରରେ ପଡ଼ିଗଲା । ମୁଁ ଚିତ୍କାର କରିଉଠିଲି । ଉଃ, ଏତେ ବୀଭତ୍ସ ସେ ମୁହଁ । ଏହା ଆଗରୁ ମଣିଷ ଦେହରେ ଏତେ ବୀଭତ୍ସ ଭାବ ମୁଁ କେବେ ଦେଖି ନ ଥିଲି । ମୋର ଆଖି ବନ୍ଦ ହୋଇଯାଇଥିଲା । ମୁଁ ଚେଆର ଉପରେ ମୁଣ୍ଡ ରଖି ବୋଧହୁଏ ଅଚେତନ ହୋଇପଡ଼ିଥିଲି ।

କେତେ ସମୟ ଅତିବାହିତ ହୋଇଗଲା ମୋତେ ଜଣାନାହିଁ । କିନ୍ତୁ ହଠାତ୍ ମୁଁ ଅନୁଭବ କଲି କିଏ ଯେପରି ମୋ' ମୁଣ୍ଡରେ ସ୍ନେହର ଆଙ୍ଗୁଳି ସଂଚାଳନ କରୁଛି ।

ମୁଁ ହଠାତ୍ ଉଠି ଚାହିଁ ଦେଖିଲି, ସେଇ ଭଦ୍ରଲୋକ । ଯିଏ ମୋତେ ସଙ୍ଗରେ ଆଣିଥିଲେ । ମୋ' ମୁହଁକୁ ଚାହିଁ ହସୁଛନ୍ତି ।

ମୁଁ ଟିକିଏ ସାହସ ଫେରିପାଇଲି । ବଳ ବି ।

ଭଦ୍ରଲୋକ ସେଇ କୁବେରପୁରୀରୁ ମଣିମାଣିକ୍ୟଖଚିତ ଗୋଟିଏ ବିରାଟ ହାର ଆଣି ମୋ' ଗଳାରେ ଲମ୍ବାଇ ଦେଲେ । ତା'ପରେ ହଠାତ୍ ମୋ' ପାଦତଳେ ଲୋଟିପଡ଼ି ମୋ' ପାଦ ଦୁଇଟିକୁ ଦୁଇ ହାତରେ ଯାବୁଡ଼ି ଧରି ଭୋ ଭୋ କାନ୍ଦିବାକୁ ଲାଗିଲେ ।

ମୁଁ ସ୍ତବ୍ଧ ହୋଇଗଲି ।

ଭଦ୍ରଲୋକଙ୍କ ହାତ ମୋ' ପାଦରୁ ଛଡ଼ାଇ ପାରିଲି ନାହିଁ ।

ପର ମୁହୂର୍ତ୍ତରେ ଦେଖିଲି ଆଉ ଦୁଇଜଣ ଭୀଷଣକାୟ ଲୋକ ସେହିପରି ସର୍ବାଙ୍ଗ ସାଦାପୋଷାକରେ ଆବୃତ କରି ସେହି ଘର ଭିତରେ ପ୍ରବେଶ କଲେ । ସେମାନଙ୍କ ମଧ୍ୟରୁ ଜଣେ ମୋ' ଗୋଡ଼ଧରି କାନ୍ଦୁଥିବା ଭଦ୍ରଲୋକଟିକୁ ଟାଣି ଟାଣି ବାହାରକୁ ନେଇଗଲା । ଆଉ ଜଣେ ମୋ' ମୁହଁକୁ କଟମଟ କରି କିଛି ସମୟ ଅନାଇ ରହି ମୋ' ବେକରୁ ସେହି ମଣିମାଣିକ୍ୟଖଚିତ ହାରଟି ଟାଣି ବାହାର କରିନେଲା । ମୁହୂର୍ତ୍ତକ ପରେ ମୋର ହାତ ଦୁଇଟାକୁ ଧରି ମୋତେ ଚେଆରରୁ ଟାଣି ଉଠାଇଲା । ଝିଙ୍କି ଝିଙ୍କି ବାହାରକୁ ନେଇଗଲା । ବାହାରେ ଆସି ମୁଁ ତଳେ

କଚାଡ଼ି ହୋଇପଡ଼ିଲି । କିନ୍ତୁ ସେହି ଲୋକଟା ପ୍ରାଣରେ ଯେପରି ଦୟାମାୟା କିଛି ନ ଥିଲା । ସେ ମୋ' ହାତଟାକୁ ଧରି ବାରଣ୍ଡାରେ ମୋତେ ଟାଣି ଟାଣି ଆଗେଇ ଯାଉଥିଲା । ତଳେ ମୁଁ ବସିପଡ଼ିଥିଲି । ମୋର ଆଣ୍ଠୁଗଣ୍ଠି ଘୋଷାଡ଼ି ହେଉଥିଲା । କିନ୍ତୁ ସେ ମୋତେ ଦୟା କରୁ ନ ଥିଲା । ମୁଁ ଚିତ୍କାର କରୁଥିଲି । ବିକଳରେ ବିଳାପ କରୁଥିଲି । ସେ କିନ୍ତୁ ମୋ' ଦୁଇ ହାତକୁ ଧରି ମୋତେ ଟାଣିଟାଣି ଆଗେଇ ଚାଲିଥିଲା ।

ଶେଷରେ ସେ ମୋତେ ଆଉ ଗୋଟାଏ ଘର ଭିତରକୁ ନେଇ ଠେଲି ଫୋପାଡ଼ି ଦେଲା । ବାହାରୁ କବାଟ ବନ୍ଦ କରିଦେଲା ।

ମୁଁ ସେହି ଘରେ ଭିତରେ ବୋଧହୁଏ ବହୁତ ବେଳଯାଏ ଅଜ୍ଞାନ ହୋଇ ପଡ଼ି ରହିଥିଲି । ଯେତେବେଳେ ମୋର ଚେତା ହେଲା ଦେଖିଲି, କ'ଣ ଦେଖିଲି ? ଦୁଇ ଚାରିଟା କଙ୍କାଳ । ଘରଟା ଦୁର୍ଗନ୍ଧରେ ପରିପୂର୍ଣ୍ଣ । ମୁଁ ଚିତ୍କାର କରିଉଠିଲି । ହୁଏତ ସେଇ ମୁହୂର୍ତ୍ତରେ ମୋର ହାର୍ଟଫେଲ ହୋଇଥାଆନ୍ତା । କିନ୍ତୁ ହଠାତ୍ ଘରର ଦରଜାଟା ଖୋଲିଗଲା ଏବଂ ମୋର ସେହି ପୂର୍ବପରିଚିତ ଭଦ୍ରଲୋକ ଜଣକ ଝଡ଼ବେଗରେ ସେହି ଘରେ ପଶି ମୋ' ହାତଟାକୁ ଧରି ଝିଙ୍କି ବାହାରକୁ ବାହାର କରିଆଣିଲେ । ଆଖି ପିଛୁଡ଼ାକେ ମୋତେ ସେ ଟାଣି ଟାଣି ତାଙ୍କ ପଛେପଛେ ଛୁଟି ପଳେଇବାକୁ ଇଙ୍ଗିତରେ କହିଲେ । ମୁଁ ପ୍ରାଣ ବିକଳରେ ସେହି ଭଦ୍ରଲୋକଙ୍କ ପଛରେ ଧାଇଁଥିଲି ।

କିନ୍ତୁ ହଠାତ୍ ସେଇ ଭଦ୍ରଲୋକ ଗୋଟିଏ ଜାଗାରେ ଅଟକି ଗଲେ । ବିପରୀତ ଦିଗରୁ କେତେଗୁଡ଼ିଏ ପାଦଶବ୍ଦ ଶୁଭୁଥିଲା । ପାଦଶବ୍ଦ ଦ୍ରୁତ ଆମରି ଆଡକୁ ଆଗେଇ ଆସୁଥିଲା । ସେଇ ଭଦ୍ରଲୋକ କିପରି ଟିକିଏ ବିଚଳିତ ହେବାପରି ମନେହେଲା । ପର ମୁହୂର୍ତ୍ତରେ ସେ ମୋର ହାତଟାକୁ ଟାଣିନେଇ ପାଖରେ ଥିବା ଗୋଟିଏ ଘର ଭିତରକୁ ପଶିଗଲେ ଏବଂ ହସ୍ପିଟାଲର ସେହି ବେଡ୍ ଉପରେ ଗୋଟାଏ ରୋଗୀ ପାଖରେ ମୋତେ ଜୋର୍‌କରି ଶୁଆଇ ଦେଲେ । ଧଳା ଚାଦରଟା ଆମ ଦୁଇଜଣଙ୍କ ଉପରେ ଘୋଡ଼ାଇ ଦେଇ ସେ ବାହାରକୁ ବାହାରି ଚାଲିଗଲେ ।

ମୁଁ ନିର୍ଜୀବ ନିଷ୍ଫଳ ହୋଇ ସେହି ବେଡ୍ ଉପରେ ଅପରିଚିତ ଏକ ରୋଗୀ ପାଖରେ ବାଧ୍ୟହୋଇ ଶୋଇରହିଲି । କେଇ ମୁହୂର୍ତ୍ତ ପରେ ଏକାସଙ୍ଗରେ ସେହି ଘର ଭିତରେ ବହୁ ପାଦଶବ୍ଦ ଅନୁଭବ କଲି । ମୋର ମନେହେଲା ଅନେକ ଲୋକ ସେହି ଘର ଭିତରେ ପଶି କ'ଣ ଯେପରି ଖୋଜାଖୋଜି କରୁଛନ୍ତି ।

ତା'ପରେ କିଛି ସମୟ ପରେ ସେମାନେ ଚାଲିଗଲେ ।

ମୁଁ କିନ୍ତୁ ସାହସ କରି ସେହି ଧଳାଚାଦରଟା ଭିତରୁ ମୁହଁ ବାହାର କରି ପଦାକୁ ଚାହିଁପାରୁ ନ ଥିଲି । ଯେଉଁ ରୋଗୀଟି ସହିତ ଏକା ବେଡ୍‌ରେ ଶୋଇଥିଲି, ସେ ରୋଗୀଟି ଦେହରୁ କୌଣସି ଉତ୍ତାପ ମୋ' ଦେହରେ ଲାଗୁ ନ ଥିଲା, କିମ୍ବା ତା' ଦେହର ସ୍ପନ୍ଦନ ମୁଁ ଅନୁଭବ କରିପାରୁ ନ ଥିଲି । କିଛି ସମୟ ପରେ ଯେତେବେଳେ ସେହି ରୋଗୀଟି ସମ୍ବନ୍ଧରେ ମୁଁ ବେଶୀ ସଚେତନ ହେଲି, ମୋର ମନେହେଲା ମୁଁ ଯେପରି ଏକ ମୃତଲୋକ ସହିତ ଏକ ବିଛଣାରେ ଶୋଇଛି ।

ଆଉ ମୁଁ ନିଜକୁ ସଂଯତ କରି ରଖିପାରିଲି ନାହିଁ ।

ଅନୁଭବ କରୁଥିଲି, ଧୀରେ ଧୀରେ ଯେପରି ମୋ' ପାଖ ଲୋକଟି ପରି ମୋର ସର୍ବାଙ୍ଗ ଶୀତଳ ହୋଇଆସୁଛି । ମୋର ମନେହେଲା, ହୁଏତ ଆଉ କିଛି ସମୟ ଏହିପରି ଏଠାରେ ଶୋଇରହିଲେ ମୋର ଆତ୍ମସତ୍ତା ହଜିଯିବ ।

ମୁଁ ମନକୁ ଦୃଢ଼କରି ଧଳାଚାଦରଟା ମୋ' ଦେହରୁ କାଢ଼ି ପକାଇଲି ଏବଂ ସମସ୍ତ ଶକ୍ତି ଏକାଠି ଠୁଳକରି ସେହି ବେଡ୍ ଉପରେ ହଠାତ୍ ଉଠିବସିଲି । ମୋ' ପାଖରେ ଶୋଇଥିବା ଲୋକଟି ମୁହଁରେ ଦୃଷ୍ଟିପଡ଼ିବା କ୍ଷଣି ମୁଁ ତଳେ କଚାଡ଼ି ହୋଇପଡ଼ିଲି । ଲୋକଟି ଯେ ମୃତ, ଏଥିରେ ସନ୍ଦେହ ନାହିଁ, କିନ୍ତୁ କି ଭୟଙ୍କର ତା'ର ମୁହଁ । ଆଖି ଦୁଇଟା କିଏ ତା'ର ମୁହଁରୁ ଖୋଳି ନେଇଯାଇଛି । ମୁହଁଯାକ ରକ୍ତ ଲାଗିରହିଛି । ଇସ୍, କି ବୀଭତ୍ସ ସେ ଦୃଶ୍ୟ । ସେ ଦୃଶ୍ୟର ବର୍ଣ୍ଣନା ଦେବାକୁ ମୋ' ମୁହଁରେ ଭାଷା ନାହିଁ ।

ମୁଁ ବୋଧହୁଏ ଅଚେତନ ହୋଇ ସେଇଠି ପୁଣି ପଡ଼ିଯାଇଥିଲି ।

ସେଲି ଏଥର ନୀରବ ହେଲା ।

କିନ୍ତୁ ତା' ମୁହଁରେ ଏକ ଭୟଙ୍କର ଭାବ ଫୁଟି ଉଠିଥିଲା ।

ନାକରୁ ଦୀର୍ଘଶ୍ୱାସ ବାହାରୁଥିଲା ।

ସତ୍ୟବ୍ରତ ଉତ୍ତେଜିତ ସ୍ୱରରେ କହିଲେ : ତା'ପରେ ?

ସେଲି ନିଜର ସ୍ୱରକୁ ସ୍ୱାଭାବିକ କରିବାକୁ ଚେଷ୍ଟାକରି କହିଲା : ତା'ପରେ ଆଉ କିଛି ଜାଣିନାହିଁ । ମୋ' ସ୍ୱପ୍ନଟା ଏଇଠାରୁ ଶେଷ ହୋଇଯାଇଥିଲା ।

ଏହିପରି ଏକ ସ୍ୱପ୍ନ ସେଲି ପକ୍ଷରେ ଯେ ନିଶ୍ଚୟ ଭୟଙ୍କର, ସତ୍ୟବ୍ରତ ସେ କଥା ଅନୁଭବ କରିଥିଲେ ।

ପଙ୍କଜ ମଲ୍ଲିକଙ୍କ ମୁହଁରେ ମଧ୍ୟ ଆଶଙ୍କା ଫୁଟିଉଠିଥିଲା ।

ସତ୍ୟବ୍ରତ ନୀରବରେ ସେଲିର ସର୍ବାଙ୍ଗକୁ ଥରେ ଭଲ ଭାବରେ ଚାହିଁ କହିଲେ : ଆପଣ କାଲି ରାତିରେ ତା'ହେଲେ ମୋଟେ ଶୋଇପାରି ନାହାନ୍ତି ।

ସେଲି ଉତ୍ତରରେ କହିଲା : ନା ସାର୍, ମୋର ମନେହେଉଛି ଅନ୍ୟ ଦିନମାନଙ୍କ ଅପେକ୍ଷା ମୁଁ କାଲି ରାତିରେ ଅଧିକ ଗାଢ଼ ନିଦରେ ଶୋଇପାରିଥିଲି ।

: ସ୍ୱପ୍ନ ଦେଖିବା ପରେ ବି ଆପଣଙ୍କର ନିଦ୍ରାଭଙ୍ଗ ହୋଇନଥିଲା ?

: ନା, ମୁଁ ଆଉ ଉଠିଥିଲା ପରି ମୋର ତ ମନେହେଉ ନାହିଁ ।

ଶଙ୍କର ଚା' ଦେଇ ଯାଇଥିଲା ।

ସମସ୍ତେ ଚା' ଖାଉଥିଲେ ।

ନୀରବତା ରାଜତ୍ୱ ବିସ୍ତାର କରିଥିଲା ।

ସତ୍ୟବ୍ରତ ଆଉଥରେ ସେଲିଆଡ଼େ ଅନେଇ କହିଲେ : ଆପଣ ବର୍ତ୍ତମାନ ଯେଉଁ ଲୁଗାପଟା ପିନ୍ଧି ଏଠାରେ ବସିଛନ୍ତି, କାଲି ରାତିରେ ଏଇଆକୁ ସବୁ ପିନ୍ଧି ଶୋଇଥିଲେ ?

ସେଲି ହଠାତ୍ ହୁଏତ ସତ୍ୟବ୍ରତଙ୍କ ଉଦ୍ଦେଶ୍ୟ ବୁଝିପାରିଲା ନାହିଁ । ସେ ତା' ପିନ୍ଧିଥିବା ଲୁଗାପଟା ଆଡ଼େ ଥରେ ଆଖି ବୁଲେଇ ନେଇ କହିଲା : ହଁ, ଏଇଆକୁ ତ ପିନ୍ଧି ଶୋଇଥିଲି ।

ସତ୍ୟବ୍ରତ ଉଠି ଠିଆ ହେଲେ । କହିଲେ : ଚାଲନ୍ତୁ ତ, ଆପଣଙ୍କ ରୁମ୍‌ଟା ମୁଁ ଟିକେ ଦେଖିବି ।

ସେଲି କୌଣସି ପ୍ରତିବାଦ କଲା ନାହିଁ । ସେ ମଧ୍ୟ ଉଠି ଠିଆହେଲା ।

ଦୁହେଁ ଆଗେଇ ଗଲେ ।

ପଙ୍କଜ ମଲ୍ଲିକ କିନ୍ତୁ ଗମ୍ଭୀର ହୋଇ ସେଇଠି ବସି ରହିଥିଲେ ।

ମଳିନା ଶତପଥୀ ଜଣେ ପ୍ଲେ ବ୍ୟାକ୍ ଗାୟିକା । କଣ୍ଠଟି ଭାରି ମିଠା । ବୟସ ଏକୋଇଶ ବାଇଶ । ଚେହେରାଟି ସାଧାରଣ । ଚେହେରାରେ ସେପରି କିଛି ବୈଶିଷ୍ଟ୍ୟ ନ ଥିଲେ ବି ଦେଖିବାକୁ ଭଲ ଲାଗେ ।

ମଳିନାର ବାପା ଜଣେ ସାଧାରଣ ଲୋକ । ଓଡ଼ିଶା ସରକାରଙ୍କ ଅଧୀନରେ ଚାକିରି କରନ୍ତି । ପୈତୃକ ଅମଳର ଘର ଖଣ୍ଡେ ମହମ୍ମଦିଆ ବଜାରରେ ଅଛି । ସେଇଠି ସପରିବାର ବାସ କରନ୍ତି ।

ସତ୍ୟବ୍ରତ ଯେତେବେଳେ ଯାଇ ମଳିନା ଘରେ ପହଞ୍ଚିଲେ, ମଳିନା ସେତେବେଳେ ରେଆଜ୍ କରୁଥିଲା । ସତ୍ୟବ୍ରତ ବାହାରୁ ଥାଇ ମଧ୍ୟ ମଳିନାର କଣ୍ଠସ୍ୱର ଶୁଣିପାରୁ ଥିଲେ ।

ମଳିନା ଡ୍ରଇଂରୁମ୍‌କୁ ଆସିଲା ।

ନମସ୍କାର ଓ ପ୍ରତିନମସ୍କାର ବିନିମୟ ପରେ ସତ୍ୟବ୍ରତ ନିଜର ପରିଚୟ ଦେଇ କହିଲେ : ମୁଁ ଆପଣଙ୍କ ପାଖକୁ ଆସିଛି ଏକ ବିଶେଷ ଦରକାରରେ । ଆଶା କରୁଛି ଆପଣଙ୍କ ସହଯୋଗ ପାଇବି ।

ମଳିନା ସତ୍ୟବ୍ରତ ମହାପାତ୍ରଙ୍କ ନାଁ ଶୁଣି ପ୍ରଥମେ ଟିକିଏ ବିଚଳିତ ହୋଇପଡ଼ିଥିଲା । ତା'ପରେ ନିଜକୁ ପ୍ରକୃତିସ୍ଥ କରିନେଇ କହିଲା ଆପଣଙ୍କର ଉଦ୍ଦେଶ୍ୟ ମୁଁ ଠିକ୍ ବୁଝିପାରୁ ନାହିଁ ସାର୍ । ଆପଣ ମୋତେ ଖୋଲାଖୋଲି ଭାବରେ ସବୁ କଥା କୁହନ୍ତୁ ।

ସତ୍ୟବ୍ରତ କହିଲେ : ଆପଣ ସେଲିକୁ ଚିହ୍ନନ୍ତି ? ପଙ୍କଜ ମଲ୍ଲିକଙ୍କ ଝିଅ ସେଲି । ମାନେ ସବିତା ମଲ୍ଲିକ ।

: ହଁ, ଚିହ୍ନେ । ଏଇ ତ ଦୁଇ ତିନିଦିନ ଆଗରୁ ମୁଁ ତା'ର ଜନ୍ମଦିନ ଉତ୍ସବକୁ ଯାଇଥିଲି । କିନ୍ତୁ ହଠାତ୍ ସେଲିର କ'ଣ ହେଲା ?

: ନା, ସେଲିର କିଛି ହୋଇନାହିଁ । ତେବେ ସେଲିର ସେହି ଜନ୍ମଦିନ ଉତ୍ସବରେ ଗୋଟାଏ ଘଟଣା ଘଟିଛି, ଯେଉଁ ଘଟଣାର ସୂତ୍ର ଧରି ମୋତେ ଆପଣଙ୍କ ପର୍ଯ୍ୟନ୍ତ ଛୁଟିଆସିବାକୁ ପଡ଼ିଛି ।

ମଳିନା ଏଥର ବୋଧହୁଏ ଟିକିଏ ଡରି ଯାଇଥିଲା ।

ଶଙ୍କିତ କଣ୍ଠରେ କହିଲା : ମୁଁ ତ କିଛି ଜାଣିନାହିଁ ସାର୍ । ତା'ଛଡ଼ା କୌଣସି ଗଣ୍ଡଗୋଳିଆ ସମସ୍ୟା ଭିତରେ ମୁଁ ନ ଥାଏ ।

: ଆରେ ନା ମଳିନା ଦେବୀ । ଘଟଣାଟା ମୋଟେ ଗଣ୍ଡଗୋଳିଆ ନୁହେଁ ।

ଖାଲି ଜଣେ ଲୋକଙ୍କୁ ଆପଣ ଚିହ୍ନନ୍ତି କି ନାହିଁ, ସେଇ କଥା ମୁଁ ପଚାରିବାକୁ ଆସିଛି ।

: କୋଉ ଲୋକ କଥା ଆପଣ କହୁଛନ୍ତି ? ମଳିନା କଣ୍ଠରେ ଉତ୍‌କଣ୍ଠା ଫୁଟିଉଠିଥିଲା ।

ସତ୍ୟବ୍ରତ କ'ଣ କହିବାକୁ ଯାଉଥିଲେ, କିନ୍ତୁ ହଠାତ୍ ସେଠାରେ ଶରଦିନ୍ଦୁର ଆବିର୍ଭାବ ଦେଖି ସେ ନୀରବ ହୋଇଗଲେ ।

ଶରଦିନ୍ଦୁ ମଧ୍ୟ ସେଠାରେ ସତ୍ୟବ୍ରତଙ୍କୁ ଦେଖି ଟିକିଏ ଅବାକ୍ ହୋଇଯାଇଥିଲା ।

ପ୍ରଥମେ ଶରଦିନ୍ଦୁ କଥା କହିଲା : ସାର୍ ଆପଣ ଏଠାରେ ଯେ !

: ହଁ, ମୁଁ ଟିକିଏ କାମରେ ଆସିଛି । ମଳିନା ଦେବୀଙ୍କ ପାଖରେ ମୋର ଗୋଟାଏ ଜରୁରୀ କାମ ଅଛି ।

: ମଳିନା ପାଖରେ ଆପଣଙ୍କର କି କାମ ! ଆପଣ ଜାଣନ୍ତି ନାହିଁ ବୋଧେ, ମଳିନା ମୋର ସାନ ଭଉଣୀ । ଶରଦିନ୍ଦୁ କହିଲା ।

: ସତେ ! ସତ୍ୟବ୍ରତଙ୍କ ସ୍ୱରରେ ଯେପରି ଉତ୍ସାହ ଫୁଟିଉଠିଲା । ସେ କହିଲେ, ତା'ହେଲେ ତ ଆନନ୍ଦର କଥା ।

: କିନ୍ତୁ ମୁଁ ବୁଝିପାରୁ ନାହିଁ ସାର୍ । ହଠାତ୍ ମଳିନା କିପରି ଆପଣଙ୍କର ସୁନଜରରେ ପଡ଼ିଲା ?

: ନା, ଶରଦିନ୍ଦୁବାବୁ, ଆପଣଙ୍କର ଚିନ୍ତାର କିଛି କାରଣ ନାହିଁ । ମୁଁ ଗୋଟାଏ ଡକେଇତି କେସ୍‌ର ତଦନ୍ତ କରୁଛି । ବିଶ୍ୱସ୍ତ ସୂତ୍ରରୁ ଜାଣିପାରିଛି ଯେ, ଡକେଇତି ହୋଇଥିବା ବହୁ ମୂଲ୍ୟବାନ ପଦାର୍ଥ ମଧ୍ୟରୁ ଜଣେ ଭଦ୍ରମହିଳା ଗୋଟିଏ ହାର ପିନ୍ଧି ସେଲିର ଜନ୍ମଦିନ ଉତ୍ସବରେ ଯୋଗ ଦେଇଥିଲେ । ସେହି ଭଦ୍ରମହିଳାଙ୍କୁ ମୁଁ ଖୋଜୁଛି । କାଳେ ମଳିନା ଦେବୀ ତାଙ୍କୁ ଚିହ୍ନିଥିବେ, ସେଇ ଆଶାରେ ଏଠାକୁ ଆସିବା କଥା ।

: ସେ ଭଦ୍ରମହିଳାଙ୍କ ନାଁ କ'ଣ ? ହଠାତ୍ ମଳିନା ପଚାରିଲା ।

ସତ୍ୟବ୍ରତ ସହଜ ସ୍ୱରରେ କହିଲେ : ନା ମୁଁ ଜାଣି ନାହିଁ । ଚେହେରାର ବର୍ଣ୍ଣନା ମଧ୍ୟ ଦେଇପାରିବି ନାହିଁ । ତେବେ ଗୋଟିଏ ଘଟଣା ଘଟିଥିଲା । ସେଇ ଘଟଣାଟା ଯଦି ଆପଣଙ୍କ ଆଖିରେ ପଡ଼ିଥାଏ, ସେତିକି ଜାଣିବା ପାଇଁ ମୁଁ ଆସିଛି ।

: କି ଘଟଣା କୁହନ୍ତୁ ତ !

: ଘଟଣାଟା ହେଉଛି, ଭଦ୍ରମହିଳା ସେଲିର ଜନ୍ମଦିନ ଉତ୍ସବରେ ଯୋଗଦେବାକୁ ଆସିଥିଲେ । ସେ ଆସି ପହଞ୍ଚି, ହଲ ଘର ଭିତରେ ପ୍ରବେଶ କରିବା ପୂର୍ବରୁ ତାଙ୍କ ପ୍ରେଜେଣ୍ଟେସନ ବାକ୍ସଟି ଅନ୍ୟ ହାତକୁ ବଢ଼େଇ ଦେବା ମାତ୍ରକେ ଜଣେ ଯୁବକ ହଠାତ୍ ସେଠାରେ ଉପସ୍ଥିତ ହେଲେ ଏବଂ ସେ ସଙ୍ଗେସଙ୍ଗେ ସେଇ ଭଦ୍ରମହିଳାଙ୍କର ହାତ ଧରି ବାହାରକୁ ଟାଣି ଟାଣି ନେଇଗଲେ । ତେବେ ଯୁବକଟି ସମ୍ବନ୍ଧରେ ସାମାନ୍ୟ ଡେସ୍କ୍ରିପ୍ସନ ଅଛି । ସେ ଜଣେ ଆଧୁନିକ ଯୁବକ । ତାଙ୍କର ବିଶେଷତ୍ୱ, ସେ ଲମ୍ବାକଲି ରଖିଛନ୍ତି । ହଁ, ଅସଲ କଥା ହେଉଛି ଯେଉଁ ଭଦ୍ରମହିଳାଙ୍କୁ ସେଇ ଯୁବକଟି ଟାଣି ଟାଣି ନେଇ ଯାଇଥିଲେ, ସେହି ଭଦ୍ରମହିଳାଙ୍କ ଗଳାରେ ଗୋଟିଏ ମୂଲ୍ୟବାନ ହାର ଥିଲା, ଯେଉଁ ହାରଟି ଡକାୟତି ସମ୍ପଦ ମଧ୍ୟରୁ ଗୋଟିଏ ବୋଲି ଅନୁମାନ କରାହେଉଛି ।

ଘଟଣାଟା ଶୁଣିସାରି ମଳିନା କହିଲା : ନା ସାର୍, ସେଦିନ ମୋ' ଆଖିରେ ସେପରି କିଛି ଘଟଣା ପଡ଼ିନାହିଁ । ତେବେ ଲମ୍ବାକଲି ରଖିଥିବା ଚାରି ପାଞ୍ଚଜଣ ଯୁବକଙ୍କୁ ସେଦିନ ମୁଁ ସେଲିର ଜନ୍ମ ଉତ୍ସବରେ ଦେଖିଛି ।

ସତ୍ୟବ୍ରତ ଜାଣିଥିଲେ ସେ ମଳିନା ପାଖରୁ ମଧ୍ୟ ହତାଶ ହେବେ । ତଥାପି ସେ ଆସିଥିଲେ । ତେଣୁ ମଳିନା ମୁହଁରୁ ନିରାଶାଜନକ କଥା ଶୁଣି ସେ ମୋଟେ ହତାଶ ହୋଇ ନ ଥିଲେ ।

ଶରଦିନ୍ଦୁ କହିଲା : ଆପଣ କ'ଣ ଏହିପରି ଖୋଜି ଖୋଜି ଲକ୍ଷ କୋଟି ମଣିଷ ଭିତରୁ ସେହି ଭଦ୍ରମହିଳାଙ୍କୁ ବାହାର କରିପାରିବେ ସାର୍ ?

ସତ୍ୟବ୍ରତ କହିଲେ : ଆମ ଲାଇନ୍ ସେଇଆ ଶରଦିନ୍ଦୁ ବାବୁ । ଦିନବେଳେ ବି ଆକାଶକୁ ଚାହିଁ ବେଳେବେଳେ ଆମେ ତାରା ଦେଖିବାର ପ୍ରୟାସ କରିଥାଉ ।

ସତ୍ୟବ୍ରତ ଉଠି ଠିଆ ହେଲେ ।

ଶରଦିନ୍ଦୁ କହିଲା : ଆପଣ ଆମ ଘରକୁ ଆସିଛନ୍ତି, ଅନ୍ତତଃ ଚା' କପେ ଖାଇଯାଆନ୍ତୁ । ଯା' ଲିନା, ସାର୍‌ଙ୍କ ପାଇଁ ଚା' କରିଆଣେ ।

ସତ୍ୟବ୍ରତ ଆପତ୍ତି କରୁଥିଲେ ।

ଶରଦିନ୍ଦୁ ଶୁଣିଲା ନାହିଁ । ମଳିନା ଚା' ଆଣିବା ପାଇଁ ଭିତରକୁ ଉଠି ଚାଲିଗଲା ।

ଶରଦିନ୍ଦୁ କହିଲା : ସାର୍, ଆପଣ ଯଦି କିଛି ମନେ ନ କରନ୍ତି, ମୁଁ ଆପଣଙ୍କୁ ଗୋଟିଏ କଥା କହିବି ।

ସତ୍ୟବ୍ରତ କହିଲେ : ନା ନା କିଛି ମନେକରିବି ନାହିଁ, ଆପଣ କୁହନ୍ତୁ ।

ଶରଦିନ୍ଦୁ ଟିକିଏ ଚିନ୍ତାକରି କହିଲା : ମୁଁ ବି.ଏସ୍‌ସି. ପଢୁଥିଲି । ନାନା କାରଣରୁ ପାସ୍ କରିବା ସମ୍ଭବ ହେଲା ନାହିଁ । କଲେଜ ଛାଡ଼ିଲିଣି ପ୍ରାୟ ତିନିବର୍ଷ ହେବ । ଚାକିର ବି ଖୋଜୁଚି ଅନେକ ଦିନରୁ । କିନ୍ତୁ...

ହଠାତ୍ ବାହାରେ ଗାଡ଼ିର ହର୍ଣ୍ଣ ଶୁଣି ଶରଦନ୍ଦୁ ନୀରବ ହୋଇଗଲା । କଥା ଅସମାପ୍ତ ରଖି ସେ ବାହାରକୁ ଉଠିଗଲା ।

ସତ୍ୟବ୍ରତଙ୍କର ମନେହେଲା, ହୁଏତ ସିନେମା କମ୍ପାନୀର କୌଣସି ଲୋକ ଆସିଛି ମଳିନା ପାଖକୁ ।

ପ୍ରକୃତରେ ପର ମୁହୂର୍ତ୍ତରେ ସତ୍ୟବ୍ରତ ଦେଖିଲେ, ଜଣେ ଭଦ୍ରଲୋକ ଶରଦିନ୍ଦୁ ସହିତ ଡ୍ରଇଂରୁମ୍‌ରେ ପ୍ରବେଶ କରିଛନ୍ତି । ଭଦ୍ରଲୋକ ତରୁଣ । ସୁବେଶ ଏବଂ ସୁପୁରୁଷ ।

ଶରଦିନ୍ଦୁ ଭଦ୍ରଲୋକଙ୍କୁ ସଙ୍ଗରେ ଧରି ଡ୍ରଇଂରୁମ୍‌ରେ ପ୍ରବେଶ କରିବା ମାତ୍ରକେ କହିଲା : ଆପଣ ଡାଇମଣ୍ଡ ଆର୍ଟ ପ୍ରୋଡକସନ୍‌ସର ନାମ ଶୁଣିଥିବେ । ମିଷ୍ଟର ପଟ୍ଟନାୟକ ହେଉଛନ୍ତି ତା'ର ଜଣେ ପାର୍ଟନର ।

ସତ୍ୟବ୍ରତ ନମସ୍କାର କଲେ ।

ଭଦ୍ରଲୋକ ପ୍ରତିନମସ୍କାର କରି କିପରି ପ୍ରଶ୍ନବାଚୀ ନୟନରେ ଶରଦିନ୍ଦୁର ମୁହଁକୁ ଚାହିଁଲେ ।

ସତ୍ୟବ୍ରତ ଇଙ୍ଗିତରେ ଶରଦିନ୍ଦୁକୁ ମନା କରିଲେ ।

ଶରଦିନ୍ଦୁ କହିଲା  ମିଷ୍ଟର ମହାପାତ୍ର ଆମର ଜଣେ ଆତ୍ମୀୟ । ସେ ରାଉରକେଲାରେ ରହନ୍ତି । କଟକ ଆସିଛନ୍ତି ।

ମିଷ୍ଟର ପଟ୍ଟନାୟକ ତଥାପି ଏକ ଦୃଷ୍ଟିରେ ସତ୍ୟବ୍ରତଙ୍କୁ କିଛି ସମୟ ଅନାଇ ରହି କହିଲେ : ଆପଣଙ୍କୁ କେଉଁଠି ଦେଖିଥିବା ପରି ମୋର ମନେହେଉଛି ।

: ଦେଖିଥିବେ, ସତ୍ୟବ୍ରତ ସହଜ ସ୍ୱରରେ କହିଲେ । ବୋଧହୁଏ ପ୍ରସଙ୍ଗ ବଦଳାଇବା ପାଇଁ ସତ୍ୟବ୍ରତ ପଚାରିଲେ, ଶୁଣିଛି ଆପଣଙ୍କ ଡାଇମଣ୍ଡ ଆର୍ଟ ପ୍ରୋଡକସନ୍‌ର ଛବି ବଜାରରେ ବେଶ୍ ହିଟ୍ କରୁଛି । ଆପଣଙ୍କ ପରବର୍ତ୍ତୀ ଛବି କ'ଣ ?

ମିଷ୍ଟର ପଟ୍ଟନାୟକ ଆଖିରୁ ଗଗ୍‌ଲସଟା ବାହାର କରି ରୁମାଲରେ ମୁହଁ ପୋଛୁ ପୋଛୁ କହିଲେ : ପ୍ରାଦେଶିକ ଭାଷାରେ ଛବି କରି ଟଙ୍କା ଉଠାଇ ବା କି ଯେ

କଷ୍ଟକର, ଆପଣ ଅସଲ କ୍ଷେତ୍ରକୁ ନ ଆସିଲେ ଆଦୌ ବୁଝିପାରିବେ ନାହିଁ । ଅବଶ୍ୟ ଡାଇମଣ୍ଡ ଆର୍ଟ ପ୍ରୋଡକସନ୍ ତା'ର ଏକ ବ୍ୟତିକ୍ରମ । ବହୁ ଭାବିଚିନ୍ତି ଆମକୁ ଷ୍ଟୋରି ବାଛିବାକୁ ହେଉଛି । ଯା'ହେଉ, ଆଜିଯାଏ ଆମର କୌଣସି ଛବି ଲସ୍ କରିନାହିଁ । ହଁ, ଆମର ପରବର୍ତ୍ତୀ ଛବି ନିଶ୍ଚୟ ଗୋଟାଏ ସେଟ୍‌କୁ ଯାଉଛି । ତେବେ ଏତେବେଳଯାଏ ତା'ର ନାଁ ଦିଆହୋଇ ନାହିଁ ।

ମଳିନା ହାତରେ ଗୋଟାଏ ଟ୍ରେ'ରେ ତିନି କପ୍ ଚା'ଧରି ପ୍ରବେଶ କଲା ।

ସେ ବୋଧହୁଏ ମିଷ୍ଟର ପଟ୍ଟନାୟକଙ୍କର ଆଗମନୀ ଭିତରୁ ଥାଇ ବୁଝିପାରିଥିଲା ।

ସତ୍ୟବ୍ରତ କହିଲେ : ପ୍ରକୃତରେ ଆପଣମାନେ ଆମ ଜାତି ପାଇଁ ଯଥେଷ୍ଟ କରୁଛନ୍ତି । ଦେଶର କଳା ଓ କୃଷ୍ଟିକୁ ବାହାରେ ପ୍ରଚାରିତ କରିବା ପାଇଁ ଫିଲ୍ମ ଏକ ବେଷ୍ଟ୍ ମିଡିଅମ । ଆଉ ଆଜିକାଲିର ଏହି ବୈଜ୍ଞାନିକ ଯୁଗରେ ସିନେମା, ଟେଲିଭିଜନ ଇତ୍ୟାଦି ମାଧ୍ୟମରେ ସେ ସବୁର ପ୍ରଚାର ନ ହେଲେ, ଆମେ ପଛରେ ପଡ଼ିରହିବା ।

ମଳିନା ସମସ୍ତଙ୍କ ହାତକୁ କପେ କପେ ଚା' ବଢ଼ାଇ ଦେଇ ମିଷ୍ଟର ପଟ୍ଟନାୟକଙ୍କୁ କହିଲା : ଆପଣ ଟିକିଏ ଅପେକ୍ଷା କରନ୍ତୁ । ମୁଁ ବର୍ତ୍ତମାନ ପ୍ରସ୍ତୁତ ହୋଇଆସୁଛି ।

ମଳିନା ଚାଲିଯାଉଥିଲା ।

ମିଷ୍ଟର ପଟ୍ଟନାୟକ ଚା' କପ୍‌ଟା ଟେବୁଲ ଉପରେ ରଖୁ ରଖୁ କହିଲେ : କିନ୍ତୁ ଗୋଟାଏ ଅସୁବିଧା ହୋଇଛି ମଳିନା ଦେବୀ । ଆଜି ସେ ଭଦ୍ରଲୋକ ହଠାତ୍ ଗୋଟାଏ ଜରୁରୀ କାମରେ ବାହାରକୁ ଚାଲିଯାଇଛନ୍ତି । ଫେରୁ ଫେରୁ ଦିନେ ଦି'ଦିନ ଡେରି ହୋଇପାରେ । ତେଣୁ ଆମକୁ ଅପେକ୍ଷା କରିବାକୁ ପଡ଼ିବ ।

ମଳିନା ଫେରିଆସିଲା ।

ତା'ର ପଦଚାଳନା କିପରି ଶିଥିଳ ହୋଇପଡ଼ିଥିଲା ।

ସତ୍ୟବ୍ରତ ଇତ୍ୟବସରରେ ପିଆଲାରୁ ପ୍ରାୟ ଅଧେ ଚା' ପିଇ ସାରିଥିଲେ । ହଠାତ୍ ଉଠିପଡ଼ି କହିଲେ : ମୁଁ ଆଜି ଆସୁଛି ମଳିନା ଦେବୀ । ଶରଦିନ୍ଦୁ ବାବୁ, ଆପଣଙ୍କ ସହିତ ପୁଣି ଦେଖାହେବ ।

ସତ୍ୟବ୍ରତ କାହାରି କୌଣସି ଉତ୍ତରକୁ ଅପେକ୍ଷା ନ କରି ଘରୁ ବାହାରି ଚାଲିଗଲେ ।

ରାସ୍ତା ଉପରେ ତାଙ୍କ ଗାଡ଼ି ପଛ ଆଡ଼କୁ ଆଉ ଖଣ୍ଡିଏ ଆସ୍ କଲରର

ଫିଆଟ୍ ଠିଆ ହୋଇଥିଲା । ଗାଡ଼ିଟି ଯେ ମିଷ୍ଟର ପଟ୍ଟନାୟକଙ୍କର, ଏହା ନିଃସନ୍ଦେହ । ତଥାପି ସତ୍ୟବ୍ରତ ଅନ୍ୟମନସ୍କ ଭାବରେ ଗାଡ଼ି ପାଖକୁ ଟିକିଏ ଆଗେଇ ଭିତରକୁ ଚାହିଁଲେ ।

କେତେଟା ଫାଇଲପତ୍ର ପଛ ସିଟ୍‌ରେ ପଡ଼ିଥିଲା ।

ସାମ୍ନା ସିଟ୍‌ରେ ଯେତେବେଳେ ଆଖିପଡ଼ିଲା ସେ ଦେଖିଲେ, ସିଟ୍ ଉପରେ ଗୋଟାଏ ପିକ୍‌ଚର କାର୍ଡ ପଡ଼ିଛି । ଆଉ ଟିକିଏ ଭଲକରି ଚାହିଁ ଦେଖିଲେ, କାର୍ଡଟିରେ ଗୋଟିଏ ଉଲ୍ଲଙ୍ଗନୀ ଜାପାନୀ ତରୁଣୀର ଛବି । ସାମାନ୍ୟ ଦୃଷ୍ଟି ଅନ୍ୟ ଆଡ଼େ ଫେରାଇବା ମାତ୍ରେ ସେ ଦେଖିଲେ, ସେଇ ଜାପାନୀ ତରୁଣୀଟି ବେଶ୍ ମୂଲ୍ୟବାନ୍ ପରିଚ୍ଛଦ ପିନ୍ଧି ସତ୍ୟବ୍ରତଙ୍କ ଆଡ଼େ ଗୋଟାଏ ଆଖି ବନ୍ଦକରି ମୁରୁକି ହସି ଚାହିଁଛି ।

ସତ୍ୟବ୍ରତ ମନେ ମନେ ହସିଲେ ଟିକିଏ । ଏଇ ଛବିଟା ଥ୍ରିଡାଇମେନସନ୍ ଛବି । କଲିକତାର ଚୌରଙ୍ଗୀ ରୋଡ଼ରେ ହକରମାନଙ୍କ ଡାଲାରେ ଏହିପରି ଛବି ସେ ଅନେକ ଦେଖିଛନ୍ତି । ମିଷ୍ଟର ପଟ୍ଟନାୟକ ତରୁଣ, ତେଣୁ ଏପରି ଛବି ପ୍ରତି ଆକର୍ଷଣ ସ୍ୱାଭାବିକ ।

ସତ୍ୟବ୍ରତ ମହାପାତ୍ର ନିଜ ଗାଡ଼ି ପାଖକୁ ଫେରିଗଲେ । ଦରଜା ଖୋଲି ଭିତରେ ପଶିଲେ । ଗାଡ଼ିରେ ଷ୍ଟାର୍ଟ ଦେବା ପୂର୍ବରୁ ଚନ୍ତା କଲେ ଏହାପରେ କେଉଁଠିକି ଯିବେ ?

ହଠାତ୍ ତାଙ୍କର ମନେପଡ଼ିଲା ଫ୍ୟାସନ ହାଉସ କଥା । ସଙ୍ଗେସଙ୍ଗେ ମନେପଡ଼ିଲା ସଦାନନ୍ଦ ସାମନ୍ତରାୟଙ୍କ କଥା । ସେ କହୁଥିଲେ ଶ୍ରୀବାସ୍ତବ ତାଙ୍କ ଦୋକାନରୁ ଏହି ଥ୍ରିଡାଇମେନସନ୍ ଛବି ଅନେକ କିଣେ ।

ସତ୍ୟବ୍ରତଙ୍କର ମନେହେଲା, ଆସ୍ କଲରର ଫିଆଟ୍ ଗାଡ଼ି ଭିତରେ ପଡ଼ିଥିବା ସେହି ଜାପାନୀ ତରୁଣୀଟିର ଛବି, ଶ୍ରୀବାସ୍ତବଙ୍କର କିଣା ଛବି ଭିତରୁ ଗୋଟିଏ ନୁହେଁ ତ ?

ସତ୍ୟବ୍ରତ ଗାଡ଼ିର ଷ୍ଟାର୍ଟ ବନ୍ଦକରି ପୁଣି ତଳକୁ ଓହ୍ଲାଇଲେ । ଦେଖିଲେ ମିଷ୍ଟର ପଟ୍ଟନାୟକ ଓ ମଳିନା ଗାଡ଼ି ପାଖକୁ ଆଗେଇ ଆସୁଛନ୍ତି ।

ମିଷ୍ଟର ପଟ୍ଟନାୟକ ସତ୍ୟବ୍ରତଙ୍କୁ ନ ଦେଖିଲା ପରି ତାଙ୍କ ଗାଡ଼ିର ଦରଜା ଖୋଲି ଭିତରେ ବସିଲେ ଏବଂ ପଛ ସିଟ୍‌ର ଦରଜା ଖୋଲିଦେଲେ ମଳିନା ବସିବା ପାଇଁ ।

ମଳିନା କିନ୍ତୁ ସତ୍ୟବ୍ରତଙ୍କୁ ଦେଖିଲା ପରି ଅଭିନୟ କରିପାରିଲା ନାହିଁ ।

ସତ୍ୟବ୍ରତ ମିଷ୍ଟର ପଟ୍ଟନାୟକଙ୍କ ପାଖକୁ ଆଗେଇ ଆସି ପଚାରିଲେ : ଆପଣଙ୍କ ପର୍‌ରା ନାଁଟା କ'ଣ ଆଜ୍ଞା !

: ରବି ପଟ୍ଟନାୟକ । ସଙ୍ଗେସଙ୍ଗେ ସେ ଗାଡ଼ିରେ ଷ୍ଟାର୍ଟ ଦେଲେ, ଏବଂ ମଳିନା ଆଡ଼େ ଚାହିଁ କହିଲେ, ବସନ୍ତୁ ମିସ୍ ଶତ୍‌ପଥୀ । ଅନେକ ଡେରି ହୋଇଗଲାଣି ।

ମଳିନା ସତ୍ୟବ୍ରତ ଆଡ଼େ ଚାହିଁ, ସ୍ମିତ ହସି ନମସ୍କାର କରି କହିଲା : ପରେ ଦେଖା ହେବ ସାର୍ ।

ସେ ଗାଡ଼ିକୁ ଉଠିଯାଇ ଦରଜା ବନ୍ଦ କଲା ।

ଗାଡ଼ି ଚାଲିଗଲା ।

ସତ୍ୟବ୍ରତଙ୍କର ମନେହେଲା, ଗାଡ଼ିଟା ଯେପରି ରବି ପଟ୍ଟନାୟକ ଊର୍ଦ୍ଧ୍ୱଶ୍ୱାସରେ ଛୁଟାଇ ନେଇ ପଳାଇ ଯାଉଛନ୍ତି ।

ତା'ପରେ ସେ ନିଜେ ଯାଇ ଗାଡ଼ିରେ ବସିଲେ ଏବଂ ଗାଡ଼ିର ଗତି ମନ୍ଥର କରି ପାଦ ଗଣି ଗଣି ଚାଲିଲା ପରି ଆଗେଇଲେ ।

ରବି ପଟ୍ଟନାୟକ ଡାଇମଣ୍ଡ ଆର୍ଟ ପ୍ରୋଡକ୍‌ସନର ଜଣେ ପାର୍ଟନର । ତରୁଣ, ଉତ୍ସାହୀ, କଳାପ୍ରେମୀ ।

ଆଉ ମଳିନା ଶତପଥୀ – ପ୍ଲେ ବ୍ୟାକ୍ ସିଙ୍ଗର । ଦୁହିଁଙ୍କର ଯୋଗାଯୋଗ ଅତି ସ୍ୱାଭାବିକ ।

ସତ୍ୟବ୍ରତ ସିଧା ଫେରିଆସିଲେ 'ଇନ୍ଦ୍ରଜାଲ'କୁ ।

ବାଟରେ ଆଉ କେଉଁଠିକୁ ବା କାହାରି ପାଖକୁ ଯିବାପାଇଁ ତାଙ୍କର ଇଚ୍ଛା ହେଲାନାହିଁ । ସବୁଠାରେ ଗୋଟାଏ ବ୍ୟର୍ଥତାର ଛାପ ତାଙ୍କୁ ଯେପରି ନିରାଶ କରି ପକାଇଥିଲା ।

'ଇନ୍ଦ୍ରଜାଲ'ରେ ପହଞ୍ଚି ରିସେପ୍‌ସନ ରୁମ୍‌ରେ ନୀଳିମା ସହିତ କଥା କହିବାକୁ ଯାଇ ଦେଖିଲେ, ନୀଳିମା କାଉଣ୍ଟର ଉପରେ ମୁଣ୍ଡ ରଖି ଶୋଇପଡ଼ିଛି । ସତ୍ୟବ୍ରତଙ୍କର ଆଗମନ ସେ ବୁଝିପାରିଲା ନାହିଁ ।

ଅନ୍ୟଦିନ ହୋଇଥିଲେ ସତ୍ୟବ୍ରତ ହୁଏତ ନୀଳିମା ଉପରେ ବିରକ୍ତ ହୋଇଥାଆନ୍ତେ । ଆଜି କିନ୍ତୁ ତାଙ୍କର ମନେହେଲା, ନୀଳିମାର ନିଦରେ ବିଘ୍ନ ସୃଷ୍ଟି କରିବା ଉଚିତ୍ ନୁହେଁ । ବିଚାରୀ ଶୋଇଛି, ଶୋଉ । ପରେ ଡାକି ପଠାଇ ସବୁକଥା ବୁଝିବେ ।

ସତ୍ୟବ୍ରତ ଧୀରେ ଧୀରେ ଉପରକୁ ନିଜର ଚେମ୍ବରକୁ ଚାଲିଗଲେ ।

ସେଠାରେ ବି ନିସ୍ତବ୍ଧତା ।

ସବୁଠି ଯେପରି ଏକ ଅସମ୍ଭବ ବ୍ୟର୍ଥତା ।

ଫ୍ୟାନ୍‌ଟା ଖୋଲିଦେଇ ସେ ତାଙ୍କର ରିଭଲଭିଂ ଚେଆରଟା ଉପରେ ବସିପଡ଼ି ଏଣେ ତେଣେ ଚାହିଁଲେ । ଟେବୁଲ ଉପରେ ଚିଠିପତ୍ର କିଛି ନାହିଁ ।

ତା'ହେଲେ ?

ବ୍ୟର୍ଥତା କ'ଣ ଛାଇପରି ତାଙ୍କ ପଛେପଛେ ଧାଇଁଛି ?

ସତ୍ୟବ୍ରତଙ୍କ ଆଖିଯୋଡ଼ାକ ମଧ୍ୟ ଧୀରେଧୀରେ ବନ୍ଦ ହୋଇଆସିଲା । ଚତୁର୍ଦ୍ଦିଗ ଅନ୍ଧକାର । ଅନ୍ଧକାର ସମୁଦ୍ର ମଧ୍ୟରେ ସତ୍ୟବ୍ରତ ନୀରବରେ ବୁଡି ରହିଲେ ।

କିଛି ସମୟ ପରେ ତାଙ୍କ ନାକରେ ଏକ ମୃଦୁ ଗନ୍ଧ ପ୍ରବେଶ କଲା । ଖୁବ୍ ମିଠା । ଅଥଚ...

ସତ୍ୟବ୍ରତ ଆଖି ଖୋଲି ଚାହିଁଲେ । ସାମ୍‌ନାରେ କେହି ନାହିଁ । ଏଣେତେଣେ ଚାହିଁଲେ ।

ବୁକ୍ ସେଲଫ ଉପରେ ଏକ ଦରମଉଳା ମୁଚୁକୁନ୍ଦ ଫୁଲ ।

ହଠାତ୍ ସତ୍ୟବ୍ରତଙ୍କ ଦେହରେ ଯେପରି ଏକ ତଡ଼ିତ୍ ପ୍ରବାହ ଖେଳିଗଲା । ସେ ସଜାଗ ହୋଇଉଠିଲେ । ଫୁଲଟାକୁ ବୁକ୍ ସେଲଫ୍ ଉପରୁ ଆଣି ଟେବୁଲ ଉପରେ ରଖିଲେ ।

ହଁ, ଏଇ ଫୁଲର ଗନ୍ଧ ତାଙ୍କ ନାକରେ ବାଜୁଥିଲା ।

ଫୁଲଟା ନିଜ ହାତରେ ଆଣିଥିଲେ ସତ୍ୟବ୍ରତ । କିନ୍ତୁ ଏଇ ଫୁଲ...

ଟେଲିଫୋନ୍‌ଟା ବାଜି ଉଠିଲା ।

: ହ୍ୟାଲୋ... ସତ୍ୟବ୍ରତ ମାଉଥ୍ ପିସ୍‌ରେ ମୁହଁ ରଖି କହିଲେ ।

ନୀଳିମା କହିଲା, ଆପଣ କେତେବେଳେ ଆସିଲେ ମୁଁ ଜାଣିପାରି ନାହିଁ ସାର୍ । କିଛି କରିବାକୁ ହେବ ?

ସତ୍ୟବ୍ରତ କହିଲେ : ମୁଁ ଇନ୍ଦ୍ରଜାଲରୁ ଯିବାପରେ ଆଉ କିଛି ଖବର ନାହିଁ ?

: ନା, ସାର୍ ।

: ବେଶ୍, ତମେ ଟିକିଏ ମହେନ୍ଦ୍ରବାବୁଙ୍କ ସହିତ ଯୋଗାଯୋଗ କର ।

: କୋଉ ମହେନ୍ଦ୍ରବାବୁଙ୍କ କଥା ଆପଣ କହୁଛନ୍ତି ?

: ମହେନ୍ଦ୍ର ମିଶ୍ର । ପୋଲିସ୍ ଇନିସ୍‌ପେକ୍‌ଟର । ସତ୍ୟବ୍ରତ ରିସିଭରଟା ରଖିଦେଇ, ମୁଚୁକୁନ୍ଦ ଫୁଲଟାକୁ ନାକ ପାଖରେ ନେଇ ଶୁଙ୍ଘିଲେ । ବୁଲେଇ ଚଲେଇ ଦେଖିଲେ । ମଉଳି ପଡ଼ିଛି ।

କିନ୍ତୁ ଏଇ ଫୁଲଟା...

ଟେଲିଫୋନ୍ ବାଜି ଉଠିଲା । ପୋଲିସ୍ ଇନିସ୍‌ପେକ୍‌ଟର ମହେନ୍ଦ୍ର ମିଶ୍ର ଅପର ପ୍ରାନ୍ତରୁ କହିଲେ : ହଠାତ୍ ମୋତେ ମନେପକେଇଲେ ଯେ ମିଷ୍ଟର ମହାପାତ୍ର !

ସତ୍ୟବ୍ରତ ଉଲ୍ଲସିତ ହୋଇ କହିଲେ : ଆପଣଙ୍କ ସହିତ ଗୋଟାଏ ଜରୁରୀ କାମ ଅଛି ମହେନ୍ଦ୍ର ବାବୁ । କାମଟା ହେଲା, ଟିକିଏ ନିରୋଳାରେ ବସି ଗଳ୍ପ କରିବା । ଆପଣଙ୍କୁ ସମୟ କେତେବେଳେ ହେବ ?

ମହେନ୍ଦ୍ର ବାବୁ ମୁହୂର୍ତ୍ତେ ନୀରବ ରହି କହିଲେ : ଆଜି ଗୋଟାଏ ମର୍ଡର କେସ୍ ତଦନ୍ତରେ ବର୍ତ୍ତମାନ ମୁଁ ବାହାରିଛି । ଫେରୁ ଫେରୁ କେତେବେଳ ହେବ ଜାଣିନାହିଁ । କିନ୍ତୁ ଆପଣଙ୍କ କାମଟା କ'ଣ ଖୁବ୍ ଜରୁରୀ ?

: ହଁ, ଜରୁରୀ, ତେବେ ଖୁଉବ୍ କି ନୁହେଁ ସେକଥା ମୁଁ ନିଜେ ବି କହିପାରୁ ନାହିଁ । ବାଇ ଦି ବାଏ, ଆଉ ଗୋଟାଏ କଥା ମହେନ୍ଦ୍ରବାବୁ । ଆପଣ ମୋ' ପାଇଁ ଟିକିଏ କରେଇ ଦେଇପାରିଲେ ବିଶେଷ ଉପକୃତ ହୁଅନ୍ତି ।

: କ'ଣ କୁହନ୍ତୁ ।

: ଆପଣ ଦୁଇ ଚାରିଜଣ ଲୋକ ଲଗାଇ କଟକ ସହରଟା ଟିକିଏ ଖୋଜେଇ ପାରିବେ ?

: କାହାକୁ ?

: ନା ନା, କାହାକୁ ନୁହେଁ । ଗୋଟାଏ ଫୁଲଗଛ । ମାନେ ମୁଚୁକୁନ୍ଦ ଫୁଲଗଛ । କହି ସତ୍ୟବ୍ରତ ହୋ ହୋ ହୋଇ ହସି ଉଠିଲେ ।

ମହେନ୍ଦ୍ରବାବୁ ହୁଏତ ସତ୍ୟବ୍ରତଙ୍କର ଉଦ୍ଦେଶ୍ୟଟା ଠିକ୍ ବୁଝିପାରିଲେ ନାହିଁ । କହିଲେ : ମୁଚୁକୁନ୍ଦ ଫୁଲଗଛ କୋଉଠୁ ଖୋଜିବି ?

ସତ୍ୟବ୍ରତ କହିଲେ : ଆପଣ ମୋ' କଥା ଶୁଣି ବୋଧହୁଏ ଅବାକ୍ ହୋଇଗଲେ ମହେନ୍ଦ୍ର ବାବୁ । କିନ୍ତୁ ସତରେ କଟକ ସହରରେ ବିଭିନ୍ନ ସ୍ଥାନରେ କେଉଁଠି ମୁଚୁକୁନ୍ଦ ଫୁଲଗଛମାନ ଅଛି, ମୋର ଟିକିଏ ଜାଣିବା ଦରକାର ହୋଇଛି । ଆପଣ ଠିକ୍ ବୁଝିପାରୁଥିବେ । ମୁଁ ଅଥଳ ସମୁଦ୍ରରେ ଆଶ୍ରୟ ଖୋଜୁଛି । କ'ଣ ମୋ' ପାଇଁ ଏତକ କରିପାରିବେ ?

: କିନ୍ତୁ ମିଷ୍ଟର ମହାପାତ୍ର, ମୁଚୁକୁନ୍ଦ ଫୁଲଗଛ କଟକ ସହରରେ ହୁଏତ ଅନେକଙ୍କ ବଗିଚାରେ ଥିବ । ଆପଣ କେଉଁ ଏରିଆରେ ଖୋଜିବା କଥା କହୁଛନ୍ତି ?

: ମୁଁ କହୁଛି ଏଇ ଡଗରପଡ଼ା, ମହମ୍ମଦିଆ ବଜାର ଲଗାଏତ କିଲା ପଡ଼ିଆ ଭିତରେ କେଉଁଠି କେଉଁଠି ଓ କାହା କାହା ବାଡ଼ିବଗିଚାରେ ଅଛି, ଟିକିଏ ଜାଣିପାରିଲେ ଭଲ ହୁଅନ୍ତା ।

: ଆଚ୍ଛା ମୁଁ ଚେଷ୍ଟା କରିବି ।

: ଅଶେଷ ଧନ୍ୟବାଦ । ହଁ ମହେନ୍ଦ୍ର ବାବୁ, ଆପଣ ତଦନ୍ତରୁ ଫେରିଲେ ମୋତେ ଫୋନ୍ କରିବେ । ମୁଁ ରାତି ସାତଟା ଠାରୁ କଟକ ହୋଟେଲରେ ଆପଣଙ୍କୁ ଅପେକ୍ଷା କରିଥିବି ।

ସତ୍ୟବ୍ରତ ରିସିଭର ରଖିଦେଲେ ।

କେସ୍‌ଟା ବଡ଼ ଜଟିଳ ।

ପଙ୍କଜ ମଲ୍ଲିକଙ୍କର ଦୃଢ଼ ବିଶ୍ୱାସ ଯେ ତାଙ୍କ ଷ୍ଟ୍ରଂରୁମ୍‌ର ଚାବି ଖୋଲିବା କାଇଦା ତାଙ୍କ ଛଡ଼ା ଦ୍ୱିତୀୟ କେହି ଜାଣନ୍ତି ନାହିଁ । ତଥାପି ଷ୍ଟ୍ରଂରୁମ୍ ଖୋଲା ହୋଇ ମୂଲ୍ୟବାନ ଅଳଙ୍କାର ଅପହୃତ ହେଉଛି ।

ଏ କ୍ଷେତ୍ରରେ କାହାକୁ ସେ ସନ୍ଦେହ କରିବେ ?

ମୁଚୁକୁନ୍ଦ ଫୁଲଟାକୁ ଟେବୁଲ ଉପରୁ ଉଠାଇ ପୁଣିଥରେ ଶୁଙ୍ଘିଲେ ଏବଂ ଟେବୁଲ ଡ୍ରୟାର ଟାଣି ଭିତରେ ରଖିଦେଇ ଉଠି ଠିଆହେଲେ ।

ସେଲିର ଅନ୍ତରଙ୍ଗ ବଂଧୁ ଓ ବାନ୍ଧବୀମାନଙ୍କ ଲିଷ୍ଟ ମଧ୍ୟରୁ ମାତ୍ର ଦୁଇଜଣଙ୍କ ପାଖକୁ ସେ ଯାଇଛନ୍ତି । ଆଉ ଜଣେ ଦୁଇଜଣଙ୍କ ପାଖରୁ ଘୂରି ଆସିଲେ କିମିତି ହୁଅନ୍ତା ?

ଧୀରେ ଧୀରେ ଚିନ୍ତିତ ମନରେ ସେ ତଳକୁ ଓହ୍ଲାଇଗଲେ ।

ରିସେପ୍‌ସନ କାଉଣ୍ଟରରେ ନୀଳିମା ଠିଆହୋଇ ପଡ଼ିଲା ।

ସତ୍ୟବ୍ରତ ଇଂଗିତରେ ନୀଳିମାକୁ ବସିବାକୁ କହି କହିଲେ ମୁଁ ଟିକିଏ ବାହାରୁଛି । ଘଣ୍ଟାଏ ଦେଢ଼ଘଣ୍ଟା ମଧ୍ୟରେ ଫେରିଆସିବି । ସତ୍ୟବ୍ରତ ଯାଇ ଗାଡ଼ିରେ ବସିଲେ ।

ଏଥର ଅନୁପମ ହାଜରା ।

ଅନୁପମ ହାଜରା ଘରେ ଥିଲା ।

ଦରବାନ ସତ୍ୟବ୍ରତ ମହାପାତ୍ରଙ୍କୁ ଓଏଟିଙ୍ଗ୍ ରୁମ୍‌ରେ ବସାଇ ଖବର ଦେବାକୁ ଗଲା ।

ମହାନଦୀ କୂଳରେ ସୁନ୍ଦର ଦୋ'ତାଲା କୋଠାଟିଏ । ନୂଆ ତିଆରି ହୋଇଛି । ଘରର ଆଦବକାଇଦା ଓ ଜାକଜମକ ଦେଖି ମନେହେଉଥିଲା ଅନୁପମ ହାଜରା ବେଶ୍ ଅବସ୍ଥାସଂପନ୍ନ ।

ଦରବାନ୍ ଫେରିଆସି କହିଲା : ଛୋଟବାବୁ ବାଥ୍‌ରୁମ୍‌ରେ ଅଛନ୍ତି, ବାହାରିଲେ ଖବର ଦିଆଯିବ ।

ସତ୍ୟବ୍ରତ ନୀରବରେ କିଛି ସମୟ ବସିରହି ଉଠି ଠିଆ ହେଲେ ।

ଦରବାନ୍ ପାଖକୁ ଲାଗିଆସି କହିଲା : ବସନ୍ତୁ ଆଜ୍ଞା । ଏଇ ଦଶ ପନ୍ଦର ମିନିଟ୍ ଭିତରେ ଛୋଟବାବୁଙ୍କ କାମ ଶେଷ ହୋଇଯିବ ।

: ଆଉ ବଡ଼ବାବୁ ? ହଠାତ୍ ସତ୍ୟବ୍ରତ ପଚାରି ଦେଲେ ।

: ବଡ଼ବାବୁ ସକାଳୁ ବାହାରି ଯାଆନ୍ତି । ଫେରନ୍ତି ଯାଇ ଚାରିଟା ବେଳକୁ । ବଡ଼ବାବୁଙ୍କ ପାଖରେ କାମ ଥିଲେ ଆପଣ ରାତି ଆଠଟା ପରେ ଆସିବେ । ସେତେବେଳେ ସେ ଫ୍ରି ଥାଆନ୍ତି ।

ସତ୍ୟବ୍ରତ ମନେ ମନେ ଭାବୁଥିଲେ, ଦରବାନକୁ ଆହୁରି ଅନେକ କଥା ପଚାରିବା ପାଇଁ । କିନ୍ତୁ ଲନ୍‌ରେ ଆଉ ଗୋଟିଏ ଗାଡ଼ି ଆସି ଲାଗିବାରୁ ସେ ଟିକିଏ ଅନ୍ୟମନସ୍କ, ହୋଇଉଠିଲେ । ଗାଡ଼ିରୁ ଓହ୍ଲାଇଲେ ଜଣେ ସୁନ୍ଦରୀ ତରୁଣୀ ।

ତରୁଣୀଟି ଆଧୁନିକା । ଆଖିରେ ଗୋଟାଏ କଳାଚଷମା । ହାତରେ ଭ୍ୟାନିଟି ବ୍ୟାଗ୍ । ସେଲୱାର ପଞ୍ଜାବ ପରିହିତା ଏହି ତରୁଣୀଟି ସତ୍ୟବ୍ରତ ଆଖିରେ ଅଣଓଡ଼ିଆ ପରି ମନେହେଉଥିଲା । ପରମୁହୂର୍ତ୍ତରେ ତରୁଣୀଟି ସତ୍ୟବ୍ରତଙ୍କ ଆଡ଼କୁ ଆଗେଇ ଆସିଲା ।

ତରୁଣୀଟି ଓଏଟିଂ ହଲ୍‌ଘର ଦୁଆରେ ପହଞ୍ଚିବା କ୍ଷଣି, ଦରବାନ୍ ଆଗେଇ ଯାଇ କହିଲା   ବାବୁ ବାଥ୍‌ରୁମ୍‌ରେ ଅଛନ୍ତି । ଆପଣ ଟିକିଏ ଅପେକ୍ଷା କରନ୍ତୁ ।

ତରୁଣୀଟି ଗୋଟିଏ ଚେଆର ଉପରେ ଯାଇ ବସିଲା ।

ସତ୍ୟବ୍ରତ ଦୂରରୁ ତରୁଣୀଟିକୁ ଲକ୍ଷ୍ୟ କରୁଥିଲେ ।

ଦରବାନ୍ ସତ୍ୟବ୍ରତ ପାଖକୁ ଆସି କହିଲା   ଆଉ ତ ଛୋଟବାବୁଙ୍କର ଆପଣଙ୍କ ସହିତ ଦେଖା ହେବନାହିଁ ଆଜ୍ଞା ।

: କାହିଁକି ?

: ରୁମାଦେବୀ ଆସିଲେଣି, ସେ ବର୍ତ୍ତମାନ ତାଙ୍କ ସଙ୍ଗରେ ଚାଲିଯିବେ ।

: ରୁମା ଦେବୀଟି କିଏ ?

: ଏଇ ଯିଏ ଆସିଲେ ଏଇକ୍ଷିଣା ।

: ବୁଝିଲି ଯେ ! ସେ ତମ ସାନବାବୁଙ୍କର କ'ଣ ହୁଅନ୍ତି ?

ଦରବାନ କହିଲା : କିଛି ତ ହୁଅନ୍ତି ନାହିଁ, କିନ୍ତୁ ସାନବାବୁଙ୍କର ସେ ଭାରି ସାଙ୍ଗ । ରୁମାଦେବୀ ଆସିଲେ ସାନବାବୁ ଯେତେ ବ୍ୟସ୍ତ ଥାଆନ୍ତୁ, ଘରେ ଯେତେ ଅସୁବିଧା ଥାଉ, ସେ ତାଙ୍କ ସଙ୍ଗରେ ବାହାରି ଯିବେଇ ।

: ହୁଁ । ସତ୍ୟବ୍ରତ ଗୋଟିଏ ବଡ଼ ହୁଁ ମାରି ନୀରବରେ ଠିଆ ହେଲେ ।

ଦରବାନ କିଛି ସମୟ ଏପାଖ ସେପାଖ ହୋଇ ପୁଣି ଆସି ସତ୍ୟବ୍ରତଙ୍କୁ ପଚାରିଲା : ସାନବାବୁଙ୍କ ପାଖରେ ଆପଣଙ୍କର କ'ଣ ଜରୁରୀ କାମ ଥିଲା ?

: ଉଁ, ହଁ, ଟିକିଏ କାମ ଥିଲା, ତେବେ ଜରୁରୀ ନୁହେଁ ।

: ତା'ହେଲେ ଆପଣ ଯାଆନ୍ତୁ ପରେ ଆସିବେ ।

ସତ୍ୟବ୍ରତ ଦରବାନର କଥାରେ କିଛି ଉତ୍ତର ନ ଦେଇ ଧୀରେ ଧୀରେ ରୁମା ଆଡ଼େ ଆଗେଇ ଗଲେ ଏବଂ ଅଳ୍ପ ଦୂରରେ ପଡ଼ିଥିବା ଗୋଟିଏ ଚେଆର ଉପରେ ବସିଲେ ।

ରୁମା ଭ୍ୟାନିଟି ବ୍ୟାଗ ଖୋଲି, ରୁମାଲ ବାହାର କରି ନାକରେ ଶୁଙ୍ଘିଲା ।

ଗନ୍ଧଟା ସତ୍ୟବ୍ରତଙ୍କୁ ମଧ୍ୟ ଆକୃଷ୍ଟ କଲା ।

ରୁମା ପୁଣି ଭ୍ୟାନିଟି ବ୍ୟାଗରେ ରୁମାଲଟା ରଖି ନୀରବରେ ବସି ରହିଲା ।

ଧୀରେ ଧୀରେ ବେଳ ଯେତିକି ଗଡୁଥିଲା, ସତ୍ୟବ୍ରତ ସେତେ ବିବ୍ରତ ହେଉଥିଲେ ।

ସତ୍ୟବ୍ରତ ଶେଷ ପର୍ଯ୍ୟନ୍ତ ସ୍ଥିର ହୋଇ ବସିପାରିଲେ ନାହିଁ । ସେ ଉଠିଯାଇ ଟହଲିବାକୁ ଲାଗିଲେ ।

ଦରବାନ ଆସି ରୁମାକୁ କ'ଣ କହିଲା ।

ରୁମା ଚେଆରରୁ ଉଠି, ସତ୍ୟବ୍ରତଙ୍କ ଆଡ଼କୁ ଥରେ ଚାହିଁ, ଧୀରେ ଧୀରେ ଉପରକୁ ଉଠିଗଲା ।

ସତ୍ୟବ୍ରତ ରୁମାର ଯିବାପଥକୁ ଅନାଇ ରହିଲେ । ଏବଂ ଆହୁରି ପ୍ରାୟ ଅଧଘଣ୍ଟା ଯାଏ ସେହିଠାରେ ସେ ଟହଲିବାକୁ ଲାଗିଲେ ।

ରୁମା କିମ୍ବା ଅନୁପମ କେହି ତଳକୁ ଓହ୍ଲେଇଲେ ନାହିଁ ।

ସତ୍ୟବ୍ରତଙ୍କୁ ଉପରକୁ ଯିବା ପାଇଁ ମଧ୍ୟ ଡକରା ଆସିଲା ନାହିଁ ।

ଶେଷରେ ସେ ଦରବାନର ସାହାଯ୍ୟ ଲୋଡ଼ିଲେ । ପକେଟରୁ ଗୋଟିଏ ନାମାଙ୍କିତ କାର୍ଡ ବାହାର କରି ଦରବାନ ହାତକୁ ବଢ଼ାଇ ଦେଇ କହିଲେ : ଟିକିଏ ଛୋଟବାବୁଙ୍କୁ ପାଖକୁ ପଠାଇଦିଅ ।

ଦରବାନ୍ କାର୍ଡଟି ନେଲା । କିନ୍ତୁ ତା'ଠାରେ କୌଣସି ଉତ୍ସାହ ଦେଖାଯାଉ ନ ଥିଲା, ଧୀରେ ଧୀରେ ସେ ପଛକୁ ଚାହିଁ ଚାହିଁ ଆଗେଇ ଗଲା ଏବଂ କିଛି ସମୟ ପରେ ଫେରିଆସି କହିଲା : ସାନବାବୁଙ୍କ ପାଖକୁ ପଠାଇ ଦେଇଛି ।

: ତମେ ନିଜେ ଦେଇ ଆସିନାହଁ ?

: ନା ଆଜ୍ଞା, ଆମର ଉପରକୁ ଯିବାର ହୁକୁମ୍ ନାହିଁ ।

: ଉପରେ ଆଉ କିଏ ଅଛନ୍ତି ?

: ଚାକର ବାକର, ଲୋକବାକ ଅନେକ ଅଛନ୍ତି ।

: ତମ ସାନବାବୁ କ'ଣ କରନ୍ତି ?

ଦରବାନଟା ବୋଧହୁଏ ସତ୍ୟବ୍ରତଙ୍କ କଥାର ଉଦ୍ଦେଶ୍ୟ ବୁଝିପାରି ନ ଥିଲା । ପଚାରିଲା : କ'ଣ କରନ୍ତି ମାନେ ?

: ଏଇ କାମ ଦାମ କି ପଢ଼ାପଢ଼ି, କିଛି...

: ମୁଁ କହିପାରିବି ନାହିଁ ଆଜ୍ଞା । ସାନବାବୁ ତ ଯାଆନ୍ତି, ଆସନ୍ତି, ଘରେ ଥାଆନ୍ତି । ତାଙ୍କର ବନ୍ଧୁବାନ୍ଧବ ଆସନ୍ତି, ନାଚଗାନ ହୁଏ । ସେମାନେ ପୁଣି ଚାଲିଯାଆନ୍ତି । ଏଇଆ ତ କାମ । ଆଉ କ'ଣ !

ଆହୁରି ପନ୍ଦର ମିନିଟ୍ କଟିଗଲା । କିନ୍ତୁ ଉପରୁ ସତ୍ୟବ୍ରତଙ୍କ ପାଖକୁ କିଛି ଖବର ଆସିଲା ନାହିଁ ।

ସେ ନିଜକୁ କ୍ରମେ ଅପମାନିତ ମନେକଲେ ।

ଏବଂ ସ୍ଥିର କଲେ ଆଉ ଅପେକ୍ଷା ନୁହେଁ । ଏଥର ସେ ଏଠାରୁ ଚାଲିଯିବେ । ପରେ ଅନ୍ୟ ଉପାୟରେ ଅନୁପମ ସହିତ ଦେଖା କରିବେ ।

କିନ୍ତୁ ଏଇ ରୁମାଟି କିଏ ?

ସତ୍ୟବ୍ରତଙ୍କ ମନଟା କ୍ରମେ ଭାରାକ୍ରାନ୍ତ ହୋଇପଡ଼ିଲା ।

ସେ ଉଠିଯାଇ ତାଙ୍କ ଗାଡ଼ିର ଦରଜା ଖୋଲି ଭିତରେ ବସିଲେ । ନା, ଆଉ ନୁହେଁ, ଏଥର ସେ ଫେରିଯିବେ ।

କିନ୍ତୁ ଏଇ ରୁମାଦେବୀ ! ସେ କ'ଣ ତାଙ୍କ ନାଟକର ନାୟିକା ହେବା ସମ୍ଭବ ନୁହେଁ ! ରୂପ, ଯୌବନ, ବୟସ ଅଛି ରୁମାର । ଖାଲି ଚରିତ୍ର ସହିତ ଖାପ ଖୁଆଇ ପାରିଲେ ରୁମାକୁ ସତ୍ୟବ୍ରତଙ୍କ ନାଟକର ନାୟିକା ଚରିତ୍ରରେ ଅସମ୍ଭବ ଭାବରେ ଖାପ ଖାଇଯିବ ।

କିନ୍ତୁ ରୁମା ବେକରେ ତ ସେ ସେହି ମୂଲ୍ୟବାନ ମୟୂରକଣ୍ଠୀ ହାରଟା ଦେଖିଲେ ନାହିଁ !

ଧେତ୍ ! ଯେତେ ସବୁ ବାଜେ ଭାବନା ।

ସତ୍ୟବ୍ରତ ଗାଡ଼ିରେ ଷ୍ଟାର୍ଟ ଦେଲେ ଏବଂ ଗାଡ଼ିଟା ବାହାର କରି ରାଜରାସ୍ତାକୁ ଚାଲିଗଲେ ।

ସେମିତି ଅନ୍ୟମନସ୍କ ।

ଏକ ସମୟରେ ସେ ଫ୍ୟାସନ ହାଉସ୍ ପାଖରେ ପହଞ୍ଚି ଗାଡ଼ିଟା ବନ୍ଦ କଲେ । ସଦାନନ୍ଦ ସାମନ୍ତରାୟ ସତ୍ୟବ୍ରତଙ୍କୁ ଗାଡ଼ିରୁ ଓହ୍ଲାଉ ଥିବାର ଦେଖି ରାସ୍ତା ଉପରକୁ ଧାଇଁ ଆସିଲେ ଏବଂ ବିଚଳିତ କଣ୍ଠରେ କହିଲେ, ଆଜି ସେହି ଯୋଡ଼ି ଆସିଥିଲେ ସାର୍ । ଶ୍ରୀବାସ୍ତବ ଆଉ ତାଙ୍କର ସେହି ସଂଗିନୀଟି । ତାଙ୍କୁ ମୁଁ ପ୍ରାୟ ଅଧଘଣ୍ଟା ଖଣ୍ଡ ଅଟକାଇ ଥିଲି । ଆପଣଙ୍କ ପାଖକୁ ଫୋନ୍ କରି କରି ହାଲିଆ ହୋଇଯାଇଛି । ନୀଳିମା ଦେବୀ ଆପଣଙ୍କର କିଛି ଖବର ଦେଇପାରିଲେ ନାହିଁ ।

ସତ୍ୟବ୍ରତ ଧୀରେ ଧୀରେ ଆଗେଇ ଗଲେ ଫ୍ୟାସନ୍ ହାଉସ୍ ଭିତରକୁ । ଶାନ୍ତ ସ୍ୱରରେ କହିଲେ : ଆଜି ସେମାନେ କ'ଣ କିଣିଲେ ?

: ଗୋଟାଏ କଳା ଚଷମା ସାର୍ ।

: କଳାଚଷମା ! ଖାଲି କଳାଚଷମା ନା ଆଉ କିଛି ?

: ନା ।

: ବାନ୍ଧବୀଟି ଯେ ସେଇ, ଆପଣ ଦେଖି ଚିହ୍ନି ପାରିଥିଲେ ?

: ହଁ ସାର୍ । କର୍ମଚାରୀମାନେ ବି ଚିହ୍ନିଲେ । କିନ୍ତୁ ସେଦିନ ସେହି ଭଦ୍ରମହିଳା ଶାଢ଼ି ପିନ୍ଧିଥିଲେ, ଆଉ ଆଜି ପିନ୍ଧି ଆସିଥିଲେ ସେଲୱାର ପଞ୍ଜାବ ।

: କ'ଣ ? ସତ୍ୟବ୍ରତଙ୍କ କଣ୍ଠଟା କିପରି ଅସ୍ୱାଭାବିକ ଶୁଣାଗଲା । ପୁଣି ସେ

ଶାନ୍ତ ସ୍ୱରରେ କହିଲେ, ସେଲଓ୍ୱାର୍ ପଞ୍ଜାବ ଆଉ କିଣିଲେ ଗୋଟାଏ କଳା ଚଷମା ?

ସତ୍ୟବ୍ରତ ଆଉ ମୁହୂର୍ତ୍ତେ ଡେରି କରିପାରିଲେ ନାହିଁ ।

ତାଙ୍କର ଯେପରି ମନେହେଲା, ତାଙ୍କର ଅନୁମାନ ସତ୍ୟ । ରୁମା ହେଉନ୍ତି ସଦାନନ୍ଦବାବୁଙ୍କ ବର୍ଣ୍ଣିତ ସେହି ତରୁଣୀ । ଯିଏ ସେଦିନ ସେଲିର ଜନ୍ମଦିନରେ ମୟୂରୀକଣ୍ଠୀ ହାର ପିନ୍ଧି ଯାଇଥିଲା । ଆଜି ସେ ତାକୁ ଦେଖି ଆସିଲେ ଅନୁପମ ହାଜରା ଘରେ ।

ପୁଣି ସେଇଠାକୁ ଫେରିଯିବାକୁ ହେବ ।

ସଙ୍ଗେସଙ୍ଗେ ସତ୍ୟବ୍ରତ ମହାପାତ୍ର ତାଙ୍କ ଗାଡ଼ିଟା ଛୁଟାଇ ଦେଲେ । ରୁମା ତା'ହେଲେ ଶ୍ରୀବାସ୍ତବର ବାନ୍ଧବୀ ଏବଂ କିଛି ସମୟ ପୂର୍ବରୁ ଶ୍ରୀନିବାସ ସହିତ ଫ୍ୟାସନ ହାଉସକୁ ଆସିଥିଲା । କଳା ଚଷମା କିଣିଲେ ସେମାନେ । ତା'ପରେ ସେ ଆସିଲା ! ଅନୁପମ ହାଜରା ଘରକୁ । କିନ୍ତୁ ଶ୍ରୀବାସ୍ତବ ଗଲା କୁଆଡ଼େ ? ସତ୍ୟବ୍ରତ ଲକ୍ଷ୍ୟ କରିଥିଲେ, ରୁମା ଯେଉଁ ଗାଡ଼ିରୁ ଓହ୍ଲାଇଲା, ସେଇ ଗାଡ଼ିରେ ଜଣେ ଡ୍ରାଇଭର ଥିଲା, ତେବେ ସେଇ କ'ଣ ଶ୍ରୀବାସ୍ତବ ?

ସତ୍ୟବ୍ରତଙ୍କ ଗାଡ଼ିଟା ପୁଣିଥରେ ଯାଇ ଅନୁପମ ହାଜରାଙ୍କ ଲନ୍ ଭିତରେ ପଶିଲା ।

କିନ୍ତୁ ସେଇ ଗାଡ଼ିଟା ?

ଗାଡ଼ିଟା ଯେ ଚାଲିଯାଇଛି । ତା'ହେଲେ ସେମାନେ କ'ଣ ସମସ୍ତେ ବାହାରି ଯାଇଛନ୍ତି ?

ଦରବାନ୍ ଆଗେଇ ଆସି କହିଲା : ଆପଣ ଚାଲିଯିବା ପରେ ସାନବାବୁ ନିଜେ ଆସି ଆପଣଙ୍କୁ ବହୁତ ଖୋଜିଲେ । ମୋ' ଉପରେ ବିରକ୍ତ ହେଲେ । ରାଗିଯାଇ କହିଲେ, କେହି ଭଦ୍ରଲୋକ ଦେଖା କରିବାକୁ ଆସିଲେ ସେମାନଙ୍କୁ ଅଟକେଇ ରଖିପାର ନାହିଁ ?

ସତ୍ୟବ୍ରତଙ୍କର ଦରବାନର କଥା ଶୁଣିବାରେ ଆଗ୍ରହ ନ ଥିଲା । ସେ ଉତ୍କଣ୍ଠିତ ହୋଇ ପଚାରିଲେ ତମ ସାନବାବୁ ରୁମାଦେବୀ ଏମାନେ ସବୁ କୁଆଡ଼େ ଗଲେ ?

: ସମସ୍ତେ ଚାଲି ଯାଇଛନ୍ତି ଆଜ୍ଞା ।

: କୁଆଡ଼େ ?

: ମୁଁ ତ କହିପାରିବି ନାହିଁ ।

: ତମେ ତା'ହେଲେ କ'ଣ କହିପାରିବ ? ସତ୍ୟବ୍ରତ ଯେପରି ଦରବାନଟା ଉପରେ ଟିକିଏ ବିରକ୍ତ ହୋଇଉଠିଥିଲେ ।

ପୁଣି ଗାଡ଼ି ଲେଉଟାଇଲେ ସେଠୁ ।

ହୁଏତ ହାତରୁ ଖସିଗଲା ରୁମା । ଅନୁପମ ଯେତେବେଳେ ଜାଣିବ ସତ୍ୟବ୍ରତ ତାକୁ ଖୋଜୁଛନ୍ତି ଏବଂ ରୁମାର ଅସଲ ଚେହେରା ଯଦି ଅନୁପମକୁ ଜଣାଥିବ, ତା'ହେଲେ ସହଜରେ ଆଉ ହାତମୁଠାରେ ମିଳିବ ନାହିଁ ରୁମାକୁ ।

କିନ୍ତୁ ବର୍ତ୍ତମାନ ଆଉ ଉପାୟ କ'ଣ !

ସତ୍ୟବ୍ରତ ଗାଡ଼ି ଚଳେଇ ଯିବାବେଳେ ଚିନ୍ତା କରୁଥିଲେ, ଏଥର ଯେପରି ସେ ବିଜୟ ହାସଲ କରିପାରିବେ ନାହିଁ । ପ୍ରତି ପଦକ୍ଷେପରେ ତାଙ୍କର ବ୍ୟର୍ଥତାର ଛାପ ଫୁଟିଉଠୁଛି ।

ଘଡ଼ିକୁ ଚାହିଁଲେ ।

ବେଳ ଅନେକ ହେଲାଣି । ଏଥର ଆଉ କୁଆଡ଼େ ନ ଯାଇ ଘରକୁ ଫେରିଯିବେ । ଖାଇପିଇ ଶୋଇପଡ଼ିବେ ଆଖିବୁଜି । ଯେତେବେଳ ଯାଏ ନିଦ ନ ଭାଙ୍ଗିଛି, ଉଠିବେ ନାହିଁ ।

ତା'ପରେ ଦେଖାଯିବ ।

ସତ୍ୟବ୍ରତ ଗାଡ଼ି ଛୁଟାଇ ଦେଲେ ଇନ୍ଦ୍ରଜାଲ ଅଭିମୁଖରେ ।

କିନ୍ତୁ ଏ ଗାଡ଼ିଟା ! କାହାର ଏ ଗାଡ଼ିଟା ! ଦୂରରୁ ଯେପରି ଚିହ୍ନାଚିହ୍ନା ମନେହେଉଛି ।

ସତ୍ୟବ୍ରତ ଇନ୍ଦ୍ରଜାଲର ଲନ୍ ଭିତରକୁ ପଶି ଦେଖିଲେ, ହଁ ସେଇ ଗାଡ଼ିଟା । ସେଇ ଡ୍ରାଇଭର ।

କିନ୍ତୁ ଏଯେ ତାଙ୍କ ଭାବନା ବାହାରର କଥା ।

ତରତର ହୋଇ ସେ ଗାଡ଼ିରୁ ଓହ୍ଲାଇ ସିଧା ଧାଇଁଗଲେ ରିସେପ୍‌ସନ ରୁମ୍‌କୁ ।

ହୁଁ ରୁମା । ଆଉ...

ମୋ' ନାଁ ଅନୁପମ ହାଜରା । ତରୁଣଟି ଚେୟାରରୁ ଉଠିପଡ଼ି ନିଜର ପରିଚୟ ଦେଲା ।

ରୁମା ଉଠି ପଡୁଥିଲା । ସତ୍ୟବ୍ରତ ବସିବାକୁ ଇଙ୍ଗିତରେ କହି କହିଲେ : ଆପଣ ରୁମାଦେବୀ । ଆପଣଙ୍କ ସହିତ ପରିଚୟ ମୋର ପୂର୍ବରୁ ଅଛି ।

ଅନୁପମ ହାଜରା କହିଲା : ଆପଣ ଆମ ଘରକୁ ଯାଇଥିଲେ । ଶୁଣିଲି ଅନେକ ସମୟ ଅପେକ୍ଷା ମଧ୍ୟ କରିଥିଲେ । କିନ୍ତୁ ମୋ' ହାତକୁ ଯେତେବେଳେ ଆପଣଙ୍କ କାର୍ଡଟା ଗଲା, ମୁଁ ସଙ୍ଗେସଙ୍ଗେ ଓହ୍ଲେଇ ଆସି ଆପଣଙ୍କୁ ଖୋଜିଲି । ଶୁଣିଲି ଆପଣ ଚାଲି ଆସିଛନ୍ତି ।

ସତ୍ୟବ୍ରତ କହିଲେ : ଘଟଣାଟା ସତ । ତା'ପରେ ?

ତା'ପରେ ମୁଁ ସଙ୍ଗେ ସଙ୍ଗେ ଆପଣଙ୍କ ଚେମ୍ବରକୁ ଛୁଟିଆସିଲି । କାରଣ ଆମେ ଯେତେ ସାହସୀ ବା ଦାମ୍ଭିକ ହେଲେ ବି ଆପଣମାନଙ୍କ ପରି ମହାପୁରୁଷଙ୍କର ଶୁଭଦୃଷ୍ଟି ଆମ ଉପରେ ପଡ଼ିବା ମାନେ ପ୍ରତିକ୍ରିୟା କ'ଣ ଯେ ଆମ ଭିତରେ ହେଉଥିବ, ଆପଣ ସେ କଥା ବୁଝିପାରିବେ ନାହିଁ ।

ସତ୍ୟବ୍ରତ କହିଲେ : ହଁ ଆପଣଙ୍କ ସହିତ ମୋର କେତେକ ଜରୁରୀ କଥା ଥିଲା । ଆପଣ ଆସିଛନ୍ତି ଭଲ କରିଛନ୍ତି । ଉପରକୁ ଆସନ୍ତୁ । ଚେମ୍ବରରେ ବସି ଆଲୋଚନା କରିବା ।

ସତ୍ୟବ୍ରତ ଆଗେ ଆଗେ ଉପରକୁ ଉଠିଗଲେ ।

ଚେମ୍ବରର ଦରଜା ଖୋଲି ଭିତରେ ବସିଲେ ।

ପଛରେ ଅନୁପମ, କିନ୍ତୁ ରୁମା ?

ସତ୍ୟବ୍ରତଙ୍କ ପ୍ରଶ୍ନବାଚୀ ଚାହାଣ ଆଡ଼େ ଚାହିଁ ଅନୁପମ କହିଲା : ରୁମା ତଳେ ବସିଛି । ସେଇଠି ଥାଉ ।

: ନା ନା ରୁମାଦେବୀ ଆପଣଙ୍କର ବାନ୍ଧବୀ, ତାଙ୍କୁ ତଳେ ଛାଡ଼ି ଆସିବାଟା ଅସୁନ୍ଦର ହେବ, ଆପଣ ବସନ୍ତୁ ମୁଁ ତାଙ୍କୁ ଡାକୁଛି ।

ପୁଣି କ'ଣ ଟିକିଏ ଚିନ୍ତା କରି କହିଲେ : କିଛି ମନେକରିବେ ନାହିଁ ମିଷ୍ଟର ହାଜରା ! ରୁମାଦେବୀ ନିଶ୍ଚୟ ଆପଣଙ୍କର ଖୁବ୍ ଅନ୍ତରଙ୍ଗ ।

ଅନୁପମ ସ୍ମିତ ହସି କହିଲା : ଖୁବ୍ ଅନ୍ତରଙ୍ଗ ନହେଲେ ମଧ୍ୟ ଆନ୍ତରିକତା ଅଛି । ବାନ୍ଧବୀ । ଅନେକ ଦିନର ପରିଚିତ । ଏହାଛଡ଼ା ଆଉ ଅଧିକ କିଛି ନୁହେଁ ।

ସତ୍ୟବ୍ରତ କହିଲେ : ଆପଣ ମିଷ୍ଟର ଶ୍ରୀବାସ୍ତବଙ୍କୁ ଚିହ୍ନନ୍ତି ?

: ଶ୍ରୀବାସ୍ତବ ? ଉହୁଁ, ସେ କିଏ କହନ୍ତୁ ତ ! ମୋର କ'ଣ ତାଙ୍କ ସହିତ ପରିଚୟ ଅଛି ? ଅନୁପମ କଣ୍ଠ କିପରି ଦ୍ୱିଧାଜଡ଼ିତ ମନେହେଉଥିଲା ।

ସତ୍ୟବ୍ରତ କହିଲେ : ଶ୍ରୀବାସ୍ତବ ଜଣେ ଲୋକର ନାମ । କାଳେ ଆପଣ ସେ ନାଁଟା ସହିତ ପରିଚିତ ଥିବେ... ଛାଡ଼ନ୍ତୁ । ଆରେ ରୁମାଦେବୀ ତଳେ ବସିରହିଲେ ଯେ !

ଅନୁପମ ଉଠି ଠିଆହେଲା, କହିଲା : ମୁଁ ଡାକି ଆଣୁଛି ରୁମାକୁ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ।

ସତ୍ୟବ୍ରତ କହିଲେ : ନା ନା, ଆପଣ ବସନ୍ତୁ । ମୁଁ ଡାକି ପଠାଉଛି । ସଙ୍ଗେସଙ୍ଗେ ସତ୍ୟବ୍ରତ ଟେଲିଫୋନ୍ ରିସିଭର ଉଠାଇ ନୀଳିମାକୁ କହିଲେ, ରୁମାକୁ ଉପରେ ଛାଡ଼ିଦେଇ ଯିବାପାଇଁ ।

: ତା'ହେଲେ ଆପଣ କହୁଛନ୍ତି ଶ୍ରୀବାସ୍ତବ ନାମଧାରୀ କୌଣସି ଲୋକ ସହିତ ଆପଣଙ୍କର ପରିଚୟ ନାହିଁ ।

ନୀଳିମା ଚେମ୍ବରର ଦରଜା ଠେଲି ରୁମାକୁ ଭିତରେ ଛାଡ଼ି ଦେଇଗଲା ।

ରୁମା କିନ୍ତୁ କଳାଚଷମାଟା ପୂର୍ବପରି ଆଖିରେ ପିନ୍ଧିଥିଲା ।

ସତ୍ୟବ୍ରତ ରୁମାକୁ ବସିବାକୁ କହି ପଚାରିଲେ : ଆପଣ ମିଷ୍ଟର ଶ୍ରୀବାସ୍ତବଙ୍କ ନାଁ ଶୁଣିଛନ୍ତି ରୁମାଦେବୀ ?

ରୁମା ହଠାତ୍ ଏପରି ଏକ ପ୍ରଶ୍ନବାଣର ସମ୍ମୁଖୀନ ହେବ, ହୁଏତ ଆଶା କରିନଥିଲା । ସେ ଅନୁପମ ମୁହଁକୁ ନୀରବରେ ମୁହୂର୍ତ୍ତେ ଅନାଇ ରହି ମୁଣ୍ଡ ହଲାଇ ଅସମ୍ମତ ଜଣାଇଲା ।

ସତ୍ୟବ୍ରତ କହିଲେ : ଆପଣଙ୍କୁ ମୋର ବିରକ୍ତ କରିବାର ଇଚ୍ଛା ନ ଥିଲା ରୁମାଦେବୀ । ତେବେ ଆପଣ ଯେତେବେଳେ ମିଷ୍ଟର ହାଜରାଙ୍କର ବନ୍ଧୁ, ତେଣୁ ଆଶା କରୁଛି ଦୁଇ ଚାରିଟା କଥା ପଚାରିଲେ ଆପଣ କିଛି ମନେକରିବେ ନାହିଁ ।

ରୁମା ନୀରବରେ ସତ୍ୟବ୍ରତଙ୍କ ମୁହଁକୁ ଅନାଇ ରହିଲା ।

ପୁଣି ସତ୍ୟବ୍ରତ କଥାର ପ୍ରସଙ୍ଗ ବଦଳାଇ କହିଲେ : ଆପଣମାନେ ନିଶ୍ଚୟ କୌଣସି ଜରୁରୀ କାମରେ ବାହାରିଥିଲେ ।

ଅନୁପମ କହିଲା : କାମଟା ଠିକ୍ ଜରୁରୀ ନୁହେଁ । ତେବେ ଯିବାକୁହିଁ ହେବ । ଆମେ କେତେଜଣ ତରୁଣ ତରୁଣୀ ମିଶି ଗୋଟାଏ କ୍ଲବ କରିଛୁ । ମାସରେ ଦୁଇଥର ଆମେ ସେଠାରେ ମିଳିତ ହେଉ । ଅବଶ୍ୟ କ୍ଲବଟା କେବଳ

ମେମ୍ବରମାନଙ୍କ ମଧ୍ୟରେ ସୀମାବଦ୍ଧ । ବାହାରର କୌଣସି ଲୋକଙ୍କୁ ଆମେ ଆଲାଉ କରୁନାହୁଁ ।

: ବେଶ୍ ଭଲ ତ । ଆମ ଏଇ ଓଡ଼ିଶାକୁ ଛାଡ଼ିଦେଲେ ଓଡ଼ିଶା ବାହାରେ ପ୍ରାୟ ପ୍ରତ୍ୟେକ ବଡ଼ ବଡ଼ ସହରରେ ଏହିପରି ବହୁ କ୍ଲବ ଅଛି । ସେଇଟା ବି ଦରକାର । ଦେଶର ଯୁବଶକ୍ତି ମଧ୍ୟରେ ଭାବର ଆଦାନ ପ୍ରଦାନ, ଚିନ୍ତାଧାରାର ବିନିମୟ, ବର୍ତ୍ତମାନ ସମୟରେ ଖୁବ୍ ପ୍ରୟୋଜନ । ତେବେ ଆପଣଙ୍କ କ୍ଲବରେ ବର୍ତ୍ତମାନ ମେମ୍ବର କେତେ ଜଣ ?

: ଖୁବ୍ ବେଶୀ ନୁହନ୍ତି । ଆମେ ମାତ୍ର ତିରିଶ୍ ପଇଁତ୍ରିଶ ଜଣ ଆରମ୍ଭ କରିଛୁ । ତେବେ ଧୀରେ ଧୀରେ ବଢ଼ିଯିବ ।

: ଆପଣ ସେଲିଙ୍କୁ ଚିହ୍ନନ୍ତି ? ସତ୍ୟବ୍ରତ ହଠାତ୍ ପଚାରିଲେ ।

: ସେଲି ! ମାନେ ସବିତା ମଲ୍ଲିକଙ୍କ କଥା ଆପଣ କହୁଛନ୍ତି ?

: ହଁ ହଁ, ସବିତା ମଲ୍ଲିକ । ସେ ବୋଧହୁଏ ଆପଣଙ୍କ କ୍ଲବର ମେମ୍ବର ?

: ମେମ୍ବର ମାନେ ? ସେ ଆମ କ୍ଲବର ଜଏଣ୍ଟ ସେକ୍ରେଟାରୀ । ଆପଣ ତାଙ୍କୁ ଚିହ୍ନନ୍ତି ?. ଅନୁପମ ପଚାରିଲା ।

: ସେଲି ସହିତ ଅବଶ୍ୟ ମୋର ପରିଚୟ ନାହିଁ, ତେବେ ତାଙ୍କ ବାପାଙ୍କ ସହିତ ମୋର ଟିକିଏ ପରିଚୟ ଅଛି । ଆପଣ ହୁଏତ ଭାବୁଥିବେ, ହଠାତ୍ ମୁଁ ଏଠାରେ ସେଲିର ପ୍ରସଙ୍ଗ ଉଠାଇଲି କାହିଁକି । କିନ୍ତୁ ପ୍ରକୃତରେ ଘଟଣାଟା ହେଉଛି, ସେଲିର ଜନ୍ମବାର୍ଷିକୀ ରାତିର ଘଟଣା । ଯେଉଁଥିପାଇଁ ମୁଁ ଆପଣଙ୍କ ଘରକୁ ଯାଇଥିଲି, ସେଇ ଘଟଣା ସମ୍ପର୍କରେ ଦୁଇଚାରିଟା କଥା ଜାଣିବା ପାଇଁ ।

ଅନୁପମ ମୁହୂର୍ତ୍ତେ ସ୍ତବ୍ଧ ହୋଇ ସତ୍ୟବ୍ରତଙ୍କ ମୁହଁକୁ ଅନାଇ ରହି କହିଲା : ସେଦିନ ରାତିରେ ସେଲିର ଜନ୍ମ ଉତ୍ସବରେ ସେପରି କୌଣସି ଦୁର୍ଘଟଣା ତ ଘଟିନାହିଁ, ଘଟିଥିଲା କି ?

ଅନୁପମ ରୁମା ଆଡ଼କୁ ଚାହିଁ ପ୍ରଶ୍ନ କଲା ।

ରୁମା ମୁଣ୍ଡ ହଲାଇ ମନାକଲା ।

ସତ୍ୟବ୍ରତ କହିଲେ : ରୁମାଦେବୀ ବି ସେଦିନ ଜନ୍ମଦିନ ଉତ୍ସବରେ ଉପସ୍ଥିତ ଥିଲେ ?

ଅନୁପମ କହିଲା, ଆପଣ ବୋଧହୁଏ ଜାଣନ୍ତି ନାହିଁ ମିଷ୍ଟର ମହାପାତ୍ର, ସେଲି ଆଉ ରୁମାର ସମ୍ବନ୍ଧ ଭାରି ନିବିଡ଼ । ଦୁହେଁ ଖୁବ୍ ଅନ୍ତରଙ୍ଗ ।

ସତେନା କ'ଣ ! ସତ୍ୟବ୍ରତ ଉତ୍ସାହିତ ହୋଇ କହିଲେ, ଜାଣି ଖୁସି ହେଲି । ତା'ହେଲେ ଆପଣ ବି ସେଦିନ ସେହି ଉତ୍ସବରେ ଉପସ୍ଥିତ ଥିଲେ ।

ରୁମା ମୁଣ୍ଡ ହଲାଇ ସମ୍ମତ ଜଣାଇଲା ।

ସତ୍ୟବ୍ରତ ମନ ଭିତରେ କିନ୍ତୁ ଅନ୍ୟ ପ୍ରସଙ୍ଗ ଖେଳି ବୁଲୁଥିଲା । ସେ ଖାଲି ଭାବୁଥିଲେ, ରୁମାକୁ କିପରି ସେ ସ୍ୱୀକାରୋକ୍ତି କରାଇବେ ଯେ ଶ୍ରୀବାସ୍ତବ ସହିତ ଆଜି ସେ ଫ୍ୟାସନ ହାଉସ୍‌କୁ ଯାଇଥିଲା । କିନ୍ତୁ ଅନୁପମର କଥା ଶୁଣି ସତ୍ୟବ୍ରତ ଟିକିଏ ହତୋତ୍ସାହ ହୋଇପଡ଼ିଥିଲେ ।

କାରଣ ସେଲିର ଜନ୍ମଦିନ ରାତିରେ ଯେଉଁ ଝିଅଟି ସେହି ମୟୂରକଣ୍ଠୀ ହାର ପିନ୍ଧି ଆସିଥିଲା, ସେଇ ଝିଅଟି ସେଲିର ଅପରିଚିତ, ଅଥଚ ଅନୁପମ କହୁଛି, ସେଲି ସହିତ ରୁମାର ସମ୍ପର୍କ ଅତି ନିବିଡ଼ । ତା'ହେଲେ...

ସତ୍ୟବ୍ରତ ହଠାତ୍ ସ୍ୱପ୍ନରୁ ଉଠିଲା ପରି କହିଲେ : ଆଚ୍ଛା ମିଷ୍ଟର ହାଜରା, ଆପଣମାନେ ବର୍ତ୍ତମାନ ଯାଆନ୍ତୁ । ଆପଣମାନଙ୍କୁ ଅଧିକ ସମୟ ଅଟକାଇ ମୁଡ୍ ନଷ୍ଟ କରିବାକୁ ମୁଁ ଚାହେଁ ନାହିଁ ।

: କିନ୍ତୁ ଅସଲ ଘଟଣାଟା ତ କହିଲେ ନାହିଁ ମିଷ୍ଟର ମହାପାତ୍ର ।

ସତ୍ୟବ୍ରତ' କହିଲେ : ଘଟଣାଟା ମୋଟେ ମାରାତ୍ମକ ନୁହେଁ । ସଂକ୍ଷେପରେ ହେଉଛି, ମୁଁ ଗୋଟାଏ ଡକେଇତି କେସ୍‌ର ତଦନ୍ତ କରୁଛି, ସେହି ଡକେଇତିରେ ବହୁ ମୂଲ୍ୟବାନ ଅଳଙ୍କାର ଇତ୍ୟାଦି ଅପହୃତ ହୋଇଛି । ମୁଁ ଖବର ପାଇଲି ଯେ, ସେଲିର ଜନ୍ମ ଉତ୍ସବରେ ଜଣେ ଭଦ୍ରମହିଳା ସେହି ଡକେଇତି ହୋଇଥିବା ହାର ମଧ୍ୟରୁ ଗୋଟିଏ ପିନ୍ଧି ସେଦିନ ଉତ୍ସବରେ ଯୋଗ ଦେଇଥିଲେ । ମୁଁ ସେହି ଭଦ୍ରମହିଳାମାନଙ୍କର ସନ୍ଧାନ କରୁଛି ।

ସତ୍ୟବ୍ରତ ଏହି କଥା କହୁଥିବାବେଳେ ରୁମା ମୁହଁକୁ କଠିନ ଦୃଷ୍ଟିରେ ଚାହିଁଥିଲେ ।

କିନ୍ତୁ ରୁମାର ଦେହମୁହଁରେ କୌଣସି ପରିବର୍ତ୍ତନ ସେ ଦେଖିଲେ ନାହିଁ ।

ତେବେ କ'ଣ କିଛି ସମୟ ପୂର୍ବରୁ ଫ୍ୟାସନ ହାଉସ୍‌କୁ ଶ୍ରୀବାସ୍ତବ ସହିତ ଯାଇଥିବା ତରୁଣୀଟି ରୁମା ନୁହେଁ ? ସଦାନନ୍ଦ ସାମନ୍ତରାୟଙ୍କ ବର୍ଣ୍ଣନା ଅନୁସାରେ ରୁମାର ବେଶପୋଷାକ ସବୁ ଯେ ମିଶିଯାଉଛି !

ଅନୁପମ କହିଲା : ଆମେ ତା'ହେଲେ...

: ହଁ, ଆପଣମାନେ ଆସନ୍ତୁ । ଦରକାର ହେଲେ ରୁମାଦେବୀଙ୍କ ସହିତ ମୋର ଦେଖାହେବ କେଉଁଠି ?

ଅନୁପମ ଚାହିଁଲା ରୁମା ମୁହଁକୁ ।

କଳାଚଷମା ତଳୁ ସତ୍ୟବ୍ରତ ରୁମା ଆଖିର ଭାବ କିଛି ବୁଝିପାରୁ ନଥିଲେ ।

ପୁଣି ଅନୁପମ କହିଲା : ରୁମାଦେବୀଙ୍କୁ ଦରକାର ହେଲେ ଆପଣ ମୋତେ ଖବର ଦେବେ, ମୁଁ ତାଙ୍କ ସହିତ ଯୋଗାଯୋଗ କରାଇଦେବି ।

ସେମାନେ ଚାଲି ଯାଉଥିଲେ ।

ସତ୍ୟବ୍ରତ ସେମାନଙ୍କ ଯିବା ପଥକୁ ଚାହିଁ ଚିନ୍ତା କରୁଥିଲେ, ରୁମା ଝିଅଟିକୁ ସେ ତ ବୁଝିପାରିଲେ ନାହିଁ । ଏହି ଦୀର୍ଘ ସମୟର ଅବସ୍ଥାନ ମଧ୍ୟରେ ତା' ମୁହଁରୁ ସେ ପଦେ ହେଲେ କଥା ଶୁଣିପାରିଲେ ନାହିଁ ।

ରୁମା ତା'ହେଲେ...

ଘଡ଼ିରେ ଠିକ୍ ସାତଟା ବାଜିବାକ୍ଷଣି କଟକ ହୋଟେଲର ମ୍ୟାନେଜର କିଶାନ ପଟ୍ଟନାୟକ ଯେଉଁ ଫୋନ୍‌ଟା ରିସିଭ୍ କଲେ ସେଇଟା ସତ୍ୟବ୍ରତ ମହାପାତ୍ରଙ୍କର ।

କିଶାନ ପଟ୍ଟନାୟକ ଉତ୍ତରରେ କହୁଥିଲେ : କିନ୍ତୁ ମିଷ୍ଟର ମହାପାତ୍ର ତ ଆଜି ଏଠାକୁ ଆସିନାହାନ୍ତି ।

ଅପର ପ୍ରାନ୍ତରୁ ଶୁଣାଗଲା : ତାଙ୍କର ଆସିବାର ଥିଲା । ଯଦି ସେ ଆସନ୍ତି, ତା'ହେଲେ...

ଅପର ପ୍ରାନ୍ତରୁ କଥା ଶେଷ ହେଲାନାହିଁ । କିଶାନ ପଟ୍ଟନାୟକ ଚିତ୍କାର କରିଉଠିଲେ : ହଁ ହଁ, ମିଷ୍ଟର ମହାପାତ୍ର ଆସୁଛନ୍ତି, ଆପଣ ଟିକିଏ ଧରନ୍ତୁ ।

ପରମୁହୂର୍ତ୍ତରେ ସତ୍ୟବ୍ରତ ରିସିଭରଟା କିଶାନ ପଟ୍ଟନାୟକଙ୍କ ହାତରୁ ନେଇ କହିଲେ : କ'ଣ ଖବର କୁହନ୍ତୁ ମହେନ୍ଦ୍ରବାବୁ ।

ଅପର ପ୍ରାନ୍ତରୁ ଶୁଣାଗଲା : ଖବର ଅଛି, କିନ୍ତୁ ମୋର ଯିବାକୁ ଟିକିଏ ଡେରି ହେବ ।

ସତ୍ୟବ୍ରତ କହିଲେ : ତାହାହେଲେ ମୁଁ ଥାନାକୁ ଯିବି ?

ମହେନ୍ଦ୍ର ବାବୁ କହିଲେ : ନା ନା, ଆପଣ ଆସି କିଛି ଲାଭ ନାହିଁ, ବରଂ ଆପଣ ସେଇଠି ଅପେକ୍ଷା କରନ୍ତୁ । ମୁଁ ଅଧଘଣ୍ଟା ବା ପଇଁଚାଳିଶ୍ ମିନିଟ୍ ପରେ ଆସୁଛି ।

: ଆଚ୍ଛା । ସତ୍ୟବ୍ରତ ରିସିଭରଟା ରଖିଦେଇ କିଶାନ ପଟ୍ଟନାୟକଙ୍କ ମୁହଁକୁ ଚାହିଁ କହିଲେ, ଆଉ ଖବର କ'ଣ ମିଷ୍ଟର ପଟ୍ଟନାୟକ ? କେହି ନୂଆ ଅତିଥି ?

କିଶାନ ପଟ୍ଟନାୟକ ହୋଟେଲ ରେଜିଷ୍ଟରଟା ସତ୍ୟବ୍ରତଙ୍କ ହାତକୁ ବଢ଼ାଇ ଦେଇ କହିଲେ : ଦେଖନ୍ତୁ ।

ସତ୍ୟବ୍ରତଙ୍କର ଆଜି ଯେପରି ରେଜିଷ୍ଟାର ଦେଖିବାର ଆଗ୍ରହ ନ ଥିଲା । ରେଜିଷ୍ଟାରଟା ବାଁ ହାତରେ ବନ୍ଦ କରିଦେଇ କହିଲେ : ରଜନୀ ପଟେଲଙ୍କ କଥା କୁହନ୍ତୁ । ତାଙ୍କ ହିରୋଇନ୍‌କୁ ସେ ଖୋଜି ପାଇଲେ ?

କିଶାନ ପଟ୍ଟନାୟକ ଉତ୍ସାହିତ ହୋଇ କହିଲେ : ହଁ ପାଇଛନ୍ତି, ଏ ଇତ ଅଳ୍ପ ସମୟ ପୂର୍ବରୁ ରଜନୀ ପଟେଲ ସଦଳବଳେ ଫେରିଲେ । ତାଙ୍କର ବୋଧହୁଏ ସାଇଟ ସିଲେକ୍‌ସନ ହୋଇଯାଇଛି । ଆଗାମୀ ମାସଠାରୁ ସୁଟିଂ ଆରମ୍ଭ ହେବ ।

: କିନ୍ତୁ ହିରୋଇନ୍‌ଟି କିପରି ? ସତ୍ୟବ୍ରତ ପଚାରିଲେ ।

: ନା ନା, ସେପରି ଗୋଟାଏ କିଛି ଅସ୍ୱାଭାବିକ ନୁହେଁ, ତେବେ ଝିଅଟି ଆମ ଏଇ କଟକର । ଦେଖିବେ ?

: ନା, ବର୍ତ୍ତମାନ ସେମାନେ ଫେରିଛନ୍ତି । ସେମାନଙ୍କୁ ଡିଷ୍ଟର୍ବ କରିବା ଉଚିତ ନୁହେଁ । ତେବେ ରଜନୀ ପଟେଲ ବମ୍ବେରୁ ଆସି କଟକରେ ହିରୋଇନ୍ ସିଲେକ୍‌ଟ କଲେ, ଅବଶ୍ୟ ଚିନ୍ତାର ବିଷୟ ।

: ମୁଁ ବି ସେଇକଥା ଭାବୁଥିଲି । ତେବେ ପ୍ରକୃତରେ ଭଦ୍ରଲୋକ କଟକରୁ ଝିଅ ନେଇ ହିରୋଇନ୍ କରିବେ, କି ଏକ୍‌ସଟ୍ରାଙ୍କ ପରି ବ୍ୟବହାର କରିବେ ଭଗବାନ ଜାଣନ୍ତି । ଆଜି ଆଠଟା ବେଳେ ଏଠାରେ ଏକ ସାମ୍ବାଦିକ ସମ୍ମିଳନୀ ହେବ । ରଜନୀ ପଟେଲ ସବୁ କାଗଜର ପ୍ରତିନିଧିମାନଙ୍କୁ ଡାକିଛନ୍ତି ।

: ସତରେ ? ସତ୍ୟବ୍ରତଙ୍କ ଉତ୍ସାହ ଯେପରି ଦୁଇଗୁଣ ବଢ଼ିଗଲା ।

ହଁ, କାଲି ସକାଳୁ ରଜନୀ ପଟେଲଙ୍କର ପ୍ଲାନ ପ୍ରୋଗ୍ରାମ ସବୁ ଖବରକାଗଜମାନଙ୍କରେ ପ୍ରକାଶ ପାଇବ । ଗୋଟାଏ ପବ୍ଲିସିଟି ପ୍ଲାନ୍ ।

: ହୁଁ, ସତ୍ୟବ୍ରତ କ'ଣ କହିବାକୁ ଯାଉଥିଲେ, କିନ୍ତୁ ଦେଖିଲେ ରଜନୀ ପଟେଲ ମ୍ୟାନେଜରଙ୍କ ରୁମ୍ ଆଡ଼କୁ ଆଗେଇ ଆସୁଛନ୍ତି ।

ସେ ସାମ୍‌ନାରେ ସତ୍ୟବ୍ରତଙ୍କୁ ଦେଖି ଉଦ୍‌ବେଳିତ କଣ୍ଠରେ କହିଉଠିଲେ : ଗୁଡ୍ ନାଇଟ୍ ସାର୍ । ମୁଁ କିନ୍ତୁ ଆପଣଙ୍କୁ ମନେ ମନେ ଖୋଜୁଥିଲି ।

: ମୋତେ ? ଟିକିଏ ରହି ସ୍ମିତ ହସି କହିଲେ, ମୋର କିନ୍ତୁ ହିରୋ ହେବାର ଯୋଗ୍ୟତା ଆଦୌ ନାହିଁ ମିଷ୍ଟର ପଟେଲ ।

ରଜନୀ ପଟେଲ ହୋ ହୋ ହୋଇ ହସିଉଠିଲେ ।

ତାଙ୍କ ସଙ୍ଗେସଙ୍ଗେ ସତ୍ୟବ୍ରତ ମଧ୍ୟ ।

ରଜନୀ ପଟେଲ କିଶାନ ପଟ୍ଟନାୟକଙ୍କୁ କହିଲେ : ବ୍ୟବସ୍ଥା କେତେ ଦୂର ?

: ସବୁ ଠିକ୍ ଠାକ୍ । ଉପର ହଲ୍ ଘରରେ ବ୍ୟବସ୍ଥା ହୋଇଛି । ଚାଳିଶି ଜଣ ବସିବା ଭଳି ଚେଆର ପଡ଼ିଛି । ଆପଣଙ୍କ ଗେଷ୍ଟ କ'ଣ ଆଉ ବେଶୀ ହେବେ ? କିଶାନ ପଟ୍ଟନାୟକ ପଚାରିଲେ ।

ରଜନୀ ପଟେଲ ମୁହୂର୍ତ୍ତେ ନୀରବ ରହି, ଆଖିବୁଜି ଟିକିଏ ଚିନ୍ତା କରି କହିଲେ : ସେତିକି ଯଥେଷ୍ଟ ହେବ । ତା'ପରେ ସତ୍ୟବ୍ରତ ଆଡ଼େ ଚାହିଁ କହିଲେ, କ୍ଷମା କରିବେ ଜେଣ୍ଟେଲମ୍ୟାନ୍ ମୁଁ ଆପଣଙ୍କ ନାଁଟା ଜାଣିପାରିଲି ନାହିଁ ।

: ମୋ' ନାଁ ସତ୍ୟବ୍ରତ ମହାପାତ୍ର ।

ରଜନୀ ପଟେଲ କରମର୍ଦ୍ଦନ କରି କହିଲେ : ସେଦିନ ଆପଣଙ୍କ ସହିତ ମୋର ପ୍ରଥମ ପରିଚୟ ହୋଇଥିଲା ଏବଂ ଆପଣଙ୍କର ସହୃଦୟତାର ପରିଚୟ ମୁଁ ପାଇଥିଲି । ଆଜି ଏଠାରେ ଏକ ଛୋଟ ବଂଧୁମିଳନୀର ଆୟୋଜନ କରିଛି । ଆଠଟା ବେଳେ । ଆପଣଙ୍କୁ ସେହି ମିଳନୀରେ ଭାଗ ନେବାକୁ ନିମନ୍ତ୍ରଣ କରିପାରେ କି ?

ରଜନୀ ପଟେଲଙ୍କ କଣ୍ଠରେ ବିନୟ ଭାବ ଫୁଟି ଉଠିଥିଲା ।

ସତ୍ୟବ୍ରତ ଉତ୍ସାହିତ ହୋଇ କହିଲେ : ନିଶ୍ଚୟ, ନିଶ୍ଚୟ । ମୁଁ ବର୍ତ୍ତମାନ ଅନେକ ବେଳଯାଏ ଏଠାରେ ଅଛି । ଆଠଟା ବେଳେ ଆପଣଙ୍କ ମିଳନୀରେ ନିଶ୍ଚୟ ଯୋଗ ଦେବି । କିନ୍ତୁ ମୋତେ ନେଇ ଆପଣ ଅସୁବିଧାରେ ପଡ଼ିବେ ନାହିଁ ତ ?

: ମାନେ ? ରଜନୀ ପଟେଲଙ୍କ ଭ୍ରୂ କୁଞ୍ଚିତ ହୋଇଉଠିଲା ।

: ଏଇ, ମୁଁ ଜଣେ ସାଧାରଣ ମଣିଷ । ପୁଣି ଅନ୍ୟ ଲାଇନ୍‌ର ଲୋକ । ଆପଣଙ୍କ ସିନେମା ସମ୍ବନ୍ଧରେ ମୋର କୌଣସି ଜ୍ଞାନ ନାହିଁ । ସତ୍ୟବ୍ରତ ସହଜ ଓ ସରଳ ସ୍ୱରରେ କହିଲେ ।

ରଜନୀ ପଟେଲ ହୋ ହୋ ହୋଇ ହସିଉଠି, ସତ୍ୟବ୍ରତଙ୍କ ସହିତ କରମର୍ଦ୍ଦନ କରି କହିଲେ : ଆପଣ ଦେଖୁଛି, ବେଶ୍ ମଜାର ଲୋକ ମିଷ୍ଟର ମହାପାତ୍ର । ଆଚ୍ଛା,

ପରେ ଆପଣଙ୍କ ସହିତ ନିରୋଳାରେ ବସି ଅନେକ ସମୟ କଥାବାର୍ତ୍ତା ହେବି । ଆପଣ କିନ୍ତୁ ଚାଲିଯିବେ ନାହିଁ ମିଷ୍ଟର ମହାପାତ୍ର । ଠିକ୍ ଆଠଟା ବେଳକୁ ଉପରକୁ ଆସିବେ ।

ରଜନୀ ପଟେଲ ଫେରି ଯାଉଥିଲେ । ତାଙ୍କ ପାଦର ଗତି ଟିକିଏ କ୍ଷିପ୍ର ମନେ ହେଉଥିଲା ।

କିଶାନ ପଟ୍ଟନାୟକ କହିଲେ : ଆପଣ ତ ସୁଯୋଗ ପାଇଗଲେ ।

ସତ୍ୟବ୍ରତ ହସି ହସି କହିଲେ : ଭଦ୍ରଲୋକ ମୋତେ ସୁଯୋଗ କରିଦେଇ ନିଜେ ଦୁର୍ଯୋଗର ସମ୍ମୁଖୀନ ହେଲେ ନାହିଁ ତ ? ସେଇ କଥା ମୁଁ ଚିନ୍ତା କରୁଛି ।

କିଶାନ ପଟ୍ଟନାୟକ କ'ଣ ଗୋଟାଏ କାମରେ ଘରୁ ବାହାରି ଗଲେ ।

ସତ୍ୟବ୍ରତ ହସିହସି ଖବରକାଗଜଟାକୁ ଆନମନା ହୋଇ ଲେଉଟାଇବାରେ ଲାଗିଥିଲେ ।

ସେ ଠିକ୍ କରିପାରୁ ନଥିଲେ ମୂଳ ଘଟଣାର ସୂତ୍ର କେଉଁଠି । ଯେଉଁ ଚରିତ୍ରଗୁଡ଼ିକ ସହିତ ସେ ଆଜିଯାଏ ଚଳାଫେରା କଲେ, ସେମାନଙ୍କ ମଧ୍ୟରୁ କେହି କ'ଣ ମୂଳ ଘଟଣା ସହିତ ସଂଯୁକ୍ତ ନୁହନ୍ତି ?

କାହାର ପାଦଶବ୍ଦ ଶୁଣି ସତ୍ୟବ୍ରତ ମୁଣ୍ଡ ଟେକି ଚାହିଁଲେ ।

ସାମ୍ନାରେ ପୋଲିସ୍ ଇନିସ୍‌ପେକ୍‌ଟର ମହେନ୍ଦ୍ର ମିଶ୍ର ।

: ଆରେ, ଆପଣ ଏତେ ଶୀଘ୍ର...

: ହଁ, କାମଶେଷ ହୋଇଗଲା । ଆଉ ଅପେକ୍ଷା ନ କରି ଚାଲିଆସିଲି ।

ସତ୍ୟବ୍ରତ ଉଠି ଠିଆହେଲେ, କହିଲେ : ଚାଲନ୍ତୁ କେବିନ୍‌ରେ ବସିବା ।

ଦୁହେଁ ଯାଇ ଗୋଟିଏ କେବିନ୍‌ରେ ବସିଲେ ।

ମହେନ୍ଦ୍ରବାବୁ କହିଲେ : ମୁଁ ଚାରିଜଣ କନେଷ୍ଟବଲ୍ ପଠାଇଥିଲି । ସେମାନେ ମୁଚୁକୁନ୍ଦ ଫୁଲଗଛର ଗୋଟିଏ ଲିଷ୍ଟ କରିଆଣିଛନ୍ତି । ଯେଉଁମାନଙ୍କ ଘରେ ଓ ଯେଉଁ ଯେଉଁ ବଗିଚାରେ ମୁଚୁକୁନ୍ଦ ଫୁଲର ଗଛ ଅଛି, ତା'ର ଏକ ଲିଷ୍ଟ ମୁଁ କରିଛି ।

ମହେନ୍ଦ୍ରବାବୁ ପକେଟରୁ ଖଣ୍ଡେ କାଗଜ ବାହାର କରି ସତ୍ୟବ୍ରତ ହାତକୁ ବଢ଼ାଇ ଦେଲେ ।

ସତ୍ୟବ୍ରତ ଲିଷ୍ଟଟି ଉପରେ ଆଖି ବୁଲେଇ ଦେଖିଲେ ସଂଖ୍ୟାରେ ପ୍ରାୟ କୋଡ଼ିଏ ବାଇଶିଟି ହେବ । ସତ୍ୟବ୍ରତ ମନେମନେ ବ୍ୟକ୍ତି ଓ ବଗିଚାର ନାମଗୁଡ଼ିକ ପଢ଼ିବାରେ ଲାଗିଲେ ।

ମହେନ୍ଦ୍ରବାବୁ ନିରବତା ଭଙ୍ଗକରି କହିଲେ : ମୁଁ ତ ମୁଚୁକୁନ୍ଦ ଫୁଲଗଛର ଲିଷ୍ଟ ଆପଣଙ୍କୁ ଦେଲି, ଏଥର ଆପଣ ଏ ମୁଚୁକୁନ୍ଦ ଫୁଲଗଛର ରହସ୍ୟ ମୋତେ କୁହନ୍ତୁ ।

ସତ୍ୟବ୍ରତ ସ୍ମିତ ହସି କହିଲେ : ପ୍ରକୃତରେ ମହେନ୍ଦ୍ରବାବୁ ଗୋଟିଏ ଜଟିଳ କେସ୍‌ର ତଦନ୍ତ କରୁଛି । ଏ କ୍ଷେତ୍ରରେ ମୁଚୁକୁନ୍ଦ ଫୁଲଟା ହେଉଛି ଅଥଳ ସମୁଦ୍ରରେ ବୁଡ଼ି ଯାଉଥିଲା ଲୋକର କୁଟାଖଣ୍ଡକୁ ଆଶ୍ରୟ କଲାପରି । ତେବେ ମୋର ଆଶା...

ସତ୍ୟବ୍ରତଙ୍କ କଥା ଶେଷ ହେବା ପୂର୍ବରୁ ଗୋଟିଏ ବୟ କଫିପଟ୍ ଓ ଜଳଖିଆ ଧରି ଭିତରକୁ ପଶିଲା ।

ଟେବୁଲ ଉପରେ କଫିପଟ୍ ରଖୁ ରଖୁ କହିଲା : ମହାପାତ୍ର ବାବୁଙ୍କୁ ଜଣେ ଭଦ୍ରଲୋକ ଖୋଜୁଛନ୍ତି ।

: କେଉଁଠି ? ସତ୍ୟବ୍ରତ ପଚାରିଲେ ।

: ମ୍ୟାନେଜରଙ୍କ ପାଖରେ ଅପେକ୍ଷା କରିଛନ୍ତି ।

ସତ୍ୟବ୍ରତ କେବିନ୍‌ରୁ ବାହାରକୁ ଉଠିଗଲେ ।

: କିନ୍ତୁ ଏ ଯେ ଶରଦନ୍ଦୁ !

: ଘଟଣା କ'ଣ ? ଆପଣ ଏଠାରେ ଯେ ? ସତ୍ୟବ୍ରତ ବିସ୍ମିତ ହୋଇ ପଚାରିଲେ ।

ଶରବିନ୍ଦୁ ହସିବାକୁ ଚେଷ୍ଟାକରି କହିଲା : ମୁଁ ଏଠାକୁ ଆସିଥିଲି, ଦେଖିଲି ଆପଣ ବି ଅଛନ୍ତି ।

: ତା'ପରେ ? ସତ୍ୟବ୍ରତ ପଚାରିଲେ ।

: ଆପଣ କ'ଣ ମିଷ୍ଟର ପଟେଲଙ୍କର ନିମନ୍ତ୍ରିତ ଅତିଥି ? ଶରଦନ୍ଦୁ ପଚାରିଲା ।

ସତ୍ୟବ୍ରତ ସେ ପ୍ରଶ୍ନର କିଛି ଉତ୍ତର ନ ଦେଇ ପଚାରିଲେ : ଆପଣ ବି ବୋଧହୁଏ ?

ଶରବିନ୍ଦୁ ମୁଣ୍ଡ ହଲାଇ ସମ୍ମତ ଜଣାଇଲା । କହିଲା : କିନ୍ତୁ...

: ପୁଣି କିନ୍ତୁ କ'ଣ ?

: ମୋର ଟିକିଏ ଆପଣଙ୍କ ସହିତ ପରାମର୍ଶ ଥିଲା । ଶରଦିନ୍ଦୁ କହିଲା ।

ସତ୍ୟବ୍ରତ ଟିକିଏ ଚିନ୍ତାକରି କହିଲେ : ଆପଣ ଆସନ୍ତୁ । ଏଇଠି ବସି କଥାବାର୍ତ୍ତା ହେବା ।

ସତ୍ୟବ୍ରତ ଶରଦିନ୍ଦୁକୁ କେବିନ୍ ଭିତରକୁ ଡାକି ଆଣିଲେ ।

କେବିନ୍ ଭିତରେ ଶରଦିନ୍ଦୁ ମହେନ୍ଦ୍ରବାବୁଙ୍କୁ ଦେଖି କିପରି ପ୍ରଶ୍ନବାଚୀ ଆଖିରେ ଚାହିଁଲା ।

ସତ୍ୟବ୍ରତ ଶରଦିନ୍ଦୁକୁ ଇଙ୍ଗିତରେ ବସିବାକୁ କହି କହିଲେ : ଆପଣ ବସନ୍ତୁ । ମହେନ୍ଦ୍ରବାବୁ ମୋର ଖୁବ୍ ଅନ୍ତରଙ୍ଗ ବନ୍ଧୁ । ଆପଣ ଯାହା କହିବାର କଥା ନିଃସଂକୋଚରେ କୁହନ୍ତୁ ।

ଶରଦିନ୍ଦୁ କହିଲା : ମିଷ୍ଟର ପଟେଲଙ୍କର ଆୟୋଜିତ ଆଜିର ଏହି ବଂଧୁ ମିଳନୀ ସମ୍ବନ୍ଧରେ ମୋର ଆପଣଙ୍କୁ କିଛି କହିବାର ଅଛି ।

: କୁହନ୍ତୁ । ସତ୍ୟବ୍ରତ ଯେପରି ଅଭୟ ଦେଲେ ।

ଏହି ବନ୍ଧୁମିଳନୀକୁ ମଳିନା ନିମନ୍ତ୍ରିତ ହୋଇଛି ଏବଂ ଡାଇମଣ୍ଡ ଆର୍ଟ ପ୍ରୋଡକ୍ସନର ରବି ପଟ୍ଟନାୟକ ମଧ୍ୟ ନିମନ୍ତ୍ରିତ ହୋଇଛନ୍ତି । ଶରଦିନ୍ଦୁ କହିଲା ।

: ହୁଁ, ବୁଝିଲି । କିନ୍ତୁ ଏଥିରେ ଅସ୍ୱାଭାବିକ କ'ଣ କେଉଁଠି ? ସତ୍ୟବ୍ରତ ପଚାରିଲେ ।

: ରଜନୀ ପଟେଲ ମଳିନାକୁ ତାଙ୍କର ପରବର୍ତ୍ତୀ ହିନ୍ଦୀ ଛବିରେ ହିରୋଇନ୍ କରିବା କଥା କହୁଛନ୍ତି ଏବଂ ସେଇ ଘୋଷଣା ଆଜି ସେ ଏହି ବନ୍ଧୁମିଳିନୀରେ କରିବେ ।

ସତ୍ୟବ୍ରତ ଶରଦିନ୍ଦୁ କଥା ଶୁଣି ଯେପରି ଉଚ୍ଛ୍ୱସିତ ହୋଇଉଠି କହିଲେ : ଓଃ ! ମଳିନା ଦେବୀ ତା'ହେଲେ ରଜନୀ ପଟେଲଙ୍କର ପରବର୍ତ୍ତୀ ହିନ୍ଦୀ ଛବିର ହିରୋଇନ୍ । କିନ୍ତୁ ଆପଣଙ୍କ ଭଉଣୀ ପ୍ଲେବ୍ୟାକ୍ ସିଙ୍ଗର ନା ?

: ହଁ, ତେବେ ରଜନୀ ପଟେଲ କହୁଛନ୍ତି ମଳିନାକୁ ବମ୍ବେ ନେଇଯିବେ ଏବଂ ତାକୁ ହିରୋଇନ୍ କରିବେ ।

: ଓଡ଼ିଶାରେ ଏତେ ଝିଅ ଥାଉ ଥାଉ ହଠାତ୍ ତାଙ୍କର ମଳିନା ଦେବୀଙ୍କ ଉପରେ ଦୃଷ୍ଟି ପଡ଼ିଲା କାହିଁକି ? ସତ୍ୟବ୍ରତ ଚିନ୍ତିତ ହୋଇ ପ୍ରଶ୍ନ କଲେ ।

: ସେଇ କଥା ମୁଁ ତ ଭାବୁଛି । ଏବଂ ସେଇଥିପାଇଁ ଆପଣଙ୍କ ସହିତ କିଛି ଗୋଟାଏ ପରାମର୍ଶ କରିବାକୁ ଚାହୁଁଛି ।

: ମଳିନା କ'ଣ କହୁଛି ?

: ସେ ତ ବମ୍ବେ ଯିବାପାଇଁ ଗୋଡ଼ ଠିଆକରି ରହିଛି ।

: ଆପଣଙ୍କ ବାପା ମା' କ'ଣ କହୁଛନ୍ତି ?

: ସେମାନଙ୍କର ସମ୍ମତ ଅଛି ।

: ଆଉ ଆପଣ ?

: ମୁଁ କାହିଁକି ଏତେ ସହଜରେ ମିଷ୍ଟର ପଟେଲଙ୍କୁ ବିଶ୍ୱାସ କରିପାରୁ ନାହିଁ । ମୋର ମନେହେଉଛି, ଏହା ଭିତରେ କିଛି ଗୋଟାଏ ରହସ୍ୟ ଅଛି ।

ସତ୍ୟବ୍ରତ ଆଖିବୁଜି କିଛି ସମୟ ଚିନ୍ତାକରି କହିଲେ : ଏହା ଭିତରେ ରବି ପଟ୍ଟନାୟକଙ୍କର ଭୂମିକାଟି କ'ଣ ?

ଶରଦିନ୍ଦୁ କହିଲା : ସେ ଭଦ୍ରଲୋକ । ମୋର ମନେହେଉଛି, ରଜନୀ ପଟେଲ ତାଙ୍କର ପରବର୍ତ୍ତୀ ହିନ୍ଦୀ ଛବିଟି ପାଇଁ ରବି ପଟ୍ଟନାୟକଙ୍କୁ ପାର୍ଟନର କରିବାକୁ ଚାହାନ୍ତି ।

: ହୁଁ, ରବି ପଟ୍ଟନାୟକଙ୍କର କ'ଣ ଏତେ ପଇସା ଅଛି ?

: ହଁ ଅଛି, ରବି ପଟ୍ଟନାୟକଙ୍କର ବାପାଙ୍କ ମୃତ୍ୟୁ ପରେ ସେ ବର୍ତ୍ତମାନ ଚାରି ପାଞ୍ଚଲକ୍ଷ ଟଙ୍କାର ସମ୍ପତ୍ତିର ମାଲିକ । ନଗଦ ବ୍ୟାଙ୍କ ବାଲାନ୍ସ ମଧ୍ୟ ତିନି ଚାରି ଲକ୍ଷ ଟଙ୍କା ଅଛି । ଶରଦିନ୍ଦୁ କହିଲା ।

: କିନ୍ତୁ ରବି ପଟ୍ଟନାୟକ ରଜନୀ ପଟେଲର ଫାନ୍ଦରେ ପଡ଼ିଲେ କିମିତି ?

ଶରଦିନ୍ଦୁ କେତୋଟି ମୁହୂର୍ତ୍ତ ମଉନ ରହି କହିଲା : ମୋର ମନେହେଉଛି, ମଳିନା ତାଙ୍କୁ ରଜନୀ ପଟେଲ ପାଖକୁ ଆଣିଛି । ରଜନୀ ପଟେଲ ମଳିନାକୁ ହିରୋଇନ୍ କରିବାର ଲୋଭ ଦେଖାଇଛନ୍ତି ଏବଂ ସଙ୍ଗେ ସଙ୍ଗେ ମଧ୍ୟ କହିଛନ୍ତି ଏହି ହିନ୍ଦୀ ଛବିର ପ୍ରୋଡକସନ ପାଇଁ ତାଙ୍କର ଜଣେ ପାର୍ଟନର ଦରକାର । ମଳିନା ନିଜର ଖ୍ୟାତିର ଲୋଭ ସମ୍ବରଣ କରି ନ ପାରି ରବି ପଟ୍ଟନାୟକଙ୍କୁ ମିଷ୍ଟର ପଟେଲଙ୍କ ପାଖକୁ ଟାଣି ଆଣିଛି ।

: ତା'ହେଲେ ରବି ପଟ୍ଟନାୟକ ମଳିନା ଦେବୀଙ୍କୁ... ସତ୍ୟବ୍ରତ କଥା ଶେଷକରି ନ ପାରି ହଠାତ୍ ଅଟକି ଗଲେ ।

ଶରଦିନ୍ଦୁ କହିଲା : ମଳିନା ମୋର ଭଉଣୀ ହେଲେ କ'ଣ ହେବ, ତା'ର କେତେକ କାର୍ଯ୍ୟକଳାପକୁ ମୁଁ ଆଦୌ ସମର୍ଥନ କରିପାରେ ନାହିଁ । ରବି ପଟ୍ଟନାୟକଙ୍କର ମଳିନା ପ୍ରତି ଯଥେଷ୍ଟ ଦୁର୍ବଳତା ଅଛି ।

: ହୁଁ, ଆପଣ ତା'ହେଲେ କ'ଣ ଚାହାନ୍ତି ?

ମୁଁ, ମୁଁ ଉଭୟଙ୍କର ମଙ୍ଗଳ ଚାହେଁ । କିନ୍ତୁ ଦୁହେଁ ଯେଉଁ ବାଟରେ ଆଗେଇଛନ୍ତି, ମୋର କାହିଁକି ମନେହେଉଛି ସେମାନେ ଠକିଯିବେ ।

: ହେଉ, ସେକଥା ମୁଁ ଭାବି ବିଚାରି ଦେଖିବି । ଆପଣଙ୍କ କଥା ମୋର ମନେ

ରହିଲା । ଆଜି ବନ୍ଧୁମିଳନୀରେ ରଜନୀ ପଟେଲ କ'ଣ କହୁଛନ୍ତି ଶୁଣିବା ପରେ ଗୋଟାଏ ବ୍ୟବସ୍ଥା କରିବା ।

ଶରଦିନ୍ଦୁ ଉଠି ଠିଆହେଲା ଏବଂ କୃତଜ୍ଞତା ପ୍ରକାଶ କରି କହିଲା : ମୁଁ ତେବେ ଆସୁଛି । ଆପଣ ମୋ' କଥା ଟିକିଏ ମନେରଖିବେ ।

ଶରଦିନ୍ଦୁ ଚାଲିଯିବା ପରେ ମହେନ୍ଦ୍ରବାବୁ କହିଲେ : ଏ ପୁଣି କେଉଁ ସମସ୍ୟା ?

ସତ୍ୟବ୍ରତ କଫି ପଟ୍‌ରୁ କଫି ଢାଳୁଢାଳୁ କହିଲେ : ଜୀବନଟା ତ ସମସ୍ୟାରେ ଭରିଗଲା । କେଉଁ ସମସ୍ୟା କଥା ମୁଁ ଆପଣଙ୍କୁ ଆଗ କହିବି ?

ମହେନ୍ଦ୍ରବାବୁ କହିଲେ : ମୁଚୁକୁନ୍ଦ ଫୁଲ ରହସ୍ୟ ଶୁଣିବା ପାଇଁ ମୁଁ ବିଶେଷ ଆଗ୍ରହୀ ।

ସତ୍ୟବ୍ରତ କହିଲେ : ମୁଚୁକୁନ୍ଦ ଫୁଲ ଗୋଟିଏ ଉପଲକ୍ଷ ମାତ୍ର, କିନ୍ତୁ କ୍ଲୁ କି ନୁହେଁ ବର୍ତ୍ତମାନ ମୁଁ କହିପାରୁ ନାହିଁ । ତେବେ ଅସଲ ଘଟଣାଟି ହେଉଛି...

ସତ୍ୟବ୍ରତ ଧୀରେ ଧୀରେ ପଙ୍କଜ ମଲ୍ଲିକଙ୍କ ଘଟଣା ବର୍ଣ୍ଣନା କଲେ । କିପରି ଭାବରେ ଅଲୌକିକ ଉପାୟରେ ତାଙ୍କ ଷ୍ଟ୍ରଂରୁମ୍‌ରୁ ଧୀରେ ଧୀରେ ଗୋଟିଏ ପରେ ଗୋଟିଏ ପଦାର୍ଥ ଅପସାରିତ ହେଉଛି, ତା'ର ପୂର୍ଣ୍ଣ ବିବରଣୀ ଦେଇସାରି କହିଲେ, ମୋ' ମତରେ ଘଟଣାଟା ଆଦୌ ଅଲୌକିକ ନୁହେଁ । କିନ୍ତୁ ପଙ୍କଜ ମଲ୍ଲିକଙ୍କ ଦୃଢ଼ ଧାରଣା ମୋତେ ଟିକିଏ ଧନ୍ଦାରେ ପକାଇ ଦେଉଛି ।

ଦୃଢ଼ ଧାରଣା ମାନେ ? ମହେନ୍ଦ୍ରବାବୁ ପଚାରିଲେ ।

ସତ୍ୟବ୍ରତ କହିଲେ : ଦୃଢ଼ ଧାରଣାର ଅର୍ଥ ପଙ୍କଜ ମଲ୍ଲିକ ଦୃଢ଼ କଣ୍ଠରେ ଏବେ ବି କହୁଛନ୍ତି, ତାଙ୍କ ଷ୍ଟ୍ରଂରୁମ୍‌ର ଅଟୋମେଟିକ୍ ତାଲା ଖୋଲିବା କୌଶଳ ତାଙ୍କ ଛଡ଼ା ଅନ୍ୟ କାହାରିକୁ ଜଣାନାହିଁ ।

କିଛି ସମୟର ନୀରବତା ପରେ ମହେନ୍ଦ୍ରବାବୁ ପଚାରିଲେ : କିନ୍ତୁ ଏ ଘଟଣା ସହିତ ଏଇ ମୁଚୁକୁନ୍ଦ ଫୁଲର ସଂପର୍କ କ'ଣ ?

ସତ୍ୟବ୍ରତ ଗଭୀର ଭାବରେ କିଛି ସମୟ ଚିନ୍ତା କରି କହିଲେ : ବର୍ତ୍ତମାନ ସୁଦ୍ଧା ଏଇ ମୁଚୁକୁନ୍ଦ ଫୁଲ ସଂପର୍କରେ ମୋ' ମନ ଭିତରେ ଏକ ଛୋଟ ସ୍ୱପ୍ନ ଦରଫୁଟା ହୋଇ ରହିଛି । ମୁଁ ଏପରି ଏକ ଜାଗାରୁ ଗୋଟିଏ ମୁଚୁକୁନ୍ଦ ଫୁଲ ପାଇଛି, ମୋର ଧାରଣା ସେହି ଜାଗାରେ ସେଇ ଫୁଲଟିର ପ୍ରବେଶ ଅସ୍ୱାଭାବିକ । ଯା'ହେଉ, ଏ ସମ୍ବନ୍ଧରେ ସମସ୍ତ ଡେଭଲପ୍‌ମେଣ୍ଟ ମୁଁ ଧୀରେ ଧୀରେ ଆପଣଙ୍କୁ ଜଣାଇବି । କିନ୍ତୁ ଗୋଟାଏ ଅନୁରୋଧ ମହେନ୍ଦ୍ରବାବୁ, ପଙ୍କଜ ମଲ୍ଲିକଙ୍କର

ଏହି ଘଟଣାଟା ଆପଣ ଅନ୍ୟ କେଉଁଠି କହିବେ ନାହିଁ । ଏଇଟା ତାଙ୍କ ଫେମିଲିର ଏକ ସିକ୍ରେଟ୍ କଥା ।

ମହେନ୍ଦ୍ରବାବୁ କହିଲେ : ମୋ' ଚାରିପାଖରେ ଏତେ ଘଟଣା ଆଉ ଏତେ ସମସ୍ୟା ଯେ ଅନାହୂତ ଭାବରେ ଆଉ କୌଣସି ଘଟଣା ପ୍ରତି ଆଗ୍ରହ ପ୍ରକାଶ କରିବାକୁ ବେଳ ନାହିଁ । ତଥାପି ଆପଣଙ୍କର ଏହି ରହସ୍ୟମୟ ଘଟଣା ମୋ' ମନରେ ରେଖାପାତ କରିଛି । ମୁଁ ଆପଣଙ୍କର ଶୁଭକାମନା କରୁଛି ।

ମହେନ୍ଦ୍ରବାବୁ ଉଠି ଠିଆହେଲେ ।

ସତ୍ୟବ୍ରତ ମଧ୍ୟ ଉଠିଲେ ।

ଘଡ଼ିରେ ଆଠଟା ବାଜି ଯାଇଥିଲା ।

ମହେନ୍ଦ୍ରବାବୁ କହିଲେ : ଆପଣ ବର୍ତ୍ତମାନ କୁଆଡ଼େ ଯିବେ ?

: ଦୋ'ତାଲାକୁ । ଏକ ବନ୍ଧୁମିଳନୀର ନିମନ୍ତ୍ରଣ ଅଛି ।

ମହେନ୍ଦ୍ର ମିଶ୍ର ଚାଲିଗଲେ ।

ସତ୍ୟବ୍ରତ ମ୍ୟାନେଜରଙ୍କ ରୁମ୍ ଆଡ଼େ ଆଗେଇ ଯାଇ କହିଲେ : ଉପରର ଖବର କ'ଣ ?

କିଶାନ ପଟ୍ଟନାୟକ କହିଲେ : ଖାଲି ଆପଣ ପହଞ୍ଚିଲେ ରଜନୀ ପଟେଲଙ୍କର କୋଟା ପୂର୍ଣ୍ଣ ହେଇଯିବ ।

ସେଦିନ ସତ୍ୟବ୍ରତ ଇନ୍ଦ୍ରଜାଲରୁ ଆଉ କୁଆଡ଼େ ବାହାରିଲେ ନାହିଁ ।

ସକାଳୁ ସଞ୍ଜ ହେଲା, ତଥାପି ଚେମ୍ବର ଭିତରେ କବାଟ କିଳି ଚୁପ୍‌ଚାପ୍ ବସି ରହିଲେ । ନୀଳିମା ସମସ୍ତ ଭିଜିଟରଙ୍କୁ ଫେରାଇ ଦେଲା । ସମସ୍ତ ଫୋନ୍ ନାକଚ କରିଦେଲା । ନୀଳିମା ମୁହଁରେ ସେଇ ଗୋଟିଏ କଥା, ମିଷ୍ଟର ମହାପାତ୍ର ନାହାନ୍ତି, କାଲି ସକାଳ ଦଶଟା ପୂର୍ବରୁ ଫେରିବେ ନାହିଁ ।

ନୀଳିମା ନିଜେ ବି ବୁଝିପାରୁ ନ ଥିଲା । ସତ୍ୟବ୍ରତଙ୍କର ଏହି ଅଜ୍ଞାତବାସ ଓ ମଉନବ୍ରତ କାହିଁକି ?

ସନ୍ଧ୍ୟା ସାତଟାବେଳେ, ଯେତେବେଳେ ନୀଳିମା ଯିବା ପାଇଁ ପ୍ରସ୍ତୁତ ହେଉଥିଲା, ହଠାତ୍ ଦେଖିଲା ଜଣେ ଧୂତି ପଞ୍ଜାବ ପରିହିତ ଲୋକ, ନୀଳିମାର ରିସେପ୍‌ସନ

କାଉଣ୍ଟର ପାଖରେ ଆସି ଠିଆ ହୋଇଛନ୍ତି । ପ୍ରଥମେ ନୀଳିମା ଚିହ୍ନି ପାରିଲା ନାହିଁ, ତା'ପରେ ସ୍ମିତ ହସି କହିଲା : ଆପଣ ହଠାତ୍ ଛଦ୍ମବେଶରେ ଯେ !

: ହଁ, ମୋର ଏଇ ବେଶଟା କବି ସରୋଜ ପଟ୍ଟନାୟକ । ମୁଁ ବର୍ତ୍ତମାନ ପଙ୍କଜ ମଲ୍ଲିକଙ୍କ ଘରକୁ ଯାଉଛି । କିଛି ଜରୁରୀ ଇନ୍‌ଫରମେସନ ଅଛି ?

ନୀଳିମା ତା'ର ନୋଟ୍‌ବୁକ୍ ଉପରେ ଆଖି ବୁଲେଇ ନେଇ କହିଲା : ଇମ୍ପୋଟାଣ୍ଟ ସେପରି କିଛି ନାହିଁ । ଏଇ ଦେଖନ୍ତୁ, ଏଇମାନେ ସବୁ ଫୋନ୍ କରିଥିଲେ ।

ସତ୍ୟବ୍ରତ ନାଁଗୁଡ଼ିକ ଉପରେ ଆଖି ବୁଲାଇ ନେଇ କହିଲେ : ତୁମେ କ'ଣ ବାହାରିଲଣି ନୀଳିମା ?

: ହଁ ସାର୍ । କିଛି କାମ ଥିଲା କି ?

: ନା, ତୁମେ ବନ୍ଦବାନ୍ଦ କରିଯାଅ । କାଲି କିନ୍ତୁ ଟିକିଏ ସଅଳ ସଅଳ ଆସିବ । ଅନେକ କାମ ଅଛି ।

ସତ୍ୟବ୍ରତ ରିସେପ୍‌ସନ ରୁମ୍‌ରୁ ବାହାରି ଗ୍ୟାରେଜକୁ ଚାଲିଗଲେ । ଗାଡ଼ି ବାହାର କରି ବାହାରିଗଲେ ଇନ୍ଦ୍ରଜାଲରୁ ।

ହଠାତ୍ ତାଙ୍କର ମନେହେଲା, ସେ ଥରେ ଫ୍ୟାସନ ହାଉସ ବାଟଦେଇ ଗଲେ ହୁଅନ୍ତା ନାହିଁ ?

କେତେକ ମିନିଟ୍ ପରେ ଗାଡ଼ିଯାଇ ଫ୍ୟାସନ ହାଉସ୍ ସାମ୍ନାରେ ଠିଆହେଲା । ସତ୍ୟବ୍ରତ ଗାଡ଼ିରୁ ଓହ୍ଲାଇ କାଉଣ୍ଟର ପାଖରେ ଯାଇ ଠିଆହେଲେ । ସବୁ ଚିହ୍ନା ସେଲ୍‌ସମ୍ୟାନଯାକ ଅଛନ୍ତି ।

କିନ୍ତୁ ଆଗପରି ସତ୍ୟବ୍ରତଙ୍କୁ ଦେଖିବା ମାତ୍ରକେ କେହି ତାଙ୍କ ଆଡ଼କୁ ଛୁଟି ଆସିଲେ ନାହିଁ ।

ଜଣେ ଆସି ସତ୍ୟବ୍ରତଙ୍କୁ ପଚାରିଲା : କ'ଣ ଖୋଜୁଛନ୍ତି ?

ସତ୍ୟବ୍ରତ ମନେମନେ ହସି ଉଠିଲେ । ତାଙ୍କର ମନେପଡ଼ିଲା ସେ ବର୍ତ୍ତମାନ କବି ସରୋଜ ପଟ୍ଟନାୟକ । ତେଣୁ ତାଙ୍କୁ ସହଜରେ ଚିହ୍ନିବା ସମ୍ଭବ ନୁହେଁ ।

ସତ୍ୟବ୍ରତ ହଠାତ୍ ଲକ୍ଷ୍ୟ କଲେ, ତାଙ୍କର ଅନ୍ୟ ଏକ ସେଲ୍‌ସମ୍ୟାନ ବାହାରକୁ ଚାହିଁ ହଠାତ୍ ଯେପରି କୌଣସି ଅତିପରିଚିତ ଲୋକ ଦେଖି କାଉଣ୍ଟର ପାଖକୁ ଛୁଟି ଆସୁଛି ।

ପର ମୁହୂର୍ତ୍ତରେ ସତ୍ୟବ୍ରତ ଦେଖିଲେ, ଜଣେ ସୁସ୍ଥ, ସୌଖୀନ ଓ ଲମ୍ବାକଲି ରଖିଥିବା ଭଦ୍ରଲୋକ ଆସି ତାଙ୍କ ପାଖରେ ଠିଆ ହୋଇଛନ୍ତି ।

ସେଲ୍‌ସମ୍ୟାନ ହସି ହସି କହିଲା : ଆସନ୍ତୁ ସାର୍ । ଆଜି ଅନେକ ନୂଆ କସ୍‌ମେଟିକସ ଆସିଛି, ଦେଖେଇବି ?

ଭଦ୍ରଲୋକ ବ୍ୟସ୍ତ ଥିଲାପରି ଜଣାପଡୁ ଥିଲେ ଏବଂ କହିଲେ : ନା ଆଜି ଥାଉ । କାଲି ଆସି ଦେଖିବି । ମୋତେ ତିନିଟା ପିକ୍‌ଚର ଦିଅ ।

ଭଦ୍ରଲୋକଙ୍କ ପାଟି ଶୁଣି ଭିତରୁ ସଦାନନ୍ଦ ସାମନ୍ତରାୟ ଉଠି ଆସିଲେ । ହସି ହସି ଆସି କାଉଣ୍ଟର ପାଖରେ ଠିଆହୋଇ କହିଲେ : ଆପଣଙ୍କର ତ କେଇଦିନ ହେଲା ଦେଖାନାହିଁ ସାର୍ ? କୁଆଡ଼େ ବାହାରକୁ...

ସଦାନନ୍ଦ ବାବୁଙ୍କ କଥା ଶେଷ ହେଲାନାହିଁ । ପାଖରେ ଠିଆ ହୋଇଥିବା ଅନ୍ୟ ଜଣେ ଧୂତି ପଞ୍ଜାବ ପରିହିତ ଭଦ୍ରଲୋକଙ୍କ ମୁହଁରେ ଦୃଷ୍ଟି ପଡ଼ିବା ମାତ୍ରକେ ସେ ଚୁପ୍ ହୋଇଗଲେ ।

ସତ୍ୟବ୍ରତ ସଦାନନ୍ଦବାବୁଙ୍କ ତୀକ୍ଷ୍ଣ ଚାହାଣ ସହିତ ଚାହାଣ ମିଶାଇ ସ୍ମିତ ହସିଲେ ।

ସଦାନନ୍ଦବାବୁ ବୋଧହୁଏ ସତ୍ୟବ୍ରତଙ୍କୁ ଚିହ୍ନିପାରି ଉଚ୍ଛ୍ୱସିତ ହୋଇ କ'ଣ କହିବାକୁ ଯାଉଥିଲେ । କିନ୍ତୁ ସତ୍ୟବ୍ରତ ଇଙ୍ଗିତରେ ବାରଣ କଲେ ।

ସେଲ୍‌ସମ୍ୟାନ ଜଣକ ତିନୋଟି ଥ୍ରିଡାଇମାନସନ୍‌ସର ପ୍ଲାଷ୍ଟିକ ଫଟୋ ଧରି ଆଗେଇ ଆସିବା ମାତ୍ରକେ, ସେଇ ସୌଖୀନ ଭଦ୍ରଲୋକ ଜଣକ କାଉଣ୍ଟରର ଶେଷଭାଗକୁ ଚାଲିଗଲେ ।

ସଦାନନ୍ଦବାବୁ ଫୁସ୍ ଫୁସ୍ କରି କହିଲେ : ପ୍ରଥମେ ମୁଁ ମୋଟେ ଆପଣଙ୍କୁ ଚିହ୍ନିପାରିଲି ନାହିଁ ସାର୍ । ଆପଣ ନ ହସିଥିଲେ, ମୁଁ ହୁଏତ...

ସତ୍ୟବ୍ରତ ପ୍ରସଙ୍ଗ ଏଡ଼ାଇ ଯାଇ କହିଲେ : ଏଇ ଭଦ୍ରଲୋକ ନିଶ୍ଚୟ ମିଷ୍ଟର ଶ୍ରୀବାସ୍ତବ ।

ସଦାନନ୍ଦବାବୁ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ଏବଂ କହିଲେ : ଆପଣ ଆଜି ଠିକ୍ ସମୟରେ ଆସିଛନ୍ତି ସାର୍ ।

ଶ୍ରୀବାସ୍ତବ ସେତେବେଳେକୁ ସେଲ୍‌ସମ୍ୟାନ ହାତରୁ ଫଟୋ ତିନିଖଣ୍ଡି ନେଇ, ମନିବ୍ୟାଗ କାଢ଼ି ପଇସା ଦେଉଥିଲେ । ପଇସା ଦେବା ଶେଷ ହେବା ପୂର୍ବରୁ ସତ୍ୟବ୍ରତ କାଉଣ୍ଟରରୁ ଓହ୍ଲାଇଯାଇ ଗାଡ଼ି ଆଡ଼କୁ ଆଗେଇଗଲେ ।

କିନ୍ତୁ ସେ ଯାଇ ଦେଖିଲେ, ତାଙ୍କ ଗାଡ଼ି ପାଖକୁ ଆଉ ଗୋଟିଏ ଗାଡ଼ିଲାଗି ଥିଆ ହୋଇଛି । ସତ୍ୟବ୍ରତଙ୍କର ମନ ଭିତରେ ପ୍ରଶ୍ନ ଉଠିଲା, ଏଇ ଗାଡ଼ିଟା ତା'ହେଲେ କ'ଣ ଶ୍ରୀବାସ୍ତବର ?

ନା, ସେ ଗାଡ଼ିଟା ଶ୍ରୀବାସ୍ତବର ନୁହେଁ, କାରଣ ଶ୍ରୀବାସ୍ତବ ନିଜେ ତା'ର ପ୍ରମାଣ ଦେଲେ । ସେ ରାସ୍ତାକୁ ଓହ୍ଲାଇ ଆସି, ଗୋଟାଏ ରିକ୍ସା ଉପରେ ଯାଇ ଉଠିବସିଲେ ଏବଂ ରିକ୍ସାଚାଳକକୁ ବିପରୀତ ଦିଗକୁ ଚଳାଇବା ପାଇଁ କହିଲେ ।

ସତ୍ୟବ୍ରତ ମନେମନେ ଚିନ୍ତା କଲେ, ନା, ଏ ସୁଯୋଗ ହରାଇବାର ନୁହେଁ । ହରାଇଲେ ଆଉ ହୁଏତ ମିଳିବ ନାହିଁ ।

ସତ୍ୟବ୍ରତଙ୍କ ଗାଡ଼ିଟି ରିକ୍ସା ପଛେପଛେ ଚାଲିଲା ।

କିନ୍ତୁ ରିକ୍ସାଟି ଶେଷରେ ଯାଇ ଯେଉଁଠି ଠିଆହେଲା, ସତ୍ୟବ୍ରତ ଆଶ୍ଚର୍ଯ୍ୟ ହେଲେ । ସାମ୍ନାରେ ସେଣ୍ଟପଲସ ଗୀର୍ଜା । ସଙ୍ଗେ ସଙ୍ଗେ ଶ୍ରୀବାସ୍ତବ ରିକ୍ସାବାଲା ହାତକୁ ଗୋଟିଏ ଟଙ୍କା ବଢ଼ାଇ ଦେଇ, ଗୀର୍ଜା ଭିତରର ଗହଳ ଭିତରେ ମିଶିଗଲେ ।

ସତ୍ୟବ୍ରତ ଆଉ ଗାଡ଼ିରୁ ଓହ୍ଲାଇବାର ଅବକାଶ ପାଇଲେ ନାହିଁ ।

ବର୍ତ୍ତମାନ ଶ୍ରୀବାସ୍ତବକୁ ଖୋଜିବାକୁ ହେଲେ ଗୀର୍ଜା ଭିତରେ ପଶି ଜଣ ଜଣ କରି ସମସ୍ତଙ୍କ ମୁହଁକୁ ଚାହିଁବାକୁ ହେବ । ଗୀର୍ଜାର ସାଜସଜ୍ଜା ଓ ଆଡମ୍ବର ଦେଖି ମନେ ହେଉଥିଲା, ଯେପରି ଗୋଟାଏ ବିଶେଷ ଅନୁଷ୍ଠାନ କିଛି ଗୀର୍ଜାରେ ଅଛି ।

କିନ୍ତୁ ଶ୍ରୀବାସ୍ତବଠାରେ ତାଙ୍କର ଯେ ଦରକାର !

ସତ୍ୟବ୍ରତ ଗାଡ଼ିରୁ ଓହ୍ଲାଇଲେ ।

ଧୀରେଧୀରେ ଆଗେଇ ଗଲେ ସେ ଗୀର୍ଜାର ହତା ଭିତରକୁ । ବେଶ୍ ଲୋକ ଗହଳ ।

ହତା ଭିତରେ ଦଳଦଳ ଯୁବକଯୁବତୀ ଠିଆ ହୋଇଥିଲେ । କଥାବାର୍ତ୍ତା କରୁଥିଲେ ।

ସତ୍ୟବ୍ରତ ଅନୁଭବ କଲେ ସ୍ଥାନଟି ବେଶ୍ ମନୋରମ । ପ୍ରକାଣ୍ଡ ହତା, ନାନା ପ୍ରକାର ଫୁଲଫଳ ଗଛରେ ପୂର୍ଣ୍ଣ ।

ସତ୍ୟବ୍ରତ ଆହୁରି ଭିତରକୁ ପଶିଲେ । କେହି ଚିହ୍ନା ଲୋକ ସହିତ ଯଦି ତାଙ୍କର ଦେଖା ହୋଇଯାଏ ! କିନ୍ତୁ ଚିହ୍ନାଲୋକ କିଏ କାହିଁ ?

ସେ ଧୀରେଧୀରେ ଲୋକଗହଳି ଭିତରେ ପଶିଯାଉଥିଲେ । ବହୁ ତରୁଣ ତରୁଣୀ । ସମସ୍ତେ ହାସ୍ୟମୁଖର । ମନେ ହେଉଥିଲା, ସମସ୍ତେ ଆନନ୍ଦର ବନ୍ୟା ଭିତରେ ଭାସି ଚାଲିଛନ୍ତି । କାହାରି ମନରେ ଦୁଃଖ ବା କଷ୍ଟର ଲେଶମାତ୍ର ଚିହ୍ନ ନାହିଁ ।

କେତେକ ଧର୍ମଯାଜକ ଏପାଖ ସେପାଖ ହେଉଛନ୍ତି । ସମସ୍ତଙ୍କ ମୁହଁରେ କିପରି ଏକ ପ୍ରଚ୍ଛନ୍ନ ବ୍ୟସ୍ତତା ।

ସେହି ଜନଗହଳ ଭିତରୁ ହଠାତ୍ କିଏ ଯେପରି କହିଉଠିଲା : ସାର୍ ଆପଣ ବି ଆସିଛନ୍ତି ?

ସତ୍ୟବ୍ରତ ବୁଲି ଅନାଇଲେ, ସେଲି । ତା'ର ଦୁଇଜଣ ବାନ୍ଧବୀଙ୍କ ମେଳରେ ଆଗେଇ ଆସୁଛି ।

: ହଁ, କିନ୍ତୁ ତୁମେ... ସତ୍ୟବ୍ରତ କ'ଣ ପଚାରିବାକୁ ଯାଇ ପଚାରି ପାରିଲେ ନାହିଁ ।

ସେଲି କହିଲା : ମୋର ବଂଧୁ ମାର୍ଗାରେଟାର ଆଜି ବିବାହ । ମୁଁ ସେଇଥିପାଇଁ ଆସିଛି । ଆପଣ ବି କ'ଣ ନିମନ୍ତ୍ରିତ ?

ସତ୍ୟବ୍ରତ ମୁଣ୍ଡ ହଲାଇ ହଁ କି ନା କହିଲେ ସେଲି କିଛି ବୁଝିପାରିଲା ନାହିଁ । ବୁଝିବାର ଆବଶ୍ୟକ ନ ଥିଲା ବି । ସେ ହାତଯୋଡ଼ି ନମସ୍କାର ଜଣେଇ କହିଲା : ଆପଣ ଆମ ଘରଆଡ଼େ ଆସିବେ ସାର୍ ।

ସେଲି ସେହି ଜନଗହଳ ଭିତରେ ମିଶିଗଲା ।

ସତ୍ୟବ୍ରତ ଜାଣିପାରିଲେ ଆଜି ଏହି ଗୀର୍ଜାରେ ଏକ ବିବାହ ଉତ୍ସବର ଆୟୋଜନ ହୋଇଛି । ତେଣୁ ନିମନ୍ତ୍ରିତ ଅତିଥିମାନେ ଭିଡ଼ କରିଛନ୍ତି ।

କିନ୍ତୁ ଶ୍ରୀବାସ୍ତବ ଗଲା କେଉଁଆଡ଼େ ? ତା'ର ଛାଇ ପର୍ଯ୍ୟନ୍ତ ତ ସେ ଆଉ ଦେଖିବାକୁ ପାଉନାହାନ୍ତି ।

ଆଉ କିଛି ସମୟ ଏପାଖ ସେପାଖ ହୋଇ ସତ୍ୟବ୍ରତ ଗୀର୍ଜା ହତାର ଗୋଟିଏ ନିରୋଳା ସ୍ଥାନରେ ଯାଇ ଠିଆହେଲେ । ସେଠାରେ ଏକ ବିଶେଷ ଗନ୍ଧରେ ଆକୃଷ୍ଟ ହୋଇ ଚାହିଁଲେ, ବହୁତ ମୁଚୁକୁନ୍ଦ ଫୁଲ ଚାରିଆଡ଼େ ବିଛାଡ଼ି ହୋଇପଡ଼ିଛି ।

ଉପରକୁ ନଇଁପଡ଼ି ଦୁଇ ଚାରୋଟି ମୁଚୁକୁନ୍ଦ ଫୁଲ ଗୋଟାଇ ଆଣିଲେ । ଏହାପରେ ତାଙ୍କର କର୍ତ୍ତବ୍ୟ ?

ସତ୍ୟବ୍ରତ ଯେଉଁଠି ଠିଆ ହୋଇଥିଲେ, ସ୍ଥାନଟି ଟିକିଏ ନିରୋଳା ଏବଂ ଛାଇଛାଇକା । ଆଉ ଟିକିଏ ଭିତରକୁ ଅନ୍ଧକାର । ସେଇ ପାଖଟା ଗୀର୍ଜାର ପଛପାଖ ଏବଂ ସେଇ ବାଟଦେଇ ବାହାରକୁ ବାହାରି ଯିବା ପାଇଁ ମଧ୍ୟ ବାଟ ଅଛି ।

ସତ୍ୟବ୍ରତଙ୍କର ଇଚ୍ଛା ହେଲା, ଗୀର୍ଜାର ଏହି ପଛପଟ ବାଟଟା କେଉଁଆଡ଼େ ଯାଇଛି ପରୀକ୍ଷା କରି ଦେଖିବେ । ସେ ସେଇ ଅଧା ଅନ୍ଧାର ଅଧା ଆଲୁଅ ଭିତରେ ଆଗେଇଗଲେ ଆହୁରି ଆହୁରି ।

ଗୀର୍ଜା ହତା ପାରହୋଇ ସେ ଗୋଟିଏ ସରୁ ରାସ୍ତା ପାଇଲେ । ଦୁଇପାଖଯାକ କିଛି କିଛି ଗଛପତ୍ର । ଟିକିଏ ନିର୍ଜନ । ତା'ପରେ ଘରଦ୍ୱାର ଆରମ୍ଭ ହୋଇଗଲା ।

ସତ୍ୟବ୍ରତ ସେଇ ବାଟଧରି ଆହୁରି ଟିକିଏ ଆଗେଇ ଗଲେ । ମ୍ୟୁନିସିପାଲିଟି ରାସ୍ତା ବେଶ୍ ପରିଷ୍କାର ପରିଚ୍ଛନ୍ନ । ମୋଡ଼ ଉପରେ ଯାଇ ଦେଖିଲେ, ଡାହାଣ ପାଖ ରାସ୍ତାଟା ବେଶ୍ ଚଉଡ଼ା ଏବଂ ସେଇଠୁ ବଡ଼ ବଡ଼ କୋଠାଘର ଆରମ୍ଭ ହୋଇଯାଇଛି ।

ଆଉ ଟିକିଏ ଆଗରେ ପଙ୍କଜ ମଲ୍ଲିକଙ୍କ ଘର ।

ସତ୍ୟବ୍ରତ ପଙ୍କଜ ମଲ୍ଲିକଙ୍କ ଦୁଆରେ ସ୍ତବ୍ଧ ହୋଇ ଠିଆ ହୋଇଗଲେ । ତା'ହେଲେ ?

ପଙ୍କଜ ମଲ୍ଲିକ ଘରେ ଥିଲେ । ସେଲିକି ସେ ଦେଖିଆସିଥିଲେ ଗୀର୍ଜାରେ । ପଙ୍କଜ ମଲ୍ଲିକ ସତ୍ୟବ୍ରତଙ୍କୁ ଦେଖିବା କ୍ଷଣି କହିଲେ : ସେଲି ବର୍ତ୍ତମାନ ନାହିଁ ମିଷ୍ଟର ମହାପାତ୍ର ।

: କେତେବେଳେ ଫେରିବ ? ସତ୍ୟବ୍ରତ ପଚାରିଲେ ।

: ମୁଁ ଠିକ୍ କହିପାରିବି ନାହିଁ । ସେ ତା'ର ବଂଧୁ ମାର୍ଗାରେଟର ବିବାହ ଉତ୍ସବରେ ଯୋଗ ଦେବାକୁ ଯାଇଛି । ଟିକିଏ ଅଧିକ ରାତି ହୋଇପାରେ । ଆପଣ ବସିବେ ?

ସତ୍ୟବ୍ରତ ଲକ୍ଷ୍ୟ କଲେ, ପଙ୍କଜ ମଲ୍ଲିକ କିପରି ଅନ୍ୟମନସ୍କ ମନେ ହେଉଛନ୍ତି । ଆହୁରି ମଧ୍ୟ ଲକ୍ଷ୍ୟ କଲେ, ତାଙ୍କର ଏଇ ମୁହୂର୍ତ୍ତରେ କଥାବାର୍ତ୍ତା କରିବାର ଆଗ୍ରହ ନାହିଁ । କହିଲେ : ମୋର ଟିକିଏ କାମ ଥିଲା । ଯାହାହେଉ, ଅନ୍ୟ ଦିନ ଆସି ଶେଷ କରିବି । ଆପଣ ବୋଧହୁଏ ବ୍ୟସ୍ତ ଅଛନ୍ତି ।

ପଙ୍କଜ ମଲ୍ଲିକ କହିଲେ : ଠିକ୍ ବ୍ୟସ୍ତ ନୁହେଁ । ତେବେ ସନ୍ଧ୍ୟାବେଳେ ଘଣ୍ଟାଏ ଦୁଇଘଣ୍ଟା ମୁଁ ଟିକିଏ ନିରୋଳାରେ ବସିବାକୁ ଭଲପାଏ । ସେଇଟା ମୋର ଗୋଟାଏ ଅନେକ ଦିନର ଅଭ୍ୟାସ । ତେଣୁ ଆପଣ ମୋତେ କ୍ଷମା କରିବେ ମିଷ୍ଟର ମହାପାତ୍ର ।

ସତ୍ୟବ୍ରତ କହିଲେ : ମୋର ଆପଣଙ୍କ ସହିତ ବର୍ତ୍ତମାନ କିଛି କାମ ନାହିଁ । ଆପଣ ଯାଆନ୍ତୁ । ହୁଏତ ମୁଁ କାଲି ସକାଳେ ଆସିବି ।

ପଙ୍କଜ ମଲ୍ଲିକ ଆଉ ପଦେ କଥା ନ କହି ଘର ଭିତରକୁ ଚାଲିଗଲେ । ସତ୍ୟବ୍ରତ କେତୋଟି ମୁହୂର୍ତ୍ତ ନୀରବରେ ଠିଆହୋଇ କ'ଣ ଚିନ୍ତା କଲେ । ତା'ପରେ ଧୀରେ ଆଗେଇ ଗଲେ ସେଲିର ବେଡ୍‌ରୁମ୍ ଆଡ଼କୁ ।

ଘରର ଦରଜା ଆଉଜା ହୋଇଥିଲା । ଠେଲି ଭିତରେ ପଶିଲେ । ତା'ପରେ ଦରଜାଟି ଭିତରୁ ବନ୍ଦ କରିଦେଲେ ।

ଘର ଭିତରେ ଧୀର ନୀଳ ଆଲୋକର ବନ୍ୟା । ସେହି ସ୍ୱଚ୍ଛ ଆଲୋକରେ ଘରର ପ୍ରାୟ ସମସ୍ତ ଆସବାବପତ୍ର ଦେଖାଯାଉଥିଲା । ସତ୍ୟବ୍ରତ ଆଉଦିନେ ଏହି ଘରେ ପଶି ସବୁ ଜିନିଷ ଦେଖିଥିଲେ । ସବୁଗୁଡ଼ିକ ପରିଚିତ ମନେ ହେଉଥିଲା । ଏବଂ ସବୁ ଜିନିଷ ଏକାନ୍ତ ଭାବରେ ନାରୀ ବ୍ୟବହାର ଯୋଗ୍ୟ ।

ସତ୍ୟବ୍ରତ କିଛି ସମୟ ନୀରବରେ ଠିଆହୋଇ କ'ଣ ଚିନ୍ତା କଲେ । ତା'ପରେ ଝର୍କା ପାଖକୁ ଯାଇ ଦରଜାଟି ଖୋଲି ଦେଲେ । ସାମ୍ନା କୋଠାଟା ବେଶ୍ ଆଲୋକିତ । ସେଇ କୋଠାଟାରେ ଜଣେ ଫାଦାର ରୁହନ୍ତି ବୋଲି ପଙ୍କଜ ମଲ୍ଲିକ କହୁଥିଲେ । କିନ୍ତୁ ସେଇ ମୁହୂର୍ତ୍ତରେ କୋଠାର ସେହି ବାରଣ୍ଡାରେ କାହାରିକୁ ସେ ଦେଖିପାରିଲେ ନାହିଁ ।

ସେଲିର ଘର ଝରକାକୁ କୋଠାଟା ଅତି ପାଖରେ ମନେ ହେଉଥିଲା । ସେ କୋଠାର ବାରଣ୍ଡାରେ ଜଣେ ଠିଆ ହେଲେ ସେଲି ସହିତ ଅତି ସହଜରେ କଥାବାର୍ତ୍ତା କରିହେବ ।

ସତ୍ୟବ୍ରତ ଝରକାଟା ପୁଣି ବନ୍ଦ କରି ଫେରିଆସିଲେ । ସେଲି ଘରୁ ମଧ୍ୟ ବାହାରି ଆସିଲେ । ତଳକୁ ଓହ୍ଲାଇ ଯିବା ପଥରେ ଦେଖିଲେ, ସେଲି ବ୍ୟସ୍ତ ହୋଇ ଭିତରକୁ ପଶୁଛି ।

ସେ ସତ୍ୟବ୍ରତ ମହାପାତ୍ରଙ୍କୁ ସାମ୍ନା ସାମ୍ନି ଦେଖିଲା, କିନ୍ତୁ ନ ଦେଖିଲା ପରି ବାଟ ଆଡ଼େଇ ଉପରକୁ ଉଠିଗଲା ।

ସତ୍ୟବ୍ରତ ଶିଡ଼ିର ପାହାଚ ଉପରେ ଠିଆ ହୋଇ ମୁହୂର୍ତ୍ତେ ଚିନ୍ତା କଲେ । ତା'ପରେ ଧୀରେଧୀରେ ଓହ୍ଲାଇଗଲେ ତଳକୁ ।

ହୁଏତ ସେଲି ଖୁବ୍ ଥକି ପଡ଼ିଛି । ଅଥବା ସତ୍ୟବ୍ରତଙ୍କ ସହିତ କଥା କହିବାର କିଛି ଯଥାର୍ଥତା ମନେକରି ନାହିଁ । ଅଥବା ଖୁବ୍ ବ୍ୟସ୍ତ ଅଛି ।

ଯାହା ହେଉ, ସତ୍ୟବ୍ରତ ତଳକୁ ଓହ୍ଲାଇଯାଇ ଯେଉଁ ବାଟେ ବାଟେ ଆସିଥିଲେ, ଧୀରେ ଧୀରେ ପୁଣି ସେଇ ବାଟେ ବାଟେ ଆଗେଇ ଗଲେ ଗୀର୍ଜା ଭିତରକୁ ।

ଗୀର୍ଜାରେ ଲୋକଗହଳ ଧୀରେ ଧୀରେ କମି ଆସିଥିଲା । ବୋଧହୁଏ ବିବାହ ପର୍ବ ଶେଷ ହୋଇଥିଲା । ଏବଂ ନିମନ୍ତ୍ରିତ ଅତିଥିମାନେ ଯେ ଯାହା ବାଟରେ ଚାଲିଯାଉଥିଲେ ।

ସତ୍ୟବ୍ରତଙ୍କର ମନେପଡ଼ିଲା ଶ୍ରୀବାସ୍ତବ କଥା । କାହିଁ, ତା' ସହିତ ଆଉ ତ ଦେଖା ହେଲା ନାହିଁ । ସେ ତେବେ କ'ଣ ସତ୍ୟବ୍ରତଙ୍କୁ ଠକିଦେଇ ଚାଲିଗଲା !

ସତ୍ୟବ୍ରତ ପୁଣି ଯାଇ ସେଇ ମୁଚୁକୁନ୍ଦ ଗଛମୂଳେ ଠିଆ ହେଲେ । ଏଥର ସେ ସ୍ଥାନଟା ଅଧିକ ଅନ୍ଧକାର ମନେ ହେଉଥିଲା । ସେଇଠି ଠିଆ ହେଲେ ଗୀର୍ଜା ଭିତରକୁ ଯିବାର ପ୍ରଧାନ ରାସ୍ତାଟି ଦେଖା ଯାଉଥିଲା ଏବଂ ଲୋକମାନଙ୍କର ଗତିବିଧି ସହଜରେ ଅନୁଧ୍ୟାନ କରି ହେଉଥିଲା । ସତ୍ୟବ୍ରତ କ'ଣ ଭାବି ସେଇ ମୁଚୁକୁନ୍ଦ ଗଛମୂଳେ ବସିପଡ଼ିଲେ ।

ଆହୁରି କିଛି ସମୟ କଟିଗଲା ।

ଗୀର୍ଜା ପ୍ରାୟ ନିର୍ଜନ ହୋଇଆସିଲା ।

ଏଥର ସତ୍ୟବ୍ରତ ଧୀରେ ଧୀରେ ଉଠି ଗୀର୍ଜା ଆଡ଼କୁ ଆଗେଇଲେ । ଗୀର୍ଜା ଭିତରକୁ ପଶିବାର ପ୍ରଧାନ ଦରଜାରେ ଦୁଇ ତିନି ଜଣ ଲୋକ ଠିଆହୋଇ କଥାବାର୍ତ୍ତା ହେଉଥିଲେ ।

ସତ୍ୟବ୍ରତ ଏଥର ଗୀର୍ଜା ଭିତରକୁ ପଶିଲେ ।

ଫାଙ୍କା । କେହି ନାହିଁ । ଚେଆରଗୁଡ଼ିକ ଖାଲି ପଡ଼ିଛି । ହଲ୍ ଭିତରେ ଧୀର ଆଲୋକ ଜଳୁଛି । ସବୁଠାରୁ ସାମ୍‌ନା ଚେଆରରେ ଦୁଇଜଣ ଲୋକ ଚୁପ୍‌ଚାପ୍ ବସି ରହିଛନ୍ତି ।

ସତ୍ୟବ୍ରତ ଗୀର୍ଜା ଭିତରୁ ପୁଣି ବାହାରକୁ ବାହାରିଆସିଲେ ।

ବାହାରେ ଯେଉଁ ଦୁଇ ତିନିଜଣ ଲୋକ ଠିଆହୋଇ କଥାବାର୍ତ୍ତା କରୁଥିଲେ, ସେମାନେ ବି ଚାଲିଯାଇଛନ୍ତି ।

ବାହାରେ ଗୋଟିଏ ଛୋଟ ଘରେ କଥାବାର୍ତ୍ତା ଶୁଭୁଥିଲା । ସତ୍ୟବ୍ରତ ସେଇ ଘର ପାଖକୁ ଆଗେଇଯାଇ ଦେଖିଲେ, ସେଇଟା ମାଳୀମାନଙ୍କର ରହିବା ଘର । ସେମାନେ ବସି ବସି ରନ୍ଧାବଢ଼ା କରୁଛନ୍ତି ଏବଂ ନିଜ ନିଜ ଭିତରେ କଥାବାର୍ତ୍ତା ହେଉଛନ୍ତି ।

ଆଉ କ'ଣ ! ଶ୍ରୀବାସ୍ତବ ତା'ହେଲେ ଚାଲିଯାଇଛି ।

ଏଠାରେ ଆଉ ବସିରହି କିଛି ଲାଭ ହେବ ନାହିଁ ।

ସତ୍ୟବ୍ରତ ଧୀରେ ଧୀରେ ଗୀର୍ଜା ହତାରୁ ବାହାରକୁ ବାହାରିଲେ । ତାଙ୍କ ଗାଡ଼ିଟା ମେନ୍‌ରୋଡ ଉପରେ ଠିଆ ହୋଇଥିଲା । ସେ ଯାଇ ଗାଡ଼ିରେ ବସିଲେ । କିନ୍ତୁ ଗାଡ଼ି ଚଳେଇ ଆଉ କୁଆଡ଼େ ଯିବା ପାଇଁ ତାଙ୍କର ଇଚ୍ଛା ହେଉ ନ ଥିଲା ।

କେତୋଟି ମିନିଟ୍ ଚୁପ୍‌ଚାପ୍ ବସି ରହିବା ପରେ ହାତଘଡ଼ିକୁ ଚାହିଁ ଦେଖିଲେ, ଦଶଟା ବାଜିବ ।

ସତ୍ୟବ୍ରତ ଗାଡ଼ିରେ ଷ୍ଟାର୍ଟ ଦେଲେ ।

ଧୀରେ ଧୀରେ ଗାଡ଼ି ଚଳେଇ ପୁଣି ଯାଇ ପହଞ୍ଚିଲେ ପଙ୍କଜ ମଲ୍ଲିକଙ୍କ ଦୁଆରେ ।

ଗାଡ଼ିରୁ ଓହ୍ଲାଇଲେ । ଧୀରେ ଧୀରେ ଆଗେଇଲେ । ମେନ୍ ଗେଟ୍‌ଟା ଖୋଲା ଥିଲା । ସତ୍ୟବ୍ରତ ସେଠାରେ ଠିଆହେଲେ ମୁହୂର୍ତ୍ତେ । ତା'ପରେ ଠେଲି ଭିତରକୁ ପଶିବେ, ଦେଖିଲେ ଗେଟ୍‌ଟା ଭିତର ପଟରୁ କିଏ ଯେପରି ଖୋଲୁଛି । ସେ ଘୁଞ୍ଚିଗଲେ ଗୋଟାଏ ଉହାଡ଼ିଆ ଜାଗାକୁ ।

କିନ୍ତୁ, ଏ ଯେ...

ସତ୍ୟବ୍ରତ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ସେଲି ଗେଟ୍ ଖୋଲି ବାହାରି ଯାଉଛି ବାହାରକୁ । ସେ ଯେପରି ଏକ ମନ, ଏକ ଧ୍ୟାନ । ଆଗକୁ ପଛରୁ କୁଆଡ଼େ ଚାହୁଁ ନାହିଁ । ଅନ୍ୟମନସ୍କ ପରି ମନେହେଉଛି ।

ତା'ହେଲେ...

ସତ୍ୟବ୍ରତ ଆଗେଇ ଚାଲିଲେ ସେଲିର ପଛେ ପଛେ । ଦଶଟା ରାତିରେ ସେଲି ତେବେ ଯାଉଛି କୁଆଡ଼େ ?

ସତ୍ୟବ୍ରତ ଯଥେଷ୍ଟ ଦୂରତ୍ୱ ବଜାୟ ରଖି ଚାଲିଥିଲେ ।

ସେଲି କିନ୍ତୁ ଏତେ ଧ୍ୟାନମଗ୍ନ ଥିଲା ଯେ, ସେ ଆଗକୁ ପଛକୁ କେଉଁଆଡ଼େ ଚାହିଁବାର ଆବଶ୍ୟକ ମନେକରୁ ନ ଥିଲା ।

ସତ୍ୟବ୍ରତ ଦେଖିଲେ, ସେଲି ତାଙ୍କର ସେହି ପରିଚିତ ପଥରେ ଆଗେଇଛି । କିଛି ସମୟ ପୂର୍ବରୁ ଯେଉଁ ପଥଦେଇ ସେ ଗୀର୍ଜାରୁ ଆସିଥିଲେ ପଙ୍କଜ ମଲ୍ଲିକଙ୍କ ଘରକୁ ।

ତେବେ ସେଲି କ'ଣ ପୁଣି ଗୀର୍ଜାକୁ ଯାଉଛି ? ଏତେ ରାତିରେ ତା'ର ଆଉଥରେ ଗୀର୍ଜାକୁ ଯିବାର ଆବଶ୍ୟକତା ବା କ'ଣ ଅଛି ?

ସତ୍ୟବ୍ରତଙ୍କ ମନରେ ନାନା ପ୍ରଶ୍ନ ଉଠିଥିଲା । ନାନା ଭାବନାରେ ସେ ବିଚଳିତ ହୋଇଉଠିଥିଲେ । ତା'ହେଲେ କ'ଣ ତାଙ୍କ ଅନୁମାନ ସତ୍ୟ ହେବାକୁ ଯାଉଛି ?

ସତ୍ୟବ୍ରତ ଯେଉଁଦନ ସେଲି ମୁହଁରୁ ତା'ର ସ୍ୱପ୍ନବୃତ୍ତାନ୍ତ ଶୁଣିଥିଲେ, ସେଇଦିନ

ସେଲିର ଘରେ ପ୍ରବେଶ କରି ମୁଚୁକୁନ୍ଦ ଫୁଲଟା ପାଇଥିଲେ । ସେଦିନ ସେ ଲକ୍ଷ୍ୟକରି ଦେଖିଥିଲେ, ସେଲିଙ୍କର ବଗିଚା ହତା ଭିତରେ କିନ୍ତୁ ମୁଚୁକୁନ୍ଦ ଗଛ ନ ଥିଲା । ସେଲି ମୁହଁରୁ ସ୍ୱପ୍ନବୃତ୍ତାନ୍ତ ଶୁଣି ଓ ମୁଚୁକୁନ୍ଦ ଫୁଲ ବିଛଣା ଉପରୁ ପାଇ ସତ୍ୟବ୍ରତଙ୍କ ମନରେ ଏକ ଉତ୍‌କଟ ଭାବନା ଦେଖା ଦେଇଥିଲା । ସେଇ ଭାବନାକୁ ପରୀକ୍ଷା କରିବା ପାଇଁ ତାଙ୍କର ତଦନ୍ତର ଧାରା ସେ ଭିନ୍ନପଥରେ ପରିଚାଳିତ କରିଥିଲେ ।

କିନ୍ତୁ ଏତେ ଶୀଘ୍ର...

ସେଲି ଆଗେଇ ଚାଲିଥିଲା ।

ସରୁ ରାସ୍ତା ଶେଷରେ, ଗୀର୍ଜାର ପଛ ପାଖ ବାଟରେ ସେ ଗୀର୍ଜାର ହତା ଭିତରେ ପ୍ରବେଶ କଲା ।

ସତ୍ୟବ୍ରତ କିନ୍ତୁ ଗଛ ଛାଇରେ ନୀରବରେ ଠିଆହୋଇ ଲକ୍ଷ୍ୟ କଲେ ।

ସେଲି ଆଗେଇ ଯାଉଥିଲା । ଗୀର୍ଜାର ମେନ୍ ଗେଟ୍ ପାଖରେ ସେଲି ପହଞ୍ଚିବା କ୍ଷଣି ସତ୍ୟବ୍ରତ ଦେଖିଲେ, ଗୋଟିଏ ଅସ୍ପଷ୍ଟ ଛାୟାମୂର୍ତ୍ତି ଯେପରି ସେଲି ପାଖକୁ ଆଗେଇ ଆସିଲା ଏବଂ ସେଲିର ହାତ ଧରି ଭିତରକୁ ନେଇଗଲା ।

ସତ୍ୟବ୍ରତ ଆଉ କାଳ ବିଳମ୍ବ ନ କରି ଆଗେଇ ଗଲେ । ପୁଣି ସେ ଗୀର୍ଜାର ମେନ୍‌ଗେଟ୍ ଦେଇ ଭିତରକୁ ପଶିଲେ ।

କିନ୍ତୁ...

କିଏ କାହିଁ ?

ଫାଙ୍କା ହଲ ଘରଟା । ହାଲ୍‌କା ଆଲୋକରେ ହଲ୍‌ର ପ୍ରତିଟି ସ୍ଥାନ ବାରି ହେଉଛି ।

କିନ୍ତୁ ସେଲି ଗଲା କୁଆଡ଼େ ?

ସତ୍ୟବ୍ରତ ବିବ୍ରତ ହୋଇଉଠିଲେ । ନିଶ୍ଚୟ ତା'ହେଲେ ସେଲିକୁ ଅନ୍ୟ କୌଣସି ଘରକୁ ନିଆହୋଇଛି । ସେ ନିଜ ଆଖିରେ ଦେଖିଛନ୍ତି ସେଲି ଗୀର୍ଜା ଭିତରେ ପଶିଛି । ତା'ହେଲେ ସେଲି ଗଲା କୁଆଡ଼େ ?

ସତ୍ୟବ୍ରତ ଗୀର୍ଜା ଭିତରେ ଅନ୍ୟ ପଥ ଖୋଜିବାକୁ ଲାଗିଲେ । ପଥ ନିଶ୍ଚୟ ଅଛି କେଉଁଠି ।

ହଁ, ପାଇଲେ ମଧ୍ୟ ।

ଏ ପଥ ଯେ ଆହୁରି ସଂକୀର୍ଣ୍ଣ । ଅନ୍ଧକାରମୟ ।

ସତ୍ୟବ୍ରତ ସେହି ଅନ୍ଧକାର ମଧ୍ୟରେ ଆଗେଇ ଗଲେ । ଉପରେ ମନେହେଉଛି ଗୋଟାଏ ସେଡ୍ । ଚାରି ପାଖରେ ଗଛ ଓ ପତ୍ର ଗହଳ । ପ୍ରାୟ ପାଞ୍ଚ ମିନିଟ୍ ସେଇ ପଥଦେଇ ଆଗେଇ ଯିବା ପରେ ସେ ଆଉ ଗୋଟିଏ ଦ୍ୱାର ଦେଖିବାକୁ ପାଇଲେ । ଦରଜା ଆଉଜା ହୋଇଥିଲା । ସତ୍ୟବ୍ରତ ଠେଲି ଭିତରକୁ ପଶିଲେ ।

ଭିତରଟା କିନ୍ତୁ ଅନ୍ଧକାର ନୁହେଁ । ହାଲ୍‌କା ଆଲୋକରେ ସତ୍ୟବ୍ରତ ଦେଖିଲେ, ଘର ଭିତରଟା ନିର୍ଜନ । ସେ ଯେଉଁ ଦୁଆର ଠେଲି ଯେଉଁଠି ପହଞ୍ଚିଲେ, ତାହା ଗୋଟିଏ ଛୋଟ ହଲ୍ ପରି ମନେ ହେଉଥିଲା । ତା'ପରେ ସେ ଡାହାଣକୁ ଚାହିଁ ଦେଖିଲେ, ସେଠାରେ ଆହୁରି ଗୋଟିଏ ଦରଜା । ସେଇ ଦରଜାଟାକୁ ସତ୍ୟବ୍ରତ ଠେଲିଲେ । ଖୋଲିଗଲା ।

ଆଶ୍ଚର୍ଯ୍ୟ !

ସେଇ ଘରଟା ଭିତରେ ସେ କ'ଣ ଏଇଆ ଆଶା କରିଥିଲେ ! ଚାରିଟା ହସ୍‌ପିଟାଲ ପରି ବେଡ୍ । ବେଡ୍‌ରେ ଚାରିଜଣ ରୋଗୀ । ଚାରିଜଣଯାକ ରୋଗୀ ଧଳାଚାଦର ଘୋଡ଼େଇ ହୋଇ ଶୋଇଛନ୍ତି ।

ସତ୍ୟବ୍ରତଙ୍କର ସର୍ବାଙ୍ଗରେ ଯେପରି ବିଜୁଳିପ୍ରବାହ ଖେଳିଗଲା ।

ତା'ହେଲେ...

ସତ୍ୟବ୍ରତ ସେହି ଘର ଭିତରୁ ବାହାରି ଆସି, ହଲ ଭିତରେ ଆଉ ଟିକିଏ ଆଗେଇ ଯାଇ ଦେଖିଲେ, ଆଉ ଗୋଟିଏ ଦରଜା । ସେ ଘରର ଦରଜାଟା ଠେଲି ଭିତରକୁ ପଶିଲେ । ସେଇ ଏକା କଥା । ଚାରିଟା ବେଡ୍, ଚାରିଜଣ ରୋଗୀ । କିନ୍ତୁ ଏ ଘରେ ଗୋଟାଏ ବେଡ୍‌ରୁ ବେଦନାମିଶ୍ରିତ ଏକ ଚିତ୍କାର ଶୁଭୁଥିଲା । ରୋଗୀର ବୋଧହୁଏ କଷ୍ଟ ହେଉଥିଲା ।

ସତ୍ୟବ୍ରତ ତୃତୀୟ ଘରେ ମଧ୍ୟ ସେହିପରି ଚାରୋଟି ବେଡ୍ ଓ ଚାରିଜଣ ରୋଗୀକୁ ଦେଖିଲେ । ଚତୁର୍ଥ ଘରେ ପ୍ରବେଶ କରିବା ପୂର୍ବରୁ ସେ କାହାର ପାଦଶବ୍ଦ ଶୁଣି ଗୋଟାଏ ଉହାଡ଼ିଆ ଜାଗାରେ ଆତ୍ମଗୋପନ କରିଲେ ।

ଦୁଇଜଣ କଥାବାର୍ତ୍ତା ହୋଇ ଆଗେଇ ଆସୁଥିଲେ ।

ଜଣକ କଣ୍ଠସ୍ୱର ଗମ୍ଭୀର : ଠିକ୍ ସମୟରେ ଅସ୍ତ୍ରୋପଚାର କରିଥିଲେ ହୁଏତ ବଞ୍ଚିଯାଇ ଥାଆନ୍ତା । ମୋର ମନେହୁଏ, ଡକ୍ଟର ସୁବାରାଓଙ୍କ ଅବହେଳା ଯୋଗୁରୁ ରୋଗୀର ମୃତ୍ୟୁ ହେଲା ।

ଆରଜଣକ ନୀରବରେ ଆଗେଇ ଯାଉଥିଲା ।

ସେମାନେ ସତ୍ୟବ୍ରତର ପାଖଦେଇ ଚାଲିଗଲେ । ଏବଂ ଗୋଟାଏ ଦରଜା ଖୋଲି ବାହାରକୁ ବାହାରିଗଲେ ।

ସତ୍ୟବ୍ରତଙ୍କ ମୁଣ୍ଡଟା ସେତେବେଳକୁ ଭାରି ହୋଇଉଠିଥିଲା ।

ତାଙ୍କର ମନେପଡ଼ି ଯାଉଥିଲା, ସେଲିର ସ୍ୱପ୍ନରହସ୍ୟ ବର୍ଣ୍ଣନା ।

ସେଲି ସ୍ୱପ୍ନରେ ଯାହା ଦେଖିଥିଲା, ସତ୍ୟବ୍ରତ ଆଜି ତାହା ବାସ୍ତବରେ ଦେଖୁଛନ୍ତି । ଅବିକଳ ସେଲିର ସ୍ୱପ୍ନଦୃଶ୍ୟ ସହିତ ଆଜିର ଏହି ଦୃଶ୍ୟ ମିଶିଯାଉଛି ।

ସତ୍ୟବ୍ରତଙ୍କର ସମସ୍ତ ଦେହ ରୋମାଞ୍ଚିତ ହୋଇଉଠିଥିଲା ।

ସେ ଏଠାରେ ଆଉ ବେଶୀ ସମୟ ଅତିବାହିତ କରିବାକୁ ଉଚିତ ମନେକରୁ ନ ଥିଲେ । କିନ୍ତୁ ଚତୁର୍ଥ ଦରଜାଟା ତାଙ୍କ ମନରେ ଏକ ଉତ୍କଣ୍ଠା ସୃଷ୍ଟି କରୁଥିଲା । ଏହା ଭିତରେ ସେଲିର ବର୍ଣ୍ଣିତ ସେଇ କୁବେରପୁରୀ କଥା ସେ ଭାବୁଥିଲେ ।

ସତ୍ୟବ୍ରତ ଚତୁର୍ଥ ଦରଜାଟା ଠେଲି ଦେଲେ । କିନ୍ତୁ ଏଠାରେ କୁବେର ପୁରୀ କାହିଁ ? ଗୋଟାଏ ରାସ୍ତା । ବାହାରକୁ ବାହାରିବାର ରାସ୍ତା ।

ସତ୍ୟବ୍ରତ ସେଇ ରାସ୍ତାବାଟେ ବାହାରି ଯାଇ ଦେଖିଲେ, ଏଇଟା ହେଉଛି ମେନ୍‌ଗେଟ୍ । ଡାହାଣ ପାଖରେ ଅଫିସ୍ । ଅଫିସ୍‌ରେ ଜଣେ ନର୍ସ ବସିଛନ୍ତି । ଆଉ ଦୁଇ ଚାରିଜଣ ଲୋକ ଅପେକ୍ଷା କରିଛନ୍ତି ।

ସେଇ ମୁହୂର୍ତ୍ତରେ ଗୋଟାଏ ଗାଡ଼ି ଆସି ଲାଗିଲା ।

ଗାଡ଼ିରୁ ଦୁଇଜଣ ଲୋକ ବାହାରି ଆସିଲେ ।

ସେମାନେ ଏକ ରୋଗୀ ଆଣିଥିଲେ । ଅଫିସରୁ ନର୍ସଟି ଗାଡ଼ି ପାଖକୁ ଉଠିଆସିଲା ।

ସତ୍ୟବ୍ରତ ଦେଖିଲେ ମେନ୍‌ଗେଟ୍‌ରେ ଗୋଟିଏ ସାଇନ୍ ବୋର୍ଡରେ ଲେଖା ହୋଇଛି 'ଡକ୍ଟର ସୁବାରାଓଜ' ନର୍ସିଂହୋମ୍ ।

ନା, ଆଉ ଏଠାରେ ଡେରି କରିବା ଉଚିତ ନୁହେଁ । ସେଲିକୁ ସେ ପାଇଲେ ନାହିଁ । ଏହା ଭିତରୁ ଖୋଜି ପାଇବା ମଧ୍ୟ ସମ୍ଭବ ନୁହେଁ ।

ମେନ୍‌ଗେଟ୍‌ରେ ବାହାରି ସତ୍ୟବ୍ରତ ଆଗେଇ ଗଲେ । ଦୁଇ ତିନି ମିନିଟ୍ ସେ ସେଇବାଟେ ଆଗେଇ ଆସିବା ପରେ, କାଣ୍ଟନ୍‌ମେଣ୍ଟ୍ ରୋଡ୍ ଉପରେ ଆସି ପହଞ୍ଚିଲେ ।

ସତ୍ୟବ୍ରତଙ୍କ ମୁଣ୍ଡ ଭିତରେ ସେଲିର ସ୍ୱପ୍ନରହସ୍ୟ କଥା ଭଉଁରୀ ଖେଳୁଥିଲା । ସେଲି କ'ଣ ସଜ୍ଞାନରେ ତାଙ୍କୁ ଆଭଏଡ୍ କରୁଥିଲା ନା ସେଲିର ଅବଚେତନ ଅବସ୍ଥାରେ ଯାହା ଘଟି ଯାଇଥିଲା, ସେଇଆକୁ ସେ ସ୍ୱପ୍ନ ମନେକରି ବର୍ଣ୍ଣନା କରିଥିଲା ?

ସତ୍ୟବ୍ରତ ଆଉ ମୁହୂର୍ତ୍ତେ ଡେରି ନ କରି ଛୁଟିଲେ ପଙ୍କଜ ମଲ୍ଲିକଙ୍କ ଘରକୁ । ତାଙ୍କର ମନେହେଲା, ଆଜି ଗୋଟାଏ କିଛି ଘଟଣା ହୁଏତ ଘଟିବ ସେଠାରେ ।

ରାସ୍ତା ଆଲୋକରେ ଘଡ଼ିକୁ ଚାହିଁ ଦେଖିଲେ, ପ୍ରାୟ ଏଗାରଟା ବାଜିବ । ପଙ୍କଜ ମଲ୍ଲିକଙ୍କ ଘରେ ସମସ୍ତଙ୍କ ଅଜ୍ଞାତରେ ସେ ପ୍ରବେଶ କରିବା ଉଚିତ ।

ଏବଂ ସେ ଅତି ସହଜରେ ପଙ୍କଜ ମଲ୍ଲିକଙ୍କ ଘରେ ପ୍ରବେଶ କଲେ । ମେନ୍‌ଗେଟ୍ ଆଉଜା ହୋଇଥିଲା । ଠେଲିଦେଇ ସେ ଭିତରେ ପଶିଲେ । ଗୋଟିଏ ହେଲେ ଗାର୍ଡ କିମ୍ବା ଦରଓ୍ୱାନ କେହି ତାଙ୍କର ଆଖିରେ ପଡ଼ିଲେ ନାହିଁ । ଦୋ'ତାଲାକୁ ମଧ୍ୟ ସହଜରେ ଉଠିଗଲେ । କାହାରି ସୋରଶବଦ ମିଳିଲା ନାହିଁ ।

ସତ୍ୟବ୍ରତ ଆଶ୍ଚର୍ଯ୍ୟ ହେଲେ । ତାଙ୍କର ମନେହେଲା, ପଙ୍କଜ ମଲ୍ଲିକଙ୍କର ଚାକର ବାକର ସମସ୍ତେ କିପରି ଦାୟିତ୍ୱହୀନ । କେହି କାହାରି କାର୍ଯ୍ୟର ଗୁରୁତ୍ୱ ବୁଝନ୍ତି ନାହିଁ । ତେଣୁ ଏ ଘରୁ ଚୋରି ହେବନାହିଁ ତ ଆଉ ଚୋରି ହେବ କେଉଁଠୁ ?

ସତ୍ୟବ୍ରତ ଦୋ'ତାଲାରେ ଯାଇ ପ୍ରଥମେ ଦେଖିଲେ ସେଲିର ଘରଟା । ସେଲି ଆସିଛି ନା ନାହିଁ । ଧୀରେ ସେ ସେଲି ଘରର କବାଟ ଠେଲିଲେ । ଖୋଲିଗଲା । ସେହିପରି ହାଲ୍‌କା ଆଲୋକ । କିନ୍ତୁ ସେଲିର ଘରଟା ଖାଲି ।

ସେଲି ତା'ହେଲେ ଫେରିନାହିଁ ।

ଆଉ ପଙ୍କଜ ମଲ୍ଲିକ ?

ସତ୍ୟବ୍ରତ ପଙ୍କଜ ମଲ୍ଲିକଙ୍କ ଘରଆଡ଼କୁ ଆଗେଇ ଗଲେ । ଦରଜା ଭିତରୁ ବନ୍ଦ ହୋଇଛି । କିନ୍ତୁ ଦରଜା ଫାଙ୍କରୁ ଦେଖାଗଲା ଘର ଭିତରେ ଆଲୋକ ଜଳୁଛି ।

ସତ୍ୟବ୍ରତ ଫାଙ୍କ ଭିତରୁ ଘରର ପରିବେଶ ଦେଖିବାକୁ ଚେଷ୍ଟା କଲେ । ସେ ଅବାକ୍ ହୋଇଗଲେ ।

ଗୋଟିଏ ଆରାମ ଚେୟାର ଉପରେ ପଙ୍କଜ ମଲ୍ଲିକ ଶୋଇଛନ୍ତି । ତାଙ୍କ ସାମ୍‌ନାରେ ଗୋଟିଏ ଛୋଟ ଟେବୁଲ ଉପରେ ବିଦେଶୀ ପାନୀୟ ବୋତଲ ଦୁଇଟା ଥୁଆ ହୋଇଛି । ଦୁଇଟା ଗ୍ଲାସରେ ପାନୀୟ ଅଧେ ଅଧେ ଭରାହୋଇ ରଖାହୋଇଛି । ପଙ୍କଜ ମଲ୍ଲିକ ବୋଧହୁଏ ଶୋଇପଡ଼ିଛନ୍ତି ।

ଏଇ ତା'ହେଲେ ପଙ୍କଜ ମଲ୍ଲିକଙ୍କର ରାତିର ସ୍ୱରୂପ !

ସତ୍ୟବ୍ରତ ମନେ ମନେ ଚିନ୍ତା କରିନେଲେ ।

ଏହାପରେ ତାଙ୍କର କର୍ତ୍ତବ୍ୟ ?

ସତ୍ୟବ୍ରତ ଧୀରେଧୀରେ ସେଠାରୁ ବାହାରିଗଲେ ଏବଂ ଷ୍ଟ୍ରଂରୁମ୍ ସଂଲଗ୍ନ ଘର ଭିତରର ଅବସ୍ଥାଟା ଦେଖିବା ପାଇଁ ସେ ଘରର ଦରଜା ଠେଲିଲେ ।

ଦରଜାଟା ଖୋଲିଗଲା । ଘରଟା ଅନ୍ଧକାର ।

ସତ୍ୟବ୍ରତ ସେହି ଅନ୍ଧକାର ଘର ଭିତରେ ପଶିଲେ । ତାଙ୍କର ମନେହେଉଥିଲା, ଆଜି ହୁଏତ କିଛି ଗୋଟାଏ ଘଟିବାର ସମ୍ଭାବନା ରହିଛି । ଘଟୁ ନ ଘଟୁ, ସେ ଆଜି ଏହି ଷ୍ଟ୍ରଂରୁମ୍ ସଂଲଗ୍ନ ଘର ମଧ୍ୟରେ ରାତ୍ରି ଯାପନ କରିବେ ଆଉ ସେଲିର ଗତିବିଧି ଲକ୍ଷ୍ୟ କରିବେ ।

ସତ୍ୟବ୍ରତ ସେହି ଅନ୍ଧକାର ମଧ୍ୟରେ, ଗୋଟିଏ କୋଣକୁ ଚେଆର ପକାଇ ଚୁପ୍‌ଚାପ୍ ବସିରହିଲେ ।

ସେହିପରି ସେ ଅନେକ ସମୟ ବସିରହିବା ପରେ ତାଙ୍କର ମନେହେଲା, ଖବରଟା ପୋଲିସ ଇନିସ୍‌ପେକ୍‌ଟର ମହେନ୍ଦ୍ର ମିଶ୍ରଙ୍କୁ ଜଣାଇଥିଲେ ଭଲ ହୋଇଥାଆନ୍ତା ।

କିନ୍ତୁ ବର୍ତ୍ତମାନ ଉପାୟ ନାହିଁ ।

ଫୋନ୍‌ଟା ରହିଛି ପଙ୍କଜ ମଲ୍ଲିକଙ୍କ ଶୋଇବା ଘରେ । ତେଣୁ ନୀରବରେ ବସିରହି, ସତ୍ୟବ୍ରତ ଘଟଣାଟାକୁ ପୂର୍ବାପର ସଙ୍ଗତି ସହ ଚିନ୍ତା କରିବାକୁ ଲାଗିଲେ ।

ଏହି କେସ୍ ସଂସର୍ଗରେ ଆସି, ଯେଉଁ ଚରିତ୍ରମାନଙ୍କ ସାମ୍‌ନାକୁ ସେ ଆସିଛନ୍ତି, ସେହିମାନଙ୍କୁ ଗୋଟିକ ପରେ ଗୋଟିଏ ମନେ ପକାଇଲେ ।

ଗୀର୍ଜା ଘଣ୍ଟାରେ ବାରଟା ବାଜିବାର ଶବ୍ଦ ହେଲା ।

ସତ୍ୟବ୍ରତ ଚଞ୍ଚଳ ହୋଇଉଠିଲେ ।

ଏତେବେଳ ଯାଏ କ'ଣ ସେଲି ଫେରିଲା ନାହିଁ ? ଅଥବା ଫେରିଆସି ତା' ରୁମ୍‌ରେ କବାଟ କିଳି ଶୋଇଯାଇଛି ?

ସତ୍ୟବ୍ରତଙ୍କର ସନ୍ଦେହ ହେଲା । ଆଉଥରେ ସେ ସେଲିର ଘର ଦେଖିଆସିବା ପାଇଁ ବାହାରିଲେ ।

ଘର ପଦାକୁ ଗୋଡ଼ ବଢ଼ାଇଛନ୍ତି, ତାଙ୍କ କାନରେ ଯେପରି କାହାରି ପାଦଶବ୍ଦ ବାଜିଲା । ସେ ପୁଣି ଗୋଡ଼ ଫେରାଇ ନେଲେ ଭିତରକୁ ।

ହଁ, କିଏ ଆସୁଛି ।

ଆଗେଇ ଆସୁଛି କ୍ରମଶଃ । ଶିଡ଼ି ପାରହୋଇ ବାରଣ୍ଡା, ତା'ପରେ ସତ୍ୟବ୍ରତଙ୍କ ଆଡ଼େ ଏବଂ ସବାଶେଷରେ ଷ୍ଟ୍ରଂରୁମ୍‌ର ସେଇ ଘର ଭିତରେ ପାଦଶବ୍ଦ ଶୁଣାଗଲା ।

କେତୋଟି ମୁହୂର୍ତ୍ତ ଚୁପ୍‌ଚାପ୍ । ତା'ପରେ ସେଇ ଅନ୍ଧକାର ଭିତରେ ଏକ କ୍ଷୁଦ୍ର ଆଲୋକ ଜଳିଉଠିଲା । ପେନ୍‌ସିଲ୍ ଟର୍ଚ୍ଚର ଆଲୋକ । ଆଲୋକଟା ଧୀରେଧୀରେ ଆଗେଇଗଲା ଷ୍ଟ୍ରଂରୁମ୍ ଆଡ଼କୁ ।

ସତ୍ୟବ୍ରତ ରୁଦ୍ଧଶ୍ୱାସରେ ଘଟଣାଟା ଲକ୍ଷ୍ୟ କରୁଥିଲେ ।

ଆସାମୀ ସମ୍ବନ୍ଧରେ ସେ ନିଶ୍ଚିତ ହୋଇପାରୁ ନ ଥିଲେ ।

ସେହି କ୍ଷୁଦ୍ର ଆଲୋକଟି ଷ୍ଟ୍ରଂରୁମ୍‌ର ଅଟୋମେଟିକ ତାଲାଟି ଉପରେ କିଛି ସମୟ ସ୍ଥିର ରହିଲା । ତା'ପରେ ଗୋଟିଏ ହାତ ଲମ୍ବିଗଲା । ତାଲା ଉପରେ କେତୋଟି ଆଂଗୁଳି କେତୋଟି ମୁହୂର୍ତ୍ତ ପାଇଁ ସଞ୍ଚାଳିତ ହେଲା ।

କିଛି ସମୟ ପରେ 'ଟକ୍' କରି ଗୋଟେ ଶବ୍ଦ ହେଲା ଏବଂ ଷ୍ଟ୍ରଂରୁମ୍‌ର ତାଲା ଖୋଲିଗଲା ।

ତା'ପରେ ପୁଣି କେତୋଟି ମୁହୂର୍ତ୍ତର ନୀରବତା ଏବଂ ଅନ୍ଧକାର ।

ସତ୍ୟବ୍ରତ ବସିଥିବା ଚେଆର ଉପରୁ ଧୀରେ ଉଠିଲେ । ତାଙ୍କର ସମସ୍ତ ଦେହ କଂପି ଉଠୁଥିଲା । ଏଇ ମୁହୂର୍ତ୍ତରେ ସେ ତାଙ୍କର କର୍ତ୍ତବ୍ୟ ସ୍ଥିର କରିପାରୁ ନ ଥିଲେ ।

କେତୋଟି ମୁହୂର୍ତ୍ତ ପରେ ସେଇ ଛାୟାମୂର୍ତ୍ତି ପୁଣି ହଲିବାକୁ ଲାଗିଲା । ଷ୍ଟ୍ରଂରୁମ୍‌ର ଦରଜା ଖୋଲିଲା ବେଳେ ଗୋଟାଏ ଭାରି ଶବ୍ଦ ହେଲା । ତା'ପରେ ଷ୍ଟ୍ରଂରୁମ୍ ଭିତରେ ଗୋଟିଏ ଅଳ୍ପ ପାୱାରର ବଲ୍‌ବ ଜଳିଉଠିଲା ।

ଏଥର ସତ୍ୟବ୍ରତ ସେହି ହାଲ୍‌କା ଆଲୋକରେ ଯାହାକୁ ଦେଖିଲେ, ସେଥିରେ ସେ ମୋଟେ ଆଶ୍ଚର୍ଯ୍ୟ ହେଲେ ନାହିଁ । କାରଣ ତାଙ୍କର ଅନୁମାନ ସତ୍ୟ ହୋଇଛି ।

ଷ୍ଟ୍ରଂରୁମ୍ ଭିତରେ ସେଲି ଠିଆହୋଇ ଗୋଟାଏ କାଠ ବାକ୍‌ସ ଖୋଲୁଛି । ସେଇଟା ତା' ମାଆର ଗହଣାବାକ୍‌ସ । ପଙ୍କଜ ମଲ୍ଲିକ ସେହି ବାକ୍‌ସ ଭିତରେ ସ୍ତ୍ରୀଙ୍କର ବହୁମୂଲ୍ୟ ଅଳଙ୍କାର ସାଇତି ରଖିଛନ୍ତି ।

ଏହା ନିଶ୍ଚିତ ଯେ ଏହାପରେ ସେଲି ସେହି ଗହଣାବାକ୍‌ସରୁ ଗୋଟିଏ ଦୁଇଟି

ଅଳଙ୍କାର ବାହାର କରି କିଛି କ୍ଷଣ ପରେ ବାହାରି ଯିବ । ଏ କ୍ଷେତ୍ରରେ ସତ୍ୟବ୍ରତଙ୍କର କର୍ତ୍ତବ୍ୟ କ'ଣ ?

ସେ କ'ଣ ବାହାରୁ ଷ୍ଟ୍ରଂରୁମ୍‌ର ଦରଜା ବନ୍ଦ କରିଦେଇ, ପଙ୍କଜ ମଲ୍ଲିକଙ୍କୁ ହାତେ ହାତେ ଚୋର ଧରାଇ ଦେବେ ?

କିନ୍ତୁ ଏହାଦ୍ୱାରା ତାଙ୍କର ଉଦ୍ଦେଶ୍ୟ ସାଧନ ହେବନାହିଁ । ସତ୍ୟବ୍ରତ ବୁଝିପାରିଥିଲେ ଯେ, ସେଲି ତା'ର ଜ୍ଞାତସାରରେ ଏହା କରୁନାହିଁ । ସେ କାହାରି ନିର୍ଦ୍ଦେଶରେ ଏହି ଅପକର୍ମ କରିଚାଲିଛି ଏବଂ ସଂପୂର୍ଣ୍ଣ ତା'ର ଅଜାଣତରେ । ତେଣୁ ଏ କ୍ଷେତ୍ରରେ ଆସାମୀ ସେଲି ନୁହେଁ । ଅସଲ ଆସାମୀକୁ ଧରିବାକୁ ହେଲେ ସେଲିକୁ ସ୍ୱାଧୀନ ଭାବରେ ତା' କାର୍ଯ୍ୟ ହାସଲ କରିବାର ସୁଯୋଗ ଦେବାକୁ ହେବ ।

ଏବଂ ତାହାହିଁ ହେଲା ।

ସତ୍ୟବ୍ରତ ଦେଖିଲେ, ସେଲି ଷ୍ଟ୍ରଂ ରୁମ୍‌ରୁ ତା'ର କାମ ଶେଷକରି ଲାଇଟ୍ ଲିଭାଇ ଦେଲା । ତା'ପରେ ଷ୍ଟ୍ରଂରୁମ୍‌ର ଦରଜା ବନ୍ଦ କଲା । କେତୋଟି ମୁହୂର୍ତ୍ତ ପରେ ତା' ହାତର ସେଇ ଛୋଟ ଆଲୋକଟି ଜଳି ଉଠିଲା । ଷ୍ଟ୍ରଂ ରୁମ୍ ଦରଜାର ତାଲାରେ କେତୋଟି ଆଙ୍ଗୁଳି ବୁଲିଗଲା ।

ତା'ପରେ ପୁଣି ଅନ୍ଧକାର ।

ସେଲି ସେ ଘରୁ ବାହାରିଗଲା ।

ସତ୍ୟବ୍ରତ ସେଲି ପଛେପଛେ ପାଦ ଚିପି ଚିପି ଆଗେଇଗଲେ ।

ସେଲି କିନ୍ତୁ ନିର୍ବିକାର ।

ସେ ଆଗକୁ ମାଡ଼ି ଚାଲିଥିଲା, ପଛକୁ ଚାହିଁବାର ତା'ର ଯେପରି ଆଗ୍ରହ ନ ଥିଲା ।

ଦୋ'ତାଲାରୁ ତଳକୁ, ତଳୁ ବାହାରକୁ, ତା'ପରେ ରାସ୍ତା ଉପରେ ଏବଂ କ୍ରମଶଃ ସେଇ ପୂର୍ବ ପଥରେ ସେଲି ଆଗେଇ ଚାଲିଥିଲା । ଯେଉଁ ସଂକୀର୍ଣ୍ଣ ପଥଦେଇ ସତ୍ୟବ୍ରତ ଗୀର୍ଜାରୁ ଆସିଥିଲେ ପଙ୍କଜ ମଲ୍ଲିକଙ୍କ ଘର ପର୍ଯ୍ୟନ୍ତ ।

ସେଲି ଚାଲିଥିଲା । ସତ୍ୟବ୍ରତ ସେଲିଠାରୁ ଯଥେଷ୍ଟ ଦୂରତ୍ୱ ବଜାୟ ରଖି ଅନୁସରଣ କରୁଥିଲେ ।

କିନ୍ତୁ ପରିଣତିର ଶେଷ ମୁହୂର୍ତ୍ତରେ ସେ କ'ଣ କରିବେ ?

ସେଲି ନିଶ୍ଚୟ ଯାଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବ ଏବଂ ନିର୍ଦ୍ଦିଷ୍ଟ ଏକ ବ୍ୟକ୍ତି ହାତରେ ଅପହରଣ କରି ଆଣିଥିବା ପଦାର୍ଥତକ ସମର୍ପଣ କରି ଫେରିଆସିବ । ସେଇ ମୁହୂର୍ତ୍ତରେ ସତ୍ୟବ୍ରତଙ୍କର କର୍ତ୍ତବ୍ୟ କ'ଣ ?

ସେ ଦେଖିଲେ, ଗଳିମୁଣ୍ଡରେ ଗୀର୍ଜାକୁ ଯିବା ମୋଡ଼ରେ କିଏ ଜଣେ ଆଗେଇ ଯାଉଛି । ସତ୍ୟବ୍ରତ ଛୁଟିଗଲେ ସେଇଆଡ଼େ । ତାଙ୍କ ଅନୁମାନ ସତ୍ୟ । ସେ ଗୋଟିଏ କନେଷ୍ଟବଲ ।

ସତ୍ୟବ୍ରତ ତାକୁ ନିଜର ପରିଚୟ ଦେଲେ ।

ସେ ହାତ ଟେକି ସଲାମ୍ ଠୁକିବାକୁ ଯାଉଥିଲା ।

ସତ୍ୟବ୍ରତ କିନ୍ତୁ ତା' ହାତ ଧରି ତାକୁ ଭିଡ଼ି ଆଣିଲେ । ସେଲି ଆଡ଼େ ଦୃଷ୍ଟି ଆକର୍ଷଣ କରି କହିଲେ : ଅନୁସରଣ କରିବାକୁ ହେବ । କେସ୍‌ଟା ଖୁବ୍ ସାଂଘାତିକ ।

ରାମସୁଭଗ ପାଣ୍ଡେ, ଝାପ୍‌ସା ଅନ୍ଧକାରରେ ଗୋଟାଏ ନାରୀମୂର୍ତ୍ତି ଦେଖି କହିଲା : କ୍ୟା ବାତ୍ ହେ ସାବ୍ ?

ସତ୍ୟବ୍ରତ ଚୁପି ଚୁପି କହିଲେ : ଏଇ ଝିଅଟା ଜଣକ ଘରୁ କେତେକ ମୂଲ୍ୟବାନ ସମ୍ପଦ ଚୋରି କରି ନେଇଯାଉଛି । ସେ ଅନ୍ୟ ଜଣକ ହାତରେ ସେଗୁଡ଼ିକ ଦେବ । ତୁମେ ସେଇ ମୁହୂର୍ତ୍ତରେ ଜିନିଷ ସହ ସେଇ ଲୋକଟାକୁ ଆରେଷ୍ଟ କରିବ । ଝିଅଟାକୁ କିଛି କହିବ ନାହିଁ କିମ୍ବା ଧରିବ ନାହିଁ ।

: କିନ୍ତୁ ସାବ୍, ହମ୍ ଏକଲା, ଇତ୍‌ନା ରାତମେ...

: ତମର କିଛି ଚିନ୍ତାର କାରଣ ନାହିଁ ରାମସୁଭଗ ! ମୁଁ ତମ ପଛରେ ଅଛି । ମୋ' ପାଖରେ ରିଭଲଭର ଅଛି ।

ସେଲି ଆଗେଇ ଚାଲିଥିଲା ।

ସତ୍ୟବ୍ରତ ପୁଣି କହିଲେ : ତୁମେ ଲକ୍ଷ୍ୟ କରିବ, ଲୋକଟା ଯେତେବେଳେ ଏଇ ଝିଅଟା ହାତରୁ ଜିନିଷପତ୍ର ନେଇ ଚାଲିଯାଉଛି, ଠିକ୍ ସେତିକିବେଳେ ଆକ୍ରମଣ କରିବ । ଆଉ ଏପରି ତାକୁ ଆକ୍ରମଣ କରିବ, ସେ ଯେପରି ଚିତ୍କାର କରିବାକୁ ଅବକାଶ ନ ପାଏ । ବାହାରେ ମୋର ଗାଡ଼ି ଅଛି । ତୁମେ ତାକୁ କାବୁ କରିସାରିବା ପରେ ଗାଡ଼ିରେ ବସାଇ ତାକୁ ଥାନାକୁ ନେଇଯିବା ।

ରାମସୁଭଗ ପାଣ୍ଡେ ସତ୍ୟବ୍ରତଙ୍କ ପାଖରେ ରିଭଲଭର ଥିବା କଥା ଶୁଣି

ବୋଧହୁଏ ଭରସା ପାଇଲା । ନିଶରେ ହାତ ମାରି କହିଲା : ଠିକ୍ ହେ ସାବ୍ । ହମ ଦେଖ୍‌ଲେଗେଁ ।

ସେଲି ଆଗେଇ ଚାଲିଥିଲା ।

ଏଥର ତା'ର ପଥ ଶେଷ ହୋଇଆସୁଥିଲା ।

ଗୀର୍ଜାର ମେନ୍ ଗେଟ୍‌ଟା ପାଖରେ ସେଲି ପହଞ୍ଚିବା ମାତ୍ରକେ, ଗଛଛାଇ ଭିତରୁ ଗୋଟିଏ ଛାୟାମୂର୍ତ୍ତି ବାହାରି ଆସିଲା ।

ସେଲି ସେଇଠି ଅଟକି ଗଲା ।

ଛାୟାମୂର୍ତ୍ତି ହାତକୁ ସେଲି କ'ଣ ବଢ଼ାଇଦେଇ ସଙ୍ଗେସଙ୍ଗେ ସେ ବୁଲିପଡ଼ିଲା ଏବଂ ଯେଉଁ ବାଟେ ଆସିଥିଲା, ସେଇ ବାଟେ ଫେରିବାକୁ ଆରମ୍ଭ କଲା ।

ସତ୍ୟବ୍ରତ ଗୋଟିଏ ଗଛ ଛାୟାରେ ଆତ୍ମଗୋପନ କରିଥିଲେ ।

ରାମସୁଭଗ ପାଣ୍ଡେ ଚାଲିଯାଇଥିଲା ।

ସତ୍ୟବ୍ରତ ଲକ୍ଷ୍ୟ କରିଥିଲେ ଦୁଇଆଡ଼କୁ ।

ରାମସୁଭଗ ପାଣ୍ଡେ ଦଉଡ଼ି ଯାଇ ସେଇ ଛାୟାମୂର୍ତ୍ତିଟାକୁ ଆକ୍ରମଣ କଲା । ଛାୟାମୂର୍ତ୍ତିଟା ବୋଧହୁଏ ଏପରି ଅଚାନକ ଏକ ଆକ୍ରମଣ ପାଇଁ ପ୍ରସ୍ତୁତ ନଥିଲା ।

ସତ୍ୟବ୍ରତ ଦେଖିଲେ, ଏ ପାଖରେ ସେଲି ଚାଲିଯାଉ ଯାଉମୁଚୁକୁନ୍ଦ ଗଛମୂଳେ ନଇଁପଡ଼ି କ'ଣ ଗୋଟାଏ ଉଠାଇ ନେଇ ପୁଣି ନିଜ ବାଟରେ ଆଗେଇ ଗଲା ।

ସେ ଯେପରି ନିର୍ବିକାର ।

ସେ ଯେପରି ମନ୍ତ୍ରମୁଗ୍ଧ ।

ସେ ଯେପରି ଜଣେ ନିରାସକ୍ତ ପଥିକ । ନିଜ ପଥରେ, ନିର୍ବିଘ୍ନରେ ଚାଲି ଚାଲି ଚାଲିଯାଉଛି ।

ସତ୍ୟବ୍ରତ ଦେଖିଲେ ଆଉ ସମୟ ନଷ୍ଟ କରିବା ଉଚିତ ହେବ ନାହିଁ । ସେ ରାମସୁଭଗ ପାଣ୍ଡେ ପାଖକୁ ଆଗେଇ ଯାଇ ଦେଖିଲେ, କଳାପୋଷାକରେ ଅଙ୍ଗ ଆବୃତ କରିଥିବା ଜଣକୁ ରାମସୁଭଗ କବ୍‌ଜା କରିନେଇଛି ।

ସତ୍ୟବ୍ରତଙ୍କୁ ଦେଖି କହିଲା : ଆପ ଜଲ୍‌ଦ ଗାଡ଼ି ଲେଆଇଏ ସାବ୍ ।

କାମଟା ଯେ ଏତେ ସହଜରେ ହାସଲ ହୋଇଯିବ, ସତ୍ୟବ୍ରତ ମୋଟେ ଚିନ୍ତା କରିପାରି ନ ଥିଲେ ।

ସକାଳୁ ସତ୍ୟବ୍ରତଙ୍କ ଟେଲିଫୋନ୍‌ଟା ବାଜି ଉଠିଲା ।

ନିଦ ମଳମଳ ଆଖିରେ ସତ୍ୟବ୍ରତ ରିସିଭରଟା ଉଠାଇ କାନରେ ଦେଲେ ।

: ହ୍ୟାଲୋ ।

ଅପର ପ୍ରାନ୍ତରୁ ଶୁଣାଗଲା : ମୁଁ ପଙ୍କଜ ମଲ୍ଲିକ କହୁଛି । କାଲି ରାତିରେ ପୁଣି ସେହି ଅଘଟଣ ଘଟିଛି ।

: ମୁଁ ଜାଣେ । ସତ୍ୟବ୍ରତ ସହଜ ସ୍ୱରରେ କହିଲେ ।

ଆପଣ ଜାଣନ୍ତି, ମାନେ ? ପଙ୍କଜ ମଲ୍ଲିକଙ୍କ ସ୍ୱରରେ ବିସ୍ମୟ ଫୁଟି ଉଠିଥିଲା ।

ସତ୍ୟବ୍ରତ ସେ ଆଡ଼େ ଧ୍ୟାନ ନ ଦେଇ କହିଲେ : ସେଲି କ'ଣ କରୁଛି ?

: ଶୋଇଛି । କିନ୍ତୁ ଆପଣ ଚୋରିହେବା କଥା ଜାଣିଲେ କିପରି ?

: ମୁଁ ଜାଣିଛି, କିପରି ଜାଣିଲି ଟେଲିଫୋନ୍‌ରେ ସେ କଥା ଆପଣଙ୍କୁ କହିବି ନାହିଁ । ମୁଁ ବର୍ତ୍ତମାନ ଯାଉଛି ।

ସତ୍ୟବ୍ରତ ଟେଲିଫୋନ୍‌ଟା ଛାଡ଼ି ଦେଲେ ସତ, ମାତ୍ର ବିଛଣାରୁ ଉଠିପାରିଲେ ନାହିଁ । ନିଦରେ ଆଖିବୁଜି ହୋଇପଡୁଥିଲା । ସେ ପ୍ରାୟ ଦୁଇଘଣ୍ଟା ହେବ ଫେରିଥିଲେ । ପୁଣି ଶୋଇପଡ଼ିଲେ ।

ଆଉଥରେ ଟେଲିଫୋନ୍‌ର ଶବ୍ଦ ଶୁଣି ତାଙ୍କ ନିଦ ଭାଙ୍ଗିଗଲା ।

: ହ୍ୟାଲୋ ?

ଅପର ପ୍ରାନ୍ତରୁ ପଙ୍କଜ ମଲ୍ଲିକଙ୍କ କଣ୍ଠସ୍ୱର ଶୁଣି ଲଜ୍ଜିତ ହୋଇ କହିଲେ : କ୍ଷମା କରିବେ ସାର୍, କାଲି ଟିକିଏ ଡେରିରେ ଶୋଇଥିଲି, ତେଣୁ ଆପଣଙ୍କ ଫୋନ୍ ପାଇବା ପରେ ମଧ୍ୟ ପୁଣି ଶୋଇପଡ଼ିଲି ।

ଏଥର ସତ୍ୟବ୍ରତ ଉଠି ବସିଲେ ଏବଂ ନିତ୍ୟକର୍ମ ଶେଷ କରି, ପଙ୍କଜ ମଲ୍ଲିକଙ୍କ ଘର ଉଦ୍ଦେଶ୍ୟରେ ବାହାରି ପଡ଼ିଲେ ।

ଠିକ୍ ଆଠଟା ଦଶରେ ସତ୍ୟବ୍ରତ ସେଠାରେ ଯାଇ ପହଞ୍ଚିଲେ ।

ସେତେବେଳଯାଏ ସେଲି ଶୋଇଥିଲା ।

ସତ୍ୟବ୍ରତ କହିଲେ : ଏତେ ସକାଳୁ ଆପଣ କିପରି ଜାଣିଲେ ଯେ ଆପଣଙ୍କ ଷ୍ଟ୍ରଂ ରୁମ୍‌ରୁ ଚୋରି ହୋଇଛି ?

ପଙ୍କଜ ମଲ୍ଲିକ ଟେବୁଲ ଡ୍ରୟାରରୁ ଗୋଟିଏ ନେକ୍‌ସେଲ ବାହାର କରି କହିଲେ ଏଇଟା ପଡ଼ିଥିଲା । ସକାଳୁ ଉଠିବା ମାତ୍ରକେ ମୋ' ଆଖିରେ ପଡ଼ିଲା । ସଙ୍ଗେ ସଙ୍ଗେ ମୁଁ ଷ୍ଟ୍ରଂ ରୁମ୍ ଖୋଲି ଦେଖିଲି । କାଲି କିନ୍ତୁ ପୂର୍ବାପେକ୍ଷା ଅଧିକ ପଦାର୍ଥ ଅପହୃତ ହୋଇଛି ।

: ହୁଁ । ସତ୍ୟବ୍ରତ ପଙ୍କଜ ମଲ୍ଲିକଙ୍କ କଥାରେ ସେପରି କିଛି ଗୁରୁତ୍ୱ ନ ଦେଇ କହିଲେ, ସେଲି ଉଠିବ କେତେବେଳେ ?

: ମୁଁ ଉଠିଲିଣି ସାର୍ । ଆପଣ ଏତେ ସକାଳୁ ଯେ...

ସତ୍ୟବ୍ରତ ଅବାକ୍ ହୋଇ ସେଲି ମୁହଁକୁ ଅନାଇ ରହିଲେ । ସେଲିର ମୁହଁଟି ପୂର୍ବପରି ନିର୍ମଳ । ସେଠାରେ କୌଣସି ଗ୍ଲାନି ନାହିଁ, ଅନୁଶୋଚନା ନାହିଁ ।

ସେଲି କହିଲା : କାଲି ରାତିରେ, ମୁଁ ପୁଣି ଗୋଟାଏ ଦୁଃସ୍ୱପ୍ନ ଦେଖିଛି ସାର୍ । ଶୁଣିବେ ?

ସତ୍ୟବ୍ରତ ଯେପରି ସଚେତନ ହୋଇଉଠିଲେ ।

: ପୁଣି ଦୁଃସ୍ୱପ୍ନ ! ପୁଣି କି ଦୁଃସ୍ୱପ୍ନ ଦେଖିଲେ ଆପଣ ?

: ଏଥର କିନ୍ତୁ ଗୋଟାଏ ଦୈତ୍ୟ ଆସି, ମୋ' ଆଗରେ ଠିଆହେଲା । ମୁଁ ସେହି ଦୈତ୍ୟର ଭୟଙ୍କର ରୂପ ଦେଖି ଭୟଭୀତ ହୋଇପଡ଼ିଲି । ଦୈତ୍ୟଟା ବଡ଼ ବଡ଼ ଆଖିକରି, ମୋତେ ଗ୍ରାସ କରିବା ପାଇଁ ମୋ' ଆଡ଼କୁ ଆଗେଇ ଆସିଲା । ସଙ୍ଗେ ସଙ୍ଗେ ଅନ୍ୟ ଉପାୟ ନ ଦେଖି ମୁଁ ତା'ର ପାଦଧରି ଲୋଟିପଡ଼ିଲି ।

ଦୈତ୍ୟଟା ହୋ ହୋ ହୋଇ ହସିଉଠିଲା ।

ତା'ପରେ ମୋତେ ତଳୁ ଉଠାଇ ତା' କାନ୍ଧ ଉପରେ ବସାଇ କେଉଁଆଡ଼େ ନେଇଗଲା । କିଛି ବାଟ ଗଲାପରେ ଗୋଟାଏ ସୁନ୍ଦର କୋଠାଘର ଦିଶିଲା । ଦୈତ୍ୟଟା ସେଇଠି ଠିଆହେଲା । ମୋତେ କାନ୍ଧରୁ ଓହ୍ଲାଇ ତଳେ ଥୋଇଲା । କୋଠାଘରଟାର ଦରଜା ବନ୍ଦ ଥିଲା । ସେ ମୋତେ କହିଲା, ଏଇ ଘର ଭିତରେ ବହୁ ମଣି ମାଣିକ୍ୟ ଅଛି, ଭିତରକୁ ଯାଇ ସେଥିରୁ କିଛି ଆଣିବାକୁ ହେବ ।

ମୁଁ ତା' ମୁହଁକୁ ବିସ୍ମୟ ବିସ୍ଫାରିତ ଆଖିରେ ଅନାଇଲି ।

ଚାହୁଁ ଚାହୁଁ ମୋ' ଦେହରେ ହାତ ବୁଲାଇ ସେ ମୋତେ ଗୋଟିଏ ମାଛି କରିଦେଲା ଏବଂ ହସି ହସି କହିଲା, ଦରଜାର ଏହି କ୍ଷୁଦ୍ର କଣା ଭିତରେ ପଶି ସେପାଖକୁ ଚାଲିଯିବୁ । ସେ ପାଖରେ ଯାଇ ଅସଲ ରୂପ ପରିଗ୍ରହ କରି ଘରର ଦରଜା ଖୋଲିଦେବୁ ।

ସେଲି ଏତିକି କହି ନୀରବ ରହିଲା ।

: ତା'ପରେ ? ସତ୍ୟବ୍ରତ ଆଗ୍ରହରେ ପଚାରିଲେ ।

ମୁଁ ସେଇଆ କଲି ଏବଂ ଘର ଭିତରୁ ଝୁଡ଼ିଝୁଡ଼ି ମଣିମାଣିକ୍ୟ ଆଣି ଦୈତ୍ୟକୁ ଦେଲି ।

ପୁଣି ସେଲି ନୀରବ ହୋଇଗଲା ।

: ତା'ପରେ ? ସତ୍ୟବ୍ରତ ପୁଣି ପ୍ରଶ୍ନ କଲେ ।

: ତା'ପରେ ଆଉ କ'ଣ ! ଟାଇମ୍‌ପିସ୍‌ଟା ବାଜିଉଠି ମୋ' ନିଦଟା ଭାଙ୍ଗିଦେଲା ।

ସତ୍ୟବ୍ରତ ସେଲିର ସ୍ୱପ୍ନବୃତ୍ତାନ୍ତ ଶୁଣି କିଛି ସମୟ ନୀରବରେ ଚିନ୍ତା କଲେ । ସେଲି ଯେଉଁ ଘଟଣାକୁ ସ୍ୱପ୍ନ ବୋଲି କହୁଛି, ତାହା ଯେ ଅନେକାଂଶରେ ବାସ୍ତବ, ସତ୍ୟବ୍ରତ ତାହା ବୁଝିପାରିଥିଲେ । ସେଲିର ଅବଚେତନ ଅବସ୍ଥାରେ ଯାହା ଘଟିଯାଇଛି, ତାହା ଆଉ ତା'ର ସଚେତନ ଅବସ୍ଥାରେ ମନେ ରହୁନାହିଁ ।

ସେଲି କହିଲା : ଆପଣ ବସନ୍ତୁ ସାର୍ । ମୁଁ ଆପଣମାନଙ୍କ ପାଇଁ ଚା' ପଠାଉଛି ।

ସେଲି ଉଠି ଚାଲିଗଲା ।

ପଙ୍କଜ ମଲ୍ଲିକ ନୀରବରେ ସେଲିର ସ୍ୱପ୍ନବୃତ୍ତାନ୍ତ ଶୁଣୁଥିଲେ ।

ସତ୍ୟବ୍ରତ କହିଲେ : ସେଲିର ସ୍ୱପ୍ନବୃତ୍ତାନ୍ତ ଶୁଣି ଆପଣଙ୍କର କ'ଣ ମନେହେଉଛି ସାର୍ !

ପଙ୍କଜ ମଲ୍ଲିକ କହିଲେ : ସ୍ୱପ୍ନ ସମ୍ବନ୍ଧରେ ମୋର କୌଣସି ଧାରଣା ନାହିଁ, କିମ୍ବା ମୁଁ କେବେ ସ୍ୱପ୍ନ ଦେଖିଥିଲାପରି ମନେ ହେଉନାହିଁ ।

ସତ୍ୟବ୍ରତ କହିଲେ : ସେଲି କ୍ଷେତ୍ରରେ ସେଲିର ସ୍ୱପ୍ନବୃତ୍ତାନ୍ତ ଅନେକାଂଶରେ ସତ ।

: ସତ ମାନେ ? ପଙ୍କଜ ମଲ୍ଲିକଙ୍କ ସ୍ୱରଟା କିପରି ଅସ୍ୱାଭାବିକ ମନେହେଲା ।

ସତ୍ୟବ୍ରତ କହିଲେ : ସତ ମାନେ – ସେଲି ଯାହା ସ୍ୱପ୍ନ ଦେଖୁଛି ବୋଲି କହିଲା ଏବଂ ଗତଥର କହିଥିଲା, ସବୁଗୁଡ଼ିକ ନିଜେ ସେ କରିଛି । ଅବଶ୍ୟ ତା'ର ଅବଚେତନ ଅବସ୍ଥାରେ ।

ପଙ୍କଜ ମଲ୍ଲିକ ବିସ୍ମୟ ବିସ୍ଫାରିତ ନେତ୍ରରେ ସତ୍ୟବ୍ରତଙ୍କ ମୁହଁକୁ ଚାହିଁ କହିଲେ, ମୁଁ ଆପଣଙ୍କ କଥାର କିଛି ଅର୍ଥ ବୁଝିପାରୁ ନାହିଁ ମିଷ୍ଟର ମହାପାତ୍ର ।

: ମୁଁ ଆପଣଙ୍କୁ ସବୁ ବୁଝାଇ ଦେବି ସାର୍, ଆପଣଙ୍କୁ ମୋ' ସହିତ ବର୍ତ୍ତମାନ ଟିକିଏ ଥାନାକୁ ଯିବାକୁ ହେବ । ସତ୍ୟବ୍ରତ ସହଜ ସ୍ୱରରେ କହିଲେ ।

: କିନ୍ତୁ ଥାନାକୁ କାହିଁକି ?

ସତ୍ୟବ୍ରତ କହିଲେ ଥାନାରେ ଆପଣଙ୍କର ମୂଲ୍ୟବାନ ସଂପଦର ଅପହରଣକାରୀକୁ ଲକ୍‌ଅପ୍‌ରେ ରଖା ହୋଇଛି ।

ପଙ୍କଜ ମଲ୍ଲିକଙ୍କ ସମଗ୍ର ଦେହଟା କଂପି ଉଠିଲା । ସେ କହିଲେ : ଆପଣ ତା'ହେଲେ...

ହଁ ସାର୍ । କାଲି ରାତିରେ ମୁଁ ତାକୁ ଗିରଫ କରିଛି ।

ପଙ୍କଜ ମଲ୍ଲିକ ସଙ୍ଗେ ସଙ୍ଗେ ଉଠିଲେ । କହିଲେ : ଆପଣଙ୍କୁ ଅଶେଷ ଧନ୍ୟବାଦ ମିଷ୍ଟର ମହାପାତ୍ର । ଚାଲନ୍ତୁ ।

ସତ୍ୟବ୍ରତ କହିଲେ : ଆମ ସହିତ ସେଲିକୁ ନେଇ ଯିବାକୁ ହେବ ।

: ସେଲି ? ସେଲି ଯାଇ କ'ଣ କରିବ ?

: ତା'ର ସେଠାରେ ପ୍ରୟୋଜନ ଅଛି ।

ପଙ୍କଜ ମଲ୍ଲିକ, ସତ୍ୟବ୍ରତ ମହାପାତ୍ର ଓ ସେଲି ଯାଇ ଥାନାରେ ପହଞ୍ଚିଲାଁ ବେଳକୁ ପୋଲିସ୍ ଇନିସ୍‌ପେକ୍‌ଟର ମହେନ୍ଦ୍ର ମିଶ୍ର ତାଙ୍କର ରିପୋର୍ଟ୍ ପ୍ରସ୍ତୁତ କରୁଥିଲେ ।

ଏମାନଙ୍କୁ ବସିବାକୁ ଅନୁରୋଧ କରି ସତ୍ୟବ୍ରତଙ୍କ ଆଡ଼େ ଚାହିଁ କହିଲେ : ଲୋକଟା ତ ବଡ଼ ସାଙ୍ଘାତିକ ମିଷ୍ଟର ମହାପାତ୍ର ।

: କାହିଁକି ? କ'ଣ ହେଲା କି ?

: ସେ କହୁଛି, ମୋତେ ବେଆଇନ୍ ଭାବରେ ଅଟକ କରାହୋଇଛି । ଏହାର ଶାସ୍ତି ଆମକୁ ଭୋଗିବାକୁ ହେବ ।

ସତ୍ୟବ୍ରତ ହସି ହସି କହିଲେ : ସେ କଥା ଦେଖାଯିବ । ବର୍ତ୍ତମାନ ମିଷ୍ଟର ମଲ୍ଲିକଙ୍କୁ ତାଙ୍କ ଅପହୃତ ମୂଲ୍ୟବାନ ସମ୍ପଦଗୁଡ଼ିକୁ ଟିକିଏ ଦେଖାଇ ଦିଅନ୍ତୁ ।

ପୋଲିସ୍ ଇନିସ୍‌ପେକ୍‌ଟର ମହେନ୍ଦ୍ର ମିଶ୍ର ଚେଆରରୁ ଉଠିଲେ । ତାଙ୍କ ପଛେପଛେ ପଙ୍କଜ ମଲ୍ଲିକ, ସତ୍ୟବ୍ରତ ମହାପାତ୍ର ଓ ସେଲି ।

ଲକ୍‌ଅପ୍‌ରେ ଯେତେବେଳେ ପଙ୍କଜ ମଲ୍ଲିକ ପହଞ୍ଚିଲେ, ଅନ୍ୟ ଅପରାଧୀମାନଙ୍କ ସହିତ ସେଠାରେ ସେ ଜଣେ ତାଙ୍କର ପରିଚିତ ବିଶିଷ୍ଟ ଲୋକକୁ ଦେଖି ଚିତ୍କାର କରି ଉଠିଲେ : ଫାଦାର ଆଲଫ୍ରେଡ୍, ଆପଣ...

: ହଁ, ଫାଦାର ଆଲଫ୍ରେଡ୍ । ସତ୍ୟବ୍ରତ ସେଲି ଆଡ଼େ ଚାହିଁ ଦେଖିଲେ, ସେ ଫାଦାର ଆଲଫ୍ରେଡ୍‌ଙ୍କ ଆଡ଼କୁ ଚାହିଁ ହଠାତ୍ ଅସ୍ୱାଭାବିକ ହୋଇଉଠିଛି । ସେ ସଙ୍ଗେ ସଙ୍ଗେ ସେଲିର ହାତଧରି ସେଠାରୁ ଅନ୍ୟତ୍ର ଟାଣି ନେଇଯାଇ, ଗୋଟିଏ ଘରେ ଫ୍ୟାନ୍ ଖୋଲି ତାକୁ ବସାଇ ଦେଲେ ।

ପଙ୍କଜ ମଲ୍ଲିକ କିନ୍ତୁ ଘଟଣାଟାକୁ କିଛି ବୁଝିପାରୁ ନ ଥିଲେ । ସେ ସତ୍ୟବ୍ରତଙ୍କୁ ପଚାରିଲେ : ସେଲିର ହଠାତ୍ କ'ଣ ହେଲା ? ତା'ଛଡ଼ା ଫାଦାର ଆଲଫ୍ରେଡ୍...

ସତ୍ୟବ୍ରତ କହିଲେ : ଫାଦାର ଆଲଫ୍ରେଡ୍‌ଙ୍କୁ ଆପଣ ଚିହ୍ନନ୍ତି । ସେ ଜଣେ ଧର୍ମଯାଜକ ଏବଂ ଆପଣଙ୍କ ପ୍ରତିବେଶୀ । ଖାଲି ସେତିକିରେ ତାଙ୍କର ପରିଚୟ ଶେଷ ନୁହେଁ, ତାଙ୍କର ଅସଲ ସ୍ୱରୂପ ହେଉଛି ସେ ଜଣେ ସଇତାନ । ଆପଣଙ୍କର ସମସ୍ତ ମୂଲ୍ୟବାନ ସମ୍ପଦର ଅପହରଣକାରୀ ।

ପଙ୍କଜ ମଲ୍ଲିକ ଅବାକ୍ ହୋଇ ସତ୍ୟବ୍ରତଙ୍କ ମୁହଁକୁ ଅନାଇ କହିଲେ : କିନ୍ତୁ...କିନ୍ତୁ... ସେ ଆମର ଷ୍ଟ୍ରଂ ରୁମ୍‌ରୁ... ଅସମ୍ଭବ...ଅସମ୍ଭବ...

ସତ୍ୟବ୍ରତ ସେଲି ଆଡ଼କୁ ଆଙ୍ଗୁଳି ଦେଖାଇ କହିଲେ : ଅସମ୍ଭବକୁ ସମ୍ଭବ କରିଛନ୍ତି ଆପଣଙ୍କ କନ୍ୟା ସେଲି ।

: ମାନେ ? ପଙ୍କଜ ମଲ୍ଲିକ ଚିତ୍କାର କରି ଉଠିଲେ ।

: ମାନେ ଅତି ସହଜ । ଫାଦାର ଆଲଫ୍ରେଡ୍‌ଙ୍କ ନିର୍ଦ୍ଦେଶକ୍ରମେ ସେଲି ଆପଣଙ୍କ ଷ୍ଟ୍ରଂ ରୁମ୍ ଖୋଲି ଗୋଟିକ ପରେ ଗୋଟିଏ ମୂଲ୍ୟବାନ ପଦାର୍ଥ ନେଇ ଫାଦାରଙ୍କୁ ଦେଇଛି ।

ପଙ୍କଜ ମଲ୍ଲିକ ଜ୍ୱଳନ୍ତ ଆଖିରେ ସେଲି ଆଡ଼କୁ ଚାହିଁ କହିଲେ : ଆପଣ ଭୁଲ୍ କହୁଛନ୍ତି ମିଷ୍ଟର ମହାପାତ୍ର । ସେଲି ଏହା କରିପାରେନା । ନା ନା ନା, ମୁଁ ଆପଣଙ୍କର ଏହି ଉକ୍ତି ବିଶ୍ୱାସ କରିପାରିବି ନାହିଁ ।

ସତ୍ୟବ୍ରତ ଶାନ୍ତ ସ୍ୱରରେ କହିଲେ : ଆପଣଙ୍କୁ ବିଶ୍ୱାସ କରିବାକୁ ହେବ ସାର୍ ! ସେଲି ଏହା କରିଛି, କିନ୍ତୁ ସେ ତା'ର ସଚେତନ ଅବସ୍ଥାରେ ଏହା କରିନାହିଁ, ତାକୁ ଫାଦାର ଆଲଫ୍ରେଡ୍ ହିପ୍ନୋଟାଇଜ୍ କରି, ତା'ର ସ୍ମରଣ ଶକ୍ତିକୁ ଅପହରଣ କରି ନିଜ କାମରେ ଲଗାଇଛନ୍ତି । ଆପଣ ଦେଖିଲେ ନାହିଁ, ସେଲି ଫାଦାର ଆଲଫ୍ରେଡ୍ଙ୍କ ଆଖିକୁ ଚାହିଁବା ମାତ୍ରକେ ସଙ୍ଗେସଙ୍ଗେ କିପରି ଅସୁସ୍ଥ ହୋଇପଡ଼ିଲା ।

ପଙ୍କଜ ମଲ୍ଲିକ ଯେପରି ସ୍ତବ୍ଧ ହୋଇଗଲେ ।

ତାଙ୍କ ପାଟିରୁ ମୋଟେ ଆଉ କଥା ବାହାରିଲା ନାହିଁ ।

ସେ ବି ହିପ୍ନୋଟାଇଜ୍ ହେବାଭଳି ସତ୍ୟବ୍ରତଙ୍କ ମୁହଁକୁ କେବଳ ନୀରବରେ ଅନାଇ ରହିଲେ ।

ସତ୍ୟବ୍ରତ କହିଲେ : ଆପଣ ଜାଣିନାହାନ୍ତି ସାର୍ । ଫାଦାର ଆଲଫ୍ରେଡ୍ ଜଣେ ସାଂଘାତିକ ଲୋକ । ସେଲିର ଦୁର୍ବଳ ମନର ସୁଯୋଗ ନେଇ ସେ ତାକୁ ବାରମ୍ବାର ହିପ୍ନୋଟାଇଜ୍ କରିଛନ୍ତି ଏବଂ ପ୍ରତିଥର ତାଙ୍କର କାର୍ଯ୍ୟ ହାସଲ କରି ଚାଲିଛନ୍ତି । ସେଲି ବିଚାରୀ ତାଙ୍କ ହାତର ଖେଳଣା ହୋଇପଡ଼ିଛି । ଏସବୁ କେସ୍‌ରେ ସେହିପରି ହୋଇଥାଏ ।

ପଙ୍କଜ ମଲ୍ଲିକ ଧୀରେ ଧୀରେ କହିଲେ : କିନ୍ତୁ ସେଲି ଆମ ଷ୍ଟ୍ରଂ ରୁମ୍‌ର ତାଲା ଖୋଲିବାର କୌଶଳ ଜାଣିଲା କିପରି ?

ସତ୍ୟବ୍ରତ କହିଲେ : ମୋର ମନେହେଉଛି ସେଲି ପୂର୍ବରୁ ଏହା କୌଣସି ଉପାୟରେ ଜାଣିଥିଲା । ଆପଣ ସେଲିକୁ ପଚାରି ବୁଝନ୍ତୁ ।

ପଙ୍କଜ ମଲ୍ଲିକ ସେଲିର ଅସୁସ୍ଥ ମୁହଁ ଆଡ଼େ ଚାହିଁ ପଚାରିଲେ : ତୁ ଆମ ଷ୍ଟ୍ରଂ ରୁମ୍‌ର ତାଲା ଖୋଲିବାର କୌଶଳ ଜାଣିଲୁ କେମିତି ?

ସେଲି ଶାନ୍ତ ସ୍ୱରରେ କହିଲା : ମା' ମୋତେ ଶିଖାଇ ଦେଇଥିଲା ।

ପଙ୍କଜ ମଲ୍ଲିକ ସେଲି ମୁହଁରୁ ଉତ୍ତର ଶୁଣି ପୁଣି ସ୍ତବ୍ଧ ହୋଇଗଲେ ।

ମହେନ୍ଦ୍ର ମିଶ୍ର ଘର ଛାଡ଼ି ବାହାରକୁ ବାହାରିଗଲେ । ତାଙ୍କ ପଛେ ପଛେ ସତ୍ୟବ୍ରତ ମଧ୍ୟ ।

ସେ ମାଲ୍‌ଖାନା ଭିତରକୁ ଯାଇ, ପଙ୍କଜ ମଲ୍ଲିକଙ୍କ ଅପହୃତ ମୂଲ୍ୟବାନ ଅଳଙ୍କାରତକ ବାହାର କରି ହାତରେ ଧରି ପୁଣି ପଙ୍କଜ ମଲ୍ଲିକ ବସିଥିବା ଘରକୁ ଫେରି ଆସିଲେ ।

ଅଳଙ୍କାରତକ ଟେବୁଲ ଉପରେ ଥୋଇ କହିଲେ : ଦେଖନ୍ତୁ ସାର୍ । ଏହି ଅଳଙ୍କାରଗୁଡ଼ିକ ଆମେ ଫାଦାର ଆଲଫ୍ରେଡ୍‌ଙ୍କ ଠାରୁ ଉଦ୍ଧାର କରିଛୁ । ଏଗୁଡ଼ିକ ଆପଣଙ୍କର ତ ?

ପଙ୍କଜ ମଲ୍ଲିକ ନିଜର ପରିଚିତ ଅଳଙ୍କାରତକ ଦେଖି କହିଲେ : ଅଳଙ୍କାରଗୁଡ଼ିକ ମୋ' ସ୍ତ୍ରୀଙ୍କର । ଏଇଗୁଡ଼ିକ କାଲି ରାତିରେ ଅପହୃତ ହୋଇଥିଲା । କିନ୍ତୁ ମୁଁ ଏବେ ବି ବିଶ୍ୱାସ କରିପାରୁ ନାହିଁ ଫାଦାର ଆଲଫ୍ରେଡ୍ ଜଣେ...

ସତ୍ୟବ୍ରତ କଥା ମଝିରେ ବାଧାଦେଇ କହିଲେ : ଆଜିର ଦୁନିଆ ସମ୍ବନ୍ଧରେ ଆପଣ ମୋଟେ କିଛି ଜାଣିନାହାନ୍ତି । ଖାଲି ଫାଦାର ଆଲ୍‌ଫ୍ରେଡ ନୁହନ୍ତି, ଏହି ଘଟଣା ପଛରେ ଆହୁରି ଅନେକଙ୍କର ଭୂମିକା ଅଛି, ଯେଉଁମାନେ ଆସ୍ତେ ଆସ୍ତେ ଆମ କବଳକୁ ଆସିବାକୁ ବାଧ୍ୟ ହେବେ : ଯା'ହେଉ, ସେ ପରର କଥା । ଆପଣଙ୍କ କାର୍ଯ୍ୟ ଶେଷ ହୋଇଛି ସାର୍ । ଆପଣ ଏଥର ସେଲିକୁ ନେଇ ଘରକୁ ଯାଆନ୍ତୁ । ମୁଁ ସନ୍ଧ୍ୟାବେଳକୁ ଆପଣଙ୍କ ଘରକୁ ଯିବି ।

ପଙ୍କଜ ମଲ୍ଲିକ ଉଠି ଠିଆ ହେଲେ । ସେଲି ବି ଉଠିଲା । କିନ୍ତୁ ସେ ଯେପରି ଅସୁସ୍ଥ ମନେ ହେଉଥିଲେ । ସେମାନଙ୍କୁ ସତ୍ୟବ୍ରତ ନେଇ ଗାଡ଼ିରେ ଉଠାଇ ଦେଇ ପୁଣି ମହେନ୍ଦ୍ର ମିଶ୍ରଙ୍କ ପାଖକୁ ଫେରିଆସିଲେ ।

ମହେନ୍ଦ୍ର ମିଶ୍ର ସତ୍ୟବ୍ରତଙ୍କ ମୁହଁକୁ ସଶ୍ରଦ୍ଧ ନୟନରେ ଚାହିଁ କହିଲେ, ସତରେ ଆପଣଙ୍କର ତୁଳନା ହୁଏ ନାହିଁ ମିଷ୍ଟର ମହାପାତ୍ର । ଆପଣ...

ବାହାରେ କାହାର ପାଦଶବ୍ଦ ଶୁଣି ମହେନ୍ଦ୍ର ମିଶ୍ର ନୀରବ ହୋଇଗଲେ ।

ଭିତରକୁ ପଶୁଥିଲା ଶରଦିନ୍ଦୁ ।

ସେ ସେଠାରେ ସତ୍ୟବ୍ରତଙ୍କୁ ବୋଧହୁଏ ଆଶା କରିପାରି ନ ଥିଲା । ଉଚ୍ଛ୍ୱସିତ କଣ୍ଠରେ କହିଲା : ଏଠି ଆପଣ ବି ସାର୍ ?

ମହେନ୍ଦ୍ର ମିଶ୍ର କହିଲେ : ଆଉ ଖବର କ'ଣ ଶରଦିନ୍ଦୁ ?

: ଭଲ ସାର୍ । ଗୋଟାଏ ଶୁଭ ଖବର ଦେବାକୁ ଆସିଛି । ରବି ପଟ୍ଟନାୟକ ସହିତ ମଳିନାର ବାହାଘର ଆଗାମୀ ସୋମବାର । ଶରଦିନ୍ଦୁ କହିଲା ।

: ଆଉ ରଜନୀ ପଟେଲ ? ମହେନ୍ଦ୍ର ମିଶ୍ର ପଚାରିଲେ ।

: ଆପଣଙ୍କ ଦୟାରୁ ସେ କଟକ ଛାଡ଼ି ପଳାଇଲେଣି ସାର୍ । ପ୍ରକୃତରେ ସେ ଯେ ରବି ପଟ୍ଟନାୟକଙ୍କୁ ଠକି ଦେଇଥାଆନ୍ତେ, ସେ କଥା ରବିବାବୁ ବୁଝିପାରିଲେ ।

ମହେନ୍ଦ୍ରବାବୁ ହସି ହସି କହିଲେ : ଦୟା ମୋର ନୁହେଁ ଶରଦିନ୍ଦୁବାବୁ, ଦୟା ସତ୍ୟବ୍ରତ ମହାପାତ୍ରଙ୍କର । ସେ ମୋତେ ଏହି ରଜନୀ ପଟେଲ ଉପରେ ଦୃଷ୍ଟି ରଖିବାକୁ କହିଥିଲେ ଏବଂ ରବି ପଟ୍ଟନାୟକଙ୍କୁ ସାବଧାନ କରିଦେବାକୁ କହିଥିଲେ । ସବୁ ତାଙ୍କରି ଦୟାରୁ ସମ୍ଭବ ହୋଇଛି ।

•••

ରଚନାକାଳ : ୧୯୬୧




ଏ ବାକ୍ସର ଚାବି ମୋ' ପାଖରେ ନାହିଁ । ସେ ନିଜେ ଆସି ଚାବି ଖୋଲି ଏହାକୁ ଲେଖୁଥିଲା ଏବଂ ଚାବି ବନ୍ଦକରି ଚାଲି ଯାଉଥିଲା । କଥା ପ୍ରସଙ୍ଗରେ ମୋତେ ଦିନେ ସେ କହିଥିଲା, ଦୈବାତ୍ କେବେ ଯଦି ମୋର ଆକସ୍ମିକ ମୃତ୍ୟୁ ହୋଇଯାଏ, ତେବେ ଏହି ବାକ୍ସଟି ତୁ କୌଣସି ବିଶ୍ୱସ୍ତ ଲୋକ ହାତରେ ଦେଇଦେବୁ । ଏହା ଭିତରେ କ'ଣ ଅଛି ନିଜେ ତୁ ପଢ଼ିବାକୁ ଚେଷ୍ଟା କରିବୁ ନାହିଁ ।

ମିତ୍ରବିନ୍ଦା ନାକରୁ ଦୀର୍ଘଶ୍ୱାସ ବାହାରି ଆସିଲା ।

: କ'ଣ କହିଲେ ? ଚିତ୍ରାଙ୍ଗଦା କହିଥିଲା ମୋର ଯଦି ଆକସ୍ମିକ ମୃତ୍ୟୁ ହୁଏ...

ଆକସ୍ମିକ ମୃତ୍ୟୁ ହେବାର ସମ୍ଭାବନା ତା' ମନରେ ତା'ହେଲେ ଥିଲା ?

ଭୁଜଙ୍ଗଧରବାବୁଙ୍କୁ ଚିହ୍ନନ୍ତି ?

ତାଙ୍କ ସହିତ ପରିଚୟ ଅଛି କି ନାହିଁ ମୋତେ ଜଣାନାହିଁ । କିନ୍ତୁ ଟାଲିଗଞ୍ଜ ଅଞ୍ଚଳରେ କିଏ ଯେ ତାଙ୍କୁ ନ ଚିହ୍ନିଚି – ବିଶେଷତଃ ଯେଉଁମାନଙ୍କର ସିନେମା ଲାଇନ୍‌ରେ ଅଳ୍ପ ଟିକିଏ ପ୍ରବେଶ ଅଛି, ସେମାନେ ତାଙ୍କୁ ଚିହ୍ନିବାକୁ ବାଧ୍ୟ ।

ଭୁଜଙ୍ଗଧରବାବୁଙ୍କର ପୁରା ନାମ, ଭୁଜଙ୍ଗଧର ସେନାପତି । ସମସ୍ତେ ତାଙ୍କୁ ଭୁଜଙ୍ଗବାବୁ ବୋଲି ଡାକନ୍ତି । ବାଙ୍ଗର ଲୋକଟିଏ । ଉଚ୍ଚତା ୪ ଫୁଟ ୫।୬ ଇଞ୍ଚରୁ ବେଶି ହେବ ନାହିଁ । ବେଶ୍ ବଳିଷ୍ଠ ଚେହେରା । ମୁଣ୍ଡର ବାଳ ସାମାନ୍ୟ ଧଳା ପଡ଼ି ଆସିଲାଣି । ସେ କହନ୍ତି, ପିଲାଟି ଦିନରୁ ଏଇ ଲାଇନ୍‌ରେ ଅଛନ୍ତି । ପ୍ରଥମେ ବମ୍ବେରେ ଥିଲେ । ଏବେ କେତେ ବର୍ଷ ହେବ କଲିକତାକୁ ଚାଲିଆସିଛନ୍ତି ।

ବିଖ୍ୟାତ ସିନେମାପତ୍ରିକା 'ଫିଲ୍ମ ଷ୍ଟାର'ର ସେ ହେଉଛନ୍ତି କଲିକତା ପ୍ରତିନିଧି ।

ମୁଁ ତାଙ୍କୁ ଯେଉଁଦିନଠାରୁ ଦେଖିଆସୁଚି, ସେହିଦିନଠାରୁ ତାଙ୍କ କାନ୍ଧରେ ସବୁବେଳେ ଦୁଇଟି ବସ୍ତୁ ଝୁଲୁଥିବାର ଲକ୍ଷ୍ୟ କରିଆସିଚି । ଗୋଟିଏ କାନ୍ଧରେ କ୍ୟାମେରା, ଆଉଗୋଟିଏ କାନ୍ଧରେ ଟ୍ରାନ୍‌ଜିଷ୍ଟର ।

କ୍ୟାମେରାଟି ହେଲା ତାଙ୍କ ଜୀବନ ନିର୍ବାହର ଏକମାତ୍ର ଧାରଣ, ଆଉ ଟ୍ରାନ୍‌ଜିଷ୍ଟର ସମ୍ବନ୍ଧରେ ସେ କୁହନ୍ତି, ସେଇଟା ମୋର ଜୀବନ ଧାରଣର ଆଉ ଏକ ସହାୟକ ।

ଭୁଜଙ୍ଗଧରବାବୁଙ୍କୁ ପ୍ରଥମେ ଯେଉଁଦିନ ମୁଁ ଭେଟିଲି, ସେଦିନ ସେ ତାଙ୍କର ମୁଭି କ୍ୟାମେରାଟି ଚଳେଇବାରେ ବ୍ୟସ୍ତ ଥିଲେ । ଆଉ ଟ୍ରାନ୍‌ଜିଷ୍ଟର ସେଟ୍‌ଟିରୁ

ବିବିଧ ଭାରତୀର ପଞ୍ଚରଙ୍ଗୀ ପ୍ରୋଗ୍ରାମ୍‌ରୁ ଗୋଟିଏ ରଙ୍ଗ ପରିବେଷିତ ହେଉଥିଲା ।

ମୁଁ ସେଦିନ ଅବାକ୍ ହୋଇଯାଇଥିଲି ।

ଅଭିନେତ୍ରୀ ଚିତ୍ରାଙ୍ଗଦାଙ୍କର ଛବି ଉଠାଇବାରେ ସେ ବ୍ୟସ୍ତ ହୋଇପଡ଼ିଥିଲେ ।

ଭୁଜଙ୍ଗବାବୁଙ୍କର ଚାଲିଚଳନ, ଆଚାର ବ୍ୟବହାର ଦେଖି ଏକା ମୁଁ କାହିଁକି, ଯେ କେହି ପ୍ରଥମଦର୍ଶୀ ଲୋକ ଅବାକ୍ ହୋଇଯିବ ।

ତା'ପରେ ମୋତେ ଭୁଜଙ୍ଗଧରବାବୁଙ୍କ ସହିତ ପରିଚୟ କରାଇ ଦିଆହେଲା ।

ମୁଁ ଯେ ଲେଖକ ଆଉ ଓଡ଼ିଶାରେ ମୋର ଘର, ଏ କଥା ଜାଣିପାରି ଭୁଜଙ୍ଗଧରବାବୁ ମୋ' ସହିତ କରମର୍ଦ୍ଦନ କରି କହିଲେ : ଆପଣଙ୍କ ପରିଚୟ ପାଇ ବିଶେଷ ଆନନ୍ଦିତ ହେଲି । ବୁଝିଲେନା ଆଜ୍ଞା, ଆମ ଦେଶ ପ୍ରତିଭାର ପୂଜା କରି ଶିଖି ନାହିଁ । ଏଇ ଚିତ୍ରାଙ୍ଗଦା, ଯିଏ ଆପଣଙ୍କ ଚିତ୍ରର ନାୟିକା ଭୂମିକାରେ ଅଭିନୟ କରିବାକୁ ଚୁକ୍ତିବଦ୍ଧ ହେଇଚି, ତା'ର ବିଶେଷ ପରିଚୟ କିଛି ଜାଣନ୍ତି ଆପଣ ? ଅତି ସାଧାରଣ ଘରୁ ଆସିଚି ଚିତ୍ରାଙ୍ଗଦା । ପ୍ରଥମେ ଯେଉଁଦିନ ମୁଁ ତାକୁ ଭେଟିଲି, ସେଦିନ ତା' ନାକରୁ ସିଙ୍ଗାଣୀ ବାହାରୁ ଥିଲା । ମୁହଁରେ ଥିଲା ଆତଙ୍କ । ଆଖିରେ ଥିଲା ନିରାଶାବାଦ । ମୁଁ କିନ୍ତୁ ଚିହ୍ନି ନେଇଥିଲି । ପ୍ରତିଭା ଅଛି ଝିଅଟାର । ଦିନେ ନା ଦିନେ ଏହାର ଯଶ ଖ୍ୟାତି ଆକୁମାରୀ ହିମାଚଳ ଯାଏ ବିସ୍ତୃତ ହେବ । ତା'ପରେ ଧରିଲି କ୍ୟାମେରା, ତୋଳିଲି ଛବି । ଛାପିଲି ଫିଲ୍ମ ଷ୍ଟାରରେ । ଗୋଟିଏ ବର୍ଷ ଆଜ୍ଞା । ବର୍ଷକ ଭିତରେ ବଢ଼ିଗଲା ଚିତ୍ରାଙ୍ଗଦାର ଭାଉ । ସେଦିନର ସିଙ୍ଗାଣୀନାକି ଓଡ଼ିଆ ଝିଅ ଚେମି ଆଜି ଭାରତବିଖ୍ୟାତ ଚିତ୍ରାଭିନେତ୍ରୀ ଚିତ୍ରାଙ୍ଗଦା । ଜାଣନ୍ତି ଆଜ୍ଞା ! ଓଡ଼ିଆ ଛବି ତ ଓଡ଼ିଆ ଛବି – ଆଜି ହିନ୍ଦୀ, ବଙ୍ଗଳା ଛବିର ଡାଇରେକ୍ଟରମାନେ ଯାଇ ତା' ଦୁଆରେ ଭିଡ଼ ଜମଉଛନ୍ତି । ଗତବର୍ଷ ସେ ଛବିଶଟି ଚିତ୍ରରେ ଅଭିନୟ କରିଥିଲା । ଏ ବର୍ଷ ଏଇ କେଇମାସ ଭିତରେ ପ୍ରାୟ ପଚିଶ ତିରିଶଟି ଚିତ୍ରରେ ଅଭିନୟ କରିବାକୁ ଚୁକ୍ତିବଦ୍ଧ ହୋଇସାରିଲାଣି । ବର୍ଷ ଶେଷ ହେବାକୁ ତ ଆହୁରି ସାତମାସ ବାକି ଅଛି ।

ବୁଝିଲେ ଆଜ୍ଞା ! ମୋର ଏ ଲାଇନ୍‌ରେ ଆସି ବାଳ ପାଚିଲା । ମୋତେ କିନ୍ତୁ କେହି କେବେ ଉତ୍ସାହ ଦେଇନାହାନ୍ତି । କାହାରି ସାହାଯ୍ୟ ସହାନୁଭୂତି ପାଇନାହିଁ, କିନ୍ତୁ ଜାଣନ୍ତି ଆଜ୍ଞା ! ରାଜ କପୁରଙ୍କ ଠାରୁ ଆରମ୍ଭ କରି ଆଜିର ସତ୍ୟଜିତ୍ ରାୟ ପର୍ଯ୍ୟନ୍ତ । ସମସ୍ତଙ୍କୁ ମୁଁ ଚିହ୍ନିଚି, ସେମାନେ ପ୍ରେରଣା ଦେଇଛନ୍ତି, ବଡ଼ ହେବାର

ବାଟ ଦେଖାଇଛନ୍ତି । ପ୍ରତିଭାର ପୂଜାରୀ ମୁଁ, ସବୁ ଦିନ, ସବୁ ସମୟରେ ପ୍ରତିଭାର ପୂଜା କରିଆସିଚି ।

ହଁ ହଁ, ଠିକ୍ ସେହିପରି । ଆଉ ଟିକିଏ ବାଁକୁ ଚାହାଁନ୍ତୁ । ଭାରି ସୁନ୍ଦର, ନାଚରାଲ ହେଇଚି । ରୁହନ୍ତୁ ରୁହନ୍ତୁ । ପ୍ରଥମ ପରିଚୟର ସ୍ମୃତିଟିକୁ ସେଲୁଲଏଡ ଫିତାରେ... ଭୁଜଙ୍ଗଧରବାବୁ ସଙ୍ଗେ ସଙ୍ଗେ କ୍ୟାମେରା ଚାଳନା ଆରମ୍ଭ କରିଦେଲେ ।

ସେହିଦିନ ଠାରୁ ଯେବେ ମୁଁ ଟାଲିଗଞ୍ଜ ଯାଇଚି, ଦେଖିଚି ଭୁଜଙ୍ଗଧର ବାବୁଙ୍କର ବ୍ୟସ୍ତତା । ବାଁ କାନ୍ଧରେ ଟ୍ରାନ୍‌ଜିଷ୍ଟର ସେଟ୍ ଏବଂ ଡାହାଣ କାନ୍ଧରେ କ୍ୟାମେରାଟି ଓହଳିଥିବ । ସବୁବେଳେ ତାଙ୍କ ଚାରି ପାଖରେ ଦୁଇଚାରିଜଣ, ପାଞ୍ଚସାତଜଣ ବେଢ଼ି ରହିଥିବେ । ଅଭିନେତା, ଅଭିନେତ୍ରୀ, ଡାଇରେକ୍ଟର, ପ୍ରଡ୍ୟୁସର ଠାରୁ ଆରମ୍ଭ କରି ଏକ୍‌ସଟ୍ରା ପର୍ଯ୍ୟନ୍ତ ସମସ୍ତେ ଆସି ନିଜ ନିଜର ପ୍ରତିଭାର ବିକାଶ ପାଇଁ ପରୋକ୍ଷରେ ଭୁଜଙ୍ଗଧର ବାବୁଙ୍କ ସହିତ ଆଳାପ ଜମେଇ ଥିବେ । କାହା ମୁହଁରୁ ଯେ ସେ ପ୍ରତିଭାର ଛାପ ଆବିଷ୍କାର କରି ତାକୁ ଭାରତ ବିଖ୍ୟାତ କରି ଥୋଇବେ, ସେଥିପାଇଁ ଭୁଜଙ୍ଗଧର ବାବୁଙ୍କୁ ସମୟେ ସମୟେ ବଡ଼ ଅସୁବିଧାର ସମ୍ମୁଖୀନ ହେବାକୁ ହେଇଥାଏ ।

ଭୁଜଙ୍ଗଧରବାବୁ ପିନ୍ଧନ୍ତି ଖଣ୍ଡିଏ ଖାକି ହାପ୍ ପ୍ୟାଣ୍ଟ । ଦେହରେ ସେଣ୍ଟୋନ୍ କନାର ଖଣ୍ଡେ ସାବ୍‌ଜା ହାୱାଇନ୍ । ସବୁଦିନ ମୁଁ ତାଙ୍କୁ ସେହି ଏକା ରକମ ପୋଷାକରେ ଦେଖିଚି । ଆଉ ଲକ୍ଷ୍ୟ କରିଚି, ବର୍ତ୍ତମାନ ସମୟରେ ଟଲିଉଡ୍‌ରେ (ଟାଲିଗଞ୍ଜକୁ 'ହଲିଉଡ୍' ନାମର ଢାଞ୍ଚାରେ ନାମିତ କରିବାକୁ ଯାଇ କେତେକ ବ୍ୟଙ୍ଗ ରଚନାକାର 'ଟଲିଉଡ୍' ନାମ ଦେଇଥିଲେ । ଅନେକଙ୍କ ମୁହଁରେ ଏଇ ଟାଲିଗଞ୍ଜକୁ ଟଲିଉଡ୍ କହୁଥିବାର ଶୁଣାଯାଏ) ତାଙ୍କର ଏକମାତ୍ର ଫେଭରିଟି ଷ୍ଟାର ଚିତ୍ରାଙ୍ଗଦା । କାରଣ ବେଶି ସମୟ ସେ ତା'ରି ପଛରେ ଧାଁ ଦଉଡ଼ କରୁଥିବାର ଦେଖାଯାଏ ।

ଭୁଜଙ୍ଗଧରବାବୁଙ୍କର ତିନି କୂଳରେ କେହି ନାହାନ୍ତି । ଫିଲ୍‌ମଷ୍ଟାର ପତ୍ରିକାରୁ ମାସିକ ସେ ଯେଉଁ ପାରିଶ୍ରମିକ ପାଆନ୍ତି, ସେଥିରେ ତାଙ୍କର ବେଶ୍ ସ୍ୱଚ୍ଛନ୍ଦରେ ଚଳିଯାଏ ବୋଲି କହନ୍ତି ।

ଯିଏ ଭୁଜଙ୍ଗଧରବାବୁଙ୍କ ଘରକୁ ନ ଯାଇଛି, ତାଙ୍କୁ ଷ୍ଟୁଡିଓ ଭିତରେ ମୁଭି କ୍ୟାମେରା ବା ଟ୍ରାନ୍‌ଜିଷ୍ଟର ସେଟ୍ ସହିତ ଦେଖିଲେ ତାଙ୍କର ଅସଲ ପରିଚୟ ମିଳିବା ସହଜ ହେବ ନାହିଁ । ସେ ଯେ ଦୁଇ ହାତରେ ମୁଠା ମୁଠା ପଇସା ଉଡ଼େଇ

କେତେ ଆଡ଼ମ୍ବରରେ ଚଳନ୍ତି, ମୁଁ ତା'ର ପ୍ରମାଣ ପାଇଲି ତାଙ୍କର ନିମନ୍ତ୍ରଣ ରକ୍ଷା କରିବାକୁ ଯାଇ ।

ଢାକୁରିଆରେ ସେ ଗୋଟିଏ ଦ୍ୱିତଳ ପ୍ରାସାଦର ଅଧୀଶ୍ୱର । ଦୁନିଆରେ ଏକା ଲୋକ ସେ । କିନ୍ତୁ ଦୋତାଲା କୋଠାଟାଯାକ ସବୁ ସେ ନିଜେ ଆବୋରି ବସିଛନ୍ତି । ତଳ ଉପର ମିଶି ଦଶଖଣ୍ଡ ଘର । ପ୍ରତ୍ୟେକଟି ଘର ଆଧୁନିକ ରୁଚି ଅନୁସାରେ ସଜ୍ଜିତ । ପ୍ରତିଟି ଘର ମୂଲ୍ୟବାନ ଆସବାବପତ୍ରରେ ପୂର୍ଣ୍ଣ । ରେଡିଓ ଗ୍ରାମ, ଟିଭି, ଟେପ ରେକର୍ଡର, ରେଫ୍ରିଜ୍‌ରେଟର, ମୁଭି ପ୍ରୋଜେକ୍ଟର, ମ୍ୟୁଜିକ୍ ଇନଷ୍ଟ୍ରୁମେଣ୍ଟ ଇତ୍ୟାଦି ଇତ୍ୟାଦି କ'ଣ ଯେ ତାଙ୍କ ଘରେ ନାହିଁ, ତାହାହିଁ ଭାବିବାର କଥା । ତାଙ୍କର ଚାକର ଚାକରାଣୀ ମିଶି ସର୍ବ ମୋଟ ଛଅ, ଦୁଇଟା ବିରାଟ ଆଲ୍‌ସିସିଆନ୍ କୁକୁର ।

ପ୍ରକୃତରେ ଭୁଜଙ୍ଗଧରବାବୁ ସେଦିନ ମୋତେ ସ୍ତବ୍ଧ କରି ଦେଇଥିଲେ । ଆମ ଦେଶରେ ଗୋଟାଏ ସିନେମା ପତ୍ରିକାର ରିପ୍ରେଜେଣ୍ଟେଟିଭ ହୋଇ ଲୋକ ଯେ ଏତେ ଉପାର୍ଜନ କରିପାରେ, ମୁଁ ସେଦିନ ଭୁଜଙ୍ଗଧର ବାବୁଙ୍କ ନିଜସ୍ୱ ବାସଭବନକୁ ଯାଇ ନ ଥିଲେ ବିଶ୍ୱାସ କରିପାରି ନଥାନ୍ତି ।

ସେ କହୁଥିଲେ : ତାଙ୍କର ସେହି ପର୍ଣ୍ଣକୁଟୀରଟି ବିଭିନ୍ନ ଅଭିନେତା ଅଭିନେତ୍ରୀଙ୍କଠାରୁ ଆରମ୍ଭ କରି ସମସ୍ତ ଚିତ୍ରଧର୍ମୀମାନଙ୍କ ଦ୍ୱାରା ମୁଖରିତ ହୋଇଉଠେ । ପ୍ରାୟ ପ୍ରତିଦିନ ଦୁଇଚାରି, ପାଞ୍ଚସାତଜଣ ଆସନ୍ତି । ଅନ୍ୟାନ୍ୟ ପତ୍ରିକାର ପ୍ରତିନିଧିମାନଙ୍କ ପରି ଭୁଜଙ୍ଗଧରବାବୁଙ୍କୁ କାହାରି ଘରକୁ ଯାଇ ଇଣ୍ଟରଭିଉ ନେବାକୁ ହୁଏ ନାହିଁ । ସେମାନେ ନିଜେ ଆସି ଏଠାରେ ଇଣ୍ଟରଭିଉ ଦେଇଯାଆନ୍ତି ।

ଆଉ ଗୋଟାଏ କଥା ମୁଁ ସେଦିନ ଲକ୍ଷ୍ୟ କଲି । ଭୁଜଙ୍ଗଧର ବାବୁ ତାଙ୍କର ଚାକର ବାକରକାହାରିକୁ ବିଶ୍ୱାସ କରନ୍ତି ନାହିଁ । ସେଦିନ ଖାଇବସି ମୁଁ ଦେଖିଲି, ଭୁଜଙ୍ଗଧରବାବୁ ସମସ୍ତ ଖାଦ୍ୟସାମଗ୍ରୀ ପ୍ରଥମେ କୁକୁର ଓ ବିରାଡ଼ିଙ୍କୁ ଖୁଆଇ ତା'ପରେ ନିଜେ ଖାଇଲେ ଏବଂ ମୋତେ ଖାଇବାକୁ ଦେଲେ । ମୁଁ ଅବାକ୍ ହୋଇ ତାଙ୍କର ଏହି କାର୍ଯ୍ୟକଳାପ ଲକ୍ଷ୍ୟ କରୁଥିଲି ।

ସେ କହିଲେ : ଆପଣ ଏ ଦୁନିଆରେ ସବୁ କରନ୍ତୁ ପଛେ, ମୋର ଗୋଟାଏ କଥା ମନେରଖିବେ । ମଣିଷ ଜାତିଟାକୁ ମୋଟେ ବିଶ୍ୱାସ କରିବେ ନାହିଁ । ଅବିଶ୍ୱାସୀ ଆଜ୍ଞା, ସେମାନେ ହିଂସ୍ରଜନ୍ତୁମାନଙ୍କ ଠାରୁ ଆହୁରି ସାଂଘାତିକ ।

ସେତେବେଳେ ମୋ' ଆଡୁ କୌଣସି ଆଗ୍ରହ ନ ଦେଖି ନୀରବରେ ଖାଇବସିଲେ । ମୁଁ ଅନୁମାନ କରିପାରିଥିଲି ଯେ, ମୋ' ଠାରୁ ଟିକିଏ ଇଶାରା

ପାଇଥିଲେ ସେ ମଣିଷ ଜାତି ସମ୍ବନ୍ଧରେ ଏକ ନାତିଦୀର୍ଘ ବକ୍ତୃତା ଦେବେ ଅଥବା ତାଙ୍କର ଏପରି ଏକ ଜୀବନ ଦର୍ଶନର ଅଧ୍ୟାୟ ଉନ୍‌ମୋଚନ କରିବେ, ଯାହା ଶୁଣିବାକୁ ମୋର ଧୈର୍ଯ୍ୟ ନ ଥିବ । ମୁଁ ତାଙ୍କ କଥାରେ କୌଣସି ଆଗ୍ରହ ପ୍ରକାଶ ନ କରି ନିରବରେ ଖାଇବସିଲି ।

ସେ ପୁଣି କହିଲେ : ବୁଝିଲେ ଆଜ୍ଞା ! ଆପଣ ଜଣେ ଲେଖକ । ଲେଖକମାନଙ୍କୁ ମୁଁ ଯଥେଷ୍ଟ ଶ୍ରଦ୍ଧା କରେ । କିନ୍ତୁ ଏ ଲାଇନ୍‌ରେ କେବଳ ଆପଣଙ୍କ ଧର୍ମୀମାନଙ୍କୁ ଛାଡ଼ିଦେଲେ ଅନ୍ୟ ଯେଉଁମାନେ ଅଛନ୍ତି, ଆକ୍ଟର, ଆକ୍‌ଟ୍ରେସ, ଡାଇରେକ୍ଟର, ମ୍ୟୁଜିକ୍ ଡାଇରେକ୍ଟର, ପ୍ରୋଡ୍ୟୁସର, କ୍ୟାମେରାମ୍ୟାନ ଇତ୍ୟାଦି ଇତ୍ୟାଦି କେହି ଅନେଷ୍ଟ ନୁହନ୍ତି । ଆପଣଙ୍କର ଗୋଟିଏ ସଫଳ ଚିତ୍ର କରିବାକୁ ହେଲେ, ପ୍ରତ୍ୟେକଙ୍କୁ ହାତରେ ରଖିବାକୁ ହେବ । ଏ ଲାଇନ୍‌ଟା ଯାହା ନା ଆଜ୍ଞା ! ଧୀରେ ଧୀରେ ପ୍ରବେଶ କରନ୍ତୁ, ତା'ପରେ ବୁଝିପାରିବେ । ମୁଁ କିନ୍ତୁ ଏକ ସ୍ୱତନ୍ତ୍ର ଲାଇନ୍ ବାଛି ନେଇଛି । ଏ ଲାଇନ୍‌ରେ ଯେ ଯେତେ ବଡ଼ ରଥୀ ନିଜକୁ ମନେକରୁନା କାହିଁକି, ମୋ' କ୍ୟାମେରା ଭିତରେ ସେ ଧରା ନ ପଡ଼ିବା ଯାଏ ତା'ର ଯଶ ନାହିଁ କି ଖ୍ୟାତି ନାହିଁ । ହି ହି ହି । ବୁଝିଲେ ଆଜ୍ଞା ! ଭୁଜଙ୍ଗଧର ବାବୁ ଏକ ଅପୂର୍ବ ହସ ହସି ଖାଇବା ଶେଷ କଲେ । ମୁଁ ମଧ୍ୟ ଖାଇସାରିଥିଲି । ତଉଲିଆରେ ହାତ ପୋଛି ଦୁହେଁଯାକ ଡ୍ରଇଂ ରୁମ୍‌କୁ ଉଠିଆସିଲୁ ।

ଷ୍ଟେଟ ଏକ୍‌ସପ୍ରେସ ଟିଣ ଖୋଲି ମୋ' ଆଡ଼କୁ ମେଲେଇ ଧରି ଭୁଜଙ୍ଗଧର ବାବୁ କହିଲେ : ଆପଣ ଏ ଲାଇନ୍‌ରେ ଓହ୍ଲେଇଛନ୍ତି ଯେତେବେଳେ, ମୋର କହିବାର କଥା, ଖୁବ୍ ସାବଧାନରେ ଚଳିବେ । ପ୍ରଥମ କଥା କାହାରିକୁ ବିଶ୍ୱାସ କରିବେ ନାହିଁ ।

ମଣିଷ ଜାତି ପ୍ରତି ଏପରି ଅବିଶ୍ୱାସ କରିବାର କାରଣ ସେଦିନ ଭୁଜଙ୍ଗଧରବାବୁଙ୍କୁ ମୁଁ ପଚାରିଥିଲି । ସେ ଯେପରି କହିବା ପାଇଁ ଅପେକ୍ଷା କରିବସିଥିଲେ ।

ସଙ୍ଗେସଙ୍ଗେ ଆରମ୍ଭ କରିଦେଲେ : ମୋ' ସ୍ତ୍ରୀ ଆଜ୍ଞା ! ବହୁତ ବାଛି ବିଚାରି ମୁଁ ତାଙ୍କୁ ବାହା ହେଇଥିଲି । ଏତେ ସୁନ୍ଦରୀ, ଏଡ଼େ ସୁଶ୍ରୀ, ଏଡ଼େ ସୁକଣ୍ଠୀ କୋଟିକରେ ଗୋଟିଏ ମିଳିବା କଠିନ ଆଜ୍ଞା । ମୁଁ ତାକୁ ଏତେ ଭଲ ପାଉଥିଲି, ଆଉ ସେ ମୋତେ ଏତେ ଭଲ ପାଉଥିଲେ ଯେ, ତୁଳନା ହୁଏନା । ଲଇଲା ମଜନୁ, ରୋମିଓ ଜୁଲିଏଟ୍ କାହା ସହିତ ତୁଳନା କରିବି ? କିନ୍ତୁ ଆଜ୍ଞା ! ଦିନେ ଜାଣିପାରିଲି,

କ'ଣ ଜାଣିପାରିଲି ଜାଣନ୍ତି ? ସେ ଏକ କାଳନାଗୁଣୀ । ଫଣା ଟେକି ଜିଭ ଲହ ଲହ କରୁଚି । ଚୋଟ ମାରେ କି ନ ମାରେ । ସତକୁ ସତ ଦିନେ ଦେଖିଲି, କ'ଣ ଦେଖିଲି ଜାଣନ୍ତି ? ମୋ' ଭାତଥାଳିରୁ ଦି'ଟା କାଢ଼ି ବିରାଡ଼ିକୁ ଖୁଆଇ ଦେଲି । ବେଶୀ ସମୟ ନୁହେଁ ଆଜ୍ଞା, ସଙ୍ଗେ ସଙ୍ଗେ ବିରାଡ଼ିଟା ସେଇଠି ଟଳିପଡ଼ିଲା । ମୁଁ ତ ଦେଖି କାବା । ମୋର ବିବାହିତା ସ୍ତ୍ରୀ, ଜୀବନମରଣର ସାଥୀ । ଏହା କିପରି ସମ୍ଭବ ! ନା ନା ହୋଇପାରେନା । ଆଖି ଆଗରେ ମୋର ଜୁଳୁଜୁଳିଆ ପୋକ ଉଡ଼ିଗଲେ । ଖାଇବା ଜାଗାରୁ ଉଠିଗଲି । ଯାଇ ଦେଖିଲି, କ'ଣ ଦେଖିଲି ଜାଣନ୍ତି ଆଜ୍ଞା ? ଅର୍ଦ୍ଧାଙ୍ଗିନୀ ମୋର ମଟର ଚଢ଼ି, ତାଙ୍କର ଜଣେ କେଉଁ ଅମୁକ ପୁଅ ଭାଇଙ୍କ ସହିତ ଉଡ଼ି ଯାଉଛନ୍ତି । ତଳଯାଏ ଧାଇଁଗଲି ସିନା, କିନ୍ତୁ ଲାଭ କିଛି ହେଲାନାହିଁ । ସେମାନେ ଉଡ଼ି ଯାଇଥିଲେ । ଛୁଟି ଆସିଲି ଫୋନ୍ ପାଖକୁ । ରିସିଭର ଉଠାଇ ଦେଖିଲି ଲାଇନ୍ କଟ୍ । ତା'ପରେ ଦେଖିଲି, କ'ଣ ଜାଣନ୍ତି ଆଜ୍ଞା ? ଲୁହା ବାକ୍ସଟା ଖୋଲା । ଯାହା କିଛି ଅଳଙ୍କାର ପତ୍ର ଥିଲା, ନଗଦ ଟଙ୍କାପଇସା ଥିଲା, ସବୁ ତ ଯାଇଛି, ତା'ଛଡ଼ା ଯାଇଛି ମୋର ପଚାଶ ହଜାର ଟଙ୍କାର ହୋଇଥିବା ଇନ୍ସୁରେନସ ପଲିସି ଖଣ୍ଡିକ ।

ହି ହି, ହି ହି । ଭୁଜଙ୍ଗଧରବାବୁ ଏକାନିଶ୍ୱାସକେ କଥାତକ ସାରିବାକୁ ଚେଷ୍ଟା କରି ଥକିପଡ଼ିଲେ । ହସିଦେଇ କହିଲେ : ସେଇଦିନୁ ମୁଁ ବମ୍ବେ ଛାଡ଼ିଲି । ନିର୍ଭୟରେ ପର ହାତରୁ ଖାଇବା ଛାଡ଼ିଲି । ପୈତୃକ ପ୍ରାଣଟାକୁ ବଞ୍ଚେଇବା ସମସ୍ତଙ୍କର ସବୁଠାରୁ ବଡ଼ କର୍ତ୍ତବ୍ୟ ହେବା ଉଚିତ ନୁହେଁ କି ?

ଭୁଜଙ୍ଗଧରବାବୁ ସେଦିନ ମୋତେ ଖୁଆଇ ପିଆଇ ଆପ୍ୟାୟିତ କରି ଯେତେବେଳେ ବିଦାୟ ଦେବାକୁ ବାହାରିଲେ, ଦେଖିଲି ଗ୍ୟାରେଜରୁ ଗୋଟିଏ ଝଲମଲ ଡଜ୍ କାର୍ ବାହାର କରି ଆଣୁଛନ୍ତି ।

ମୋର ତଟସ୍ଥ ଚାହାଣ ଆଡ଼େ ଚାହିଁ, ବାଁ ପାଖର ଦରଜାଟା ଖୋଲିଦେଇ କହିଲେ : ବସନ୍ତୁ ।

ମୁଁ ବସିଲି ।

ସେ ପୁଣି କହିଲେ : ହି ହି, ହି ହି । ବୁଝିଲେ ଆଜ୍ଞା ! ଭଗବାନ ମୋତେ ଊଣା ଅଧିକେ ସବୁ ଦେଇଛନ୍ତ । ହେଲେ ମୁଁ ଏ ଗାଡ଼ି କେବେ ଚଢ଼େ ନାହିଁ । ଗାଡ଼ି ଚଢ଼ିବାକୁ ମୋର ବେଳ କାହିଁ ?

ମୁଁ କେବଳ ଭୁଜଙ୍ଗଧରବାବୁଙ୍କ କଥା ଶୁଣୁଥିଲି, ଆଉ ବିସ୍ମୟରେ ଚାହିଁ ରହିଥିଲି ତାଙ୍କ ଚାଲିଚଳଣ ଆଡ଼େ । ସେ ପୁଣି ଆରମ୍ଭ କଲେ : ଚିତ୍ରାଙ୍ଗଦା ସହିତ ଆପଣଙ୍କର ପରିଚୟ ଅଛି ?

: ଅଛି, ସାମାନ୍ୟ ।

: ମୋର କିନ୍ତୁ ପ୍ରଗାଢ଼ ପରିଚୟ । ଯିବେ ତା' ଘରକୁ ? ବହୁ ପ୍ରଡ୍ୟୁସର ମୋତେ ସଙ୍ଗରେ ନେଇ ଚିତ୍ରାଙ୍ଗଦା ଘରକୁ ଯାଆନ୍ତି । ଚିତ୍ରରେ ଅଭିନୟ କରିବା ପାଇଁ କଣ୍ଟ୍ରାକ୍ଟ କରିବାକୁ ହେଲେ, ଚିତ୍ରାଙ୍ଗଦା ସହଜରେ ଧରା ଦିଏ ନାହିଁ । ସେମାନଙ୍କ ସହିତ ନାନାପ୍ରକାର ଖେଳ ଖେଳେ । ଦର ମ୍‌ଲେଇ କରେ । ଆଉ ମୁଁ ଗଲେ ? ହି ହି ହି ହି, ଯୋକ ମୁହଁରେ ଲୁଣ ଦେଲାଭଳି ଯାହା କହିବି ସେଇଆ । ମୋତେ ସେ ଭାରି ମାନେ । ମୋରି ହାତରେ ତା' ଜୀବନ ଗଢ଼ା ହେଇଛି କି ନା ! ଆଉ ଆପଣଙ୍କ ଚିତ୍ରପାଇଁ ତା' ସହିତ କଣ୍ଟ୍ରାକ୍ଟ ସରିଚି ନିଶ୍ଚୟ ।

: ହଁ, ସେମାନେ ସେ କାମ ଶେଷ କରିଛନ୍ତି ।

: ଆପଣ ଚିତ୍ରାଙ୍ଗଦା ଘରକୁ ଯିବେ ?

: କାହିଁକି ?

: ଇମିତି ପଚାରୁଥିଲି । ମୁଁ ଯିବି କି ନା ! ଆପଣଙ୍କର ଯଦି ଇଚ୍ଛା ଥାଏ...

: ଆପଣଙ୍କର କ'ଣ କିଛି କାମ ଅଛି ?

ହଁ, ଆଗାମୀ ସଂଖ୍ୟା ଫିଲ୍ମଷ୍ଟାର ପାଇଁ ପାଠକମାନଙ୍କର ପ୍ରଶ୍ନର ଉତ୍ତର ଦେଉଚି ଚିତ୍ରାଙ୍ଗଦା । ପ୍ରଶ୍ନ ଆସିଚି ପ୍ରାୟ ସହସ୍ରାଧିକ । ତେଣୁ ସବୁଗୁଡ଼ିକ ପ୍ରଶ୍ନର ଉତ୍ତର ଆଣିବାକୁ ହେଲେ, ମୋତେ ଦୈନିକ ତା' ଘରକୁ ଯିବା ଛଡ଼ା ଗତ୍ୟନ୍ତର ନାହିଁ । ସେ ତ ପ୍ରଶ୍ନର ଯାହା ଉତ୍ତର ଦେଉଚି ଜଣାଅଛି, ମୋତେ ଯାଇ ସବୁଯାକ ବସି ବସି ଲେଖିଆଣିବାକୁ ପଡୁଚି ।

: ତା'ହେଲେ ଏପରି ପ୍ରଶ୍ନୋତ୍ତରର ସାର୍ଥକତା କ'ଣ ?

ହି ହି ହି ହି, ଅଛି ଆଜ୍ଞା । ଆପଣ ସେସବୁ କଥା ବୁଝିପାରିବେ ନାହିଁ । ଆମ ପାଠକଙ୍କର ସାଇକଲୋଜି ଆମେ ଷ୍ଟଡି କରିଛୁ । ପାଠକେ ଭାବିବେ

ଚିତ୍ରାଙ୍ଗଦା ନିଜେ ତା' ପ୍ରଶ୍ନର ଉତ୍ତର ଦେଇଛନ୍ତି । ଏଇଟା ବଡ଼ ସୌଭାଗ୍ୟର କଥା । ତେଣୁ ସେ କେବଳ ଖଣ୍ଡିଏ ନୁହେଁ, ପାଞ୍ଚଖଣ୍ଡ ଫିଲ୍ମ ଷ୍ଟାର କିଣିବ ଏବଂ ନିଜର ବନ୍ଧୁବାନ୍ଧବ ମହଲରେ ବାଣ୍ଟିଦେବ ।

: ହୁଁ ବୁଝିଲି । ମୁଁ ଏପରି ଅନାହୂତ ଭାବରେ ଚିତ୍ରାଙ୍ଗଦା ଘରକୁ ଯିବା ଉଚିତ ହେବ କି ?

: ସେ କିଛି ମନେକରିବ ନାହିଁ ଆଜ୍ଞା । ସେସବୁ ଦୃଷ୍ଟିରୁ ଚିତ୍ରାଙ୍ଗଦା ଖୁବ୍ ଭଲ ଝିଅ । କେହି ଯଦି ଜଣେ ଯାଇ ତା' ଘରେ ପହଞ୍ଚିଗଲା, ତେବେ ସେ ତା' ସହିତ ନିଜର ଅତି ଆପଣାର ଲୋକ ଭଳି ବ୍ୟବହାର କରିବ । ତା'ଛଡ଼ା ଆପଣଙ୍କର ତ ତା' ସହିତ ସଂପର୍କ ଅଛି ।

: ଆପଣ ଯଦି କହୁଛନ୍ତି ମୋର କିଛି ଆପତ୍ତି ନାହିଁ । ଖାଲି ଟିକିଏ ମୁହଁ ମାରିଦେଇ ଯିବା । କାଲିର ସୁଟିଂ ଟାଇମ୍ ଘଣ୍ଟାଏ ପଛେଇ ଯାଇଛି, ସେ ଖବରଟା ମଧ୍ୟ ଦେଇଗଲେ ହେବ ।

: ବାସ୍, ବାସ୍, ତା'ହେଲେ ତ ହେଲା । କାମ ଗୋଟାଏ ହାତରେ ଅଛି ଯେତେବେଳେ, ଶେଷ କରି ଯାଆନ୍ତୁ । ଆଚ୍ଛା, ଆପଣଙ୍କ ଚିତ୍ରର ସୁଟିଂ ଆଉ କେତେ ଦିନ ଲାଗିବ ?

: ଆହୁରି ୨୭ଟା ସୁଟିଂ ବାକି ଅଛି । କେତେ ଦିନ ଲାଗିବ କହିବା ସହଜ ନୁହେଁ । ସବୁ ନିର୍ଭର କରେ ଷ୍ଟୁଡିଓ ଉପରେ ।

: ଆପଣଙ୍କ ଚିତ୍ରର କାହାଣୀଟି ଭାରି ମନଲୋଭା ହେଇଛି । ମୁଁ ଗ୍ୟାରେଣ୍ଟି ଦେଇ କହିପାରେ ଭାରତୀୟ ଭାଷାରେ ଆଜି ପର୍ଯ୍ୟନ୍ତ ଏ ଧରଣର ଗଳ୍ପ ଚିତ୍ରାୟିତ ହୋଇ ନ ଥିଲା । ଖାଲି ପିକ୍‌ଚରଟା ରିଲିଜ୍ ହେଇଯାଉ, ଆପଣ ଦେଖିବେ ଏହାର ହିନ୍ଦୀ ଭାରସନ୍ କରିବା ପାଇଁ ନିଶ୍ଚୟ ଲୋକେ ଛୁଟି ଆସିବେ, ନ ହେଲେ ମୁଁ ଆପଣଙ୍କୁ ପ୍ରଡ୍ୟୁସର ଯୋଗାଡ଼ କରିଦେବି ।

: ନା ନା, ଆପଣ ମୋ' ପାଇଁ କାହିଁକି କେଉଁଠି ମୁହଁ ହରାଇବେ ?

ଭୁଜଙ୍ଗଧରବାବୁ ମୋ' ଆଡ଼େ ଗର୍ବିତ ନୟନରେ ଥରେ ଚାହିଁ କହିଲେ : ହି ହି ହି ହି, ଆପଣ ତା'ହେଲେ ମୋତେ ଭଲକରି ଚିହ୍ନି ନାହାନ୍ତି ଆଜ୍ଞା ! ମୋ' କଲମରେ ଜୋର ଥିବାଯାଏ ମୁଁ ପୁଣି କାହାକୁ ଖୋସାମଦ୍ କରିବି ? ଖାଲି ଫିଲ୍ମ

ଷ୍ଟାରରେ ଗୋଟାଏ ଆର୍ଟିକେଲ ଆଜ୍ଞା ! ତା'ପରେ ପ୍ରଡ୍ୟୁସର ଛାଏଁ ଛାଏଁ ଯାଇ ଆପଣଙ୍କ ଦୁଆରେ ଭିଡ଼ ଜମେଇବେ । ମୋ' ନାଁ ଭୁଜଙ୍ଗଧର ସେନାପତିଟି !

ଭୁଜଙ୍ଗଧରବାବୁ ହଠାତ୍ ମଟର ଗାଡ଼ିର ବ୍ରେକ କଷିଲେ ।

: ଉଠନ୍ତୁ, ମୁଁ ପୁଣି ନେଇ ଆପଣଙ୍କୁ ଘରେ ଛାଡ଼ିଦେଇ ଆସିବି । ରାତି ଏଗାର, ବାର, ଏକ ଦୁଇ, କିଛି ପରବାଏ କରିବେ ନାହିଁ । ଏ ଲାଇନଟା ସେଇଆ ଆଜ୍ଞା !

ମୁଁ ଦରଜା ଖୋଲି ପଦାକୁ ବାହାରି ଆସିଥିଲି ।

ଭୁଜଙ୍ଗଧରବାବୁ ମଧ୍ୟ ବାହାରି ଆସିଲେ । ଉପରକୁ ଚାହିଁଲେ । କ'ଣ ଦେଖିଲେ କେଜାଣି, ହାତଘଡ଼ିକୁ ଚାହିଁ କହିଲେ : ଆଜି ଏତେ ଶୀଘ୍ର କ'ଣ ଚିତ୍ରାଙ୍ଗଦା ଶୋଇପଡ଼ିଲାଣି ?

ଦରବାନ୍ ଆମ ଦୁହିଁଙ୍କୁ ସଲାମ୍ ବଜାଇ କହିଲା ମା' ଘରେ ଅଛନ୍ତି । ଆଜି ଷ୍ଟୁଡିଓରୁ ଫେରି ଆଉ କୁଆଡ଼େ ସେ ବାହାରି ନାହାନ୍ତି ।

ଭୁଜଙ୍ଗଧରବାବୁ ଆଗେ ଆଗେ ଓ ମୁଁ ପଛେ ପଛେ ଭିତରେ ପ୍ରବେଶ କଲୁ । ଆଜି ସତରେ କାହିଁକି ସେପରି ଗହଳଚହଳ ନଥିଲା । ଅବଶ୍ୟ ଇତିପୂର୍ବରୁ ମୁଁ କେବେ ଚିତ୍ରଙ୍ଗଦାର ଘରକୁ ଯାଇ ନଥିଲି । ମାତ୍ର ଭୁଜଙ୍ଗଧର ବାବୁ ମୋତେ ସବୁ କଥା ସୂଚେଇ ଦେଉଥିଲେ ।

ଦି'ତାଲା ଉପରେ ଯାଇ ଦେଖିଲୁ, ଚିତ୍ରାଙ୍ଗଦାର ଡ୍ରଇଂରୁମ୍‌ରୁ ମଧ୍ୟ ଆଲୋକ ନିଭି ଯାଇଛି । ଚାକରଟି ବସି ବସି ଢୋଳଉଛି ।

ଆମକୁ ଦେଖିବାକ୍ଷଣି ତା'ର ନିଦ ଭାଙ୍ଗିଗଲା । ଉଠିପଡ଼ି ନମସ୍କାର କରି ସେ କହିଲା : ମା' ଆଜି କାହାରି ସହିତ ଦେଖା କରୁ ନାହାନ୍ତି ଆଜ୍ଞା, ତାଙ୍କ ଦେହ ଖରାପ । ସେ ଖାଇପିଇ ଶୋଇପଡ଼ିଲେଣି । ଆପଣ କାଲି ସକାଳୁ ଆସିବେ ।

ଭୁଜଙ୍ଗଧରବାବୁ ମୋ' ମୁହଁକୁ ଏବଂ ମୁଁ ଭୁଜଙ୍ଗଧରବାବୁଙ୍କ ମୁହଁକୁ ଚାହିଁ ମୁହୂର୍ତ୍ତେ ଠିଆ ହୋଇ ରହିଲୁ ।

ତା'ପରେ ପ୍ରତ୍ୟାବର୍ତ୍ତନ ।

ଚିତ୍ରାଙ୍ଗଦାର ଆତ୍ମହତ୍ୟା !

ଚିତ୍ରାଙ୍ଗଦା ଆତ୍ମହତ୍ୟା କରିଛି !!

ସକାଳୁ ଉଠୁ ନ ଉଠୁଣୁ, ଆମର ପ୍ରଡ୍ୟୁସର ଓ ଡାଇରେକ୍ଟର ଆସି ମୋର ନିଦ୍ରାଭଙ୍ଗ କଲେ । ମୁଁ ସେମାନଙ୍କ ମୁହଁକୁ କାବା ହୋଇ ଅନାଇ ରହିଲି । ଚିତ୍ରାଙ୍ଗଦା ଆତ୍ମହତ୍ୟା କଲା କାହିଁକି ? କିଛି ମୁଁ ଭାବିପାରିଲି ନାହିଁ । ପ୍ରଥମେ ଏମାନଙ୍କୁ ବିଶ୍ୱାସ ମଧ୍ୟ କରିପାରିଲି ନାହିଁ ।

ଆମ ପ୍ରଡ୍ୟୁସର ଓ ଡାଇରେକ୍ଟର ଉଭୟେ ମୁଣ୍ଡରେ ହାତଦେଇ ବସିପଡ଼ିଥିଲେ । ଜୀବନରେ ଗୋଟାଏ ନୂଆ ଭେଞ୍ଚର ନେବାକୁ ଆମେ ସମସ୍ତେ ଚେଷ୍ଟା କରିଥିଲୁ । କିନ୍ତୁ ହଠାତ୍ ଏପରି ଏକ ଦୁର୍ଘଟଣା...

ଆମ ପ୍ରଡ୍ୟୁସର ସମରେଶବାବୁ କହିଲେ : ଆଉ କାହାପାଇଁ ଏ ସଂବାଦ ଶୁଭ କି ଅଶୁଭ ମୋତେ ଜଣାନାହିଁ, କିନ୍ତୁ ଆମର ଯେ ଟଙ୍କାଗୁଡ଼ା ପାଣିରେ ପଡ଼ିଲା । ସୁଟିଂ ପ୍ରାୟ ଛ'ଣା ଶେଷ ହୋଇଥିଲା । ବର୍ତ୍ତମାନ ଉପାୟ କ'ଣ ? ଚିତ୍ରାଙ୍ଗଦାକୁ ବାଦ୍ ଦେଇ ତ ଆଉ ସୁଟିଂ କରି ହେବନାହିଁ ?

ଡାଇରେକ୍ଟର ଅର୍ଦ୍ଧେନ୍ଦୁ ବାବୁ କହିଲେ : ଅସମ୍ଭବ । ଗୋଟାଏ ଭୂମିକାରେ ଦୁଇଜଣ ଅଭିନୟ କରିବା କ'ଣ ସମ୍ଭବ ? ସେପରି କଲେ ଲୋକେ ତ ଛେପ ପକେଇବେ ।

ମୁଁ ବା ଆଉ କ'ଣ କୁହନ୍ତି । ନୀରବରେ ଦୁଇଜଣଙ୍କ ମୁହଁକୁ କଂପିତ ନୟନରେ ଅନାଇ ରହିଲି । କିଛି ସମୟ ନୀରବରେ କଟିଲା । ତା'ପରେ ମୁଁ ପଚାରିଲି : ଖବରଟାରେ ସତ୍ୟତା ଅଛି ତ ?

ସମରେଶବାବୁ ଓ ଅର୍ଦ୍ଧେନ୍ଦୁ ବାବୁ ଦୁଇଜଣଯାକ ଚିଡ଼ି ଉଠି କହିଲେ, ଆମେ କ'ଣ ଆପଣଙ୍କ ନିକଟରେ ମିଛକଥା କହୁଚୁ ?

: ନା ନା, ମୁଁ ତାହା କହୁନାହିଁ ଯେ, କିନ୍ତୁ ଚିତ୍ରାଙ୍ଗଦା ହଠାତ୍ ଆତ୍ମହତ୍ୟା କରିବସିଲା କାହିଁକି ? ତା' ଭଳି ଜୀବନଯାତ୍ରାର ମାନ କେତେଟା ଲୋକଙ୍କର ଏ ଦେଶରେ ଅଛି ? ତଥାପି ଯେ କାହିଁକି ସେ ଆତ୍ମହତ୍ୟା କଲା...

ସମରେଶବାବୁ ବିରକ୍ତିମିଶା ସ୍ୱରରେ କହିଲେ : କାହିଁକି ଆତ୍ମହତ୍ୟା କଲା ସେ କଥା, ବର୍ତ୍ତମାନ ଆମର ବିଚାର୍ଯ୍ୟ ନୁହେଁ, କିପରି ଆମର ହଜାର ହଜାର ଫିଟ୍‌ର କଞ୍ଚା ଫିଲ୍‌ମ ପୋଡ଼ା ନ ହେବ, ତାହାହିଁ ଚିନ୍ତାର ବିଷୟ ।

ସେମାନଙ୍କୁ ଚିନ୍ତା କରିବା ପାଇଁ ମୋ' ରୁମ୍‌ରେ ବସାଇ ଦେଇ କହିଲି : ଆପଣମାନେ ଏଇଠି ବସି ଥାଆନ୍ତୁ, ମୁଁ ଯାଉଚି ଟିକିଏ ଚିତ୍ରାଙ୍ଗଦା ଘରୁ ବୁଲିଆସେ । ପ୍ରକୃତ ଘଟଣାଟା କ'ଣ ଜାଣିଆସିବା ଦରକାର ।

ମୁଁ ସାମାନ୍ୟ କେତେ ମିନିଟ୍ ଭିତରେ ନିତ୍ୟକର୍ମ ଶେଷକରି ଚିତ୍ରାଙ୍ଗଦାର ଘରକୁ ବାହାରି ପଡ଼ିଲି । ମୋ' ମନ ଭିତରେ ଗୋଟାଏ ବିରାଟ ପ୍ରଶ୍ନବାଚୀ ଉଠିଥିଲା । ଚିତ୍ରାଙ୍ଗଦା ଆତ୍ମହତ୍ୟା କଲା କାହିଁକି ? କ'ଣ ତା'ର ଅଭାବ ଥିଲା ।

ମୁଁ ଯେତେବେଳେ ଯାଇ ଚିତ୍ରାଙ୍ଗଦାର ଘର ପାଖରେ ପହଞ୍ଚିଲି, ଖଣ୍ଡେ ଦୂରରୁ ମୋତେ ଗାଡ଼ିରୁ ଓହ୍ଲେଇବାକୁ ହେଲା । ରାସ୍ତାରେ ଟ୍ରାଫିକ୍ ଏତେ ଭିଡ଼ ହେଇଯାଇଥିଲା ଯେ ମୋତେ ଗାଡ଼ିରୁ ଓହ୍ଲେଇ ଭିଡ଼ ଠେଲି ଚିତ୍ରାଙ୍ଗଦାର ଘରଯାଏ ଆଗେଇବାକୁ ପଡ଼ିଲା । ଉତ୍ସୁକ ଜନତାର ଏପରି ଭିଡ଼ ଆଜି ପର୍ଯ୍ୟନ୍ତ ମୁଁ କେଉଁଠି ଦେଖି ନଥିଲି । ପୋଲିସ୍‌ର କଡ଼ା ପହରା ବସି ଯାଇଥିଲା । ମୁଁ ଗେଟ୍ ପାଖଯାଏ ଯାଇ ଅଟକି ଯାଇଥିଲି, ଆଉ ଭିତରକୁ ପଶିବା ମୋ' ପକ୍ଷରେ ସମ୍ଭବ ହେଉ ନ ଥିଲା ।

ସେଇ ଭିଡ଼ ଭିତରେ ହଠାତ୍ ମୋର ଭୁଜଙ୍ଗଧରବାବୁଙ୍କ ସହିତ ଭେଟ ହୋଇଗଲା । ସେ ଏପରି ବ୍ୟସ୍ତ ଜଣା ଯାଉଥିଲେ ଯେ, ଇତି ପୂର୍ବରୁ ମୁଁ ତାଙ୍କୁ କେବେ ଏପରି ଭାବରେ ଦେଖି ନ ଥିଲି । ଡାହାଣ କାନ୍ଧରେ କ୍ୟାମେରା ଓ ବାଁ କାନ୍ଧରେ ଟ୍ରାନ୍‌ଜିଷ୍ଟର ସେଟ୍‌ଟି ଝୁଲୁଥିଲା । କିନ୍ତୁ ରକ୍ଷା ଏତିକି ଯେ ଟ୍ରାନ୍‌ଜିଷ୍ଟରଟି ନୀରବ ଥିଲା ।

ଭୁଜଙ୍ଗଧରବାବୁ ମୋତେ ସେହି ଭିଡ଼ ଭିତରେ ଦେଖି ନ ଦେଖିଲା ପରି ଅନ୍ୟଆଡ଼େ ମୁହଁ ବୁଲେଇ ନେଉଥିଲେ । ମୁଁ କିନ୍ତୁ ଧାଇଁଯାଇ ପଛଆଡୁ ତାଙ୍କୁ ଟାଣି ଧରିଲି ।

: ଆରେ ଆପଣ ଯେ ! ସେ ମୋ' ଆଡ଼େ ବୁଲି ଚାହିଁ ପଚାରିଲେ ।

: ହଁ ମୁଁ, କିନ୍ତୁ ଘଟଣା କ'ଣ କହିଲେ ? ପଚାରିଲି ।

: ଚିତ୍ରାଙ୍ଗଦା ଆତ୍ମହତ୍ୟା କରିଚି । ଖୁବ୍ ଦୁଃଖର କଥା । ଚିତ୍ର ଜଗତରୁ ଗୋଟିଏ ଜ୍ୟୋତିଷ୍କ ତାରକା ଖସିପଡ଼ିଲା । ଆପଣ ଭିତରକୁ ଯିବେ ? ମୋ' ସହିତ ଆସନ୍ତୁ । ଗେଟ୍‌ରେ ପୋଲିସ୍ ଅଟକେଇଲେ କହିବେ ପ୍ରେସ୍ ରିପୋର୍ଟର ।

ମୁଁ ଭୁଜଙ୍ଗଧର ବାବୁଙ୍କ ପଛେ ପଛେ ଆଗେଇ ଗଲି । ଘର ଭିତରଟାରେ ସେତେ ଭିଡ଼ ନ ଥିଲା । ପୋଲିସ୍ ଇନିସ୍‌ପେକ୍ଟର ଧୂର୍ଜଟ ତାଲୁକଦାର ଘରର ଚାକରବାକରମାନଙ୍କୁ ଜେରା କରୁଥିଲେ । ଚିତ୍ରାଙ୍ଗଦା ଯେଉଁ ଘରେ ଆତ୍ମହତ୍ୟା କରିଥିଲା, ସେ ଘରଟି ବାହାରୁ ବନ୍ଦ ଥିଲା ।

ଭୁଜଙ୍ଗଧରବାବୁ ତାଙ୍କ ମୁଭି କ୍ୟାମେରାଟି 'ଚଳେଇ, ଚିତ୍ରାଙ୍ଗଦାର ଆତ୍ମହତ୍ୟା ଅବସ୍ଥାର ଚିତ୍ର ଉଠାଇ ସାରିଥିଲେ । ମୋତେ କହିଲେ : ଆପଣ ଚିତ୍ରାଙ୍ଗଦାକୁ ଦେଖିବାକୁ ଚାହାନ୍ତି ? ଧୂର୍ଜଟ ବାବୁଙ୍କ ଆଡ଼େ ଚାହିଁଲେ । ଧୀରେ ଧୀରେ କହିଲେ : ପ୍ରେସ୍ ।

ଧୂର୍ଜଟ ବାବୁ ମୋ' ମୁହଁକୁ ଥରେ ଚାହିଁ କହିଲେ : ଆପଣ ଦେଖି ଆସିପାରନ୍ତି, କିନ୍ତୁ ଭିତରର କୌଣସି ଜିନିଷ ସ୍ପର୍ଶ କରିବେ ନାହିଁ ।

ଭୁଜଙ୍ଗଧରବାବୁ କବାଟ ଫିଟେଇ ଦେଲେ । ମୁଁ ଭିତରକୁ ଚାହିଁ ଦେଇ ଶିହରି ଉଠିଲି । ଚିତ୍ରାଙ୍ଗଦା ଘରର ଗୋଟାଏ କଡ଼ିରେ ଓହୋଳିଚି । ପାଦ ଦୁଇଟା ତଳେ ଲାଗେ କି ନ ଲାଗେ । ଦଉଡ଼ିଟା ବେକରେ ପିଇଯାଇଚି । ହାତ ଦୁଇଟା ମୁଠା ହୋଇ ଯାଇଚି ।

ଭୁଜଙ୍ଗଧର ପୁଣି ତାଙ୍କ କ୍ୟାମେରା ଚଳେଇ ଦେଲେ ।

ଚିତ୍ରାଙ୍ଗଦା ଗଳାରେ ଦଉଡ଼ି ଲଗେଇ ଆତ୍ମହତ୍ୟା କଲା ! ବିଶେଷତଃ ଚିତ୍ରାଙ୍ଗଦା ପରି ଜଣେ ଅତ୍ୟାଧୁନିକା, ଯଦିବା କୌଣସି କାରଣରୁ ସେ ଆତ୍ମହତ୍ୟା କରିବାକୁ ବାଧ୍ୟ ହୋଇଥିଲା, ଆଉ କ'ଣ ଆତ୍ମହତ୍ୟା କରିବାର କୌଣସି ସୂକ୍ଷ୍ମ ଉପାୟ ତା'ର ନ ଥିଲା ?

ମୁଁ ଆଉ ଚିତ୍ରାଙ୍ଗଦାକୁ ଚାହିଁପାରିଲି ନାହିଁ । ମୁହଁ ବୁଲାଇ ଆଣି ଭୁଜଙ୍ଗଧର ବାବୁଙ୍କୁ ପଚାରିଲି : ଚିତ୍ରାଙ୍ଗଦାକୁ ଏ ପର୍ଯ୍ୟନ୍ତ ଏଇ ଅବସ୍ଥାରେ ଏଠାରେ ରଖାହୋଇଚି କାହିଁକି ?

: ସେ ପୋଲିସ ବିଭାଗର କଥା ଆଜ୍ଞା ! ପୋଲିସ ଫଟୋଗ୍ରାଫର ଆସି ନାହାନ୍ତି । ସେ ଆସିବେ, ଫଟୋ ଉଠାହେବ । ତା'ପରେ... ଛାଡ଼ନ୍ତୁ । କିନ୍ତୁ ସବୁଠାରୁ ମୋର ବଡ଼ ଅବଶୋଷ ରହିଗଲା କ'ଣ ଜାଣନ୍ତି ? ଆମେ ଯେତେବେଳେ କାଲି ରାତିରେ ଚିତ୍ରାଙ୍ଗଦା ଘରକୁ ଆସିଥିଲେ, ସେତିକିବେଳେ ଯଦି ଫେରି ନ ଯାଇ ଚିତ୍ରଙ୍ଗଦା ସହିତ ଦେଖାକରି ଥାଆନ୍ତେ, ତେବେ ତା' ମନୋଭାବ ନିଶ୍ଚୟ

ପରିବର୍ତ୍ତନ ହୋଇଥାଆନ୍ତା । ଆଜି ସକାଳେ ଆମେ ଏପରି ଝୁଲନ୍ତ ଅବସ୍ଥାରେ ଆସି ଚିତ୍ରାଙ୍ଗଦାକୁ ଦେଖି ନ ଥାନ୍ତେ ।

: କିନ୍ତୁ ଏହି ଆତ୍ମହତ୍ୟାର କାରଣ କ'ଣ ? ଏହା ମୂଳରେ କୌଣସି ଦୂରଭିସନ୍ଧି ନାହିଁ ତ ?

ଭୁଜଙ୍ଗଧରବାବୁ ଟିକିଏ ହସିବାକୁ ଚେଷ୍ଟା କଲେ । କିନ୍ତୁ ହସିପାରିଲେ ନାହିଁ । କହିଲେ : ବୁଝିଲେ ନା ଆଜ୍ଞା ! ଚିତ୍ରାଙ୍ଗଦା ଆତ୍ମହତ୍ୟା କରିବା ପୂର୍ବରୁ ଅଦ୍ଭୁତ ଏକ ଲେଖା ଲେଖି ରଖିଯାଇଛି । ସେଥିରୁ ସ୍ପଷ୍ଟ ଅନୁମିତ ହେଉଛି ଯେ, ଚିତ୍ରାଙ୍ଗଦା ନିଜ ଇଚ୍ଛାରେ, ଧୀରମନ ସ୍ଥିର ଚିତ୍ତରେ ଆତ୍ମହତ୍ୟାର ସଂକଳ୍ପ ଗ୍ରହଣ କରିଛି ଏବଂ ଆତ୍ମହତ୍ୟା କରିଛି । ଆଶ୍ଚର୍ଯ୍ୟ । ଏପରି ଗୋଟିଏ ଚରିତ୍ର କେବେ ମୁଁ ଦେଖି ନ ଥିଲି ।

: ଚିତ୍ରାଙ୍ଗଦା କ'ଣ ଲେଖି ରଖିଯାଇଛି ? କାହିଁ ସେ ଲେଖା ?

: ଧୂର୍ଜଟ ବାବୁଙ୍କ ନିକଟରେ ଅଛି, ଆପଣ ତାଙ୍କଠାରୁ ମାଗି ନେଇ ପଢ଼ି ପାରନ୍ତି । ଏଥିରେ କିନ୍ତୁ ସବୁଠାରୁ ବେଶୀ କ୍ଷତିଗ୍ରସ୍ତ ହେଲି ମୁଁ ଆଜ୍ଞା ! ଚିତ୍ରାଙ୍ଗଦା ପରି ଆଉ ଗୋଟାଏ ଅଭିନେତ୍ରୀ ପାଇବା ହୁଏତ ଏ ଜୀବନରେ ଆଉ ସମ୍ଭବ ହେବନାହିଁ । ନୃତ୍ୟ, ଗୀତ, ଅଭିନୟ, ତିନୋଟିଯାକ ଗୁଣର ଅଧିକାରଣୀ ଥିଲା ଚିତ୍ରାଙ୍ଗଦା । ସେଥିପାଇଁ ତା'ର ଚାହିଦା ଥିଲା ବେଶୀ । ଆଉ 'ଫିଲ୍ମ ଷ୍ଟାର'ର ପୃଷ୍ଠା ଭରିବା ପାଇଁ ଚିତ୍ରାଙ୍ଗଦା ମୋତେ ଯୋଗାଉଥିଲା ପ୍ରଚୁର ଉପାଦାନ ।

ମୁଁ କିନ୍ତୁ ଏହା ଭିତରେ ଅନ୍ୟମନସ୍କ ହୋଇପଡ଼ିଥିଲି । ଚିତ୍ରାଙ୍ଗଦା ଲେଖି ରଖିଯାଇଥିବା ଲେଖା ଖଣ୍ଡିକ ପଢ଼ିବା ପାଇଁ ମୋ' ମନ ଭିତରେ କିପରି ଏକ ଇଚ୍ଛା ଜାଗ୍ରତ ହୋଇଉଠିଥିଲା ।

ଧୂର୍ଜଟବାବୁ ଅହଲ୍ୟା ଠାରୁ ଜମାନବନ୍ଦୀ ନେଉଥିଲେ ।

: ମତେ ଝାଡ଼ା ଲାଗିଲା । ନିଦ ଭାଙ୍ଗିଗଲା । ଉଠି ପାଇଖାନା ଗଲାବେଳକୁ ଦେଖିଲି କିଏ ଯିମିତି ଜଣେ ମା'ଙ୍କ ଘରୁ ବାହାରି ଚାଲିଯାଉଛି । ମୁଁ ସେଆଡ଼େ ଏତେ ଧ୍ୟାନ ଦେଇ ନ ଥିଲି । ଏଣେ ମୋର ପେଟ କାମୁଡୁଥିଲା । ମୁଁ ପାଇଖାନା ଚାଲିଗଲି ।

: ରାତି ସେତେବେଳକୁ କେତେଟା ହେବ ? ଧୂର୍ଜଟବାବୁ ପଚାରିଲେ ।

: କହିପାରିବି ନାହିଁ ।

: ଯିଏ ତମ ମା'ଙ୍କ ଘରୁ ବାହାରି ଚାଲିଗଲା ବୋଲି ତମେ ମନେ କଲ, ସିଏ କ'ଣ ପୁରୁଷ ନା ନାରୀ ?

: ଅନ୍ଧାର ହେଇଥିଲା । ମୁଁ ଖାଲି ଛାଇପରି ଟିକିଏ ଦେଖିଲି । ପୁରୁଷ କି ସ୍ତ୍ରୀ ବାରିପାରି ନାହିଁ । ଅହଲ୍ୟା କହିଲା ।

: ମା'ଙ୍କ ଘରୁ ସେପରି କେହି ଜଣେ ବାହାରି ଯାଉଥିବାର ଦେଖି ତମ ମନରେ କୌଣସି ଧାରଣା ଜନ୍ମି ନ ଥିଲା ?

: ନା ।

: କାହିଁକି ?

: ଇମିତି ମା'ଙ୍କ ପାଖକୁ କେତେ ଲୋକ ଆସନ୍ତି ଯାଆନ୍ତି । ଆମେ ଦେଖି ଦେଖି ଅଭ୍ୟସ୍ତ ହେଇଯାଇଥିଲୁ ।

: ସେପରି ଯିବା ଆସିବାରେ ଗୋଟାଏ ସମୟ ଅସମୟ ଅଛି ତ ?

: ମତେ ସେତେବେଳେ ଭୀଷଣ ଝାଡ଼ା ଲାଗୁଥିଲା । ମୁଁ ଆଉ କିଛି ଭାବିପାରି ନ ଥିଲି ।

: ହୁଁ, ପାଇଖାନାରୁ ଫେରିଆସି କ'ଣ କଲ ?

: ଶୋଇପଡ଼ିଲି ।

: ଆଉ କିଛି ତମକୁ ଜଣା ନାହିଁ ?

: ନାଁ ହଜୁର ।

:ଦେଖ ଅହଲ୍ୟା, ସତ ସତ ସବୁ କଥା ମୋ' ଆଗରେ ତମେ କହିଯାଅ । ଯଦି କିଛି ଲୁଚାଉଥାଅ, ତମର ମଙ୍ଗଳ ହେବ ନାହିଁ । ମୁଁ ତମକୁ ନେଇ ହାଜତରେ ପୂରେଇ ଦେବି ।

ଅହଲ୍ୟା ନୀରବରେ ଠିଆ ହୋଇଥିଲା । ସେ ଚିତ୍ରାଙ୍ଗଦାର ସବୁଠାରୁ ପୁରୁଣା ଚାକରାଣୀ ।

ଶେଷକୁ ଥିଲା ଡ୍ରାଇଭର ।

ଧୂର୍ଜଟବାବୁ ଏକ ତୀକ୍ଷ୍ଣ ଦୃଷ୍ଟି ଡ୍ରାଇଭରର ସମସ୍ତ ଅଙ୍ଗପ୍ରତ୍ୟଙ୍ଗରେ ବୁଲାଇ ଆଣିଲେ ।

: ତୁମ ନା ?

: ଛତ୍ରଧାରୀ ସିଂ ।

: କେତେ ଦିନ ହେବ ଏଠାରେ କାମ କରୁଚ ?

: ତିନି ବର୍ଷ ପୂରିଗଲା ହଜୁର ।

: ଚିତ୍ରାଙ୍ଗଦାର ମୃତ୍ୟୁ ସମ୍ବନ୍ଧରେ ତୁମେ କ'ଣ ଜାଣ ?

: ମୁଁ କିଛି ଜାଣେ ନାହିଁ ହଜୁର ।

: କାଲି କେତେବେଳେ ତମେ ଚିତ୍ରାଙ୍ଗଦାକୁ ଶେଷଥର ପାଇଁ ଗାଡ଼ିରେ ବସାଇ କେଉଁଠି ଛାଡ଼ିଥିଲ ?

: କାଲି ପାଞ୍ଚଟାବେଳେ ଷ୍ଟୁଡିଓରୁ ସିଧା ସେ ଘରକୁ ଫେରିଆସିଥିଲେ ।

: ସଙ୍ଗରେ ଆଉ କିଏ ଆସିଥିଲା ?

: ନାଇଁ ହଜୁର ?

ଫେରିଲାବେଳେ ଚିତ୍ରାଙ୍ଗଦା ମନରେ କୌଣସି ଦୁଃଖର ଛାୟା ତମେ ଦେଖିଥିଲ ?

: ନାଁ ହଜୁର । ସେ କାଲି ଫେରିଲାବେଳେ ବେଶ୍ ଖୁସି ଥିଲେ ।

: କିପରି ? ଧୂର୍ଜଟବାବୁ ସଜାଡ଼ି ହୋଇ ବସି ପଚାରିଲେ ।

: ମୋତେ କାଲି ସେ ମୋ' ସ୍ତ୍ରୀ କଥା ପଚାରୁଥିଲେ । କେତେ ବଡ଼, ବୟସ କେତେ । ମୋ' ସହିତ କିପରି ବ୍ୟବହାର କରେ । ମୋତେ ସେ କାଲି କୋଡ଼ିଏଟା ଟଙ୍କା ଦେଇଥିଲେ ହଜୁର, ସ୍ତ୍ରୀ ଲାଗି ଶାଢ଼ି କିଣି ପଠାଇବା ପାଇଁ ।

: ହୁଁ ତୁମେ ତା'ହେଲେ ଚିତ୍ରାଙ୍ଗଦାକୁ ଘରେ ଛାଡ଼ିଚ ପାଞ୍ଚଟାରୁ ସାଢ଼େ ପାଞ୍ଚଟା ଭିତରେ ।

: ଆଜ୍ଞା !

: ସେତେବେଳେ ତା' ମନରେ କୌଣସି ପ୍ରକାର ଦୁଃଖ ବା ଚିନ୍ତା ନ ଥିଲା ବୋଲି ତମର ଧାରଣା ।

: ହଜୁର ।

: ଆଚ୍ଛା, ତୁମେ ବର୍ତ୍ତମାନ ଯାଇପାର ।

ଛତ୍ରଧାରୀ ସିଂ ଗୋଟାଏ ସାଲ୍ୟୁଟ ବଜାଇ ସ୍ଥାନ ତ୍ୟାଗ କଲା ।

ଧୂର୍ଜଟବାବୁ ଖାତାରେ କ'ଣ ଲେଖିଲେ । ମୁହଁରେ ତାଙ୍କର ଚିନ୍ତାର ରେଖା ଫୁଟି ଉଠିଥିଲା । ବାହାରର କୋଳାହଳ ଆସି ଗୃହ ମଧ୍ୟରେ ପ୍ରବେଶ କରୁଥିଲା । ଭୁଜଙ୍ଗଧରବାବୁ ଘର ବାହାର ହେଉଥିଲେ । ସେ କେବଳ କ୍ୟାମେରା ଚଳେଇବାରେ ବ୍ୟସ୍ତ ଥିଲେ ।

ମୁଁ ଯାଇ ଧୂର୍ଜଟବାବୁଙ୍କ ସାମନାରେ ଗୋଟିଏ ଚେଆରରେ ବସିଲି । ପଚାରିଲି : ଚିତ୍ରାଙ୍ଗଦାର ଆତ୍ମହତ୍ୟା ମୂଳରେ କୌଣସି ରହସ୍ୟର ସନ୍ଧାନ ଆପଣ ପାଇଛନ୍ତି କି ?

ସେ ମୋ' ମୁହଁ ଉପରେ ମୁହୂର୍ତ୍ତେ ସ୍ଥିର ଦୃଷ୍ଟି ରଖି ମୋ' ହାତକୁ ଖଣ୍ଡିଏ କାଗଜ ବଢ଼ାଇ ଦେଇ କହିଲେ : ଚିତ୍ରାଙ୍ଗଦା ତା' ଆତ୍ମହତ୍ୟାର କାରଣ ଏଥିରେ ସ୍ପଷ୍ଟରୂପେ ଲିପିବଦ୍ଧ କରିଯାଇଛି ।

''ଲୋକେ କହୁଛନ୍ତି ସମଗ୍ର ଭାରତବର୍ଷ ମଧ୍ୟରେ ମୁଁ ଅନ୍ୟତମ ଶ୍ରେଷ୍ଠ ଚିତ୍ରତାରକା । ଏ ଗର୍ବ ଓ ଗୌରବବୋଧ ମୂଳରେ କେତେ ଯେ ଆନନ୍ଦ ଅଛି, ଯିଏ ମୋରି ପରି ସୌଭାଗ୍ୟ ଅର୍ଜ୍ଜନ କରିନାହିଁ, ସେ ବୁଝିପାରିବ ନାହିଁ । ମୁଁ ଆଜି ସମଗ୍ର ଭାରତବର୍ଷ ମଧ୍ୟରେ ଆଲୋଡ଼ନ ସୃଷ୍ଟି କରିଛି । ମୋ' ଘରେ ଚିତ୍ର ପ୍ରଯୋଜକ ଓ ଚିତ୍ର ନିର୍ଦ୍ଦେଶକମାନଙ୍କର ଭିଡ଼ ଅହରହ ଲାଗିରହିଛି । ତା'ଛଡ଼ା ଦେଶର ବହୁ ମାନ୍ୟଗଣ୍ୟ ଲୋକ ମୋ' ଘରକୁ ପ୍ରାୟ ଆସୁଚନ୍ତି । ପଦେ ମିଠା କଥା, ଟିକିଏ ସ୍ମିତହସ ଆଉ କେଇ ମୁହୂର୍ତ୍ତର ସଙ୍ଗ ସୁଖ ପାଇଁ ସେମାନେ ଅକାତରେ ଅପର୍ଯ୍ୟାପ୍ତ ଅର୍ଥ ବ୍ୟୟ କରିବାକୁ କୁଣ୍ଠାବୋଧ କରୁନାହାନ୍ତି । ମୋତେ ହସ ମାଡୁଛି ।

ଜୀବନର ପ୍ରାରମ୍ଭରେ, ଯେତେବେଳେ ମୁଠିଏ ଅନ୍ନର ପ୍ରୟୋଜନ ଥିଲା, ସେତେବେଳେ ହାତ ପତେଇ ମାଗୁଥିଲେ ମଧ୍ୟ କେହି ମୁହଁଟେକି ଚାହୁଁ ନ ଥିଲେ । ଏଇ ତ ସେଇ ଜୀବନ -! କିନ୍ତୁ ସେଦିନ ଆଉ ଆଜି ମଧ୍ୟରେ ତଫାତ୍ ବହୁତ । ଆକାଶ ପାତାଳ ଠାରୁ ଆହୁରି ବେଶୀ । ମଝିରେ ବା କେତେଟା ବର୍ଷ ! ଖୁବ୍ ବେଶୀ ହେଲେ ନଅ କିମ୍ବା ଦଶ ହେବ । ଏହି ଦଶବର୍ଷର ଅଭିଜ୍ଞତା ମୋ' ଜୀବନରେ ଏକ ଯୁଗ ସୃଷ୍ଟି କରିଛି । ଆଜି ମୋର ତୁଳନା କେବଳ ଜଣେ ସାମ୍ରାଜ୍ଞୀ ସହିତ କରାଯାଇପାରେ ।

ନିଜର ଏହି ଗୌରବବୋଧରେ ମୁଁ ହସିବି ନା କାନ୍ଦିବି ?

ଆଜି ଜୀବନର ମଧ୍ୟମ ସୋପାନରେ ପଦାର୍ପଣ କରି ଯେତେବେଳେ ପ୍ରଥମ ସୋପାନ କଥା ଅନୁଭବ କରେ, ସେତେବେଳେ ଆଖିଯୋଡ଼ିକ ଅଶ୍ରୁ ଛଳଛଳ ହୋଇଉଠେ, ଆଉ ଯେତେବେଳେ ତୃତୀୟ ସୋପାନ କଥା ଚିନ୍ତା କରେ ?

ଧୀରେ ଧୀରେ ଆଖି ଆଗରେ ଭାସିଉଠେ ଏକ ଝାପ୍‌ସା ଅନ୍ଧକାର । ସେଠାରେ କିଛି ସ୍ପଷ୍ଟ ନୁହେଁ, କିଛି ସ୍ଥାୟୀ ନୁହେଁ । କେବଳ ଢେଉ ଆଉ ଭଉଁରୀ ।

ପୁଣି ହସ ମାଡ଼େ । କାହିଁକି ତା'ହେଲେ ଧୀରେ ଧୀରେ ସେହି ଢେଉରେ ଭାସି ଭାସି ଭଉଁରୀରେ ପଡ଼ି ଆତ୍ମହତ୍ୟା କରିବାକୁ ଆଗେଇ ଯିବାକୁ ହେବ ? ମଣିଷ ଗରିବରୁ ଅମିର ହେଲେ ସୁଖ ଲାଗେ, କିନ୍ତୁ ଅମିରରୁ ଗରିବ ହେଲେ ଲାଜରେ ମରିଯାଏ ।

ମୁଁ ଦେଖୁଛି ଜୀବନର ଶୀର୍ଷ ସ୍ଥାନରେ ମୁଁ ଆସି ପହଞ୍ଚି ସାରିଛି । ଏହାପରେ ଧୀରେ ଧୀରେ ମୋତେ ତଳକୁ ଖସିବାକୁ ହେବ । ଏଇ ସମୟଟା କିନ୍ତୁ ମୋ' ଜୀବନର ଚରମ ସାଫଲ୍ୟମଣ୍ଡିତ । ଏହାପରେ, କାଲିଠାରୁ ହୁଏତ ବ୍ୟର୍ଥତାର ଚରମ ସୂତ୍ରପାତ ଆରମ୍ଭ ହୋଇଯିବ । ବ୍ୟର୍ଥତାର ବ୍ୟଥା ସହିବା ଅପେକ୍ଷା ସାର୍ଥକତାର ଶୀର୍ଷରେ ସବୁଦିନ ପାଇଁ ବସିରହିବାକୁ କିଏ ଚାହେନା ?

କିଏ କ'ଣ ଚାହେ, ନ ଚାହେ – ସେ ଚିନ୍ତା ମୋର କରିବାର ନୁହେଁ । କାରଣ ଅନ୍ୟର ଜୀବନଦର୍ଶନ ସହିତ ମୋ' ଜୀବନଦର୍ଶନର ଅମେଳ ସବୁଦିନ ରହିବ । ଆଜି ମୋର ଏହି ସାଫଲ୍ୟମଣ୍ଡିତ ମୁହୂର୍ତ୍ତକୁ ନଷ୍ଟ କରିଦେଲେ, ଆଉ ହୁଏତ ଫେରି ପାଇବି ନାହିଁ । ମୋର ଏହି ସିଦ୍ଧାନ୍ତ ମୋର୍ ଏକାନ୍ତ ନିଜସ୍ୱ । ତେଣୁ ଅନ୍ୟ କାହାରି ଉପରେ ମୋ' କୃତକର୍ମର ଦୋଷ ନଦି ନ ଦେଲେ ମୁଁ ଖୁସି ହେବି ।''

ଲେଖାଟି ପଢ଼ିସାରି ମୁଁ ଧୂର୍ଜଟବାବୁଙ୍କ ମୁହଁକୁ ଚାହିଁଲି । ସେ ଏତେବେଳ ଯାଏ ସ୍ଥିର ଦୃଷ୍ଟିରେ ମୋର ମୁଖଭଙ୍ଗୀ ହୁଏତ ଲକ୍ଷ୍ୟ କରୁଥିଲେ । ଧୂର୍ଜଟବାବୁ ଲେଖାଟି ହାତକୁ ନେଇ ପଚାରିଲେ : ଏହାକୁ ପଢ଼ି ଆପଣଙ୍କର କ'ଣ ଧାରଣା ଜନ୍ମିଲା ?

: ମନୋଭାବଟା ଖୁବ୍ ଗୋଳମାଳିଆ କିନ୍ତୁ । ମୁଁ ଉତ୍ତର ଦେଲି ।

: ଏଥିରୁ ଚିତ୍ରାଙ୍ଗଦାର ମୋଟିଭ୍‌ଟା ସ୍ପଷ୍ଟ ବୁଝାପଡୁ ନାହିଁ କି ?

: କିନ୍ତୁ ଆଉ ଗୋଟିଏ କଥା ଧୂର୍ଜଟବାବୁ ! ଏ ଲେଖାଟା ଯେ ଚିତ୍ରାଙ୍ଗଦାର ନିଜ ହାତଲେଖା, ଆପଣ ଜାଣିଲେ କିପରି ?

: ସେ ସମ୍ବନ୍ଧରେ ମୁଁ ନିଶ୍ଚିତ । ଚିତ୍ରାଙ୍ଗଦାର ଅନ୍ୟାନ୍ୟ ଲେଖା, ଡାଇରି ଓ କେତେକ ଚିଠିପତ୍ର ଜବତ୍ କରିଛି । ଆପଣ କୁହନ୍ତୁ ତ ଏଇ ଲେଖାରୁ ଚିତ୍ରାଙ୍ଗଦାର ମୋଟିଭ୍‌ଟା ସ୍ପଷ୍ଟ ବୁଝାପଡୁଛି ନା ନାହିଁ ?

ମୋତେ ଅବଶ୍ୟ ସେ ପ୍ରଶ୍ନର ଆଉ ଉତ୍ତର ଦେବାକୁ ପଡ଼ିଲା ନାହିଁ । ସରକାରୀ ଫଟୋଗ୍ରାଫର ଆସି ପହଞ୍ଚିବାରୁ ଧୂର୍ଜଟବାବୁ ଆସନରୁ ଉଠିଗଲେ । ମୁଁ ବି ରକ୍ଷା ପାଇଗଲି । କାରଣ ଧୂର୍ଜଟବାବୁଙ୍କ ମତକୁ ମୁଁ ସମର୍ଥନ କରିପାରୁ ନ ଥିଲି ।

ସମୟ ଯେତିକି ଯେତିକି ବଢୁଥିଲା, ଧୀରେ ଧୀରେ ଲୋକଗହଳ ସେତିକି ସେତିକି ବେଶୀ ହେଉଥିଲା । କୋଳାହଳ ବଢୁଥିଲା । ସ୍ଥାନୀୟ ଦୈନିକ ପତ୍ରିକାର ପ୍ରତିନିଧିମାନେ ଗୋଟିଏ ପରେ ଗୋଟିଏ ଆସି ଘଟଣା ସ୍ଥଳରେ ରୁଣ୍ଡ ହେଉଥିଲେ ।

ମୋ’ ମନରେ ପ୍ରତିକ୍ରିୟା ସୃଷ୍ଟି କରିଥିଲା ଚିତ୍ରାଙ୍ଗଦାର ସେହି ଲେଖା ଖଣ୍ଡିକ । ଜଣେ ଲୋକ ଆତ୍ମହତ୍ୟା କରିବା ପୂର୍ବରୁ ଶାନ୍ତ ମସ୍ତିଷ୍କରେ ଯେ ଏପରି ଲେଖା ଲେଖିପାରେ, ମୁଁ ତାହା ସମର୍ଥନ କରିପାରୁ ନ ଥିଲି । ଲେଖାଟି ଯେ କେହି ସାମାନ୍ୟ ବୁଦ୍ଧିସଂପନ୍ନ ଲୋକ ପଢ଼ିଲେ ଚିତ୍ରାଙ୍ଗଦାର ସେତେବେଳର ମନର ଅବସ୍ଥା ସହଜରେ ଅନୁମାନ କରିପାରିବ ।

ଭୁଜଙ୍ଗଧରବାବୁ ଆସି ମୋ’ ସାମ୍ନାରେ ଠିଆହୋଇ ପଡ଼ିଲେ । କହିଲେ : ଏଥର ଯିବା ଆସନ୍ତୁ । ମୋତେ ଚିତ୍ରାଙ୍ଗଦାର ରିପୋର୍ଟ ଶୀଘ୍ର ‘ଫିଲ୍ମଷ୍ଟାର’କୁ ପଠାଇବାକୁ ହେବ ।

ସେଠାରେ ଆଉ ବସିରହିବାକୁ ମୋତେ ମଧ୍ୟ ଭଲ ଲାଗୁ ନ ଥିଲା । ଭୁଜଙ୍ଗଧରବାବୁଙ୍କ ସଙ୍ଗରେ ଭିଡ଼ ଠେଲି ଠେଲି ବାହାରକୁ ବାହାରି ଗଲି ।

ଗାଡ଼ିରେ ବସି ଭୁଜଙ୍ଗଧରବାବୁ ମୋତେ ପଚାରିଲେ : ଚିତ୍ରାଙ୍ଗଦାର ଲେଖା ପଢ଼ିଲେ ?

: ହଁ ।

: କ’ଣ ଆପଣଙ୍କର ମନେ ହେଉଛି ?

: ମୁଁ କିଛି ଭାବିପାରୁ ନାହିଁ । ଯା’ ହେଉ ଆମର ସେ ସବୁ ଚିନ୍ତା କରି ବିଶେଷ ଲାଭ ନାହିଁ । ଚିତ୍ରାଙ୍ଗଦା ଆତ୍ମହତ୍ୟା କରିବା ପୂର୍ବରୁ ତା’ର ଅନ୍ତତଃ ଏତିକି ଭାବିବାର ଥିଲା ଯେ, ଯେଉଁମାନେ ତା’ ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରି, ବସିଛନ୍ତି, ସେମାନଙ୍କ ବେକରେ ତଣ୍ଟିଆ ମାରି ମଝିଦରିଆକୁ ଠେଲିଦେବା ଉଚିତ ହେବ କି ନାହିଁ ।

: ହି ହି ହି । ବହୁ ସମୟ ପରେ ଭୁଜଙ୍ଗଧରବାବୁ ତାଙ୍କ ସ୍ୱଭାବ ସୁଲଭ ହସ ଖଣ୍ଡିକ ହସି ହସି କହିଲେ, ଚିତ୍ରାଙ୍ଗଦା ମର୍ତ୍ତ୍ୟର ମାନବୀ । ଏତେ କଥା ଚିନ୍ତା କରି ସମସ୍ତଙ୍କ ଋଣ ପରିଶୋଧ କରି ଆତ୍ମହତ୍ୟା କରିଥିଲେ ତା’ ପାଇଁ ସ୍ୱର୍ଗରୁ ପୁଷ୍ପକ ବିମାନ ଧରି ଦେବଗଣମାନେ ଛୁଟି ଆସିଥାଆନ୍ତେ ।

ଗାଡ଼ି ଠିଆହେଲା ଯାଇ ଗୋଟିଏ ରେଷ୍ଟୁରେଣ୍ଟ ଦୁଆରେ । ଭୁଜଙ୍ଗଧର ବାବୁ ତଳକୁ ଓହ୍ଲେଇ କହିଲେ : ଆସନ୍ତୁ ଆଜ୍ଞା ! ଏପର୍ଯ୍ୟନ୍ତ ପାଣି ଟୋପାଏ ବି ଛୁଆଁ ହୋଇନାହିଁ । ପେଟ କେଁ କେଁ ହେଉଛି ।

ମୁଁ ଓହ୍ଲେଇ ଗଲି ।

ଭୁଜଙ୍ଗଧରବାବୁ ଟ୍ରାନ୍‌ଜିଷ୍ଟରର ଚାବି ମୋଡ଼ିଦେଲେ । ରେଡିଓ ସିଲୋନରୁ ସିନେମା ସଙ୍ଗୀତ ଭାସିଆସୁଥିଲା ।

ରେଷ୍ଟୁରେଣ୍ଟର ଟେବୁଲ ଉପରେ ଟ୍ରାନ୍‌ଜିଷ୍ଟରଟା ରଖିଦେଇ ସେଦିନର ଖବର କାଗଜଟାକୁ ଖେଳେଇ ଗଲେ । ଶେଷ ପୃଷ୍ଠାରେ ସିନେମା ସମାଚାରର ଗୋଟାଏ ସମ୍ବାଦ ଉପରେ ତାଙ୍କର ଦୃଷ୍ଟି ଅଟକିଗଲା । ସମ୍ବାଦଟା ଶେଷ କରି ସେ ଏକପ୍ରକାର ଚିତ୍କାର କରି ଉଠିଲେ । ଦେଖନ୍ତୁ, ଦେଖନ୍ତୁ ଆଜ୍ଞା । ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଆଙ୍ଗୁଳି ରଖି ଖବର କାଗଜଟା ମୋ' ଆଡ଼କୁ ବଢ଼ାଇ ଦେଲେ ।

ସମ୍ବାଦଟି କ୍ଷୁଦ୍ର । ଚିତ୍ରାଙ୍ଗଦାର ଏକ ଫିଲ୍ମ କମ୍ପାନୀ ସହିତ ତାଙ୍କର ଆଗାମୀ ଚିତ୍ରର ନାୟିକା ଭୂମିକାରେ ଅଭିନୟ କରିବା ପାଇଁ ଚୁକ୍ତି କରା ହୋଇଥିଲା । କିନ୍ତୁ ଚିତ୍ରାଙ୍ଗଦା ସ୍ଥାନରେ ସେମାନେ ଅନ୍ୟ ଅଭିନେତ୍ରୀକୁ ନାୟିକା ପାଇଁ ବାଛିଛନ୍ତି । କାରଣ ସ୍ୱରୂପ ସେମାନେ ଦର୍ଶାଇଛନ୍ତି ଯେ, ଚିତ୍ରାଙ୍ଗଦାଙ୍କ ଅସଦ୍ ଆଚରଣ ପାଇଁ ସେମାନେ ଏହା କରିବାକୁ ବାଧ୍ୟ ହୋଇଛନ୍ତି ।

: ପଢ଼ିଲେ ତ ଆଜ୍ଞା ? ଚିତ୍ରାଙ୍ଗଦା ଠିକ୍ ଅନୁମାନ କରିପାରିଥିଲା । କାଲିଠାରୁ ଯେ ତା'ର ପତନ ଆରମ୍ଭ ହେବ, ସ୍ପଷ୍ଟ ଭାବରେ ତାହା ସେ ଚିଠିରେ ଉଲ୍ଲେଖ କରିଯାଇଛି । ପିମ୍ପୁଡ଼ି ଗୁଖାରେ ଚଢ଼ିଲେ ସ୍ୱର୍ଗକୁ ଉଠିଲା ପରି ମନେକରେ । ଏମାନେ ସମସ୍ତେ ସେଇଆ ଆଜ୍ଞା । ଦୁଇ ଦିନର ଅହମିକା ନେଇ ଏମାନେ ଧରାକୁ ସରା ଜ୍ଞାନ କରନ୍ତି । ଆଉ ତା'ର ପରିଣତି ଦେଖିଲେ ତ ଆଖି ଆଗରେ...

ମୁଁ କିନ୍ତୁ ଚିତ୍ରାଙ୍ଗଦାର ଝୁଲନ୍ତ ଦେହଟା ଦେଖିବା ପରଠାରୁ କିପରି ଅନ୍ୟମନସ୍କ ହୋଇପଡ଼ିଥିଲି । ରହି ରହି ଚିତ୍ରାଙ୍ଗଦାର ସେହି ଲେଖାଟା ମୋ' ଆଖି ଆଗରେ ଭାସି ଉଠୁଥିଲା । ଗୋଟାଏ ଲୋକ ଆତ୍ମହତ୍ୟା କରିବାକୁ ସ୍ଥିର କରିଛି, ସେ ବୁଝୁଛି ଆଉ କିଛି ସମୟ ପରେ ତା'ର ଏହି ସୁନ୍ଦର ସଂସାରରୁ ସମସ୍ତ ମାୟା ତୁଟିଯିବ । ଅଥଚ ସେତେବେଳେ ମନଟାକୁ ସେ ସ୍ଥିର ରଖି ଏପରି ନିର୍ଭୁଲ ଭାବରେ ଜୀବନଦର୍ଶନ ବ୍ୟାଖ୍ୟା କରିପାରୁଛି ?

ଭୁଜଙ୍ଗଧରବାବୁ କହିଲେ : କଫି ପିଅନ୍ତୁ ଆଜ୍ଞା । ଏତେ ଚିନ୍ତିତ ହୋଇପଡ଼ିଲେ ଚଳିବ ନାହିଁ । ଚିତ୍ରାଙ୍ଗଦାକୁ ହରାଇ ସବୁଠାରୁ ମୁଁ ବେଶି କ୍ଷତିଗ୍ରସ୍ତ ହେଲି । କାରଣ ଦୀର୍ଘ ଦଶବର୍ଷ ହେବ 'ଫିଲ୍ମାଷ୍ଟାର'ରେ ମୁଁ ତାକୁ ହିଁ ବିକି ଭାଙ୍ଗି ଖାଉଥିଲି । ଅନ୍ୟମାନେ ତ ଗୋଟିଏ ଗୋଟିଏ ଚିତ୍ର ପାଇଁ କଣ୍ଟ୍ରାକ୍ଟ କରିଥିବେ, ଆଉ ମୁଁ ?

ହଠାତ୍ ମୁଁ ଉଠି ଠିଆହୋଇ ପଡ଼ିଲି ।

ଭୁଜଙ୍ଗଧରବାବୁ ବିସ୍ମୟରେ ମୋ' ମୁହଁକୁ ଚାହିଁଲେ ।

: ମୁଁ ଟିକିଏ ଆସୁଛି ଆଜ୍ଞା । ଗୋଟାଏ ଜରୁରୀ କଥା ମନେପଡ଼ିଲା । ମ୍ୟାନେଜରଙ୍କ ରୁମରୁ ଜଣକୁ ଫୋନ କରି ଫେରିଆସିବି ।

ଭୁଜଙ୍ଗଧରବାବୁ କିଛି କହିଲେ ନାହିଁ । ଟ୍ରାନ୍‌ଜିଷ୍ଟର ଉଠେଇ ନେଇ କେନ୍ଦ୍ର ବଦଳେଇବା ପାଇଁ ଚାବି ମୋଡ଼ିବାରେ ଲାଗିଲେ ।

ମୋର ମନେପଡ଼ିଲା ସତ୍ୟବ୍ରତ ମହାପାତ୍ର କଥା । ଦୁଇଦିନ ଆଗରୁ ସେ ଆମ ସୁଟିଂ ଦେଖିବାକୁ ଆସିଥିଲା । ଅବଶ୍ୟ ମୋରି ଡାକରେ । ସତ୍ୟବ୍ରତ ସହ ମୋର ଘନିଷ୍ଠତା ବହୁ ଦିନର । ପଢ଼ିଲାବେଳେ ଏକା ସଙ୍ଗରେ ଆମେ ଦୁଇତିନିବର୍ଷ ଗୋଟିଏ ହଷ୍ଟେଲରେ ଥିଲୁ । ସତ୍ୟବ୍ରତ ଅବଶ୍ୟ ମୋ'ଠାରୁ ବର୍ଷେ ଜୁନିଅର ଥିଲା । ତା' ବୋଲି ବନ୍ଧୁତ୍ୱରେ କୌଣସି ପ୍ରକାର ଜୁନିଅରିଟି ବା ସିନିଅରିଟିର ମାପଚୁପ ନ ଥିଲା । ତା'ପରେ କର୍ମକ୍ଷେତ୍ରରେ ଆମେ ବହୁବର୍ଷ ଧରି ଅଲଗା ହୋଇ ରହିଥିଲୁ । କାଲି ତା' ସହିତ ମୋର ଦେଖା ପ୍ରାୟ ତିନିଚାରି ବର୍ଷ ପରେ । ସେ ଗୋଟାଏ କ'ଣ କେସ୍ ନେଇ କଲିକତା ଆସିଥିଲା । ହଠାତ୍ ଚୌରଙ୍ଗୀରେ ଦୁହେଁ ଦୁହିଁଙ୍କୁ ଭେଟିଲୁ । କାହାରି ତୁଣ୍ଡରେ ଭାଷା ନ ଥିଲା ।

ଟେଲିଫୋନ୍‌ର ଡାଏଲ ବୁଲେଇ ସତ୍ୟବ୍ରତ ରହୁଥିବା ହୋଟେଲ ସହିତ ସଂଯୋଗ ସ୍ଥାପନ କଲି । ସେତେବେଳେ ଯାଏ ସେ ବିଛଣାରୁ ଉଠି ନ ଥିଲା । ମୋ'ଠାରୁ ଏତେ ସକାଳୁ ଫୋନ୍ ପାଇ ଚମକିଲା ପରି ପଚାରିଲା : ଖବର କ'ଣ ?

କହିଲି : ତୁ କଟକ କେବେ ଫେରୁଛୁ ?

: ଆଜି ।

: ଯଦି ଦୁଇଦିନ ଆଉ ରହିବାକୁ ହୁଏ, କିଛି ଅସୁବିଧା ହେବ ?

: ନା, ଅସୁବିଧା ନୁହେଁ ଯେ, କିନ୍ତୁ ଅଯଥାରେ ରହି ଲାଭ କ'ଣ ?

: ମୋର ତୋ' ସହିତ ଗୋଟାଏ ଜରୁରୀ କାମ ଅଛି ।

: ମୋ' ସହିତ ତୋ'ର ଜରୁରୀ କାମ ମାନେ ? ତୋ' ଛବିରେ ମୋତେ ହିରୋ ହେବାକୁ ପଡ଼ିବ ନା କ'ଣ ?

: ନା ନା ହିରୋ ନୁହେଁ, ହିରୋଇନ୍ ହେବାକୁ ହେବ, ପାରିବୁ ତ ?

: ସେ ତ ଆହୁରି ଚମତ୍କାର । ଉଚ୍ଛଳ ହାସ୍ୟଧ୍ୱନି ମୋ' କାନରେ ପ୍ରତିଧ୍ୱନିତ ହେଲା, କିନ୍ତୁ କ'ଣ ଦରକାର ମୋତେ ଖୋଲାଖୋଲି ଭାବରେ କହ ।

: ତୋ'ରି ଫେଭରିଟି ସବ୍‌ଜେକ୍ଟ । ମାନେ ଖୁଣ୍, ନା ନା ଆତ୍ମହତ୍ୟା । ଆମ ହିରୋଇନ୍ ଚିତ୍ରାଙ୍ଗଦା କାଲି ରାତିରେ ଆତ୍ମହତ୍ୟା କରିଛି ।

: ମୁହୂର୍ତ୍ତକ ପାଇଁ ଅପର ପ୍ରାନ୍ତରୁ କୌଣସି ଉତ୍ତର ମିଳିଲା ନାହିଁ ।

: ହ୍ୟାଲୋ, ସତ୍ୟ ! ଫୋନଟା ଛାଡ଼ିଦେଲୁ ନା କ'ଣ ?

: ନା ନା ଧରିଛି, କହିଯା' ।

: ତୁ ଏଇ ମୁହୂର୍ତ୍ତରେ ଟିକିଏ ଆସି ପାରିବୁ ?

: ଲାଭ ?

: ଲାସ୍‌ଟା ତା'ହେଲେ ଦେଖିବାକୁ ପାଆନ୍ତୁ ।

: କିନ୍ତୁ ସୁଇସାଇଡ୍ କେସ୍‌ରେ ମୁଁ କ'ଣ କରିବି ?

: ମୋର କାହିଁକି ସନ୍ଦେହ ହେଉଛି ।

: ପୋଲିସ୍‌ର ଡିସିସନ କ'ଣ ?

: ଆତ୍ମହତ୍ୟା ସପକ୍ଷରେ ଯିବ ।

: ତା'ହେଲେ କ'ଣ ନିତାନ୍ତ ଯିବାକୁ କହୁଚୁ ।

: ହଁ ଭାଇ । ଶୁଣ, ମୁଁ ଏଇ ମୁହୂର୍ତ୍ତରେ ଡିଲକ୍ସ ରେଷ୍ଟୁରେଣ୍ଟରେ ଅଛି । ମୋ' ସହିତ ଭୁଜଙ୍ଗଧରବାବୁ ଅଛନ୍ତି ।

: କାଲି ତୁ ତାଙ୍କ ସହିତ ମୋ'ର ପରିଚୟ କରାଇ ଦେଇଥିଲ୍ ନା ?

: ତା'ହେଲେ ସୁବିଧା ହୋଇଛି, ତୁ ଡିଲ୍‌କ୍ସ ହୋଟେଲକୁ ଚାଲିଆସିବୁ । ମୁଁ ତତେ ଓଡ଼ିଶାର କୌଣସି ଦୈନିକ ପତ୍ରିକାର ପ୍ରତିନିଧି ବୋଲି ତାଙ୍କ ସହିତ ପରିଚୟ କରାଇଦେବି । ବୁଝିଲୁ ? ଶୀଘ୍ର ଚାଲିଆ' ।

: ଆଚ୍ଛା ! ଏଇ ଦଶରୁ ପନ୍ଦର ମିନିଟ୍ ଭିତରେ ଯାଇ ମୁଁ ପହଞ୍ଚିବି ।

: ଆଉ ଗୋଟାଏ କଥା ।

: କ'ଣ ?

ତୁ ଏ କେସ୍ ତଦନ୍ତ କରୁଚୁ ବୋଲି କୌଣସି ପ୍ରକାର ସୂଚନା କାହାରିକୁ ଦେବୁ ନାହିଁ ।

: ଆଚ୍ଛା, ଆଚ୍ଛା ।

ମୁଁ ରିସିଭରଟା ରଖିଦେଇ ଯଥା ସ୍ଥାନକୁ ଫେରିଆସି ଦେଖିଲି ଭୁଜଙ୍ଗଧର ବାବୁ ଟେବୁଲ ଉପରେ ମୁଣ୍ଡ ରଖି ଆଖିବୁଜି ଶୋଇପଡ଼ିଲେଣି ।

ଶେଷରେ ପୋଲିସ୍ ଇନିସ୍ପେକ୍ଟର ଧୂର୍ଜଟ ତାଲୁକଦାର ଚିତ୍ରାଙ୍ଗଦାର ମୃତ ଦେହଟାକୁ ମଇନା ତଦନ୍ତ ପାଇଁ ପଠାଇ ଦେଲେ ।

ଦିନ ସେତେବେଳକୁ ଏଗାରଟା ।

ରାସ୍ତାର ଜନଗହଳ ଏକ ଦର୍ଶନୀୟ ବ୍ୟାପାର ହୋଇଉଠିଥିଲା । ସେ ରାସ୍ତାରେ ଗାଡ଼ିଘୋଡ଼ା ଯାତାୟତ ସଂପୂର୍ଣ୍ଣ ରୂପେ ବନ୍ଦ ହୋଇଯାଇଥିଲା । କେବଳ ଉତ୍ସୁକ ଜନତା ଆକାଶକୁ ଚାହିଁଲା ପରି ଉପରକୁ ଅନାଇ ଠିଆ ହୋଇଥିଲେ ।

ସମସ୍ତ କାର୍ଯ୍ୟ ଶେଷକରି ସାମ୍ବାଦିକମାନଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଦେଇ ଧୂର୍ଜଟବାବୁ ଉଠିଲାବେଳକୁ ଆହୁରି ଅଧଘଣ୍ଟା ଡେରି ହୋଇଗଲା । ସେ ମନେ ମନେ ସିଦ୍ଧାନ୍ତ ଗ୍ରହଣ କରିଥିଲେ, ଚିତ୍ରାଙ୍ଗଦା ନିଶ୍ଚୟ ଆତ୍ମହତ୍ୟା କରିଛି । ଧୂର୍ଜଟବାବୁଙ୍କର ଖାଲି ଗୋଟିଏ ସନ୍ଦେହ ରହିଲା, ପୋଷ୍ଟମର୍ଟମ୍‌ରୁ ଯଦି କିଛି ବାହାରେ, ତା'ହେଲେ ହୁଏତ କେସ୍‌ଟା ଅନ୍ୟ ପଥରେ ପରିଚାଳିତ ହେବ, ତା' ନହେଲେ ତାଙ୍କ ସିଦ୍ଧାନ୍ତ ସେ ବଜାୟ ରଖିବେ ।

ଧୂର୍ଜଟବାବୁ ଉଠି ଠିଆହେଲେ । ମୁଁ ସେତେବେଳକୁ ଚିତ୍ରାଙ୍ଗଦାର ଲେଖା ଖଣ୍ଡିକ କପି କରୁଥିଲି । ସେଥିପାଇଁ ଧୂର୍ଜଟବାବୁଙ୍କୁ ଆହୁରି ପାଞ୍ଚସାତ ମିନିଟ୍ ଅପେକ୍ଷା କରିବାକୁ ପଡ଼ିଲା । ଅବଶ୍ୟ ତାଙ୍କ ମୁହଁରେ ସାମାନ୍ୟ ବିରକ୍ତିର ଭାବ ମୁଁ ଲକ୍ଷ୍ୟ କରିଥିଲି ।

ସତ୍ୟବ୍ରତ ତା' ଶିକାରୀ ଆଖି ଦୁଇଟା ଘରର ଚାରିଆଡ଼େ ବୁଲେଇ ନିଜେ ବି ବୁଲୁଥିଲା ଏବଂ ବିଭିନ୍ନ ଚିତ୍ର ପ୍ରଯୋଜକ, ଚିତ୍ର ନିର୍ଦ୍ଦେଶକ ଓ ସଙ୍ଗୀତ ନିର୍ଦ୍ଦେଶକମାନଙ୍କ ସହିତ କଥାବାର୍ତ୍ତା କରୁଥିଲା ।

ତା' ହାତରେ ଥିଲା ଖଣ୍ଡିଏ ସର୍ଟହ୍ୟାଣ୍ଡ ନୋଟବୁକ୍ । ଆଖିରେ ତୀକ୍ଷ୍ଣ ଅନୁସନ୍ଧିତ୍ସା, ଆଉ ମନରେ ଥିଲା ରହସ୍ୟଭେଦର ସଂକଳ୍ପ ।

ଚିତ୍ରାଙ୍ଗଦାକୁ ଗୃହରୁ ବାହାର କରି ନେଇଯିବା ପରେ ସତ୍ୟବ୍ରତ ମୋ' ପାଖକୁ ଫେରିଆସିଲା । ଧୂର୍ଜଟବାବୁଙ୍କୁ ଚାହିଁ ପଚାରିଲା : ଆପଣଙ୍କର ବୋଧହୁଏ ସବୁ କାର୍ଯ୍ୟ ଶେଷ ହୋଇଛି ?

: ହଁ । ଯଥାସମ୍ଭବ ସଂଯତ ସ୍ୱରରେ ଧୂର୍ଜଟବାବୁ କହିଲେ ।

: ମୋର ଗୋଟିଏ ପ୍ରଶ୍ନ ଆଜ୍ଞା, ଆଶା କରୁଛି କିଛି ମନେକରିବେ ନାହିଁ । ଚିତ୍ରାଙ୍ଗଦାର ଆତ୍ମୀୟସ୍ୱଜନ କିଏ କେଉଁଠି ଅଛନ୍ତି, ସେମାନଙ୍କର କିଛି ଖବର ପାଇଛନ୍ତି ?

ଧୂର୍ଜଟବାବୁ ହସିବାକୁ ଚେଷ୍ଟା କରି ଗମ୍ଭୀର ହୋଇଗଲେ । କହିଲେ ପୋଲିସ୍ ଚାକିରରେ ମୋର ଦଶବର୍ଷ ଅତିବାହିତ ହୋଇଗଲାଣି ।

କ୍ଷମା କରିବେ ଧୂର୍ଜଟବାବୁ ! ଆପଣଙ୍କର ସମ୍ମାନ ହାନିକର କୌଣସି କଥା କହୁନାହିଁ କିମ୍ବା ଆପଣଙ୍କୁ ପରିହାସ କରୁନାହିଁ । ଚିତ୍ରାଙ୍ଗଦାର ମିତ୍ରବିନ୍ଦା ନାମରେ ଗୋଟିଏ ଭଉଣୀ ଅଛି, ଜାଣନ୍ତି ?

ମୁଁ ସତ୍ୟବ୍ରତ ମୁହଁକୁ ବିସ୍ମିତ ହୋଇ ଅନାଇ ରହିଲି । ଧୂର୍ଜଟବାବୁଙ୍କ ମୁହଁରେ କୌଣସି ପରିବର୍ତ୍ତନର ଲକ୍ଷଣ ଦେଖିଲି ନାହିଁ । ସେ ଗମ୍ଭୀର ସ୍ୱରରେ କହିଲେ : ଆପଣ ଭୁଲ୍ ସମ୍ବାଦ ପାଇଛନ୍ତି, ଚିତ୍ରାଙ୍ଗଦାର ତିନି କୁଳରେ କେହି ନାହିଁ ।

: ଆପଣଙ୍କର ଏ ସଂବାଦ ସତ୍ୟ ନୁହେଁ ଧୂର୍ଜଟବାବୁ । ମିତ୍ରବିନ୍ଦା ହୁଏତ ଏଠାରେ ଆସି ଯେକୌଣସି ମୁହୂର୍ତ୍ତରେ ଉପସ୍ଥିତ ହୋଇପାରେ ଏବଂ ଚିତ୍ରାଙ୍ଗଦାର ସେ ହେଉଛି ଏକମାତ୍ର ଉତ୍ତରାଧିକାରିଣୀ ।

ମୁଁ ଆଶ୍ଚର୍ଯ୍ୟ ହୋଇ ସତ୍ୟବ୍ରତ ମୁହଁକୁ ଚାହିଁଥିଲି । ଧୂର୍ଜଟବାବୁ ମୋ' ହାତରୁ ଚିତ୍ରାଙ୍ଗଦାର ହାତଲେଖା ଖଣ୍ଡିକ ନେଇ ଉଠିବାର ଉଦ୍ୟମ କରୁଥିଲେ । ହୁଏତ ସତ୍ୟବ୍ରତର କଥା ଉପରେ ସେ ଅଳ୍ପ ଟିକିଏ ଗୁରୁତ୍ୱ ଦେବାକୁ ମଧ୍ୟ କୁଣ୍ଠାବୋଧ କରୁଥିଲେ । ହଠାତ୍ ସେଇ ମୁହୂର୍ତ୍ତରେ ଗୃହ ମଧ୍ୟରେ ଝଡ଼ ବେଗରେ ପ୍ରବେଶ କଲେ ଜଣେ ଭଦ୍ରମହିଳା ।

ଆମେ ସମସ୍ତେ ତାଙ୍କ ଆଡ଼େ ସ୍ତବ୍ଧ ହୋଇ ଅନାଇ ରହିଲୁ । ଏପରିକି ଧୂର୍ଜଟବାବୁଙ୍କର ଆଖିଯୋଡ଼ାକରେ ପଲକ ପଡ଼ିଲା ନାହିଁ ।

: ମୋ' ନା ମିତ୍ରବିନ୍ଦା । ଚିତ୍ରାଙ୍ଗଦାର ସାନ ଭଉଣୀ ।

ଚିତ୍ରାଙ୍ଗଦା ଆଉ ମିତ୍ରବିନ୍ଦା ମଧ୍ୟରେ ଯଥେଷ୍ଟ ସାମଞ୍ଜସ୍ୟ ପରିଲକ୍ଷିତ ହେଉଥିଲା । ଚିତ୍ରାଙ୍ଗଦା ଆଉ ମିତ୍ରବିନ୍ଦାକୁ ଏକାସଂଗରେ ଠିଆକଲେ ଯେକୌଣସି ଲୋକ କହିଦେବ ଯେ ଏମାନେ ଏକା ମା' ପେଟର ଦୁଇ ଭଉଣୀ । କିନ୍ତୁ ଚିତ୍ରାଙ୍ଗଦାର ଉଚ୍ଚତା ଠାରୁ ମିତ୍ରବିନ୍ଦା ପ୍ରାୟ ତିନି ଚାରି ଇଞ୍ଚି କମ୍ ଜଣା ପଡୁଥିଲା ।

ସେଇ ମୁହୂର୍ତ୍ତରେ ଭୁଜଙ୍ଗଧରବାବୁ ଛୁଟିଆସି ମିତ୍ରବିନ୍ଦାର ଫଟୋ ଉଠାଇବାକୁ ଆରମ୍ଭ କରିଦେଲେ ।

ଧୂର୍ଜଟବାବୁ କିଛି ସମୟ ମିତ୍ରବିନ୍ଦା ମୁହଁକୁ ଚାହିଁରହି କହିଲେ : ତମ ନା ମିତ୍ରବିନ୍ଦା, ତମେ ଚିତ୍ରାଙ୍ଗଦାର ସାନଭଉଣୀ, କିନ୍ତୁ ପ୍ରମାଣ ।

: ପ୍ରମାଣ କ'ଣ ମୁଁ ନିଜେ ନୁହେଁ ? ମିତ୍ରବିନ୍ଦା କହିଲା ।

: ନା, ସେପରି ହୁଏନାହିଁ । ତୁମେ ଯେ ଚିତ୍ରାଙ୍ଗଦାର ସମ୍ପତ୍ତି ଲୋଭରେ ଆସିନାହଁ, ତାହା ଆମେ ଜାଣିବୁ କିପରି ? ତା'ଛଡ଼ା ତମକୁ ଏଠାରେ କେହି ଚିହ୍ନନ୍ତି ନାହିଁ, ଖାଲି ସେତିକି ନୁହେଁ ତମର ଅସ୍ତିତ୍ୱ ସମ୍ବନ୍ଧରେ ଚିତ୍ରାଙ୍ଗଦାର କୌଣସି କାଗଜପତ୍ରରେ ସ୍ୱୀକୃତି ମଧ୍ୟ ନାହିଁ ।

: ମୋର ଗୋଟାଏ ଅନୁରୋଧ ଇନିସ୍ପେକ୍ଟର ସାହେବ, ମୁଁ ଏଠାକୁ ଆସିନାହିଁ ଚିତ୍ରାଙ୍ଗଦାର ସାନଭଉଣୀ ରୂପେ ଆପଣଙ୍କଠାରୁ ସ୍ୱୀକୃତି ଆଦାୟ କରିବା ପାଇଁ । ମୁଁ କେବଳ ଆସିଛି ଏତିକି କହିବାକୁ ଯେ ମୋର ଭଉଣୀ ଚିତ୍ରାଙ୍ଗଦା ଆତ୍ମହତ୍ୟା କରିନାହିଁ, ତାକୁ କେହି ହତ୍ୟା କରିଛି ।

: ମାନେ ? ଧୂର୍ଜଟବାବୁ ପୁଣି ଚେଆରରେ ବସିଲେ । ତାଙ୍କ ଦେହ ମନରେ ବିରକ୍ତିର ଭାବ ପୁରା ମାତ୍ରାରେ ଫୁଟିଉଠିଥିଲା ।

: ମାନେ ହେଉଚି ମୁଁ କାଲି ପ୍ରାୟ ରାତି ଏଗାରଟା ଯାଏ ଅପା ସହିତ କଥାବାର୍ତ୍ତା କରିଥିଲି । ତା' କଥାବାର୍ତ୍ତାରୁ ଏପରି କୌଣସି ଅସଂଗତ ଶବ୍ଦର ଆଭାସ ପାଇ ନଥିଲି, ଯଦ୍ଦାରା ସେ ଆତ୍ମହତ୍ୟା କରିପାରେ ।

: ହୁଁ ତମେ ଏଇ ପ୍ରମାଣ ଧରି ଆସିଚ ଚିତ୍ରାଙ୍ଗଦାର ମୃତ୍ୟୁକୁ ହତ୍ୟାରୂପେ ପ୍ରମାଣିତ କରିବା ପାଇଁ !! କାଲି ତମର ଚିତ୍ରାଙ୍ଗଦା ସହିତ ରାତି ଏଗାରଟାରେ କେଉଁଠି ଦେଖା ହୋଇଥିଲା ?

ଧୂର୍ଜଟବାବୁଙ୍କ ସ୍ୱରରେ ପୋଲିସ୍ ସୁଲଭ ଗାମ୍ଭୀର୍ଯ୍ୟ ଫୁଟିଆସୁଥିଲା ।

: ଫୋନ୍‌ରେ । କାଲି ସାଢ଼େ ଦଶଟାରୁ ଏଗାରଟା ଯାଏ ଆମେ ଫୋନ୍‌ରେ କଥା ହେଉଥିଲୁ ।

ଏଥର ଧୂର୍ଜଟବାବୁ ହସିଉଠିଲେ । କହିଲେ : ମଣିଷର ମନ ସମ୍ବନ୍ଧରେ ତମର ଅଭିଜ୍ଞତା ଢେର କମ୍ । ଚିତ୍ରାଙ୍ଗଦାର ହାତଲେଖା ସହିତ ତମର ପରିଚୟ ଅଛି ?

: ଅଛି ଏବଂ ଅପାର ହାତଲେଖା ହିଁ ମୋତେ ତା'ର ସାନ ଭଉଣୀ ରୂପେ ପରିଚୟ କରାଇବାର ଏକମାତ୍ର ସାକ୍ଷୀ ହେବ ।

: କିପରି ?

: ମୁଁ ଯେ ଚିତ୍ରାଙ୍ଗଦା ଦେବୀଙ୍କର ସାନ ଭଉଣୀ, ଏ କଥା ଆଜି ପୃଥିବୀର କୌଣସି ଜୀବିତ ବ୍ୟକ୍ତି ପ୍ରମାଣିତ କରିପାରିବ ନାହିଁ । କିନ୍ତୁ ମୁଁ ବାହାରେ ଥିଲାବେଳେ ଅପା ମୋ' ପାଖକୁ ବରାବର ଚିଠି ଲେଖେ, ସେହି ଚିଠିଗୁଡ଼ିକ ହିଁ ମୋର ଏକମାତ୍ର ସମ୍ବଳ ।

ଧୂର୍ଜଟବାବୁ ଅବାକ୍ ହୋଇ ସତ୍ୟବ୍ରତ ଓ ମୋ' ମୁହଁକୁ ଚାହିଁଲେ । ମୋତେ ମଧ୍ୟ ମିତ୍ରବିନ୍ଦାର କଥାଗୁଡ଼ାକ କିପରି ଅସଂଗତ ଲାଗୁଥିଲା ।

ସତ୍ୟବ୍ରତ ପଚାରିଲା : ଆପଣ ରୁହନ୍ତି କେଉଁଠି ?

: ଏଇ କଲିକତାରେ ।

: ଏତେ ପାଖରେ ଥାଇ ମଧ୍ୟ ଭଉଣୀ ପାଖରେ ରହୁ ନ ଥିଲେ କାହିଁକି ?

: ଅପା ମୋତେ ଭାରି ଭଲପାଏ । ସେଇଥିପାଇଁ ସେ ମୋ' ପାଇଁ ଏପରି ବ୍ୟବସ୍ଥା କରିଥିଲା ।

ମୁଁ ଆହୁରି ଅବାକ୍ ହୋଇଗଲି । ଯିଏ ଯାହାକୁ ଏତେ ଭଲପାଏ, ତାକୁ ଦୂରେଇ ରଖିବାର ଅଭିସନ୍ଧି କ'ଣ ଥାଇପାରେ ?

ସତ୍ୟବ୍ରତ ଆଉ କିଛି ପଚାରିବା ଆଗରୁ ଧୂର୍ଜଟବାବୁ ଚିତ୍ରାଙ୍ଗଦାର ହାତଲେଖା କାଗଜ ଖଣ୍ଡିକ ମିତ୍ରବିନ୍ଦା ହାତକୁ ବଢ଼ାଇ ଦେଲେ । ସେ ବୋଧହୁଏ ଖୁବ୍ ବିବ୍ରତ ହୋଇପଡ଼ିଥିଲେ, ସେଇଥିପାଇଁ କୌଣସି ପ୍ରକାର ଘଟଣାଟାକୁ ବଡ଼ କରିବାର ଆଗ୍ରହ ତାଙ୍କର ନ ଥିଲା । ଯେତେ ସଂକ୍ଷିପ୍ତରେ କାର୍ଯ୍ୟ ଶେଷ ହୁଏ ସେଇଥିପାଇଁ ସେ ଚେଷ୍ଟା କରୁଥିଲେ ।

ମିତ୍ରବିନ୍ଦା ଲେଖାଟି ପଢ଼ିଲା ବେଳେ ମୁହଁରେ ତା'ର ରହି ରହି ବିସ୍ମୟ ଫୁଟିଉଠୁଥିଲା । ସତ୍ୟବ୍ରତ ସେଇ ମୁହୂର୍ତ୍ତରେ ସେଠାରୁ ଉଠି ଚାଲିଗଲା । ମୁଁ ବି କିପରି ଅଶ୍ୱସ୍ତି ଅନୁଭବ କରୁଥିଲି ।

ହଠାତ୍ ମିତ୍ରବିନ୍ଦା ଭୋ ଭୋ ହୋଇ କାନ୍ଦି ଉଠିବାରୁ ମୋର ଧ୍ୟାନଭଙ୍ଗ ହେଲା । ଧୂର୍ଜଟବାବୁ ମିତ୍ରବିନ୍ଦା ହାତରୁ ଲେଖାଟି କାଢ଼ି ନେଇ କହିଲେ : ଆପଣ ଆଉ ମୁଣ୍ଡ ଫଟେଇଲେ ମଧ୍ୟ ଚିତ୍ରାଙ୍ଗଦା ଫେରିଆସିବ ନାହିଁ । ଏ ଲେଖା ଆପଣ ଚିହ୍ନିଲେ ?

ମିତ୍ରବିନ୍ଦା ମୁଣ୍ଡ ହଲେଇ ସମ୍ମତି ଜଣାଇଲା ।

ଧୂର୍ଜଟବାବୁ ଉଠି ଠିଆହେଲେ । ଗୋଟିଏ କନେଷ୍ଟବଲକୁ ପାଖକୁ ଡାକି

କହିଲେ : ପ୍ରତ୍ୟେକଟି ଘର ଉପରେ ଭଲଭାବରେ ନଜର ରଖିବ । କୌଣସି ଲୋକ ଆସି ଯେପରି ଏଠାରୁ କିଛି ଜିନିଷପତ୍ର ନେଇ ନ ଯାଏ ବା ନଷ୍ଟ ନ କରେ, ସେଥିପ୍ରତି ବିଶେଷ ଧ୍ୟାନ ଦେବ । ମୁଁ ପୁଣି ଥରେ ଚାରିଟା ପରେ ଆସିବି । ମୋ' ଆଡ଼େ ଚାହିଁ କହିଲେ, ଆପଣ ଯିବେ ନା ରହିବେ ?

ମୁଁ କୌଣସି ଉତ୍ତର ଦେବା ଆଗରୁ ମିତ୍ରବିନ୍ଦା ସେହିପରି କାନ୍ଦ କାନ୍ଦ ସ୍ୱରରେ କହିଲା : ମୋତେ ଏଠାରେ ରହିବାର ଅନୁମତି ଦେଉଛନ୍ତି ।

: ନା ନା, ତୁମେ ଏଠାରେ ରହିପାରିବ ନାହିଁ । ତୁମେ ତାଙ୍କର ଭଉଣୀ କି ଅନ୍ୟ କେହି ପ୍ରମାଣିତ ନ ହେବାଯାଏ, ଏ ଘରେ ରହିବ କିପରି ! ଯେଉଁଠି ରହୁଛ ସେଇଠାକୁ ଫେରିଯାଅ, ତା'ପରେ ଆଇନତଃ ଯାହା ହେବ ଦେଖାଯିବ ।

ଧୂର୍ଜଟବାବୁ ଆଉ ଅପେକ୍ଷା ନ କରି ବାହାରି ଗଲେ ।

ଆମେ ଚିତ୍ରାଙ୍ଗଦାର ବୈଠକଖାନାରେ ବସିଥିଲୁ । ଧୂର୍ଜଟବାବୁ ଚାଲିଯିବା ପରେ ସେ ଘରେ ରହିଗଲୁ ମାତ୍ର ଦୁଇଜଣ । ମିତ୍ରବିନ୍ଦା କାନ୍ଦୁଥିଲା, ମୁଁ ତା' ମୁହଁକୁ ଚାହିଁ ବସିଥିଲି ।

ସତ୍ୟବ୍ରତ ଫେରିଆସି ମୋତେ ଓ ମିତ୍ରବିନ୍ଦାକୁ ଚାହିଁ ପଚାରିଲା : ଧୂର୍ଜଟବାବୁ ଚାଲିଗଲେଣି ?

: ହଁ ।

ଆମେ ଯିବା ଚାଲ । ଧୂର୍ଜଟବାବୁଙ୍କ ଚାଲିଯିବା ପରେ ଆମର ଆଉ ଏଠାରେ ଅନଧିକାର ଉପସ୍ଥିତି ଉଚିତ୍ ହେବ ନାହିଁ ।

ମୁଁ ଉଠିଲି । କହିଲି : ମିତ୍ରବିନ୍ଦା ?

: ଆପଣ ଆମ ସଂଗରେ ଯିବେ ? ସତ୍ୟବ୍ରତ ପଚାରିଲା । ଆପଣଙ୍କ ଘରେ ଆମେ ଛାଡ଼ିଦେଇ ଯିବୁ ।

ମିତ୍ରବିନ୍ଦା ଆଖିରୁ ଲୁହପୋଛି ଉଠି ଠିଆହେଲା । ବାହାରୁ ଧୀରେ ଧୀରେ ଭିଡ଼ କମି ଯାଇଥିଲା । ତଥାପି କୌତୂହଳୀ ଜନତାଙ୍କର ଯେତିକି ଭିଡ଼ ଥିଲା ସେଥିରେ ଠେଲି ଠେଲି ରାସ୍ତାପର୍ଯ୍ୟନ୍ତ ଆସିବାକୁ ପଡ଼ିଲା ।

ରାସ୍ତାକଡ଼ରେ ଭୁଜଙ୍ଗଧରବାବୁଙ୍କ ଡଜ୍ କାରଟା ଠିଆ ହୋଇଥିଲା । ମୁଁ ଆଗେଇ ଯାଇ ଦେଖିଲି ଚାବି ବନ୍ଦ । ଆଗ ସିଟରେ କ୍ୟାମେରା ଓ ଟ୍ରାନ୍‌ଜିଷ୍ଟର ସେଟ୍‌ଟା ଥୁଆ ହୋଇଛି । ଆଉ ଭୁଜଙ୍ଗଧରବାବୁ ?

ମୁଁ ଲେଉଟି ଯାଉଥିଲି । ଭୁଜଙ୍ଗଧର ବାବୁ ପଛରୁ ଡାକ ଛାଡ଼ିଲେ । ସେ

ଅସ୍ତବ୍ୟସ୍ତ ହୋଇ ମଟର ଆଡ଼କୁ ଛୁଟି ଆସୁଥିଲେ । ପାଖରେ ପହଞ୍ଚି କହିଲେ : ଧୂର୍ଜଟବାବୁଙ୍କୁ ପଚାରୁଥିଲି, ସେ କହିଲେ, ଆତ୍ମହତ୍ୟା ଛଡ଼ା ଅନ୍ୟ କିଛି ହୋଇପାରେନା । ଆପଣ କ'ଣ କହୁଚନ୍ତି ? ରିପୋର୍ଟଟା ଆତ୍ମହତ୍ୟା ବୋଲି ଦେବି ତ ?

ସତ୍ୟବ୍ରତ ଓ ମିତ୍ରବିନ୍ଦା ଆସି ଆମ ପାଖରେ ପହଞ୍ଚି ଯାଇଥିଲେ । ଭୁଜଙ୍ଗଧରବାବୁ ପ୍ରସଙ୍ଗ ବଦଳାଇ, ମିତ୍ରବିନ୍ଦା ଆଡ଼େ ଚାହିଁ କହିଲେ : ତମ ସଂବାଦ ଯଦି ଘୁଣାକ୍ଷରେ ମୁଁ ପୂର୍ବରୁ ଜାଣିପାରି ଥାଆନ୍ତି...

: ତା'ହେଲେ ? ପଚାରିଲି ।

: ଚିତ୍ରାଙ୍ଗଦା ଆଉ ମିତ୍ରବିନ୍ଦାର ସ୍ଥାନ ଆଜି ସମାନ ସମାନ ହୋଇ ଥାଆନ୍ତା । ଭୁଜଙ୍ଗଧରବାବୁ ଗାଡ଼ି ଦୁଆର ଖୋଲୁ ଖୋଲୁ କହିଲେ । କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର କଥା କ'ଣ ଜାଣନ୍ତି ଆଜ୍ଞା ! ଚିତ୍ରାଙ୍ଗଦା ସହିତ ମୋର ପରିଚୟ ଆଜକୁ ଦଶବର୍ଷରୁ ଅଧିକ ହେବ, ମୋର ସବୁଠାରୁ ବେଶୀ ସମୟ ମୁଁ ଚିତ୍ରାଙ୍ଗଦା ସହିତ କଟାଇଛି, କିନ୍ତୁ କୌଣସି ଦିନ ସାମାନ୍ୟତମ ସୂଚନା ମୁଁ ପାଇନାହିଁ ମିତ୍ରବିନ୍ଦାର । ଆଶ୍ଚର୍ଯ୍ୟ !

: ଆହୁରି ଆଶ୍ଚର୍ଯ୍ୟ କ'ଣ ଜାଣନ୍ତି ଭୁଜଙ୍ଗବାବୁ ! ସତ୍ୟବ୍ରତ ଗାଡ଼ିରେ ବସି ଦରଜାଟା ଧଡ଼୍କରି ବନ୍ଦ କରୁ କରୁ କହିଲା, ଅତ୍ୟାଶ୍ଚର୍ଯ୍ୟ କଥା ହେଉଛି ଚିତ୍ରାଙ୍ଗଦାର ଆତ୍ମହତ୍ୟା ।

: ମାନେ ? ଭୁଜଙ୍ଗଧରବାବୁଙ୍କର ଆଖି ଦୁଇଟା ସତ୍ୟବ୍ରତ ଉପରେ ସ୍ଥିର ରହିଥିଲା ।

: ଆପଣ ଗାଡ଼ିର ଷ୍ଟାର୍ଟ ଦିଅନ୍ତୁ । ସେ ସମ୍ବନ୍ଧରେ ପରେ ଆଲୋଚନା କରିବା ।

ଗାଡ଼ି ଆଗେଇଲା । ମିତ୍ରବିନ୍ଦା ଓ ସତ୍ୟବ୍ରତ ପଛରେ ବସିଥିଲେ । ମୁଁ ଭୁଜଙ୍ଗଧରବାବୁଙ୍କ ପାଖରେ ବସିଥିଲି । ନୀରବତା ଭିତରେ ଗାଡ଼ି ଚାଲିଥିଲା ।

: ଆଚ୍ଛା ସତ୍ୟ ! ତୁ ଜାଣିଲୁ କିପରି ଯେ ଚିତ୍ରାଙ୍ଗଦା ଦେବୀଙ୍କର ଗୋଟିଏ ଭଉଣୀ ଅଛି ବୋଲି । ମିତ୍ରବିନ୍ଦା ଦେବୀ ଆସିବା ଆଗରୁ ତୁ ଧୂର୍ଜଟବାବୁଙ୍କୁ କିପରି ସମ୍ବାଦଟା ଦେଲୁ, ମୁଁ ପଚାରିଲି ।

ସତ୍ୟବ୍ରତ ମିତ୍ରବିନ୍ଦା ଆଡ଼େ ଚାହିଁ ସ୍ମିତ ହସି କହିଲା, ତମେସବୁ ଯେତେବେଳେ

ଧୂର୍ଜଟବାବୁଙ୍କ ପାଖରେ ବସିଥିଲ, ମୁଁ ଅନ୍ୟ ଘରେ ଗୋଟାଏ ଫୋନ୍ ରିସିଭ କଲି । ସ୍ୱୟଂ ମିତ୍ରବିନ୍ଦା ଦେବୀ ଫୋନ୍‌କରି ଚିତ୍ରାଙ୍ଗଦା ଦେବୀଙ୍କ ସମ୍ବନ୍ଧରେ ସତ୍ୟ ଘଟଣା ଜାଣିବାକୁ ଚାହୁଁଥିଲେ । ମୁଁ ତାଙ୍କୁ ସଂକ୍ଷେପରେ ସବୁକଥା କହି ଶୀଘ୍ର ଚାଲି ଆସିବାକୁ କହିଲି ।

ଓଃ, ଏଇକଥା । ମୁଁ ଭାବିଥିଲି ତୁ ମିତ୍ରବିନ୍ଦା ଦେବୀଙ୍କୁ ଆଗରୁ ଜାଣିଥିଲୁ ।

ମତାଦେବୀ ! ସତ୍ୟବ୍ରତ ସଂକ୍ଷେପରେ ମିତ୍ରବିନ୍ଦାକୁ ସମ୍ବୋଧନ କରି ଆରମ୍ଭ କଲା, ଆପଣ ଯଦି କିଛି ମନେ ନ କରନ୍ତି, ତେବେ କେତୋଟି କଥା ମୁଁ ଆପଣଙ୍କୁ ପଚାରିବି ।

: ପଚାରନ୍ତୁ ।

: ଆପଣ କ'ଣ ବିବାହ କରିଛନ୍ତି ?

: ନା ।

: ଆପଣଙ୍କର ମା' ବାବା ବା ଆତ୍ମୀୟସ୍ୱଜନ କେହି ଏଠାରେ ଅଛନ୍ତି ?

: ନା ।

: ତେବେ ଆପଣ ଚିତ୍ରାଙ୍ଗଦା ସହିତ ଏକତ୍ର ରହୁ ନ ଥିଲେ କାହିଁକି ?

ମିତ୍ରବିନ୍ଦା ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗ କରି କହିଲା ସେ ଅନେକ କଥା । ଆମର ପାରିବାରିକ ଜୀବନ ସହିତ ଘଟଣାଟା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ।

: ଆମ ଆଗରେ ଘଟଣାଟା କହିବାରେ କ'ଣ ବିଶେଷ ଆପତ୍ତି ଅଛି ?

: ନାହିଁ, ତଥାପି ବର୍ତ୍ତମାନ ଅବସ୍ଥାରେ ମୁଁ ସବୁକଥା ଆପଣଙ୍କୁ କହିପାରିବି ନାହିଁ । ମୋ' ମନର ଅବସ୍ଥା ଏଇ ମୁହୂର୍ତ୍ତରେ ଯେ କିପରି ଅଛି, ଆପଣ ବୁଝିପାରିବେ ନାହିଁ । ଅପା ମୋର ଏକମାତ୍ର ଅବଲମ୍ବନ ଥିଲା । ହୁଏତ ଆଉ କିଛି ଦିନ ପରେ ମୋତେ ମଧ୍ୟ ଆତ୍ମହତ୍ୟା କରିବାକୁ ପଡ଼ିବ ।

: କାହିଁକି ମିତାଦେବୀ ! ଆପଣ ଏପରି ବିଚଳିତ ହେଉଛନ୍ତି କାହିଁକି ? ଚିତ୍ରାଙ୍ଗଦା ଦେବୀଙ୍କର ଅଗାଧ ସଂପତ୍ତି । ଆପଣ ତା'ର ଏକମାତ୍ର ଉତ୍ତରାଧିକାରିଣୀ । ଆଜି ନ ହେଲେ କାଲି ଆଇନ୍ ଆପଣଙ୍କୁ ଉତ୍ତରାଧିକାରିଣୀର ସ୍ୱୀକୃତି ଦେବ ।

: କିନ୍ତୁ ମୋତେ ଯେ ସତ୍ୟ ଲଙ୍ଘନ କରିବାକୁ ପଡ଼ିବ !

: ସେ ପୁଣି କ'ଣ ?

: ଏଇଟା ମୋ' ଜୀବନର ଚରମ ପରୀକ୍ଷାର ବେଳ । ଅପା ମୋତେ ତା' ଦେହ ଛୁଆଁଇ ଶପଥ କରାଇଥିଲା, କେଉଁଦିନ ଭୁଲ୍‌ରେ ଯେପରି ମୁଁ ତା'ର ସାନ ଭଉଣୀ ରୂପେ ପରିଚୟ ନ ଦିଏ । ଅବଶ୍ୟ ଏହା ମୂଳରେ କାରଣ ଅଛି । ଆପଣ ମୋତେ କାରଣଟା ଜାଣିବାକୁ ନ ପଚାରିଲେ ବାଧିତ ହେବି ।

ମିତ୍ରବିନ୍ଦାର ଏପରି ରହସ୍ୟମୟ ଉକ୍ତିରୁ କୌଣସି ଯୁକ୍ତି ମୁଁ ଖୋଜି ପାଉ ନଥିଲି । ସତ୍ୟବ୍ରତ ମଧ୍ୟ ନୀରବ ହୋଇଗଲା । ଭୁଜଙ୍ଗଧରବାବୁ ନୀରବରେ ଗାଡ଼ି ଚଳାଉଥିଲେ ।

: ଆପଣମାନେ ସମସ୍ତେ କ'ଣ ମୋତେ ଆଜି ଅତିଥି ସତ୍କାରର ସୌଭାଗ୍ୟ ଦେବେ ? ଭୁଜଙ୍ଗଧରବାବୁ ପଚାରିଲେ ।

: ନା ନା ନା ନା । ମିତ୍ରବିନ୍ଦା ଏକପ୍ରକାର ଚିତ୍କାର କରି ଉଠିଲା । ମୋତେ ଏଇଠି ଓହ୍ଲେଇ ଦିଅନ୍ତୁ । ମୁଁ ଅନେକ ବାଟ ଆଗେଇ ଆସିଲିଣି । କିଛି ମନେ ରହୁନାହିଁ । ସବୁ ଗୋଳମାଳ ହୋଇଯାଉଛି ।

ମିତ୍ରବିନ୍ଦାର ଚିତ୍କାର ଶୁଣି ଭୁଜଙ୍ଗଧରବାବୁ ଗାଡ଼ି ଅଟକାଇ ଦେଇଥିଲେ ।

: କେଉଁଠି ରୁହନ୍ତି ଆପଣ ? ମୁଁ ପଚାରିଲି ।

: ମିଡିଲ୍‌ଟନ ଷ୍ଟ୍ରୀଟ୍‌ରେ ।

: କୋଉଠି ଆଜ୍ଞା ? ମୁଁ ଭୁଜଙ୍ଗଧରବାବୁଙ୍କୁ ପଚାରିଲି ।

: ବହୁତ ପଛରେ ଛାଡ଼ି ଆସିଲେଣି । ଭୁଜଙ୍ଗଧରବାବୁ ଗାଡ଼ିର ଗତି ବଦଳେଇଲେ ।

: ଆପଣମାନେ ଯାଆନ୍ତୁ, ମୁଁ ଏଇଠୁ ଟ୍ୟାକ୍‌ସିରେ ଲେଉଟି ଯିବି । ମିତ୍ରବିନ୍ଦା କହିଲା ।

ତା' କଥାର କେହି କିଛି ଉତ୍ତର ଦେଲେ ନାହିଁ । ଗାଡ଼ି ବିପରୀତ ପଥରେ ଗତି କରିବାକୁ ଆରମ୍ଭ କରିଥିଲା ।

: ମତା ଦେବୀ ! ସତ୍ୟବ୍ରତ ପୁଣି ମିତ୍ରବିନ୍ଦାର ଧ୍ୟାନଭଙ୍ଗ କଲା ।

: ଉଁ ।

: ଆପଣ କ'ଣ ମିଡିଲ୍‌ଟନ ଷ୍ଟ୍ରୀଟ୍‌ରେ ଏକା ରୁହନ୍ତି ?

: ନା ମୁଁ ରୁହେ, ଗୋଟିଏ ଚାକର ଆଉ ଟମି ରୁହନ୍ତି ।

: ଟମି ?

: ମୋର ପ୍ରିୟ କୁକୁର ।

: ଆପଣଙ୍କର କୁକୁର ଅଛି ? ଆଲ୍‌ସିସିଆନ ନିଶ୍ଚୟ । ଭୁଜଙ୍ଗଧରବାବୁ ଅତ୍ୟନ୍ତ ଆଗ୍ରହରେ ପଚାରିଲେ ।

: ଆପଣ କ'ଣ କୁକୁରକୁ ଭୟ କରନ୍ତି ? ମିତ୍ରବିନ୍ଦା କହିଲା ।

: ହି ହି ହି । ମୋର ଦୁଇଟା ଅଛନ୍ତି । ମୁଁ ପଚାରିବାର କଥା ଟମି ଭଲ ଜାତିର ତ ?

ମିତ୍ରବିନ୍ଦା କୌଣସି ଉତ୍ତର ଦେଲା ନାହିଁ ।

ମୁଁ ସତ୍ୟବ୍ରତର ଚିନ୍ତିତ ମୁଖମଣ୍ଡଳ ଆଡ଼େ ଚାହିଁ ପଚାରିଲି : ତୁ ବର୍ତ୍ତମାନ ମୋ' ବସା ଆଡ଼େ ଯିବୁ ତ ?

: ତା'ପରେ ?

: ସେଇଠି ରହିଯିବୁ । ଆଜି କ'ଣ କଟକ ଫେରିବୁ ?

: ଏ ପର୍ଯ୍ୟନ୍ତ ଠିକ୍ କରିନାହିଁ । ତୁ ତ ମୋତେ ପୁଣି କାଦୁଅରେ ପୁରାଇ ଦେଲୁ ।

ଭୁଜଙ୍ଗଧର ବାବୁ କହିଲେ : କେଉଁଠି ଗାଡ଼ି ଅଟକେଇବାକୁ ହେବ କହିବେ ମତାଦେବୀ । ଆମେ ମିଡଲ୍‌ଟନ ଷ୍ଟ୍ରୀଟ୍‌ରେ ପ୍ରବେଶ କରିସାରିଲେଣି ।

ଧୀରେଧୀରେ ଗାଡ଼ି ଗୋଟାଏ ନାଲିକୋଠା ଦୁଆରେ ଠିଆ ହେଲା ।

ଆମେ ସେଦିନ ବସାରେ ପହଞ୍ଚିଲା ବେଳକୁ ପ୍ରାୟ ଦୁଇଟା ବାଜି ଯାଇଥିଲା ।

କିନ୍ତୁ ବସାରେ ରୀତିମତ ଭିଡ଼ ଜମି ଯାଇଥିଲା । 'ନାଗା ପାହାଡ଼ର ଦେଶେ'ର ଚିତ୍ର ପ୍ରଯୋଜକ ଓ ନିର୍ଦ୍ଦେଶକ ଏବଂ ଆହୁରି କେତେଜଣ ଆସି କଥା କଟାକଟି କରୁଥିଲେ । ବାୟୁମଣ୍ଡଳଟା କିପରି ଗରମ ହୋଇଉଠିଥିଲା ।

ପ୍ରକୃତରେ ଚିତ୍ରାଙ୍ଗଦାର ମୃତ୍ୟୁରେ 'ନାଗା ପାହାଡ଼ର ଦେଶେ'ର ପ୍ରଯୋଜକଙ୍କର ସବୁଠାରୁ ବେଶି କ୍ଷତି ହୋଇଥିଲା । ସେ ଏହି ଚିତ୍ରଟିକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ଅକୁଣ୍ଠିତ ଚିତ୍ତରେ ଅର୍ଥବ୍ୟୟ କରୁଥିଲେ । ଗୋଟାଏ ଜିଦ୍ଦିରେ ଏହି ଚିତ୍ର ନିର୍ମାଣ କରାହେଉଥିଲା ।

'ନାଗା ପାହାଡ଼ର ଦେଶେ' ଆଉ 'ନାଗାଭୂମି' ଗୋଟିଏ ପୃଷ୍ଠଭୂମି ଉପରେ ଦୁଇଟି ଚିତ୍ର ଏକାସଙ୍ଗରେ ପ୍ରସ୍ତୁତ ହେଉଥିଲା । ପ୍ରଥମେ 'ନାଗା ପାହାଡ଼ର

ଦେଶେ' ପ୍ରଯୋଜକ ଓ ପରିଚାଳକ ପ୍ରଧାନ ଅଭିନେତ୍ରୀ ରୂପେ ଚିତ୍ରାଙ୍ଗଦାକୁ ବାଛିଥିଲେ ଏବଂ ତା' ସହିତ ଚୁକ୍ତି ହୋଇଥିଲା । କିନ୍ତୁ 'ନାଗାଭୂମି'ର ପ୍ରଯୋଜକ ଓ ନିର୍ଦ୍ଦେଶକ ଗୋଟାଏ ଜିଦ୍‌ରେ ଚିତ୍ରାଙ୍ଗଦା ସହିତ କଣ୍ଟ୍ରାକ୍ଟ କଲେ । ଅବଶ୍ୟ ସେଥିପାଇଁ ତାଙ୍କୁ ଚିତ୍ରାଙ୍ଗଦାକୁ ଅଧିକ ଟଙ୍କା ଦେବାକୁ ପଡ଼ିଲା ।

'ନାଗା ପାହାଡ଼େର ଦେଶେ' ଗ୍ରୁପ୍ ଚିତ୍ରାଙ୍ଗଦାର ଏହି କଣ୍ଟ୍ରାକ୍ଟରେ ସନ୍ତୁଷ୍ଟ ହୋଇପାରିଲେ ନାହିଁ । ସେମାନେ ପଚାଶ ହଜାରରୁ ଅଧିକ ଟଙ୍କା ଚିତ୍ରାଙ୍ଗଦାକୁ ଦେଇ କହିଲେ 'ନାଗାଭୂମି' ଚିତ୍ରର କଣ୍ଟ୍ରାକ୍ଟ କ୍ୟାନ୍‌ସେଲ କରିଦେବା ପାଇଁ । ଚିତ୍ରାଙ୍ଗଦା ତାହାହିଁ କଲା ।

କିନ୍ତୁ 'ନାଗାଭୂମି' ଗ୍ରୁପ୍ ଚିତ୍ରାଙ୍ଗଦା ବିରୁଦ୍ଧରେ ଆଇନ୍‌ର ଆଶ୍ରୟ ନେଲେ । ଗତ କେତେ ମାସ ଧରି ସେଇ ମକଦ୍ଦମା ଚାଲିଥିଲା । ସେଇଥିପାଇଁ 'ନାଗାଭୂମି' ଚିତ୍ରଟି ବିଶେଷ ଆଗେଇ ପାରି ନଥିଲା । 'ନାଗା ପାହାଡ଼େର ଦେଶେ' ଗ୍ରୁପ୍ କିନ୍ତୁ ବାଜିମାତ୍ କରିଥିଲେ । ସେମାନଙ୍କର ଆଉଟଡୋର ସୁଟିଂ ସବୁ ଶେଷ ହୋଇଯାଇଥିଲା । ଖାଲି ଇନ୍‌ଡୋରର କେଇଟା ସୁଟିଂ ପରେ ସାଫଲ୍ୟର ହସ ହସିବା ପାଇଁ ସେମାନେ ଅପେକ୍ଷା କରିଥିଲେ । ଖାଲି ସେତିକି ନୁହେଁ, କେଇ ଦିନ ଆଗରୁ ଚିତ୍ରାଙ୍ଗଦା ବିରୁଦ୍ଧରେ ହୋଇଥିବା ମକଦ୍ଦମାର ରାୟ ଦିଆ ହୋଇଥିଲା । ସେଥିରେ 'ନାଗାଭୂମି' ଗ୍ରୁପ୍ ହାରି ଯାଇଥିଲେ । ସବୁ ସାଫଲ୍ୟର ଏକତ୍ର ସମାବେଶ ପାଇଁ 'ନାଗା ପାହାଡ଼େର ଦେଶେ' ଗ୍ରୁପ୍‌ଟା ଅପେକ୍ଷା କରିଥିଲେ । ଆଉ ବେଶୀଦିନ ନୁହେଁ, ଖୁବ୍ ଜୋର ହେଲେ ଗୋଟାଏ ମାସ ।

କିନ୍ତୁ ହଠାତ୍... ଏ କ'ଣ ହେଲା ? ବଜ୍ର ପଡ଼ିଲା ସେମାନଙ୍କ ମୁଣ୍ଡରେ । ପ୍ରଯୋଜକ ଅଗରବାଲାଙ୍କର ଖାଲି କାନ୍ଦିବାକୁ ବାକି ରହିଯାଇଥିଲା । ବୃଦ୍ଧ ପିତାଙ୍କର ବହୁ କଷ୍ଟରେ ସଞ୍ଚିତ ଅର୍ଥର ପ୍ରାୟ ତିନିଭାଗ ସେ ପାଣିରେ ପକେଇ ସାରିଥିଲେ । କାହିଁକି ଯେ ତାଙ୍କ ମୁଣ୍ଡରେ ନନ୍ଦିଘୋଷ ବାବୁ ଏହି ସିନେମା ଚିନ୍ତା ପୁରେଇ ଥିଲେ, ଆଜି ସେ ଭାବି ବସିଲେ ଖାଲି କାନ୍ଦ ମାଡ଼ି ଆସୁଛି ।

ଆମ ଆଗରେ ଚିତ୍ରାଙ୍ଗଦାର ମୃତ୍ୟୁ ରହସ୍ୟ ବଖାଣିବାକୁ ଯାଇ ନନ୍ଦିଘୋଷ ବାବୁ କହିଲେ, ଏଥିରେ ସୂତ୍ରଧର ଗ୍ରୁପ୍‌ର ପୁରା ହାତ ଅଛି । ସେମାନେ ନାଗାଭୂମି ନିର୍ମାଣରେ ବ୍ୟର୍ଥ ହୋଇ ଆମଠାରୁ ପ୍ରତିଶୋଧ ନେବାପାଇଁ ଚିତ୍ରାଙ୍ଗଦାକୁ ହତ୍ୟା କରିଛନ୍ତି ।

ଅଗରବାଲ ତାଙ୍କ କଥାକୁ ସମର୍ଥନ କରି କହିଲେ : ମୋର ବି ସେଇ ଧାରଣା । ସେମାନେ ଆମଠାରୁ ଭୀଷଣ ପ୍ରତିଶୋଧ ନେଇଛନ୍ତି ।

ସତ୍ୟବ୍ରତ ଏତେବେଳଯାଏ ଚୁପ୍‌ଚାପ୍ ବସି ନୀରବରେ ସବୁ କଥା ଶୁଣୁଥିଲା । କହିଲା : ଆପଣମାନଙ୍କ ଧାରଣା ସହିତ ଚିତ୍ରାଙ୍ଗଦାର ମୃତ୍ୟୁର କୌଣସି ସଂଯୋଗ ନାହିଁ, କାରଣ ଚିତ୍ରାଙ୍ଗଦା ନିଜେ ଆତ୍ମହତ୍ୟା କରିଛି ।

: ସେଇଟା ଆପଣଙ୍କର ଭୁଲ୍ ଧାରଣା । ନନ୍ଦିଘୋଷବାବୁ କହିଲେ ।

: ମୋ' ଧାରଣା ସହିତ ଆପଣଙ୍କର ତ କୌଣସି ଲାଭକ୍ଷତି ହେବ ନାହିଁ । ଆଜି ଯଦି ପୋଷ୍ଟମର୍ଟମ ରିପୋର୍ଟରୁ କୌଣସି ପ୍ରକାର ସନ୍ଦେହଜନକ ସୂତ୍ର ନ ବାହାରେ, ତେବେ ଚିତ୍ରାଙ୍ଗଦା ଆତ୍ମହତ୍ୟା କରିଥିବା ସାବ୍ୟସ୍ତ ହୋଇଯିବ । ତା'ପରେ ଏକା ଆପଣଙ୍କର କାହିଁକି, ବନ୍ଧୁ ଲୋକଙ୍କ ଅଭିଯୋଗ ବ୍ୟର୍ଥ ହୋଇଯିବ ।

କିନ୍ତୁ ଏହାର କ'ଣ କୌଣସି ପ୍ରତିକାର କରାଯାଇପାରିବ ନାହିଁ ? ଅଗରବାଲ ମୋ' ଆଡ଼କୁ ଚାହିଁ ପଚାରିଲେ ।

ଏଥର ମୋ' ପାଟି ଖୋଲିଲା । ମୁଁ କହିଲି : ଏହାର ଏକମାତ୍ର ପ୍ରତିକାର ହେଉଛି ଚିତ୍ରାଙ୍ଗଦାର ମୃତ୍ୟୁରହସ୍ୟ ଉଦ୍‌ଘାଟନ କରିବା । ଏଥିପାଇଁ ପୋଲିସ୍ ବିଭାଗ କୌଣସି ଉଦ୍‌ଯୋଗ କରିବେ ନାହିଁ । ଧୂର୍ଜ୍ଜଟବାବୁଙ୍କ ମନୋବୃତ୍ତିରୁ ଆଜି ମୁଁ ଯାହା ବୁଝିଲି, ସେଥିରୁ ମନେହେଉଛି ଘଟଣାଟାକୁ ସେମାନେ ଯେତେ ସହଜରେ ସମାଧାନ କରିପାରନ୍ତି, ସେମାନେ ନିଶ୍ଚିତ ହେଇଯିବେ ।

: ତା'ହେଲେ ?

: ଆମର ବର୍ତ୍ତମାନ ଏକମାତ୍ର ଉପାୟ ହେଉଛି ଗୋପନରେ ଚିତ୍ରାଙ୍ଗଦାର ମୃତ୍ୟୁରହସ୍ୟ ଉଦ୍‌ଘାଟନ କରିବା । ଆପଣମାନେ ଶୁଣିଲେ ସୁଖୀ ହେବେ ଯେ, ସେଥିପାଇଁ ପ୍ରାଥମିକ ଉଦ୍ୟମ ମୁଁ ଶେଷ କରିଛି । ମୋର ଏଇ ବନ୍ଧୁ, ସତ୍ୟବ୍ରତ ମହାପାତ୍ର । ଏ ହେଉଛନ୍ତି ଓଡ଼ିଶାର ଜଣେ ବିଖ୍ୟାତ କ୍ରିମିନଲୋଜିଷ୍ଟ । ଦୈବାତ୍ ସେ ଗୋଟାଏ କେସ୍ ତଦନ୍ତରେ କଲିକତା ଆସିଥିଲେ । ଆଜି କଟକ ଫେରି ଯାଇ ଥାଆନ୍ତେ । ମୁଁ ତାଙ୍କୁ ଅଟକାଇ ଦେଇଛି । ଘଟଣାସ୍ଥଳକୁ ମଧ୍ୟ ସଙ୍ଗରେ ନେଇଯାଇଥିଲି । ସେ ଯଦି ଇଚ୍ଛା କରନ୍ତି...

ଅଗରବାଲ ଉଠି ଠିଆ ହୋଇପଡ଼ିଲେ ଏବଂ ସତ୍ୟବ୍ରତଙ୍କ ପାଖକୁ ଛୁଟିଆସି ତାଙ୍କ ହାତ ଦୁଇଟାକୁ ଜାବୁଡ଼ି ଧରି କହିଲେ : ପ୍ଲିଜ୍ ! ଆପଣ ମୋର ଏହି ଅନୁରୋଧ ରକ୍ଷା କରନ୍ତୁ । ବାପାଙ୍କର ସଞ୍ଚିତ ଅର୍ଥରୁ ତିନିଭାଗ ମୁଁ ଚିତ୍ରାଙ୍ଗଦା

ପଛରେ ବ୍ୟୟ କରିସାରିଛି, ଆଉ ଯେଉଁ ଏକଭାଗ ଅଛି, ସେତକ ମୁଁ ତା'ରି ତଦନ୍ତ କାର୍ଯ୍ୟରେ ବ୍ୟୟ କରିବାକୁ ପ୍ରସ୍ତୁତ ଅଛି । ଆପଣ ଖାଲି ପ୍ରମାଣିତ କରନ୍ତୁ ଯେ, ଚିତ୍ରାଙ୍ଗଦା ଆତ୍ମହତ୍ୟା କରିନାହିଁ, ତାକୁ ହତ୍ୟା କରାହୋଇଛି ।

ନନ୍ଦିଘୋଷବାବୁ ଅସହାୟ ଦୃଷ୍ଟିରେ ସତ୍ୟବ୍ରତ ମୁହଁକୁ ଚାହିଁଥିଲେ । ଅନ୍ୟ ସମସ୍ତଙ୍କ ଆଖି ମଧ୍ୟ ତା'ରି ଉପରେ ସ୍ଥିର ହୋଇ ରହିଥିଲା ।

ମୁଁ କହିଲି : ସେ ଦାୟିତ୍ୱ ମୁଁ ଆଜି ସକାଳ ଆଠଟାରୁ ତାଙ୍କ ଉପରେ ନଦି ଦେଇଛି । ବର୍ତ୍ତମାନ ଆଉ ସେ ପଳାଇ ଯାଇପାରିବେ ନାହିଁ ।

: ଘଟଣାଟା ଖୁବ୍ ଜଟିଳ, ବୁଝିଲେ ଅଗରବାଲଜୀ ! କେସ୍‌ଟା ହତ୍ୟା କି ଆତ୍ମହତ୍ୟା ମୁଁ ଏ ପର୍ଯ୍ୟନ୍ତ କୌଣସି ସିଦ୍ଧାନ୍ତ କରିପାରି ନାହିଁ । କେବଳ ଆତ୍ମହତ୍ୟା ନ କରିଥିବା ସପକ୍ଷରେ ଚିତ୍ରାଙ୍ଗଦାର ମୃତ୍ୟୁ ପୂର୍ବରୁ ସମୟଗୁଡ଼ାକ ସାକ୍ଷୀ ଦେଉଛି । ସେହିଟା ଏତେ ସୂକ୍ଷ୍ମ ଆଉ ଏତେ ମନସ୍ତତ୍ତ୍ୱପୂର୍ଣ୍ଣ ଯେ ପ୍ରମାଣିତ କରାଇବା ଖୁବ୍ କଷ୍ଟ ।

: ଯଥା... ମୁଁ ପଚାରିଲି ।

: ଚିତ୍ରାଙ୍ଗଦାର ହସ୍ତାଙ୍କିତ ଚିଠିଟି । ତାହା ଯଦି ମୃତ୍ୟୁ ପୂର୍ବରୁ ଚିତ୍ରାଙ୍ଗଦା ଲେଖିଥାଏ, ତେବେ ଏତେ ସୁସ୍ଥ ମନୋବୃତ୍ତି ପରେ ସାଧାରଣତଃ ଆତ୍ମହତ୍ୟା କରିବାକୁ କେହି ଯାଇ ନଥାଏ । ଦ୍ୱିତୀୟ ପଏଣ୍ଟ ହେଉଛି, ମିତ୍ରବିନ୍ଦା । ସେ ଯଦି ପ୍ରକୃତରେ କାଲି ଚିତ୍ରାଙ୍ଗଦା ସହିତ ଅଧଘଣ୍ଟାଏ ପର୍ଯ୍ୟନ୍ତ ଫୋନ୍‌ରେ କଥାବାର୍ତ୍ତା ହୋଇଥାଏ, ତଥାପି ଆତ୍ମହତ୍ୟାର ବିରୁଦ୍ଧରେ ତାହା ଏକ ସାନ୍ତ୍ୱନା ହୋଇପାରେ । ତୃତୀୟ ପଏଣ୍ଟ ହେଉଛି, ଏ ଯୁଗରେ, ବିଶେଷତଃ ଚିତ୍ରାଙ୍ଗଦା ପରି ଏକ ଅତ୍ୟାଧୁନିକା ଗଳାରେ ଦଉଡ଼ି ଲଗେଇ ଆତ୍ମହତ୍ୟା କରିବା ମଧ୍ୟ କିପରି ବେଖାପ ମନେହେଉଛି । ଆତ୍ମହତ୍ୟା କରିବାର ବହୁ ସହଜପନ୍ଥା ଥାଉ ଥାଉ ଚିତ୍ରାଙ୍ଗଦା ଯେ ଗଳାରେ ଦଉଡ଼ି ବାନ୍ଧିବ... ହଁ ଆଉ ଗୋଟାଏ କଥା ! ସତ୍ୟବ୍ରତ ହଠାତ୍ ଅଟକି ଯାଇ ମୋ' ଆଡ଼କୁ ଚାହିଁ ପଚାରିଲା, ତୁ ଯେତେବେଳେ କାଲି ଚିତ୍ରାଙ୍ଗଦା ଘରକୁ ଯାଇଥିଲୁ, ତୋ' ଆଗରୁ ସେଠାକୁ ନିଶ୍ଚୟ ଧୂର୍ଜଟବାବୁ ଆସିଥିଲେ ?

: ହଁ ।

: ଆଉ ଭୁଜଙ୍ଗଧରବାବୁ ?

: ତାଙ୍କର ସେତେବେଳକୁ ଫଟୋ ଉଠେଇବା ଶେଷ ହୋଇଥିଲା ।

: କିନ୍ତୁ ଗୋଟାଏ କଥା ମୁଁ ସେ ଘରେ ଦେଖିଲି ନାହିଁ । ଅବଶ୍ୟ ପଏଣ୍ଟଟା

ଖୁବ୍ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଧୂର୍ଜଟବାବୁଙ୍କ ସହିତ ସେ ସମ୍ବନ୍ଧରେ ଆଲୋଚନା କଲି ନାହିଁ । ସେ ଆଦୌ ଘଟଣାଟାକୁ ଗଭୀର ମନୋନିବେଶ ସହକାରେ ଦେଖିବାକୁ ଚାହୁଁ ନ ଥିଲେ ।

: କେଉଁ ଗୁରୁତ୍ୱପୂର୍ଣ୍ଣ ପଏଣ୍ଟ ତୋ' ଆଖିରେ ଧରାପଡ଼ିଛି ?

: ତୁ ବୋଧହୁଏ ଲକ୍ଷ୍ୟ କରିଚୁ କି ନାହିଁ, ଚିତ୍ରାଙ୍ଗଦା ଫ୍ୟାନ୍ ହୁକ୍‌ରେ ଦଉଡ଼ି ବାନ୍ଧି ସେଇ ଦଉଡ଼ିରେ ବେକ ଗଳେଇ ଥିଲା । ପାଦ ଯୋଡ଼ିକ ଭୂମି ସ୍ପର୍ଶ କରିବା ପାଇଁ ମାତ୍ର କେଇ ଆଙ୍ଗୁଳି ବାକି ଥିଲା ।

: ହଁ, ମୁଁ ତାହା ଲକ୍ଷ୍ୟ କରିଚି, କହିଲି ।

: କିନ୍ତୁ ଚିତ୍ରାଙ୍ଗଦାର ପାଦ ପାଖରେ କୌଣସି ଟୁଲ୍ ବା ଚେଆର ଲକ୍ଷ୍ୟ କରିଥିଲୁ ?

: ସତେତ !

ମୋ' ଆଖିରେ ହୁଏତ ବିସ୍ମୟ ଫୁଟି ଉଠୁଥିଲା, ମୁଁ ହଠାତ୍ ଉତ୍ତର ଦେଇପାରିଲି ନାହିଁ । ମନେ ପକେଇବାକୁ ଚେଷ୍ଟା କଲି ସକାଳର ସେଇ ମୁହୂର୍ତ୍ତଟା, ଯେଉଁ ମୁହୂର୍ତ୍ତରେ ପ୍ରଥମେ ମୁଁ ଚିତ୍ରାଙ୍ଗଦାର ଗୃହରେ ପ୍ରବେଶ କରିଥିଲି ।

ବେକଟା ଉପରକୁ ଟେକି ହୋଇଯାଇଥିଲା । ଆଖି ଦୁଇଟା ଯେପରି କଡ଼ିକାଠ ଉପରେ ସ୍ଥିର ରହିଥିଲା । ପାଦ ଦୁଇଟା ଚଟାଣରେ ଲାଗିବା ପାଇଁ ମାତ୍ର ପାଞ୍ଚଛଅ ଆଙ୍ଗୁଳି ବାକି ଥିଲା ।

ପାଖରେ ଆଉ ଥିଲା କ'ଣ ? ଖଣ୍ଡେ ଦୂରରେ ଟେବୁଲ, ଚାରିପାଖରେ ତିନି ଚାରୋଟି ଚେଆର । ଆଲମାରୀ, ଡ୍ରେସିଂ ଟେବୁଲ । କିନ୍ତୁ ଚିତ୍ରାଙ୍ଗଦା ଫ୍ୟାନ୍ ହୁକ୍‌ରେ ଦଉଡ଼ି ଲଗେଇଲା କିପରି ? ମୁଣ୍ଡ ଗଳେଇଲା କିପରି ? ନିଶ୍ଚୟ କୌଣସି ଚେଆର ବା ସେହି ଜାତୀୟ ଉଚ୍ଚ ପଦାର୍ଥର ଆବଶ୍ୟକ ହୋଇଥିବ । ଘରେ ତ ଚେଆର ଟେବୁଲର ଅଭାବ ନ ଥିଲା, କିନ୍ତୁ ତା' ମଧ୍ୟରୁ କୌଣସିଟି ବ୍ୟବହାର ହୋଇଥିଲା କି ? ମୁଁ ତ ସେପରି କିଛି ଦେଖିଥିବା ପରି ମନେପଡୁ ନାହିଁ !

ମୋର ଭାରାକ୍ରାନ୍ତ ମନର ବୋଝଟାକୁ ସତ୍ୟବ୍ରତ ନିଜେ ଓହ୍ଲେଇ ଦେଲା । କହିଲା : ତୁ ସେପରି କିଛି ଲକ୍ଷ୍ୟ କରିନାହୁଁ ନା କ'ଣ କହୁଚୁ ?

ମୁଁ ମୁଣ୍ଡ ହଲେଇ ସମ୍ମତି ଜଣେଇଲି ।

: ମୁଁ କିନ୍ତୁ ଭଲଭାବରେ ଲକ୍ଷ୍ୟ କରିଚି । ସେ ଘରେ ଥିବା ପ୍ରତ୍ୟେକଟି ଚେଆର ଟେବୁଲକୁ ମୁଁ ପରୀକ୍ଷା କରିଚି । କିଛି କ୍ଲୁ ପାଇନାହିଁ । ଯଦି ଚିତ୍ରାଙ୍ଗଦା

ନିଜ ଇଚ୍ଛାରେ ଆତ୍ମହତ୍ୟା କରିଥାଆନ୍ତା, ତେବେ ଗୋଟିଏ ଚେଆର ବା ସେହି ଜାତୀୟ କୌଣସି ଉଚ୍ଚପଦାର୍ଥ ତା' ଗୋଡ଼ ପାଖରେ ଥାଆନ୍ତା । ନାହିଁ ଯେତେବେଳେ, ମନେହେଉଚି ବ୍ୟାପାରଟା ସାମାନ୍ୟ ରହସ୍ୟାବୃତ !

ଅଗରବାଲଜୀ ଉଲ୍ଲସିତ ହୋଇଉଠିଥିଲେ । କହିଲେ : ପଏଣ୍ଟ ତ ଆପଣଙ୍କ ହାତରେ ଗୋଟାଏ ଅଛି ।

: ସେତିକି ଯଥେଷ୍ଟ ନୁହେଁ ଅଗରବାଲ୍‌ଜୀ ! ତା'ପରେ ଏପରି ତ ହୋଇପାରେ, ହୁଏତ ଚିତ୍ରାଙ୍ଗଦାକୁ ଝୁଲୁଥିବା ଅବସ୍ଥାରେ ଯିଏ ପ୍ରଥମେ ଦେଖିଥିଲା ସେ ଚେଆରଟା ଅନ୍ୟତ୍ର ଟାଣିରଖି ଦେଇପାରିଥାଏ, ପୋଲିସ୍ ଆସିବା ପରେ ମଧ୍ୟ ସେପରି କିଛି ହୋଇପାରିଥାଏ । ଯା'ହେଉ, ସେହିପରି ଗୋଟିଏ ଅନୁମାନ ଉପରେ ନିଶ୍ଚିତ ହେବା ଆଦୌ ସମ୍ଭବ ନୁହେଁ ।

: ତା'ହେଲେ ? ଅଗରବାଲଙ୍କ ସ୍ୱର ବ୍ୟର୍ଥତାରେ ଭରି ଆସୁଥିଲା ।

: ଆପଣ ନିଶ୍ଚିନ୍ତ ରୁହନ୍ତୁ ଅଗରବାଲଜୀ । ଆଉ ଯାହା ପାରେ ନ ପାରେ ଚିତ୍ରାଙ୍ଗଦାର ଏହି ମୃତ୍ୟୁ ରହସ୍ୟ ଆଶା କରୁଚି ଉଦ୍‌ଘାଟନ କରିବାକୁ ସକ୍ଷମ ହୋଇପାରିବି, ସେ ହୋମିସାଇଡ୍ ହେଉ ବା ସୁଇସାଇଡ୍ ହେଉ ।

ଏହିପରି ଆଉ କେତେକ ଆଲୋଚନା ପରେ ସତ୍ୟବ୍ରତ ଯିବାକୁ ବାହାରିଲା । ମୋତେ କହିଲା : ଆଜିଠାରୁ ତୁ ମୋ' ସଂଗେସଂଗେ ରହିବୁ । ତୋ' ପେସା ଆଉ ମୋ' ପେସା ଭିତରେ ପାର୍ଥକ୍ୟଟା କେତେ ମୁଁ ତତେ ଦେଖେଇ ଦେବି ।

: ଏଇକ୍ଷିଣା କୁଆଡ଼େ ବାହାରିଲୁ ?

: ଆଃ ! ମୋତେ ସବୁବେଳେ ସବୁ କଥାର ଅର୍ଥ ପଚାରି ବିରକ୍ତ କରିବୁ ନାହିଁ । ତୋ' ମନର ସଂଦେହ ଅବଶ୍ୟ ମୁଁ ସବୁବେଳେ ମୋଚନ କରିବାକୁ ଚେଷ୍ଟା କରିବି ।

ଅଗରବାଲଜୀ, ନନ୍ଦିଘୋଷବାବୁ ଏବଂ ଅନ୍ୟାନ୍ୟ ବନ୍ଧୁମାନେ ଆମ ସହିତ ବାହାରକୁ ଆସିଲେ ।

ଆମେ ଗୋଟିଏ ଟ୍ୟାକ୍‌ସିରେ ଉଠିଲୁ ।

ସତ୍ୟବ୍ରତ କହିଲା, ଏଇକ୍ଷିଣା ଭୁଜଙ୍ଗଧରବାବୁଙ୍କ ଘରକୁ ଯିବାକୁ ହେବ । ତୁ ତାଙ୍କ ଘର ଦେଖିଚୁ ପରା !

: ହଁ, ଢାକୁରିଆରେ ସେ ରୁହନ୍ତି ।

ଟ୍ୟାକ୍‌ସିକୁ ଢାକୁରିଆ ଯିବାପାଇଁ ମୁଁ ନିର୍ଦ୍ଦେଶ ଦେଲି ।

ଗୋଟାଏ ଦୋ'ନଳା ବନ୍ଧୁକର ମୁହଁ ଆମରି ଆଡ଼କୁ ବୁଲି ଆସୁଥିଲା । ମୁଁ ଚିତ୍କାର କରି ଉଠି ଥାଆନ୍ତି, ଯଦି ପରମୁହୂର୍ତ୍ତରେ ଭୁଜଙ୍ଗଧରବାବୁଙ୍କୁ ଦେଖିପାରି ନଥାନ୍ତି । ସେ ତାଙ୍କ ଦୋତାଲା ବାରଣ୍ଡାରେ ବସି ବନ୍ଧୁକଟା ପରିଷ୍କାର କରୁଥିଲେ । ନଳଟା ତଳ ଆଡ଼କୁ ନଇଁ ଆସିଥିଲା । ସମସ୍ତ ପ୍ରକାର ଉଭଟ ରୁଚି ପରେ ଭୁଜଙ୍ଗଧର ବାବୁଙ୍କର ଯେ ବନ୍ଧୁକ ରଖିବାର ସଉକ ଅଛି, ତା' ମୁଁ ଜାଣି ନଥିଲି ।

ଆମର ଘ୍ରାଣ ପାଇ କି କ'ଣ ଆଲସିସିଆନ୍ କୁକୁର ଦୁଇଟା ବାରଣ୍ଡାକୁ ଛୁଟିଆସିଲେ ଏବଂ ଭୁକିବାକୁ ଆରମ୍ଭ କରିଦେଲେ । ସଂଗେ ସଂଗେ ଭୁଜଙ୍ଗଧର ବାବୁ ଉଠି ଠିଆ ହୋଇଗଲେ ।

: ଆରେ ! ଆପଣମାନେ, ହଠାତ୍ ?

ଭୁଜଙ୍ଗଧରବାବୁଙ୍କ ସ୍ୱରରେ କିପରି ଏକ ବିସ୍ମୟଭାବ ଫୁଟି ଉଠିଥିଲା ।

: ଆସିଲୁ, ଗୋଟାଏ ଜରୁରୀ ଦରକାରରେ । ସତ୍ୟବ୍ରତ କହିଲା ।

ଆମେ ଭିତରକୁ ପ୍ରବେଶ କରୁଥିଲୁ । ଭୁଜଙ୍ଗଧରବାବୁ ଆମକୁ ଅଭ୍ୟର୍ଥନା ଜଣାଇବା ପାଇଁ ଆଗେଇ ଆସୁଥିଲେ ।

: ମୋ' ସହିତ, ପୁଣି କ'ଣ ଦରକାର ପଡ଼ିଲା ?

ଆମେ ସମସ୍ତେ ବୈଠକଖାନାରେ ବସିଲୁ । ଭୁଜଙ୍ଗଧର ବାବୁ ଖଣ୍ଡିଏ ଖାକି ହାପ୍ ପ୍ୟାଣ୍ଟ ଓ ହାତକଟା ଗେଞ୍ଜି ପିନ୍ଧିଥିଲେ । ସତ୍ୟବ୍ରତ ସୁସଜ୍ଜିତ ବୈଠକଖାନାଟିର ଚାରିଆଡ଼େ ଆଖିବୁଲେଇ ଆଣି କହିଲା, ବାଃ ! ଚମତ୍କାର ସଜେଇଛନ୍ତି । ବେଶ୍ ରୁଚି ଅଛି ଆପଣଙ୍କର ।

: ହି ହି ହି । ଭୁଜଙ୍ଗଧରବାବୁ ହସି ହସି ଟେବୁଲ ଡ୍ରୟାର ଟାଣି ସିଗାରେଟ ଟିଣ ବାହାର କଲେ । କ'ଣ ଚା' ନା କଫି ?

: ଯା' ହେଲେ ଚଳିବ । ସତ୍ୟବ୍ରତ ବିନା ଦ୍ୱିଧାରେ କହିଲା ।

ଭୁଜଙ୍ଗଧରବାବୁ କଲିଂ ବେଲ ଟିପିଲେ । କହିଲେ : କ'ଣ କୁହନ୍ତୁ ମହାପାତ୍ର ବାବୁ ! କୌଣସି ସନ୍ଦେହ ଥରେ ମନରେ ଜାଗିଲେ, ମୁଁ ମୋଟେ ସ୍ଥିର ହୋଇ ବସିପାରେ ନାହିଁ !

: କିଛି ନୁହେଁ ଯେ, ସତ୍ୟବ୍ରତ ସହଜ ଓ ସରଳ ସ୍ୱରରେ କହିଲା । ଚିତ୍ରାଙ୍ଗଦାର ମୃତ୍ୟୁ ସମ୍ବନ୍ଧରେ ଗୋଟାଏ ଦି'ଟା କଥା ପଚାରିବାର ଅଛି । କାରଣ ଆପଣ ସେଠାରେ ଥିଲେ ପ୍ରଥମଦର୍ଶୀ ।

: ମୁଁ ପ୍ରଥମଦର୍ଶୀ ଆପଣ କିପରି ଜାଣିଲେ ?

: ଧୂର୍ଜଟବାବୁ କହୁଥିଲେ ।

: ହି ହି ହି । ଆପଣମାନେ ସମସ୍ତେ ସାମ୍ବାଦିକତା କରୁଛନ୍ତି ସତ କିନ୍ତୁ ଆମ ଦେଶରେ ଠିକ୍ ମାନେ ସାମ୍ବାଦିକମାନେ ଯେତେ ଧୂର୍ତ୍ତ ହେବାର କଥା, ସେମାନେ ହେଇପାରୁ ନାହାନ୍ତି ।

: ଆଚ୍ଛା, ଆପଣ ଚିତ୍ରାଙ୍ଗଦାର ମୃତ୍ୟୁସମ୍ବାଦ ପ୍ରଥମେ କିପରି ପାଇଲେ ?

: ମୋର ଏଥିରେ କିଛି ବାହାଦୂରୀ ନାହିଁ ଆଜ୍ଞା ! ଭୋରରୁ ଉଠି ମୁଁ ଯାଇଥିଲି ଚିତ୍ରାଙ୍ଗଦା ସହିତ ସାକ୍ଷାତ କରିବା ପାଇଁ । ମୋର କେତେକ ଜରୁରୀ କାମ ଥିଲା । ଗତକାଲି ରାତିରେ ଯାଇ ବ୍ୟର୍ଥହୋଇ ଫେରି ଆସିଥିଲି । ଅବଶ୍ୟ ମୁଁ ଆଉ ଧୂର୍ଜଟବାବୁ ପ୍ରାୟ ଏକାସାଙ୍ଗରେ ଚିତ୍ରାଙ୍ଗଦା ଘରେ ପ୍ରବେଶ କରିଥିଲୁ । ଖାଲି କେଇ ସେକେଣ୍ଡର ଏପାଖ ସେପାଖ ।

: ତା'ପରେ କ'ଣ କଲେ ?

: ପ୍ରଥମେ ମୁଁ ଏହି ଦୁଃସମ୍ବାଦଟିକୁ ବିଶ୍ୱାସ କରିପାରିଲି ନାହିଁ । ଧୂର୍ଜଟବାବୁଙ୍କୁ ପଶି ଆସୁଥିବାର ଦେଖି ମୁଁ ସ୍ତବ୍ଧ ହୋଇଗଲି । ଧୂର୍ଜଟବାବୁ ଓ ମୁଁ ଏକାସଙ୍ଗରେ ଯାଇ ଚିତ୍ରାଙ୍ଗଦାର ଘରେ ପ୍ରବେଶ କଲୁ । ସୁନ୍ଦରୀ ଚିତ୍ରାଙ୍ଗଦା, ରୂପସୀ ଚିତ୍ରାଙ୍ଗଦା ! ଆହା ହା ହା । ସୌନ୍ଦର୍ଯ୍ୟର ଅପଚୟ କ'ଣ ଏହିପରି ହୁଏ ! ମୁଁ ଦୁଇ ପାହୁଣ୍ଡ ପଛକୁ ଘୁଞ୍ଚିଆସିଲି । ଧୂର୍ଜଟବାବୁ କିଛିକ୍ଷଣ ସେଇଠି ଠିଆହୋଇ ଚିତ୍ରାଙ୍ଗଦାର ବୀଭତ୍ସ ମୂର୍ତ୍ତିଆଡ଼େ ଅନେଇ ରହିଥିଲେ ।

ମୁଁ ଟିକିଏ ନିଜକୁ ସଂଯତ କରିନେଇ, କାନ୍ଧରୁ କ୍ୟାମେରାଟା ବାହାର କଲି, ଆଉ ଡେରି ନୁହେଁ । ଯଥେଷ୍ଟ ଆଲୋକ ଗୃହ ମଧ୍ୟରେ ପ୍ରବେଶ କରୁଥିଲା । ସାଇଁ ସାଇଁ ଶବ୍ଦକରି ମୋ' ମୁଭି ଚିତ୍ରାଙ୍ଗଦାର ଶେଷଚିହ୍ନଟି ସେଲୁଲଏଡ ଫରୁଆ ଭିତରେ ସାଇତି ରଖିଲା ।

: ବାସ୍ ବାସ୍ ! ସେତିକି ଆମର ଆବଶ୍ୟକ । ସତ୍ୟବ୍ରତ କହିଲା, ଆଶା କରୁଚି ଆପଣ ଏହା ଭିତରେ ସେହି ଫିଲ୍ମ ରୋଲ୍‌ଟାର ଡେଭଲପ କାର୍ଯ୍ୟ ଶେଷ କରିସାରିଥିବେ । କାରଣ ତା' ଭିତରୁ ଆବଶ୍ୟକୀୟ ଛବି କେତେ ଖଣ୍ଡ ପ୍ରିଣ୍ଟ କରି ନିଶ୍ଚୟ ଆପଣ 'ଫିଲ୍ମଷ୍ଟାର'କୁ ପଠାଇ ସାରିଥିବେ ।

: ହି ହି ହି । ସେ ଦିଗରୁ ମୁଁ ସବୁବେଳେ ଖୁବ୍ ପ୍ରମ୍ପଟ୍ । ଦେଖିବେ ସବୁ ସାପ୍ତାହିକଗୁଡ଼ିକରେ ସମ୍ବାଦଟି ପ୍ରକାଶିତ ହେବା ପୂର୍ବରୁ ଫିଲ୍ମଷ୍ଟାରରେ ଚିତ୍ରାଙ୍ଗଦାର ଆତ୍ମହତ୍ୟା କାହାଣୀ ସଚିତ୍ର ପ୍ରକାଶିତ ହୋଇସାରିଥିବ ।

: ସେଥିପାଇଁ ମୁଁ ଆପଣଙ୍କର ତାରିଫ୍ ସଦାବେଳେ କରିଥାଏ । ଆପଣ ବୋଧହୁଏ ଜାଣିନାହାନ୍ତି 'ଫିଲ୍ମଷ୍ଟାର'ର ମୁଁ ନିୟମିତ ପାଠକ । ଆପଣଙ୍କ ଦୂରଦୃଷ୍ଟିପୂର୍ଣ୍ଣ ଲେଖା ଓ ଫଟୋଗ୍ରାଫି ମୋତେ ସବୁବେଳେ ବିସ୍ମିତ କରିଥାଏ ।

କଫି ଏବଂ କିଛି ଜଳଖିଆ ଆଣି ଜଣେ ପରିଚାରକ ପ୍ରବେଶ କଲା ।

ସତ୍ୟବ୍ରତ ସାମ୍ନାରେ ପ୍ଲେଟ ଉଠାଇ ରଖିବା ମାତ୍ରେ ସେ ଗୋଟିଏ ରସଗୋଲା ଉଠେଇ ନେଇ ପାଟିରେ ପକାଇ ଦେଲା । ଆଉ ଭୁଜଙ୍ଗଧର ବାବୁଙ୍କୁ ସମ୍ଭାଳେ କିଏ ? ସେ ଏତେ ଜୋର୍‌ରେ ଚିତ୍କାର କରିଉଠିଲେ ଯେ ସତ୍ୟବ୍ରତର ରସଗୋଲାଟା ତା' ତଣ୍ଟିରେ ଅଟକି ଗଲା । ସେ ଖେଁ ଖେଁ ହୋଇ କାଶିବାକୁ ଲାଗିଲା ।

: ଛି ଛି ଛି । ଆପଣ ଏଇଖିଣା ମୋର ସର୍ବନାଶ କରିଥିଲେ । ଭୁଜଙ୍ଗଧର ବାବୁ କହିଲେ, ପରୀକ୍ଷା ନାହିଁ, ନରୀକ୍ଷା ନାହିଁ ଆସୁ ନ ଆସୁଣୁ ଆପଣ ପାଟିରେ ପକାଇ ଦେଲେ ?

ସତ୍ୟବ୍ରତ ସ୍ତମ୍ଭିତ ହୋଇଯାଇଥିଲା ।

: ଯଦି ରସଗୋଲାରେ କେହି ବିଷ ମିଶେଇ ଥାଆନ୍ତା ? କ'ଣ ହୋଇଥାଆନ୍ତା ଆପଣଙ୍କର ପରିଣତି ?

ସତ୍ୟବ୍ରତ ମୋ' ମୁହଁକୁ କାବା ହୋଇ ଚାହିଁଥିଲା ।

ମୁଁ କହିଲି : ଭୁଜଙ୍ଗଧରବାବୁ କାହାରି ଠାରୁ ଖାଦ୍ୟପଦାର୍ଥ ଗ୍ରହଣ କଲାବେଳେ, କୌଣସି ଇତର ପ୍ରାଣୀକୁ ଚଖାଇ ତା'ପରେ ଖାଆନ୍ତି । ସେ କାହାରିକୁ ବିଶ୍ୱାସ କରିପାରନ୍ତି ନାହିଁ ।

: କାରଣ ?

: ତା'ର ଏକ ଇତିହାସ ଅଛି । ସଂକ୍ଷେପରେ କହିବାକୁ ଗଲେ ତାଙ୍କର ଏକମାତ୍ର ଆଦରଣୀୟା ସ୍ତ୍ରୀ, ଥରେ ଖାଦ୍ୟପଦାର୍ଥରେ ବିଷ ମିଶେଇ, ତାଙ୍କ ଆଗରେ ଖାଇବାକୁ ଥୋଇଦେଇ ଚମ୍ପଟ୍ ଦେଇଥିଲା । ସେଇଦିନୁ ଭୁଜଙ୍ଗଧର ବାବୁ କାହାରିକୁ ବିଶ୍ୱାସ କରନ୍ତି ନାହିଁ ।

: ଓଃ ! ତା'ହେଲେ ଆପଣଙ୍କର ଜୀବନ ଇତିହାସଟା ତ ଖୁବ୍ କରୁଣ ।

: କରୁଣ ବୋଲି କରୁଣ ଆଜ୍ଞା ! ପୃଥିବୀରେ ମୋ'ପରି ଏତେ ଭଲ ଯେ

କିଏ କାହା ସ୍ତ୍ରୀକୁ ପାଇପାରୁଥିବ, ମୁଁ ବିଶ୍ୱାସ କରିପାରୁ ନାହଁ । ସେ ଥିଲା ଆଜ୍ଞା ଗୋଟିଏ ଅତି ଗରିବ ଘରର ଝିଅ । ମୁଁ ତା ପାଇଁ ବହୁତ କରିଥିଲି । ତା'ର ଅସହାୟ ବାପମା'ଙ୍କୁ ଭରଣ ପୋଷଣ କରିଥିଲି । ତାକୁ ପାଠ ପଢ଼ାଇ ଥିଲି । ଦୁନିଆରେ ବଡ଼ ହେବାର ସୁଯୋଗ ଦେଇଥିଲି । କିନ୍ତୁ ଶେଷରେ ଆଜ୍ଞା ! ତା'ର ଇଚ୍ଛା କ'ଣ ଥିଲା ଜାଣନ୍ତି ? ସେ ମୋତେ ଦିନେ ଅତି ଆଦର କରି, ଚୁପି ଚୁପି କାନ ପାଖରେ କହିଲା, ମୁଁ ଟିକିଏ ସିନେମାରେ ଅଭିନୟ କଲେ ହୁଅନ୍ତା ନାହିଁ ।

ସେଇଦିନୁ ମୁଁ ଜାଣିପାରିଲି, ମନରେ ତା'ର ପରିବର୍ତ୍ତନ ଆସିଛି । ବହୁ ବୁଝେଇ ସୁଝେଇ ତାକୁ ସେ ପଥରୁ ନିବର୍ତ୍ତାଇଲି । କିନ୍ତୁ ଶେଷ ପର୍ଯ୍ୟନ୍ତ ଧରିପାରିଲି ନାହିଁ ଆଜ୍ଞା, ବିଶ୍ୱାସରେ ବିଷ ମିଶେଇ ସେ ଖସିଗଲା ।

ଭୁଜଙ୍ଗଧର ବାବୁଙ୍କ ସ୍ୱର କୋମଳ ହୋଇଆସୁଥିଲା ।

: ତା'ପରେ ଆଉ ତାଙ୍କ ସହିତ ଭେଟ ହୋଇନାହିଁ ?

: ନା, ସେଇ ଦିନଠାରୁ ମୁଁ ବମ୍ବେ ଛାଡ଼ି ଚାଲିଆସିଲି ।

: ତାଙ୍କର ଅଭିନେତ୍ରୀ ହେବାର ବାସନା ପୂର୍ଣ୍ଣ ହୋଇଥିଲା ?

ଭୁଜଙ୍ଗଧରବାବୁ ସତ୍ୟବ୍ରତ ପ୍ରଶ୍ନର କୌଣସି ଉତ୍ତର ନ ଦେଇ ସେଠାରୁ ଉଠି ଚାଲିଗଲେ । ପ୍ରାୟ ଦଶ ମିନିଟ୍ ପରେ ଫେରିଆସିଲେ ତାଙ୍କର ମୌଳିକ ବେଶରେ । ଖାକି ହାପ୍ ପ୍ୟାଣ୍ଟ, ସେଣ୍ଡୋନ କନାର ହାୱାଇନ୍, ଦୁଇ କାନ୍ଧରେ କ୍ୟାମେରା ଓ ଟ୍ରାନ୍‌ଜିଷ୍ଟର ସେଟ୍ ।

: ଆପଣ କୁଆଡ଼େ ବାହାରି ପଡ଼ିଲେ ଯେ !

: ଟିକିଏ କାମ ଅଛି । ଆପଣମାନେ ବସନ୍ତୁ, ମୁଁ ଆସୁଛି ।

: ଅସଲ କଥା କିନ୍ତୁ ଏ ପର୍ଯ୍ୟନ୍ତ ଆପଣଙ୍କ ସଙ୍ଗରେ ହୋଇପାରି ନାହିଁ । ସତ୍ୟବ୍ରତ କହିଲା ।

: କ'ଣ କୁହନ୍ତୁ । ମୋ' ସ୍ତ୍ରୀ କଥା ମନେ ପକେଇଲେ ମନଟା ମୋର ଖୁବ୍ ଦୁର୍ବଳ ହୋଇପଡ଼େ । ଆଖିରେ ପାଣି ଆସିଯାଏ ।

: ନା ନା, ଆମେ ଆଉ ଆପଣଙ୍କ ମନରେ ଆଘାତ ଦେବୁନାହିଁ । ତେବେ ବର୍ତ୍ତମାନ କଥା ହେଉଛି, ଆଜି ସକାଳେ ଚିତ୍ରାଙ୍ଗଦା ଘରେ ଆପଣ ଯେଉଁ ଫଟୋଗୁଡ଼ିକ ଉଠାଇଥିଲେ, ସେଗୁଡ଼ିକ ଦେଖିବା ପାଇଁ ଆମେ ଏଠାକୁ ଆସିଚୁ । ଖାଲି ଗୋଟାଏ

ପଏଣ୍ଟ, ହୁଏତ ଆପଣଙ୍କ ଫଟୋଗ୍ରାଫ୍ ଭିତରୁ ସେ ପଏଣ୍ଟଟା ଆମେ ଖୋଜି ପାଇବୁ ।

ଭୁଜଙ୍ଗଧରବାବୁ ଟିକିଏ ଗମ୍ଭୀର ହୋଇଗଲେ । ଆଜି କିପରି ତାଙ୍କୁ ଅନ୍ୟମନସ୍କ ମନେହେଉଥିଲା । ସବୁଥିରୁ ତାଙ୍କର ଆଗ୍ରହ ଯେପରି କମି ଯାଇଥିଲା । ଅନର୍ଗଳ ଗପି ଯିବାର ସେହି ଧାରା ଯେପରି ପ୍ରତିହତ ହୋଇ ଆସୁଥିଲା ।

: ମୁଁ ତ ସେ ଛବିଗୁଡ଼ିକ ପ୍ରିଣ୍ଟ କରିନାହିଁ ! କହିବେ ଯଦି ପ୍ରୋଜେକ୍ଟର ସାହାଯ୍ୟରେ ଦେଖେଇ ଦେବି ।

: ତା'ହେଲେ ତ ଆହୁରି ସୁବିଧା ହେବ । ଟିକିନିଖି ସମସ୍ତ ଘଟଣା ଆମେ ପର୍ଦ୍ଦା ଉପରୁ ଦେଖିପାରିବୁ ।

: କ'ଣ ଏଇକ୍ଷିଣା ଦେଖିବେ ?

: ଆପଣଙ୍କର ଯଦି କିଛି ଅସୁବିଧା ନ ହୁଏ...

ଭୁଜଙ୍ଗଧରବାବୁ କାନ୍ଧରୁ କ୍ୟାମେରା ଓ ଟ୍ରାନ୍‌ଜିଷ୍ଟର ଓହ୍ଲେଇ ଟେବୁଲ ଉପରେ ରଖିଲେ । କହିଲେ ଆସନ୍ତୁ ସେ ଫିଲ୍ମତକ ମୁଁ କିଛି ସମୟ ଆଗରୁ ଦେଖୁଥିଲି ।

ସତ୍ୟବ୍ରତ ଓ ମୁଁ ଭୁଜଙ୍ଗଧରବାବୁଙ୍କ ପଛେ ପଛେ ଉଠିଗଲୁ ।

ଗୋଟିଏ ଅନ୍ଧକାର ଘର ।

ସାମନାରେ ଗୋଟାଏ ଛୋଟ ଧଳା ପର୍ଦ୍ଦା ।

ମୁହୂର୍ତ୍ତକ ମଧ୍ୟରେ ଇଲେକ୍ଟ୍ରିକ୍ ସୁଇଚ୍‌ଟା ଟିପିବାରୁ କର୍ କର୍ କରି ଗୋଟାଏ ଶବ୍ଦ ହେଲା । ସେହି ମୁହୂର୍ତ୍ତରେ ସାମ୍‌ନା ଧଳା ପର୍ଦ୍ଦାରେ ପ୍ରତିଫଳିତ ହୋଇଉଠିଲା ଚିତ୍ରାଙ୍ଗଦାର ଆତ୍ମହତ୍ୟା କରିଥିବା ଦୃଶ୍ୟଗୁଡ଼ିକ ।

ସତ୍ୟବ୍ରତ କ'ଣ ଖୋଜୁଥିଲା ? ଗୋଟିଏ ଛୋଟ ସୂତ୍ର । ଖଣ୍ଡିଏ ଚେଆର କିମ୍ବା ଟୁଲ୍ ହେଲେ ଚଳିଯିବ । ଯେଉଁଥିରେ ଚିତ୍ରାଙ୍ଗଦା ନିଜେ ଚଢ଼ି ବେକରେ ଦଉଡ଼ି ଲଗେଇଛି ।

ହଁ ହଁ, ମିଳିଛି ମିଳିଛି । ଗୋଟିଏ ହାତବାଲା ଚେଆର ଚିତ୍ରାଙ୍ଗଦାର ଗୋଡ଼ ପାଖରେ ମୁହଁମାଡ଼ି ହୋଇ ପଡ଼ିଛି । ଆଉ ତାର କିଛି ଦେଖିବାର ଆବଶ୍ୟକ ନାହିଁ । କିନ୍ତୁ ସେ ଚେଆରଟା ଗଲା କେଉଁଆଡ଼େ ?

ସତ୍ୟବ୍ରତ ଭୁଜଙ୍ଗଧରବାବୁଙ୍କୁ ସେହି ଚେଆର ସମ୍ବନ୍ଧରେ ପଚାରିଲେ ।

: ଓଃ, ସେଇ ଚେଆରଟା ! ଯେଉଁଥିରେ ଚିତ୍ରାଙ୍ଗଦା ଚଢ଼ି ବେକରେ ଦଉଡ଼ି ଲଗେଇଥିଲା ? ସେଇ ଚେଆରଟାରେ ତ ଧୂର୍ଜଟିବାବୁ ବସିଥିଲେ ।

ସତ୍ୟବ୍ରତ ମୁହଁରୁ କଥା ବାହାରିଲା ନାହିଁ । ସେ କିଛି ସମୟ ଭୁଜଙ୍ଗଧର ବାବୁଙ୍କ ମୁହଁକୁ ଅନାଇ ରହି କହିଲା : ଧୂର୍ଜଟବାବୁ କ'ଣ ଜାଣିଥିଲେ ଚିତ୍ରାଙ୍ଗଦା ସେଇ ଚେଆରରେ ଉଠି ଆତ୍ମହତ୍ୟା କରିଥିଲା ?

: ଜାଣି ନ ଥିବେ ? ଗୋଟାଏ କନେଷ୍ଟବଲ ସେ ଚେଆରଟା ଉଠେଇ ନେଇ ଧୂର୍ଜଟବାବୁଙ୍କୁ ବସିବାକୁ ଦେଇଥିଲା ।

: ହଁ, ସତ୍ୟବ୍ରତ ଉଠି ଠିଆହେଲା ।

ମୁଁ ବି ଉଠିଲି ।

ଭୁଜଙ୍ଗଧରବାବୁ କହିଲେ : ଆପଣମାନେ କ'ଣ ଚାଲିଯିବେ ?

: ହଁ, ଅଶେଷ ଧନ୍ୟବାଦ । ଗୋଟାଏ ଅନୁରୋଧ ମୁଁ ଆପଣଙ୍କୁ କରିବି ଭୁଜଙ୍ଗବାବୁ ! ଆପଣ ଚିତ୍ରାଙ୍ଗଦାର ଆତ୍ମହତ୍ୟା ମୁହୂର୍ତ୍ତର ଏହି ଛବି ରିଲ୍‌ଟି ନଷ୍ଟ କରିବେ ନାହିଁ ।

: ନା, ନା, ମୋ' ପାଖରେ ବହୁ ମୂଲ୍ୟବାନ ମୁହୂର୍ତ୍ତର କେତେ ରିଲ୍ ଯେ ଅଛି ଆପଣ କଳନା କରିପାରିବେ ନାହିଁ । ମୋ' ଘରେ ଧୀରେ ଧୀରେ ଗୋଟିଏ ଫିଲ୍ମ ଲାଇବ୍ରେରୀ ଗଢ଼ି ଉଠୁଛି । କେବେ ସମୟ ପାଇଲେ ଗୋଟି ଗୋଟି କରି ଆପଣଙ୍କୁ ଦେଖେଇବି ।

: ଆଜି ତା'ହେଲେ ବିଦାୟ ନେଉଚୁ ।

: ପୁଣି କେବେ ଆସିବେ ?

: ଦରକାର ହେଲେ ଆଜି ବି ଆସିପାରୁ । ତେବେ ଆପଣ ଯେଉଁ ଆକର୍ଷଣୀୟ ବସ୍ତୁ ସବୁ ରଖିଚନ୍ତି, ସେଗୁଡ଼ିକ ଦେଖିବାପାଇଁ ମଝିରେ ମଝିରେ ଆମକୁ ଆସିବାକୁ ହିଁ ହେବ ।

ଭୁଜଙ୍ଗଧରବାବୁଙ୍କ ଠାରୁ ଆମେ ବିଦାୟ ନେଇଆସିଲୁ ।

ସତ୍ୟବ୍ରତ କହିଲା : ଲୋକଟା ମୁଣ୍ଡର ସ୍କ୍ରୁ ଟିକିଏ ଢିଲାପରି ଜଣାଯାଉଛି । ବହୁ ବିଚିତ୍ର ମନୋବୃତ୍ତିର ଅବତାର ଏହି ଭୁଜଙ୍ଗଧରବାବୁ ।

: ବିଚରା ! ଜୀବନରେ ଖୁବ୍ ସକ୍ ପାଇଚନ୍ତି ତ ! ମୁଁ ସହାନୁଭୂତି ମିଶା ସ୍ୱରରେ କହିଲି ।

ସତ୍ୟବ୍ରତ ନୀରବରେ ଆଗେଇ ଚାଲିଥିଲା ।

ମୁଁ ପୁଣି କହିଲି : ସତ୍ୟ, ତୁ ତ କିଛି କହିଲୁ ନାହିଁ । ଆମେ ମରୀଚିକା ପଛରେ ଧାଉଁ ନାହାନ୍ତି ତ ?

: ହୁଏତ ହୋଇପାରେ ।

: ତା'ହେଲେ ସମୟ ନଷ୍ଟ କରି ଲାଭ କ'ଣ ?

: ତୁ ବୁଝିବୁନି । ଏ ଗୋଟାଏ ନିଶା । ବର୍ତ୍ତମାନ ମୋତେ ପୁରା ମାତ୍ରାରେ ଘାରି ସାରିଲାଣି । ମୋର ଚିନ୍ତାଧାରା ସହିତ ଚିତ୍ରାଙ୍ଗଦାର ଆତ୍ମହତ୍ୟା ରହସ୍ୟ ଏପରି ଭାବରେ ମିଶିଯାଇ ସାରିଲାଣି ଯେ, ମୋର ଆଉ ଛାଡ଼ି ଅଲଗା ହେବାର ଉପାୟ ନାହିଁ । କେବଳ ମୋର ଅଳ୍ପ ଟିକିଏ ଭରସା ଅଛି ପୋଷ୍ଟମର୍ଟମ ରିପୋର୍ଟ ଉପରେ । ତା'ପରେ ହୁଏତ ମୋତେ ଭିନ୍ନ ପଥ ଅବଲମ୍ବନ କରିବାକୁ ପଡ଼ିବ ।

: ତୋ'ର କ'ଣ ମନେହେଉଛି କେସ୍‌ଟା ଆତ୍ମହତ୍ୟା ନ ହୋଇ ଅନ୍ୟ କିଛି ହୋଇପାରେ ?

: ଅନ୍ୟ କିଛି ନ ହେବାର ସମ୍ଭାବନା ବେଶୀ । ତେବେ ମୋର ନୀତି ହେଉଛି, କୌଣସି ଏକ କାରଣରୁ ଯଦି ମନ ଭିତରେ ସନ୍ଦେହ ଜାଗେ, ତେବେ ଆମେ ତା'ର ମୂଲ୍ୟ ଦେବା ଉଚିତ । କାରଣ ମଣିଷର ଅନ୍ତର୍ନିହିତ ଭାବନା ଭିତରେ ଏପରି ଏକ ଐଶ୍ୱରିକ ଶକ୍ତି ନିହିତ ଥାଏ ତାକୁ ବିଶ୍ଳେଷଣ କଲେ ଦେଖାଯିବ ମଣିଷ ମନର କୌଣସି ଭାବନା ଅନର୍ଥକ ନୁହେଁ । ତେଣୁ ଏ କ୍ଷେତ୍ରରେ ମଧ୍ୟ ଆମେ ଶେଷ ପର୍ଯ୍ୟନ୍ତ ଚେଷ୍ଟା କରିବା ଉଚିତ ।

: ତା'ହେଲେ ଏଇଖଣି ଆମେ କୁଆଡ଼େ ଯିବା ?

: ମିତ୍ରବିନ୍ଦା ଘରକୁ ଯିବା । ପ୍ରଥମେ ଆମକୁ ଚିତ୍ରାଙ୍ଗଦାର ଇତିହାସ ସଂଗ୍ରହ କରିବାକୁ ପଡ଼ିବ । ହୁଏତ ମିତ୍ରବିନ୍ଦା ଆମକୁ ସେ ଦିଗରୁ ଯଥେଷ୍ଟ ସାହାଯ୍ୟ କରିପାରିବ ।

ଆମେ ଚାଲି ଚାଲି ଆଗଉଥିଲୁ । ମେନ୍‌ରୋଡଯାଏ ନ ଗଲେ କୌଣସି ଯାନବାହନ ମିଳିବାର ସମ୍ଭାବନା ନ ଥିଲା ।

ସତ୍ୟବ୍ରତ କହିଲା : ଘଟଣାଟାକୁ ଆମେ ଯେତିକି ସହଜ ଭାବୁଛୁ, ମୋର ମନେହେଉଛି ଏହା ସେତିକି ଜଟିଳ । ମଣିଷର ମନସ୍ତତ୍ତ୍ୱ ବିଶ୍ଳେଷଣ କଲେ ଦେଖାଯାଏ ଯେ, ମଣିଷ ଆତ୍ମହତ୍ୟା କରେ ସେତିକିବେଳେ, ଯେତେବେଳେ ତା'ର ଚରମ ଦୁର୍ଦ୍ଦିନ । ଦୁର୍ଦ୍ଦିନଟାର ସଂଜ୍ଞା ଅବଶ୍ୟ ଭିନ୍ନ ଭିନ୍ନ ହୋଇପାରେ । କିନ୍ତୁ ଚିତ୍ରାଙ୍ଗଦା କ୍ଷେତ୍ରରେ ଏହା ମୋଟେ ସମ୍ଭବ ନୁହେଁ ।

: ତା'ହେଲେ ରହସ୍ୟଟା କେଉଁଠି ? ମୁଁ ପଚାରିଲି । ଆଉ କ'ଣ 'ନାଗା ପାହାଡ଼ର ଦେଶେ' ଏବଂ 'ନାଗାଭୂମି'ର ଚରମ ପ୍ରତିଯୋଗିତାର ଏହି ପରିଣତି ?

ସତ୍ୟବ୍ରତ ମୋ' ପ୍ରଶ୍ନର କୌଣସି ଉତ୍ତର ଦେଲାନାହିଁ ।

ଆମେ ଯାଇ ମିତ୍ରବିନ୍ଦା ଘରେ ପହଞ୍ଚିଲୁ । ପ୍ରଥମ ଥର ଆମେ ଯେତେବେଳେ ତାକୁ ଘରେ ଛାଡ଼ିବାକୁ ଆସିଥିଲୁ, ମୁଁ ଗାଡ଼ିରୁ ଓହ୍ଲାଇ ନ ଥିଲି । ସତ୍ୟବ୍ରତ ଯାଇ ତାକୁ ଘରେ ଛାଡ଼ିଦେଇ ଆସିଥିଲା ।

ବର୍ତ୍ତମାନ ମୁଁ ମିତ୍ରବିନ୍ଦାର ବୈଠକଖାନାରେ ବସି, ସାଜସଜ୍ଜାର ପରିପାଟୀ ଆଡ଼େ ଲକ୍ଷ୍ୟକରି ସତ୍ୟବ୍ରତ ମୁହଁକୁ ଜିଜ୍ଞାସୁ ନୟନରେ ଅନାଇ ରହିଲି ।

: ଚିତ୍ରାଙ୍ଗଦା ଘରର ସାଜସଜ୍ଜା ସହିତ ଏ ଘରର ସାଜସଜ୍ଜା ଅନେକଟା ମିଶିଯାଉଛି, ନା ? ସତ୍ୟବ୍ରତ ମୋତେ ଓଲଟି ପଚାରିଲା ।

: ଅନେକଟା କାହିଁକି, ବହୁ ପରିମାଣରେ ମିଳିଯାଉଚି କହିଲେ ଚଳିବ ।

: ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ସତ୍ୟବ୍ରତ କହିଲା । ତୁ ଭୁଲି ଯାଅନାହିଁ ଯେ ମିତ୍ରବିନ୍ଦା ଚିତ୍ରାଙ୍ଗଦାର ଭଉଣୀ । ତେଣୁ ଚିତ୍ରାଙ୍ଗଦାର ରୁଚିର ଛାପ ଯେ ତା' ଭଉଣୀ ଘରେ ନ ପଡ଼ିବ, ଏହା ଭାବୁଚୁ କାହିଁକି ।

କିନ୍ତୁ...

ମୁଁ କଥା ଶେଷ କରିପାରିଲି ନାହିଁ ।

ମିତ୍ରବିନ୍ଦା ଭିତର ଆଡୁ କବାଟ ଠେଲି ଆମ ଆଗରେ ଆସି ଠିଆହେଲା । ଚେହେରାରେ ତା'ର ମଳିନ ଆଭା ଫୁଟି ଉଠିଥିଲା । ଅତି ସାଧାରଣ ବେଶଭୂଷା । ଲଜ୍ଜା ନିବାରଣ ପାଇଁ ଯେତିକି ଆବଶ୍ୟକ ଖାଲି ସେତିକି ବେଶବାସ ତା' ଦେହରେ ଥିଲା ।

: ବସନ୍ତୁ । ସତ୍ୟବ୍ରତ କହିଲା ।

ମିତ୍ରବିନ୍ଦା ବାଧ୍ୟ ପିଲାଟି ପରି ବସିପଡ଼ିଲା ।

: ଆପଣ ଜାଣନ୍ତି ଆମେ ପୋଲିସ ଲୋକ ନୋହୁଁ । ସତ୍ୟବ୍ରତ କଥା ଆରମ୍ଭ କଲା । ଆପଣଙ୍କ ଭଉଣୀଙ୍କର ମୃତ୍ୟୁରେ ଆପଣଙ୍କ ଠାରୁ ବେଶୀ କ୍ଷତିଗ୍ରସ୍ତ ଆମେ ଅବଶ୍ୟ ନୋହୁ । କିନ୍ତୁ ମାନବିକ ବିଚାରବୁଦ୍ଧିର ତାଡ଼ନାରେ ଆମେ ପୁଣି ଆସିଚୁ ଆପଣଙ୍କୁ ବିରକ୍ତ କରିବା ପାଇଁ ।

ମିତ୍ରବିନ୍ଦା ତଳକୁ ମୁହଁପୋତି ଚୁପ୍‌ଚାପ୍ ବସିରହିଥିଲା ।

: ଆପଣ ସ୍ୱୀକାର କରିଛନ୍ତି ଯେ ଚିତ୍ରାଙ୍ଗଦାର ମୃତ୍ୟୁରେ ଆପଣ ଏକାନ୍ତ ଅସହାୟ ହୋଇପଡ଼ିଚନ୍ତି । ପୁଣି ଦୁନିଆ ଦରବାରରେ ଚିତ୍ରାଙ୍ଗଦାର ଭଉଣୀ ହିସାବରେ ଦାବୀ କରିବାର ବଳିଷ୍ଠ ମନୋବଳ ଆପଣଙ୍କର ନାହିଁ । କାହିଁକି ନାହିଁ, ତା'ର ଭିତିରି କଥା ଆମ ଆଗରେ ପ୍ରକାଶ କରିବା ପାଇଁ ଆପଣ କୁଣ୍ଠାବୋଧ କରୁଛନ୍ତି । ତାହା ଆପଣଙ୍କର ଏକାନ୍ତ ପାରିବାରିକ ଘଟଣା ହୋଇପାରେ । ସେ ସମ୍ବନ୍ଧରେ ଆମେ ଆପଣଙ୍କୁ ଆଦୌ କିଛି ପଚାରିବାକୁ ଆସିନାହୁଁ କିମ୍ବା ଶୁଖିଲା ସହାନୁଭୂତି ଜଣାଇ ଆପଣଙ୍କ ମନର ବେଦନାକୁ ଦୁଇଗୁଣ କରିବା ଆମର ଇଚ୍ଛା ନୁହେଁ ।

ସତ୍ୟବ୍ରତ ନୀରବ ରହିଲା ।

ମୁଁ କିନ୍ତୁ ସତ୍ୟବ୍ରତର ବାଚନଭଙ୍ଗୀରୁ ସ୍ପଷ୍ଟ କିଛି ଧାରଣା କରିପାରିଲି ନାହିଁ । ମନେ ମନେ କେବଳ ଭାବୁଥିଲି, ତା'ହେଲେ ଆମେ ଏଠାକୁ ଆସିଲୁ କାହିଁକି ?

: ମିତ୍ରବିନ୍ଦା ! ସୁନ୍ଦର ନାଁଟିଏ ଆପଣଙ୍କର । କିଏ ଏଇ ନାଁଟି ରଖିଥିଲା ?

ସତ୍ୟବ୍ରତ ସଙ୍ଗେସଙ୍ଗେ ପ୍ରସଙ୍ଗ ବଦଳାଇଲା ।

ତଥାପି ମିତ୍ରବିନ୍ଦା ନୀରବରେ ବସିଥିଲା ।

ସତ୍ୟବ୍ରତ ଅଳ୍ପ ସମୟ ନୀରବ ରହି, ମୋ' ଆଡ଼କୁ ଚାହିଁ କହିଲା : ଆମେ ଯେଉଁ ପ୍ରସ୍ତାବ ନେଇ ମତା ଦେବୀଙ୍କ ପାଖକୁ ଆସିଚନ୍ତି, ସେଥିପାଇଁ ଆଉ ଦୁଇ ଚାରିଦିନ ପରେ ଆସିଥିଲେ ଭଲ ହୋଇଥାଆନ୍ତା । ବର୍ତ୍ତମାନ ତାଙ୍କ ମନର ଅବସ୍ଥା ଯାହା, ସେଥିରେ ଆମର ଏହି ପ୍ରସ୍ତାବ ହୁଏତ ସେ ସୁସ୍ଥ ମସ୍ତିଷ୍କରେ ବିବେଚନା କରିପାରିବେ ନାହିଁ ।

ମିତ୍ରବିନ୍ଦା ମୁଣ୍ଡ ଟେକି ଅନେଇଲା ।

ମୁଁ ବି ଆଶ୍ଚର୍ଯ୍ୟ ହୋଇଯାଇଥିଲି । ମିତ୍ରବିନ୍ଦା ପାଖକୁ ଆମେ କି ପ୍ରସ୍ତାବ ଧରିଆସିଚୁ ?

: ଅବଶ୍ୟ ଆପଣ କିଛି ମନେକରିବେ ନାହିଁ ମତା ଦେବୀ । ମୁଁ କିନ୍ତୁ ଏମାନଙ୍କ ପ୍ରସ୍ତାବ ସହିତ ଏକମତ ନୁହେଁ । ଚିତ୍ରାଙ୍ଗଦା ଦେବୀ ଛାୟାଚିତ୍ରରେ ଅଭିନୟ କରୁଥିଲେ ବୋଲି ଆପଣଙ୍କୁ ଯେ ତାଙ୍କରି ପଥ ଅନୁସରଣ କରିବାକୁ ହେବ, ତା'ର କୌଣସି ଅର୍ଥ ହୁଏ ନାହିଁ । ପ୍ରତ୍ୟେକ ମଣିଷର ଗୋଟାଏ ସ୍ୱତନ୍ତ୍ର ଚିନ୍ତାଧାରା ଅଛି, ସ୍ୱତନ୍ତ୍ର ଅଭିଳାଷ ଅଛି, ସ୍ୱତନ୍ତ୍ର ଲକ୍ଷ୍ୟ ଅଛି । ତେଣୁ ମୋ' ମତରେ

ମତା ଦେବୀଙ୍କୁ ଏ ପଥକୁ ଟାଣିବା ଉଚିତ ହେବ ନାହିଁ । ଆପଣଙ୍କର ମତ କ'ଣ ମତା ଦେବୀ ?

ମିତ୍ରବିନ୍ଦା ମୁହଁ ଭାରି ହୋଇଆସୁଥିଲା । ଆଖି ଦୁଇଟାରେ ନିଆଁ ଜଳି ଆସୁଥିଲା । ନାକରୁ ଖରଶ୍ୱାସ ବାହାରୁଥିଲା । ଶେଷରେ ସେ ନିଜକୁ ସଂଯତ ରଖିପାରିଲା ନାହିଁ ।

: ମୁଁ ଛାୟାଚିତ୍ରରେ ଅଭିନୟ କରିବି, ଏ କଥା ଆପଣଙ୍କୁ କିଏ କହିଲା ?

: କେହି କହି ନାହାନ୍ତି, କେବଳ ଏହା ଏକ ପ୍ରସ୍ତାବ ବୋଲି ଆପଣ ଧରି ନେଇପାରନ୍ତି । ଚିତ୍ରାଙ୍ଗଦା ଦେବୀ ଅନେକଗୁଡ଼ିଏ ଚିତ୍ର ସହିତ ସଂପୃକ୍ତ ଥିଲେ । ଫଳରେ ବହୁ ଚିତ୍ର ଅସମାପ୍ତ ହୋଇ ପଡ଼ିରହିଛି । ଲକ୍ଷ ଲକ୍ଷ ଟଙ୍କା ପ୍ରଡ୍ୟୁସରମାନଙ୍କର ନଷ୍ଟ ହେଉଚି । ସେମାନେ ଚାହୁଁଚନ୍ତି, ଆପଣ ଯଦି ଚିତ୍ର ଜଗତରେ ପ୍ରବେଶ କରିବାକୁ ଇଚ୍ଛା ପ୍ରକାଶ କରନ୍ତେ, ତା'ହେଲେ ଚିତ୍ରାଙ୍ଗଦାଙ୍କର ଅସମାପ୍ତ ଛବିଗୁଡ଼ିକ ସେମାନେ ଆପଣଙ୍କ ମାଧ୍ୟମରେ ଶେଷ କରିବାର ଉଦ୍ୟମ କରନ୍ତେ ।

ମିତ୍ରବିନ୍ଦା ରାଗରେ ଫୁଲି ଉଠିଥିଲା । କହିଲା : କୌଣସି ଭଦ୍ରମହିଳା ପାଖକୁ ଏପରି ଏକ ପ୍ରସ୍ତାବ ଘେନିଆସିବା ପୂର୍ବରୁ ଆପଣଙ୍କର ଯଥେଷ୍ଟ ଭାବିବା ଉଚିତ ଥିଲା ।

: ଅବଶ୍ୟ ଥିଲା, ସତ୍ୟବ୍ରତ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ କହିଲା । କିନ୍ତୁ ଆହୁରି ଗୋଟିଏ ଦିଗ ପ୍ରତି ଆପଣଙ୍କର ମଧ୍ୟ ଭାବିବା ଉଚିତ । ସେଇ ଦିଗଟା ହେଉଚି ଆପଣଙ୍କର ଅର୍ଥନୈତିକ ପରିସ୍ଥିତି । ଏହାପରେ ଆପଣ ଏହି ଦୁନିଆରେ ତିଷ୍ଠିବେ କିପରି ?

: ମୋର ବରଂ ମୃତ୍ୟୁ ହେବ, କିନ୍ତୁ ମୁଁ ମୋ' ଅପାର ଉପଦେଶକୁ ଅମାନ୍ୟ କରିପାରିବି ନାହିଁ ।

: ଆପଣ ଭୁଲ୍ କରନ୍ତୁ ନାହିଁ ମିତାଦେବୀ ! କାହାରି ଆଦର୍ଶ ବା ଉପଦେଶ ଜୀବନର ସବୁ ନୁହେଁ । ପୃଥିବୀରେ ବଞ୍ଚି ରହିବାକୁ ହେଲେ ନିଜ ଇଚ୍ଛାରେ ବା ଚଳନ୍ତି ପଥର ସୁବିଧା ଅସୁବିଧାରେ କାହାରି ଆଦେଶ ହେଉ ବା ଉପଦେଶ ହେଉ ତାହାର ଅଦଳ ବଦଳ କରିବାକୁ ହୋଇଥାଏ । ଆପଣଙ୍କର ଏହା ଏକ ସୁବର୍ଣ୍ଣ ସୁଯୋଗ । ମୋ' ମତରେ ଆପଣ ଚିତ୍ରଜଗତରେ ଯୋଗଦେଲେ ଭଲ ହୁଅନ୍ତା କାରଣ ଏ ସୁଯୋଗ ଆଉ ଆପଣଙ୍କ ଜୀବନରେ ଆସିବ ନାହିଁ । ଅବଶ୍ୟ ଏଇଟା ଆପଣଙ୍କର ସଂପୂର୍ଣ୍ଣ ବ୍ୟକ୍ତିଗତ କଥା । ମୁଁ ଜୋର୍ ଦେଇପାରିବି ନାହିଁ ।

: ନା ନା, ମୁଁ ପାରିବି ନାହିଁ । ଅପାର ଆଦେଶ ଅମାନ୍ୟ ମୋ' ପକ୍ଷରେ ମୋଟେ ସମ୍ଭବ ନୁହେଁ । କାଲି ରାତିରେ ମଧ୍ୟ ଅପା ମୋତେ ସେହି ସମ୍ବନ୍ଧରେ ଉପଦେଶ ଦେଇଥିଲା ।

: ଆଚ୍ଛା ମତାଦେବୀ ! ଆପଣ ଚିତ୍ରାଙ୍ଗଦା ଠାରୁ ଦୂରେଇ ରହୁଥିଲେ କାହିଁକି କହିଲେ ନାହିଁ ତ ?

: ଶୁଣି ଆପଣଙ୍କର କୌଣସି ଲାଭ ହେବ ନାହିଁ ।

: ତଥାପି...

: ଅପାର ଇଚ୍ଛା ଥିଲା, ସେ ମୋତେ ଗୋଟିଏ ଭଲ ମଣିଷ କରି ଦୁନିଆ ଦରବାରରେ ଠିଆ କରେଇବ । ତା'ର ଧାରଣା ଥିଲା, ତା' ଜୀବନଟା ସବୁବେଳେ କଳୁଷ-କାଳିମା ଭିତରେ ବୁଡ଼ି ରହିଛି । ତେଣୁ କୌଣସି ପ୍ରକାର କାଳିମା ମୋ' ଦେହରେ ବା ମନରେ ନ ଲାଗୁ ସେଥିପାଇଁ ଅପାର ଏହି ପ୍ରଚେଷ୍ଟା ।

: ହୁଁ, ଚିତ୍ରାଙ୍ଗଦା ଦେବୀଙ୍କଠାରୁ ଆପଣ କେତେ ବର୍ଷ ସାନ ?

: ପ୍ରାୟ ସାତ ଆଠବର୍ଷ ହେବ ।

: ଆପଣଙ୍କର ଆଉ କୌଣସି ଭାଇଭଉଣୀ ଅଛନ୍ତି ?

: କେହି ନାହାନ୍ତି । ମୁଁ ସଂପୂର୍ଣ୍ଣ ଏକା ।

: ବୁଝିଲି । ଖୁବ୍ ଦୁଃଖର କଥା ମତାଦେବୀ । ଆପଣଙ୍କ ନାଁରେ ଚିତ୍ରାଙ୍ଗଦା ଦେବୀ କ'ଣ କୌଣସି ବ୍ୟାଙ୍କ ବାଲାନ୍‌ସ ରଖି ନାହାନ୍ତି ?

: କିଛି ନାହିଁ । ତା'ଛଡ଼ା ଅପା ସବୁବେଳେ ଅଭାବ ଭିତରେ ଚଳୁଥିଲା ।

: ଚିତ୍ରାଙ୍ଗଦା ଦେବୀ ଅଭାବ ଭିତରେ ଚଳୁଥିଲେ ? ଆପଣ କ'ଣ କହୁଛନ୍ତି ମତାଦେବୀ ?

: ମୁଁ ସତକଥା କହୁଛି । ଅବଶ୍ୟ ମୋର ଏହି କଥା କେହି ବିଶ୍ୱାସ କରିପାରିବେ ନାହିଁ । କିନ୍ତୁ ଅପାର ଅଭାବ ଚିରଦିନ ଲାଗି ରହିଥିଲା ।

: କାରଣ ?

: ମୋତେ ଜଣା ନାହିଁ । ମୋତେ ସେ ତା' ଅଭାବ ଅସୁବିଧା କଥା କେବେ ଜାଣିବାକୁ ଦେଇ ନାହିଁ । ସବୁବେଳେ ବରଂ ସେ ଚେଷ୍ଟା କରିଆସିଛି ମୋ' ମନ ଉପରେ ଯେପରି ଅଭାବ ଅନଟନର କୌଣସି ପ୍ରଭାବ ନ ପଡ଼େ । ସେଥିପାଇଁ ମାସ ଶେଷ ନ ହେଉଣୁ ସେ ଟଙ୍କା ପଠାଇ ଦେଉଥିଲା ।

: ଆଚ୍ଛା ମତାଦେବୀ, ଗୋଟାଏ ପ୍ରଶ୍ନ । ଚିତ୍ରାଙ୍ଗଦା ଦେବୀ କ'ଣ ବିବାହ କରିଥିଲେ ?

ପ୍ରଥମେ ମିତ୍ରାବିନ୍ଦା ଚୁପ୍ ରହିଗଲା । ତା'ପରେ ଧୀରେ ଧୀରେ କହିଲା : ଠିକ୍ ମତେ ଜଣାନାହିଁ । କିନ୍ତୁ ମୁଁ ଏତିକି ଅନୁମାନ କରିପାରିଥିଲି ଯେ ଅପା କେବେ ଶାନ୍ତିରେ ନ ଥିଲା ।

: କାରଣ କିଛି ଜାଣିଥିଲେ ?

: ନା ।

: ହୁଁ, ଚିତ୍ରାଙ୍ଗଦା ଦେବୀଙ୍କ ସହିତ ଆପଣଙ୍କର ରୋଜ ଦେଖା ସାକ୍ଷାତ ହେଉଥିଲା ?

ପ୍ରାୟ । ମାସରେ ତ ପନ୍ଦର ଦିନ ନିଶ୍ଚୟ । କିନ୍ତୁ ଗୋଟାଏ କଥା ମୁଁ ବୁଝିପାରୁ ନାହିଁ, ଆପଣ କାହିଁକି ଅପା ସମ୍ବନ୍ଧରେ ଏତେ ବେଶୀ ଜାଣିବାକୁ ଚାହୁଁଚନ୍ତି ?

ଏଥର ସତ୍ୟବ୍ରତ କିଛି ଉତ୍ତର ନ ଦେଇ ମୋ' ମୁହଁକୁ ଚାହିଁଲା ।

ମୁଁ ଆରମ୍ଭ କଲି : ମୁଁ ତା'ହେଲେ ଆପଣଙ୍କ ଆଗରେ ସତ କଥା କହୁଛି ମତାଦେବୀ । ଆମ ସମସ୍ତଙ୍କର ଚିତ୍ରାଙ୍ଗଦା ଦେବୀଙ୍କ ଆତ୍ମହତ୍ୟା ସମ୍ବନ୍ଧରେ ଏକ କୌତୂହଳ ପୂରି ରହିଚି । ଯେପରି ଆପଣ ବିଶ୍ୱାସ କରିପାରୁ ନାହାନ୍ତି ଏ ମୃତ୍ୟୁ ଆତ୍ମହତ୍ୟା ନୁହେଁ, ସେହିପରି ଆମେମାନେ ମଧ୍ୟ ସହଜରେ ସ୍ୱୀକାର କରିନେଇ ପାରୁନାହୁଁ । ଆଉ ଏ ହେଉଚନ୍ତି ସତ୍ୟବ୍ରତ ମହାପାତ୍ର । ଆପଣ ତାଙ୍କ ନାଁ ଶୁଣିଛନ୍ତି କି ନାହିଁ ମତେ ଜଣାନାହିଁ, ତେବେ ସେ ହେଉଛନ୍ତି ଓଡ଼ିଶାର ଜଣେ ବିଖ୍ୟାତ କ୍ରିମିନଲୋଜିଷ୍ଟ୍ । ମୋର ଅନ୍ତରଙ୍ଗ ବନ୍ଧୁ । ଦୈବାତ୍ ସେ କଲିକତା ଆସିଥିଲେ ଏବଂ ଚିତ୍ରାଙ୍ଗଦା ଦେବୀଙ୍କ ମୃତ୍ୟୁ ସମ୍ବନ୍ଧରେ ପ୍ରକୃତ ତଥ୍ୟ ଆବିଷ୍କାର କରିବା ପାଇଁ ଆମେ ତାଙ୍କୁ ଅନୁରୋଧ କରିଚୁ ।

ମିତ୍ରବିନ୍ଦା ହାତଯୋଡ଼ି ସତ୍ୟବ୍ରତକୁ ନମସ୍କାର କଲା ।

ପ୍ରତିନମସ୍କାର ପରେ ସେ କହିଲା : ଘଟଣା ସ୍ଥଳକୁ ମୁଁ ଯାଇଥିଲି, ଆପଣ ତ ଜାଣନ୍ତି । ଚିତ୍ରାଙ୍ଗଦା ଯେ ଆତ୍ମହତ୍ୟା କରିନାହାନ୍ତି, କେବଳ ମନସ୍ତାତ୍ତ୍ୱିକ କେତେକ ପଏଣ୍ଟ ଛଡ଼ା କୌଣସି ସ୍ଥୂଳ ପ୍ରମାଣ ମୁଁ ପାଉନାହିଁ । ପୋଲିସ୍ ବିଭାଗ କଥା ତ ସ୍ୱତନ୍ତ୍ର । ତେବେ ମୋର ପରମ ସୌଭାଗ୍ୟ ଯେ, ଆପଣଙ୍କ ସହିତ ହଠାତ୍ ଭେଟ ହେଲା । ମୁଁ ଭାବୁଚି, ଏହା ପଛରେ ହୁଏତ ଭଗବାନଙ୍କର ଆଶୀର୍ବାଦ ଅଛି ।

: ଥାଇପାରେ । ମିତ୍ରବିନ୍ଦା ଧୀର ସ୍ୱରରେ କହିଲା । କିନ୍ତୁ ଅପାର ମୃତ୍ୟୁ

ରହସ୍ୟ ଆପଣ ହତ୍ୟା ବୋଲି ଯଦି ପ୍ରମାଣିତ କରାଇପାରନ୍ତି, ସେଥିରେ ଆପଣଙ୍କର କ'ଣ ଲାଭ ହେବ ?

ସତ୍ୟବ୍ରତ ସ୍ମିତ ହସି କହିଲା : ଆପଣ ବୟସରେ ଖୁବ୍ ସାନ ମତାଦେବୀ । ବିଚାର ବିବେଚନାର ଶକ୍ତି ମୋ'ଠାରୁ ଯଥେଷ୍ଟ କମ୍ । ଗୋଟାଏ କଥା କ'ଣ ଜାଣନ୍ତି ? ମୁଁ ଜଣେ ସତ୍ୟ ସଂଧାନୀ । ମିଥ୍ୟା ଅଭିଯୋଗ ମୋତେ ବରଦାସ୍ତ କରିପାରେ ନାହିଁ । ଚିତ୍ରାଙ୍ଗଦାର ମୃତ୍ୟୁରହସ୍ୟକୁ ହତ୍ୟାରୂପେ ପ୍ରମାଣିତ କରାଇ ମୋର କୌଣସି ଲାଭ ହେବନାହିଁ, ଏ କଥା କିଏ କହିଲା ? ସତ୍ୟର ସନ୍ଧାନ ମିଳିବ, ଅପରାଧୀ ଶାସ୍ତିଭୋଗ କରିବ । ଏହାଠାରୁ ଅଧିକ ଲାଭ ଆଉ କ'ଣ ମୋର ହୋଇପାରେ ?

: ତା'ହେଲେ ଆପଣ ମୋ'ଠାରୁ କ'ଣ ଆଶା କରୁଛନ୍ତି ?

: ମୁଁ କେବଳ ଚାହେଁ, ଚିତ୍ରାଙ୍ଗଦାର ଅତୀତ ସମ୍ବନ୍ଧରେ ସାମାନ୍ୟ ଧାରଣା । ଆପଣଙ୍କ ଛଡ଼ା କେହି ହୁଏତ ତାହାର ସନ୍ଧାନ ଦେଇପାରିବେ ନାହିଁ ।

ମିତ୍ରବିନ୍ଦା ବହୁ ସମୟ ନୀରବରେ ବସିରହିଲା । ତା'ପରେ ମୋ' ମୁହଁକୁ ଏବଂ ସତ୍ୟବ୍ରତ ମୁହଁକୁ ଚାହିଁ କହିଲା : ଆପଣମାନେ ଚା' ଖାଇବେ ?

: ଆପତ୍ତି ନାହିଁ । ସଙ୍ଗେ ସଙ୍ଗେ ସତ୍ୟବ୍ରତ ଉତ୍ତର ଦେଲା ।

ମିତ୍ରବିନ୍ଦା ସେଠାରୁ ନୀରବରେ ଉଠି ଚାଲିଗଲା ।

ତା'ରି ଯିବା ପଥକୁ କିଛି ସମୟ ଚାହିଁ ରହି ମୁଁ କହିଲି : ମିତ୍ରବିନ୍ଦା ଆଉ ବୋଧହୁଏ ଫେରିବ ନାହିଁ ।

: ନ ଫେରିଲେ ବି ମଙ୍ଗଳ । ସତ୍ୟବ୍ରତ ଉତ୍ତର ଦେଲା ।

: ନ ଫେରିଲେ ମଙ୍ଗଳ ମାନେ ?

: ଏହାକୁ ଗୋଟାଏ ସୂତ୍ର ବୋଲି ଧରିନେବାକୁ ହେବ ।

: କିପରି ?

: ଧରିନେବାକୁ ହେବ ଯେ ମିତ୍ରବିନ୍ଦା ଚିତ୍ରାଙ୍ଗଦାର ପ୍ରକୃତ ହିତାକାଂକ୍ଷୀ ନ ଥିଲା । ତା'ପରେ ଅନୁସନ୍ଧାନର ଧାରା ଭିନ୍ନ ପଥରେ ଚଳିବ ।

: ଆଉ ଯଦି ଫେରିଆସେ ?

: ତା'ହେଲେ ବି ମଙ୍ଗଳ ।

ସତ୍ୟବ୍ରତର ଉତ୍ତର ଶୁଣି ଏଥର ମୁଁ ହସିଉଠିଲି । କହିଲି : ବେଶ୍ ବ୍ୟବସାୟ ତ ତୋ'ର । ଖଣ୍ଡାର ଦୁଇ ପଟରେ ଧାରକରି ଆଗେଇ ଚାଲିଛୁ ।

: ବେଳେ ବେଳେ ମୋରି ଖଣ୍ଡାଧାର ମୋରି ହାତ କାଟିଦିଏ । ସେତେବେଳେ କିନ୍ତୁ ମୋ' ବ୍ୟବସାୟର ତାରିଫ୍ ତୁ କରିପାରିବୁ ନାହିଁ ।

: ହେଉ ଛାଡ଼େ ସେ କଥା । ମିତ୍ରବିନ୍ଦା ସହିତ କଥାବାର୍ତ୍ତା କରି ତୁ କ'ଣ ବୁଝିଲୁ ?

: ଏଉଠୁ ସବୁ ଖବର ମିଳିବ । ଟିକିଏ ଖାଲି ଧୈର୍ଯ୍ୟର ପ୍ରୟୋଜନ ।

ଗୋଟିଏ ପରିଚାରିକା ଆସି ଟ୍ରେ'ଟିଏ ଟେବୁଲ ଉପରେ ରଖି ଦେଇଗଲା । ଦୁଇ କପ୍ ଚା', ଏବଂ ଚାରିଖଣ୍ଡ ବିସ୍କୁଟ ଟ୍ରେ'ଟିରେ ରଖା ହୋଇଥିଲା ।

ଆମ ଦୁହିଁଙ୍କର ଚା' ପିଆ ଶେଷ ହେବା ବେଳକୁ ମିତ୍ରବିନ୍ଦା ଆସି ଆମ ସାମ୍ନାରେ ଠିଆହେଲା । ସେ ତା' ହାତରେ ଗୋଟିଏ ଛୋଟ କାଠ ବାକ୍ସ ଧରିଥିଲା ।

ମୁଁ ତାକୁ ବସିବାକୁ କହିଲି ।

ମିତ୍ରବିନ୍ଦା ହାତବାକ୍ସଟି ଟେବୁଲ ଉପରେ ଥୋଇ ବସିପଡ଼ିଲା । ସେ ଖୁବ୍ କ୍ଳାନ୍ତ ଜଣା ଯାଉଥିଲା । ଖୁବ୍ ଚିନ୍ତିତ ମନେ ହେଉଥିଲା ।

ଅବଶ ସ୍ୱରରେ କହିଲା : ଆପଣ ଜଣେ କ୍ରିମିନଲୋଜିଷ୍ଟ ଜାଣି ମୁଁ ଏତେ ନିଶ୍ଚିନ୍ତ ହୋଇଛି ଯେ, ଆପଣ ଧାରଣା କରିପାରିବେ ନାହିଁ । ବିଶେଷ କରି ଆପଣଙ୍କ ନାଁ ମୁଁ ଖବରକାଗଜରୁ ଥରେ ଦି' ଥର ପଢ଼ିଥିଲି । ଏଇ ଚାରି ପାଞ୍ଚ ଦିନ ତଳେ ଆପଣଙ୍କ ନାଁ ଏଠାକାର ଖବରକାଗଜରେ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ଏ ବାକ୍ସଟି ଆପଣ ନିଅନ୍ତୁ । ଏହା ଭିତରେ ଅପା ଜୀବନର ଇତିବୃତ୍ତି ସମସ୍ତ ସେ ନିଜ ହାତରେ ଲେଖି ରଖିଛି । ମଝିରେ ମଝିରେ କେବଳ ସେ ଏଠାକୁ ଆସୁଥିଲା ତା'ର ଡାଇରି ଲେଖିବା ପାଇଁ । ଏ ବାକ୍ସର ଚାବି ମୋ' ପାଖରେ ନାହିଁ । ସେ ନିଜେ ଆସି ଚାବି ଖୋଲି ଏହାକୁ ଲେଖୁଥିଲା ଏବଂ ଚାବି ବନ୍ଦକରି ଚାଲି ଯାଉଥିଲା । କଥା ପ୍ରସଙ୍ଗରେ ମୋତେ ଦିନେ ସେ କହିଥିଲା, ଦୈବାତ୍ କେବେ ଯଦି ମୋର ଆକସ୍ମିକ ମୃତ୍ୟୁ ହୋଇଯାଏ, ତେବେ ଏହି ବାକ୍ସଟି ତୁ କୌଣସି ବିଶ୍ୱସ୍ତ ଲୋକ ହାତରେ ଦେଇଦେବୁ । ଏହା ଭିତରେ କ'ଣ ଅଛି ନିଜେ ତୁ ପଢ଼ିବାକୁ ଚେଷ୍ଟା କରିବୁ ନାହିଁ ।

ମିତ୍ରବିନ୍ଦା ନାକରୁ ଦୀର୍ଘଶ୍ୱାସ ବାହାରି ଆସିଲା ।

: କ'ଣ କହିଲେ ? ଚିତ୍ରାଙ୍ଗଦା କହିଥିଲା ମୋର ଯଦି ଆକସ୍ମିକ ମୃତ୍ୟୁ ହୁଏ... ଆକସ୍ମିକ ମୃତ୍ୟୁ ହେବାର ସମ୍ଭାବନା ତା' ମନରେ ତା'ହେଲେ ଥିଲା ?

: ହଁ, ହୁଏତ ଥିଲା କିମ୍ୱା କଥାପ୍ରସଙ୍ଗରେ ସେଦିନ ସେ ମୋତେ କହିଥିଲା ।

କେବେ ସେ ଲେଖା ଆରମ୍ଭ କରିଥିଲା ?

ଅନେକ ଦିନ ହେବ । ଅନ୍ତତଃ ତିନିଚାରିମାସରୁ କମ୍ ହେବ ନାହିଁ ।

: ମାତ୍ର ଚାରିପାଞ୍ଚମାସ ହେବ ?

: ହଁ, ଅପା ଦିନେ ଷ୍ଟୁଡିଓରୁ ଖୁବ୍ କ୍ଳାନ୍ତ ହୋଇ ଫେରିଥିଲା । ସେଦିନ ତା' ମନଟା ମୋଟେ ଭଲ ନ ଥିଲା । ଏଠି ଆସି ଗୋଟିଏ ଆରାମ ଚେଆର ଉପରେ ଆଖିବୁଜି ଚୁପ୍‌ଚାପ୍ ଶୋଇପଡ଼ିଲା । କିଛି ସମୟ ପରେ ମୁଁ ଦେଖିଲି ତା' ଆଖିରୁ ଧାରଧାର ଲୁହ ଝରିପଡୁଛି ଆଉ ସେ କଇଁକଇଁ ହୋଇ କାନ୍ଦୁଛି । ମୁଁ ତାକୁ ସେଦିନ କୌଣସି କଥା ପଚାରିବାକୁ ଭରସା କରିପାରିଲି ନାହିଁ । ଘଣ୍ଟାଏ ଦୁଇଘଣ୍ଟା ପରେ ମନକୁମନ ସେ ଉଠିଲା । ଘର ଭିତରକୁ ଯାଇ ମୋ' ପଢ଼ା ଟେବୁଲରୁ ଗୋଟାଏ ମୋଟା ଖାତା ଉଠାଇ ନେଲା । ଘରେ ବସି ଲେଖିବାକୁ ଆରମ୍ଭ କରିଦେଲା । ଲେଖୁଲେଖୁ ସେଦିନ ତା'ର ରାତି ପାହି ଯାଇଥିଲା ।

ସକାଳୁ ଉଠି ମୁଁ ତାକୁ ପଚାରିଲି, କ'ଣ ଏତେ ଲେଖୁଥିଲୁ ?

ସେ କହିଲା, କିଛି ନୁହେଁ । ଏଣିକି ମୁଁ ନିତି ଆସିବି । ନିତି ଲେଖିବି । ମୁଁ କ'ଣ ଲେଖୁଛି କି କାହିଁକି ଲେଖୁଛି ମୋତେ କିଛି ପଚାରିବୁ ନାହିଁ କିମ୍ୱା ଏ ଲେଖାଗୁଡ଼ିକ ପଢ଼ିବାକୁ କେବେ ଚେଷ୍ଟା କରିବୁ ନାହିଁ ।

ତା'ପର ଦିନ ସଂଧ୍ୟା ବେଳେ ପୁଣି ସେ ଆସିଲା । ହାତରେ ତା'ର ଏଇ କାଠବାକ୍‌ସଟି ଥିଲା ।

ମୁଁ ପଚାରିଲି, ଏହା ଭିତରେ କ'ଣ ଅଛି ?

ସେ କହିଲା, ସେଇ ଲେଖା ଖାତା ବାକ୍ସରେ ଚାବି ଦେଇ ରଖିଯାଉଚି । ଯଦି କେବେ ମୋର ଆକସ୍ମିକ ମୃତ୍ୟୁ ହୁଏ, ତେବେ ଏହି ବାକ୍ସଟି ଗୋଟିଏ ବିଶ୍ୱାସୀ ଲୋକ ହାତରେ ଦେଇ କହିବୁ, ଏ ଦେଶର ଗୋଟିଏ ନାରୀର ଅମୂଲ୍ୟ ସମ୍ପଦ ଏହା ଭିତରେ ଅଛି ।

ମିତ୍ରବିନ୍ଦା କଥା ଶେଷକରି ନୀରବ ରହିଲା ।

: ଯଦି ଆକସ୍ମିକ ମୃତ୍ୟୁ ହୁଏ, ବାକ୍ସଟି ଜଣେ ବିଶ୍ୱାସୀ ଲୋକ ହାତରେ ଦେବୁ, କେବେ କହିଥିଲା ? ସତ୍ୟବ୍ରତ ପଚାରିଲା ।

: ମଝିରେ ମଝିରେ ସେ କୁହେ । ଯେଉଁଦିନ ଖୁବ୍ କ୍ଳାନ୍ତ ହୋଇଥାଏ ବା ଦେହମନରେ ବିରକ୍ତି ଭରି ରହିଥାଏ, ସେଇଦିନ କହେ ।

: ଏଇ ଶେଷଥର ଆକସ୍ମିକ ମୃତ୍ୟୁ କଥା କେବେ କହିଥିଲା ?

ମିତ୍ରବିନ୍ଦା ଚୁପ୍‌ଚାପ୍ ଚିନ୍ତା କରୁଥିଲା ।

: ଗତକାଲି ନା ପହରିଦିନ ? କେବେ ସେ ଆକସ୍ମିକ ମୃତ୍ୟୁ କଥା କହୁଥିଲା ? ସତ୍ୟବ୍ରତ ମନରେ ଯେପରି ଆଗ୍ରହ ଭରି ରହିଥିଲା ।

: ପାଞ୍ଚଛଅଦିନ ଆଗରୁ ।

ମିତ୍ରବିନ୍ଦା ନୀରସ ସ୍ୱରରେ ଉତ୍ତର ଦେଲା ।

ଏହି ଉତ୍ତରରେ ଯେପରି ସତ୍ୟବ୍ରତ ମନର ସମସ୍ତ ଆଶା ଭରସା ଭୁଶୁଡ଼ି ପଡ଼ିଲା ।

ସେ ଚୁପ୍‌ଚାପ୍ କିଛି ସମୟ ବସିରହିଲା ।

: ହୁଁ, ସତ୍ୟବ୍ରତ ଟେବୁଲ ଉପରୁ ବାକ୍‌ସଟି ଉଠାଇଲା । ଖୁବ୍ ହାଲ୍‌କା । କହିଲା, ଆମେ କ'ଣ ଆପଣଙ୍କର ବିଶ୍ୱାସଭାଜନ ହୋଇପାରିଛୁ ମତା ଦେବୀ ?

ମିତ୍ରବିନ୍ଦା କୌଣସି ଉତ୍ତର ଦେଲା ନାହିଁ ।

ନୀରବରେ ଉଠି ଠିଆହେଲା । ହାତଯୋଡ଼ି ଦୁଇଜଣଙ୍କୁ ନମସ୍କାର ଜଣାଇ ଧୀରେ ଧୀରେ ସେ ଚାଲିଗଲା ।

'ଯେଉଁଦିନ ଠାରୁ ମୋ' କଥା ମୋର ମନେଅଛି, ସେଦିନ ଆଜି ମୋ' ହାତ ପାହାନ୍ତାରୁ ବହୁ ଦୂରରେ । ତେବେ ବି ସେହି ଦିନଗୁଡ଼ିକ ଥିଲା ବରଂ ମୋର ପରମ ଆନନ୍ଦର ଦିନ ।

ମୋର ବୟସ ସେତେବେଳକୁ କେତେ ହେବ ? ଚଉଦ କି ପନ୍ଦର । ବାପା ଶ୍ୱାସରୋଗୀ ! ମା' ଘର ଚଳାଏ । ଭାଗଚାଷରୁ ଯାହା ଆସେ, ସେଥିରେ କୌଣସି ପ୍ରକାର ଢୋକେ ପିଇ ଦଣ୍ଡେ ଛିଉଁ ।

ଗାଁ ମାଇନର ସ୍କୁଲର ଷଷ୍ଠ ଶ୍ରେଣୀରୁ ମୋ' ପାଠପଢ଼ା ବନ୍ଦ ହୋଇଯାଇଥିଲା । ଦେହମନରେ ମୋର ପରିବର୍ତ୍ତନ ଆସିଥିଲା । ସେଥିପାଇଁ ମା' ମୋତେ ଆଉ ସ୍କୁଲକୁ ଛାଡ଼ିବାକୁ ରାଜି ହେଉ ନ ଥିଲେ ।

ଆମ ସ୍କୁଲ ସେକ୍ରେଟରୀଙ୍କ ପୁଅ କମଳ ଲୋଚନ । କେଜାଣି କାହିଁକି ତା'ର ଶୁଭଦୃଷ୍ଟି ମୋ' ଉପରେ ପଡ଼ିଲା । ମୋ' ପାଠପଢ଼ା ବନ୍ଦ ହେବାଟାକୁ ସେ ମୋଟେ ସହିପାରିଲା ନାହିଁ । ବାପାଙ୍କୁ କହିଲା, ମା'କୁ ବୁଝେଇଲା । କମଳଲୋଚନର ବାପା ନିଜେ ଆସି ଆମ ଘରେ ପହଞ୍ଚିଲେ । ବଡ଼ଲୋକଙ୍କୁ ଉତ୍ତର ନାହିଁ ନୀତିରେ ମୋର ପୁଣି ପାଠପଢ଼ା ସ୍ଥିର ହେଲା ।

କମଳଲୋଚନ ପ୍ରତି ସେହିଦିନୁ ମୋ' ମନ ଭିତରେ କିପରି ଏକ ଶ୍ରଦ୍ଧାଭାବ ଜାଗି ରହିଲା । ମୋତେ ସେ ବାଟରେ ଘାଟରେ କେଉଁଠି ଦେଖିଲେ ଟିକିଏ ହସିଦିଏ, ମୋ' ମୁହଁରୁ ବି ହସ ଆପଣା ଛାଏଁ ବାହାରି ଆସେ ।

ସ୍କୁଲର ସେକ୍ରେଟାରୀ ମୋତେ ପଢ଼ିବାର ସମସ୍ତ ସୁଯୋଗ କରାଇ ଦେଇଥିଲେ । ପଇସାପତ୍ର କିଛି ପଡୁ ନଥିଲା । ମୋ' ସ୍କୁଲକୁ ଯିବା ଆସିବାରେ ବାପା ମା'ଙ୍କର ଦିହସୁହା ହୋଇଯାଇଥିଲା ।

ସେ ବର୍ଷ ଖୁବ୍ ଦକ୍ଷତା ସହକାରେ ମୁଁ ଷଷ୍ଠ ଶ୍ରେଣୀରୁ ପାଶ୍ କଲି । ଆମ ସ୍କୁଲର ବାର୍ଷିକ ଅଧିବେଶନରେ ମୋତେ କେତେଗୁଡ଼ିଏ ପୁରସ୍କାର ମିଳିଲା । ମୁଁ ସେଗୁଡ଼ିକ ନେଇ ଯାଇ ବାପା ମା'ଙ୍କୁ ଦେଖାଇଲି । ସେମାନେ ଆନନ୍ଦରେ ମୋତେ କୋଳରେ ଜାକି ଧରିଲେ । ବୋଉ ଆଖିରୁ ଲୁହ ଝରିପଡ଼ିଲା, ସେ କହିଲା, ତୁ ଯଦି ଝିଅ ନ ହେଇ ମୋର ପୁଅ ହୋଇଥାଆନ୍ତୁ !!

ସେଇଦିନ ରାତିରେ କମଳଲୋଚନ ଆସିଲା । ପ୍ରଥମ କରି ସେଇଦିନ ସେ ମୋ' ସହିତ କଥା କହିଲା ।

ମୁଁ ବି ଦି'ପଦ ପଦେ କହିଲି । ଭାରି ଲାଜ ମାଡୁଥିଲା । ସେ ବସି ବାପାଙ୍କ ସଙ୍ଗରେ କଥା କହୁଥିଲା । ମୁଁ ସେମାନଙ୍କ ଆଗକୁ ଆଦୌ ଯାଇପାରୁ ନଥିଲି । ଉହାଡ଼ରେ ଥାଇ ଯାହା ଦି'ପଦ ପଦେ କଥା କହିଲି ।

କମଳଲୋଚନ ସେଇ ବର୍ଷ ମାଟ୍ରିକ୍ ପାଶ୍ କରି ସହରକୁ ପଢ଼ିବାକୁ ଚାଲିଗଲା । ମୁଁ ସପ୍ତମ ଶ୍ରେଣୀରେ ପାଠ ପଢ଼ିଲି ସତ, କିନ୍ତୁ ଆମ ସେ ଅଞ୍ଚଳର ଏକ ଆଲୋଚନାର ସାମଗ୍ରୀ ହୋଇଉଠିଲି । ସ୍କୁଲକୁ ଯିବାବେଳେ ଏବଂ ସ୍କୁଲରୁ ଫେରିଲା ବେଳେ ମୋତେ ଦେଖିବା ପାଇଁ ରାସ୍ତାର ଦୁଇ କଡ଼ରେ ବହୁଲୋକ ଠିଆହୋଇ ରହୁଥିଲେ ।

ସେଥର ଗ୍ରୀଷ୍ମ ଛୁଟିରେ କମଳଲୋଚନ ଘରକୁ ଆସିଥିଲା । ତା' ସଙ୍ଗରେ ଆସିଥିଲା ତା'ର ବନ୍ଧୁ ସତାଂଶୁ ଶେଖର । ଦୁହେଁ ସଙ୍ଗହୋଇ ଆମ ଘରକୁ

ଆସିଥିଲେ । କମଳଲୋଚନ ସତାଂଶୁର ପରିଚୟ ବାପାଙ୍କ ସହିତ କରାଇ ଦେଲା । ସେ କେଉଁ ଏକ ବଡ଼ ଜମିଦାରଙ୍କ ପୁଅ । ଅଗାଧ ସମ୍ପତ୍ତିର ଅଧିକାରୀ । ତା' ସହିତ ସ୍କୁଲରେ ପଢ଼େ । ସହରରେ ତାଙ୍କ ଘର । ଗାଁ ଜୀବନ କେବେ ସେ ଦେଖି ନଥିଲା, ବୁଲିଆସିଛି ।

କବାଟ ଫାଙ୍କରୁ ସତାଂଶୁକୁ ମୁଁ ଦେଖିଲି । ବେଶ୍ ସୁନ୍ଦର ଚେହେରା । ଧୋତି ପଞ୍ଜାବ ପିନ୍ଧିଛି । ଆଖିରେ ରୋଲ୍ଡ ଗୋଲ୍ଡ ଫ୍ରେମର ଚଷମା ଭିତରେ ଆଖିଯୋଡ଼ାକ ଯେପରି ଆକୁଳ ହୋଇ କାହାକୁ ଖୋଜିବୁଲୁଛି । ମୋତେ ସେଦିନ ସୀତାଂଶୁକୁ ଦେଖି ଭାରି ଭଲ ଲାଗିଥିଲା ।

ବାପା ସେମାନଙ୍କୁ ଆମ ଘରେ ଜଳଖିଆ ଖାଇବାକୁ ନିମନ୍ତ୍ରଣ କଲେ ।

ଆରଦିନ ସକାଳୁ କମଳ ଓ ସତାଂଶୁ ଦୁହେଁ ଆସି ପହଞ୍ଚିଲେ ।

ସେଦିନ କିନ୍ତୁ ମୁଁ ଆଉ ନିଜକୁ ଲୁଚାଇ ରଖିପାରିଲି ନାହିଁ । ଖାଇବାକୁ ଦେବାକୁ ହେଲା । କଥା କହିବାକୁ ପଡ଼ିଲା ।

ସତାଂଶୁ ବାପାଙ୍କ ଆଗରେ ମୋର ଖୁବ୍ ତାରିଫ୍ କଲା । ସହର ବଜାର ଏତେ ସେ ବୁଲିଛି, କିନ୍ତୁ ମୋ' ଭଳିଆ ଶାନ୍ତ ଝିଅଟିଏ ସେ କେଉଁଠି ଦେଖିନାହିଁ । ରୂପ ଯେତିକି ଗୁଣ ବି ସେତିକି ।

ସତାଂଶୁକୁ ଦେଖିବା ପରଠାରୁ ମୋ' ମନଟା କିପରି ତା'ଆଡ଼କୁ ଆକର୍ଷିତ ହୋଇପଡ଼ିଥିଲା । ସତାଂଶୁ ଆଉ କମଳ ରୋଜ ରୋଜ ଆମ ଘରକୁ ଆସୁଥିଲେ । ବରଂ ଦିନେ ଦିନେ କମଳ ଆସୁ ନଥିଲା, କିନ୍ତୁ ସତାଂଶୁ କେବେ ଆସିବା ବନ୍ଦ କରି ନଥିଲା ।

ମୋର ତିନିଚାରି ବର୍ଷର ଗୋଟିଏ ସାନ ଭଉଣୀ ଥିଲା ।

ସତାଂଶୁ ଆସି ତା'ରି ସହିତ ଜମେଇ ଦେଉଥିଲା । ମୋ' ସାନ ଭଉଣୀଟା ସତାଂଶୁକୁ ଏତେ ଆଦରି ଯାଇଥିଲା ଯେ, ତା' ଆସିବାର ଟିକିଏ ଡେରି ହେଲେ କାନ୍ଦି ବୋବେଇ ଅସ୍ଥିର ହୋଇଉଠୁଥିଲା ।

ସେହି ସମୟରେ ଦିନେ ବୋଉ ଯାଇଥିଲା ମାମୁ ଘରକୁ । ସନ୍ଧ୍ୟାବେଳେ ବାପା ଚାଲିଗଲେ ଗାଁ ନିଶାପକୁ । ମୁଁ ସାନ ଭଉଣୀଟିକି କୋଳରେ ଧରି ଜହ୍ନମାମୁ ଦେଖାଉ ଥିଲି । ଆକାଶରୁ ତାରାଫୁଲ ତୋଳି ମାଳା ଗୁନ୍ଥି କୁନି ଗଳାରେ ଲମ୍ବାଇ ଦେବି ବୋଲି କହୁଥିଲି । ଚାହିଁ ଦେଖିଲି, ଦାଣ୍ଡ ଦୁଆରେ ଛାଇ ଅନ୍ଧାରରେ ସତାଂଶୁ କେତେବେଳୁ ଠିଆ ହୋଇଛି ।

ମୋ' ଆଖିରେ ଆଖି ପଡ଼ିବା କ୍ଷଣି ସେ କହିଲା, ତାରା ଫୁଲର ମାଳା କେବଳ କୁନି ପାଇଁ ଗୁନ୍ଥୁଚ ନା ଆଉ କେଉଁ ମନର ମଣିଷ ପାଇଁ ?

ମୋତେ ଭାରି ଲାଜ ମାଡ଼ିଲା । ମୁଁ ଘର ଭିତରକୁ ପଳେଇ ଯାଉଥିଲି । କୁନି କିନ୍ତୁ ଛାଡ଼ିଲା ନାହିଁ । ସତାଂଶୁକୁ ଦେଖି ସେ ନାଚି ଉଠିଥିଲା ।

ସତାଂଶୁ ମୋ' ପାଖକୁ ଲାଗି ଆସି ପଚାରିଲା, ବାପା ନାହାନ୍ତି କି ?

ନା, ନିଶାପକୁ ଯାଇଛନ୍ତି ।

ମା ?

ମାମୁ ଘରକୁ ଯାଇଛି ।

ଆଉ ତମେ ?

ମୁଁ ତମରି ପ୍ରତୀକ୍ଷାରେ ବସିଛି ।

ସେଦିନ କେଜାଣି କିପରି ମୋ' ମୁହଁରୁ ଏହିପରି ଗୋଟାଏ ଶବ୍ଦ ବାହାରି ଗଲା, ମୁଁ ଧାରଣା କରିପାରିଲି ନାହିଁ ।

ସତାଂଶୁ ମୋ' ମୁହଁରୁ ଏଇ କଥା ପଦକ ଶୁଣି କହିଲା, ସତ କହୁଚ, ସତ କହୁଚ ତମେ, ମୋର କିନ୍ତୁ ବିଶ୍ୱାସ ହେଉ ନାହିଁ ।

ମୁଁ ଲାଜରେ ଷଡ଼ି ଯାଇଥିଲି । ପଳେଇ ଯାଇ ନିଜକୁ ରକ୍ଷା କରିବାକୁ ଚେଷ୍ଟା କରୁଥିଲି, କିନ୍ତୁ ପାରିଲି ନାହିଁ । ମୁଁ ଛୁଟି ପଳାଇଲା ବେଳକୁ ସେ ମୋ' ହାତ ଯୋଡ଼ାକୁ ଧରି ପକାଇଲା । ଝିଙ୍କି ନେଲା ତା'ଆଡ଼କୁ ।

ମୁହୂର୍ତ୍ତକ ପାଇଁ ମୋ' ଦେହଟା ନିସ୍ତେଜ ହୋଇଗଲା ।

ସେ ମୋ' ଓଠ ଦୁଇଟାକୁ ଦୁଇ ହାତରେ ହଲାଇ ଦେଇ କହିଲା, ସତ କହୁଚ ମୋରି ପ୍ରତୀକ୍ଷା କରିଥିଲ ? ମୁଁ କିନ୍ତୁ ସବୁଦିନ ତମରି ପ୍ରତୀକ୍ଷା କରି ରହିବି ।

ମୋର ସମସ୍ତ ଦେହ ମନରେ କିପରି ଏକ ଅଜଣା ଶିହରଣ ଖେଳି ଯାଇଥିଲା ।

ମୁଁ ସତାଂଶୁର ଛାତି ଉପରେ ଆଉଜି ପଡ଼ିଥିଲି । କୁନି ଆମ ଦୁହିଁଙ୍କ ମୁହଁକୁ ବଲବଲ କରି ଅନାଇ ଥିଲା ।

ସତାଂଶୁର ହାତ ଦୁଇଟା ମୋ' ଦେହରେ ସଞ୍ଚାରିତ ହେଉଥିଲା ।

ନୂତନ ଅନୁଭୂତିରେ ମୁଁ ମୂକ ହୋଇଯାଇଥିଲି । ମୋର ସ୍ଥିତି ଓ ଅବସ୍ଥିତି ସମ୍ବନ୍ଧରେ କିଛି ଜାଣିପାରୁ ନଥିଲି ।

ସେହିସମୟରେ କୁନି ଖୁବ୍ ଜୋର୍‌ରେ କାନ୍ଦିଉଠିଲା ।

ମୁଁ ଡର ଡର ହୋଇ ସୀତାଂଶୁ ପାଖରୁ ଘୁଞ୍ଚିଗଲି । ମୋର ସମସ୍ତ ଦେହରୁ ଝାଳ ବହିଗଲା । ତଣ୍ଟି ଶୁଖିଗଲା । ଭୟରେ ମୁଁ ଗୋଟିପଣ କମ୍ପୁଥିଲି ।

ସତାଂଶୁ ହସି ହସି କହିଲା, ତମେ ଡରୁଚ ରାଧା । ସବୁ ମଣିଷ ଜୀବନରେ ଇମିତି ଗୋଟାଏ ଦିନ ଆସେ । ତା'ର ଭୟ ଭାଙ୍ଗେ ।

ସେଦିନ ମୋର ଆଉ କଥାବାର୍ତ୍ତା କରିବାର ଶକ୍ତି ନଥିଲା । ମୁଁ କେବଳ ଥରିଲା ଗଳାରେ କହିଲି, ଆପଣ ଚାଲିଯାଆନ୍ତୁ । ବାପା ଆସିଲା ବେଳ ହୋଇଗଲାଣି ।

ସେ ବି ଆଉ ପ୍ରତିବାଦ କଲା ନାହିଁ । ଧୀରେ ଧୀରେ ଘରୁ ବାହାରିଗଲା । କୁନି ତା' ପଛେ ପଛେ ଗୋଡ଼େଇ ଗଲା । ତାକୁ ଫେରେଇ ଆଣିବାକୁ ଯିବାପାଇଁ ମୋ' ପାଦରେ ବଳ ନଥିଲା ।

ସେଦିନ ରାତିଭରି ମୁଁ ଶୋଇପାରିଲି ନାହିଁ । କି ଏକ ବିଚିତ୍ର ଅନୁଭୂତି ମୋତେ ରାତିଭରି ମୋହଗ୍ରସ୍ତ କରି ରଖିଥିଲା ।

ପରଦିନ ସକାଳୁ ସତାଂଶୁ ଓ କମଳ ଦୁହେଁ ଆସିଲେ । ମା' ମାମୁଘରୁ ଫେରି ନଥିଲା । ତେଣୁ ସେମାନଙ୍କୁ ଖାଇବା ପିଇବାକୁ ଦେବାର ଦାୟିତ୍ୱ ମୋ' ଉପରେ ପଡ଼ିଲା ।

ସତାଂଶୁ ମୋତେ ଯେଉଁ ନୂତନ ଅନୁଭୂତିର ସନ୍ଧାନ ଦେଲା, ସେଇ ହେଲା ମୋ' ଜୀବନର ଏକ ବ୍ୟତିକ୍ରମ । ସେଇଦିନ ଠାରୁ ମୋ' ଗତିଚକ୍ରରେ ଏକ ପରିବର୍ତ୍ତନ ମୁଁ ଲକ୍ଷ୍ୟ କଲି ।

ମନ ଭିତରେ ମୁଁ କେବଳ ନିରୋଳା ମୁହୂର୍ତ୍ତ ଖୋଜିବାକୁ ଲାଗିଲି । କେତେବେଳେ ମୁଁ ଏକାନ୍ତ ନିଭୃତରେ ବସି ସତାଂଶୁ ସହିତ କଥା କହିବି । ସତାଂଶୁ ମୋ' କବରୀରେ ଫୁଲ ଖୋସି ମୋତେ କହିବ, ମୁଁ ଜୀବନଭରି ତମରି ପଥ ଅନୁସରି ବସିବି ।

ସୁଯୋଗ ଆଉ ମିଳିଲା ନାହିଁ । ମନ ଭିତରେ କିନ୍ତୁ ଭାବନାର ଚକ ଘୂରିବାକୁ ଲାଗିଲା । କେତେ ରୂପରେ, କେତେ ରଙ୍ଗରେ ମୁଁ ସତାଂଶୁ ପାଖରେ ନିଜକୁ କଳ୍ପନା କରିଚାଲିଲି ।

ଆଖିରୁ ନିଦ ଦୂରେଇ ଗଲା ।

ଖାଲି କଳ୍ପନା ଆଉ କଳ୍ପନା ।

ସେଦିନ ଯେଉଁଠି ମୋତେ ସତାଂଶୁ ପ୍ରଥମେ ସ୍ପର୍ଶ ଦେଇଥିଲା, ସେଇଠି ଠିଆହୋଇ ରହି, ଆକାଶକୁ ଚାହିଁ ଚାହିଁ ବହୁ ସମୟ କଟାଇବାକୁ ଲାଗିଲି ।

ଦିନେ ରାତିରେ ମୋ' ଆଖିକୁ ମୋତେ ନିଦ ଆସିଲା ନାହିଁ । ସେଦିନ ସନ୍ଧ୍ୟାବେଳେ କମଳ ଓ ସତାଂଶୁ ଆସିଥିଲେ । ମୁଁ ସୀତାଂଶୁକୁ ଚା'କପ୍ ଦେଲାବେଳେ, ସେ ମୋ' ହାତକୁ ଚିମୁଟି ଦେଇଥିଲା ।

ସେତିକିବେଳୁ ମୋର ସମଗ୍ର ଦେହରେ ଯେପରି ବିଷ ଚରି ଯାଇଥିଲା । ମୁଁ କେବଳ ଭାବୁଥିଲି । ଅଧ ରାତିରେ ଆଉ ମୁଁ ସ୍ଥିର ରହିପାରିଲି ନାହିଁ । ଦାଣ୍ଡଘରେ ବାପା ଖୁଁ ଖୁଁ ହୋଇ କାଶୁଥିଲେ । ମା' ନିଘୋଡ଼ ନିଦରେ ଶୋଇଯାଇଥିଲା । ହଠାତ୍ ବିଛଣାରେ ଉଠିବସିଲି । କବାଟ ଫାଙ୍କରୁ ଚାହିଁ ଦେଖିଲି ଅଗଣାରେ ଚାନ୍ଦ ହସୁଛି । ଉଠିଗଲି ବାହାରକୁ । ଆକାଶକୁ ଚାହିଁ ଅନେକ ବେଳଯାଏ ବସିଲି । ମନଟାକୁ କୌଣସି ପ୍ରକାର ଆୟତ୍ତକୁ ଆଣିପାରୁ ନଥିଲି ।

ଖଞ୍ଜା ଭିତରୁ ବାହାରକୁ ଚାଲିଯିବା ପାଇଁ ମନ ହେଉଥିଲା । ଦେହଟା କିପରି ଭାରି ଭାରି ଲାଗୁଥିଲା । କିଏ ଟିକିଏ ଦେହଭାରଟା ବହନ କରନ୍ତା କି ! କିଏ ଟିକିଏ ଦେହରେ ହାତ ବୁଲେଇ ଦିଅନ୍ତା କି ! ସତାଂଶୁ କ'ଣ ଭୁଲିଗଲା । ଯଦିବା ସେ ମନେ ନ ରଖିପାରିବ, ମୋ' ଦେହରେ ଦାବାନଳ ଜଳାଇ ଗଲା କିଆଁ ?

ଭାରି ଗରମ ଲାଗିଲା । ଦେହ ହାତ ପୋଡ଼ିଗଲା ପରି ମନେହେଲା । ଆଉ ସମ୍ଭାଳି ହେଲା ନାହିଁ । ଶେଷରେ ମୁଁ ଆମ ବାଡ଼ି ଦୁଆର କବାଟ ଫିଟେଇଲି । ହଠାତ୍ ଚମକି ପଡ଼ିଯାଉଥିଲି । କିନ୍ତୁ କିଏ ମୋତେ ତା'ର ଦୁଇ ହାତରେ ତୋଳି ଧରିଲା । ମୁଁ କାବା ହେଇ ଦେଖିଲି, ସୀତାଂଶୁ । ମୋତେ ସେ ଛାତିରେ ଆଶ୍ରା ଦେଇଥିଲା ।

ତମେ ଏତେ ରାତିରେ ଏଠାକୁ କାହିଁକି ଆସିଥିଲ ? ପଚାରିଲି ।

ସେ ହସିଲା । ନାକରୁ ତା'ର ଖରଶ୍ୱାସ ବାହାରୁଥିଲା । କହିଲା, ନିତି ମୁଁ ଆସେ ରାଧା । ରାତି ଅଧରୁ ରାତି ପାହିବା ଯାଏ ନିତି ମୁଁ ଆସି ତୋ'ରି ପ୍ରତୀକ୍ଷା କରିଥାଏ । ତୁ ତ ଆଉ ମୋ' କଥା ଭାବୁନା କେବେ, ମୁଁ ବା ତୋ'ର ମନେପଡ଼ନ୍ତି କାହିଁକି ?

ସତାଂଶୁ ନିତି ଆସି, ନିତି ମୋତେ ଅପେକ୍ଷା କରି ଠିଆହୁଏ, ଏଇଠି, ଆମ ବାଡ଼ିରେ । ମଶା ମାଛି ଗହଳରେ । ଜନ୍ତୁ ଜାନୁଆରଙ୍କ ମେଳରେ ! ଆଉ ମୁଁ, ମୁଁ କେବଳ ସତାଂଶୁ କଥା ଭାବେ । ଶେଯରେ ଶୋଇ ସତାଂଶୁକୁ ସ୍ୱପ୍ନ ଦେଖେ ।

ମୋର ସମସ୍ତ ଦେହଟା ଚନ୍ଦନ ଲିପିଲା ପରି ଲାଗୁଥିଲା । ସେ ମୋ' ଦେହଭାରକୁ ସଂପୂର୍ଣ୍ଣ ବହନକରି ଠିଆ ହୋଇଥିଲା । ମୋ' ମୁହଁ ଉପରେ ମୁହଁ ନଦି ଡାକିଲା, ରାଧା !

ଉଁ ।

ମୋ' ଉପରେ ରାଗିଚୁ ।

ରାଗିବି କାହିଁକି ?

ହାତ ଦୁଇଟା ତା'ର ଧୀରେ ଧୀରେ ମୋର ଅଙ୍ଗପ୍ରତ୍ୟଙ୍ଗରେ ପ୍ରବେଶ କରି ଦେହରେ ମୋର ଶୀତଳ ପ୍ରଲେପ ବୋଳି ଦେଉଥିଲା । ଶ୍ୱାସପ୍ରଶ୍ୱାସ ଖର ହୋଇ ଉଠୁଥିଲା । ଆଖି ଦୁଇଟା ବୁଜିଦେଇ ମୁଁ ସିତାଂଶୁ ବେକରେ ହାତ ଦୁଇଟା ଛନ୍ଦି ଦେଇଥିଲି ।

ରାଧା !

ଉଁ ।

ଯିବା ଚାଲେ ।

କେଉଁଠିକୁ ?

ଯୁଆଡ଼େ ମନ ଚାହିଁବ ।

ମୁଁ ବୋଧେ କିଛି ଉତ୍ତର ଦେଇପାରି ନଥିଲି । ତା' ନାକର ଖରଶ୍ୱାସ ମୋ' ମୁହଁରେ ବାଜୁଥିଲା ।

ତୁମେ ଜୀବନରେ କେବେ କାହାକୁ ଭଲ ପାଇଚ ରାଧା ?

ନା, ଭଲ ପାଇବାର ସ୍ୱାଦ ଚାଖି ନଥିଲି ।

ଆଜି ?

ମୁଁ ବୋଧେ ହସି ଦେଇଥିଲି ।

ସତାଂଶୁ ମାଟିରେ ବସିପଡ଼ିଥିଲା । ମୋତେ ତା' କୋଳରେ ଶୁଆଇ ମୋର ନିବୁଜ ଆଖି ଦୁଇଟିକୁ ଖୋଲିବାକୁ ଚେଷ୍ଟାକରି କହିଲା, ଚାହଁ ରାଧା, ଆଖିଖୋଲି ଚାହଁ ନା ! ଆକାଶରେ ଜହ୍ନ ପଡ଼ିଚି, ତାରା ହସୁଚି, ଆଉ ତମେ ଆଖିବୁଜି ଶୋଇରହିଚ !

ଧୀରେ ଧୀରେ ମୁଁ ଆଖି ଖୋଲିଲି !

ସତାଂଶୁ ମୋ' ମୁହଁରେ ମୁହଁ ଲଗେଇ କହିଲା, ଏ ରାତିର ସ୍ମୃତିକୁ ତମେ ଧରିରଖି ପାରିବ ରାଧା !

ପାରିବି ।

ତମେ କ'ଣ ସତରେ ମୋତେ ଜୀବନ ଭରି ମନେ ରଖିପାରିବ ?

ମୁଁ କିଛି ଜବାବ ନେଇ ନଥିଲି । ସତାଂଶୁ ହାତର ସ୍ପର୍ଶ ମୋତେ ଯେ କେଉଁ

ପଥକୁ ଟାଣି ନେଉଥିଲା ମୁଁ କିଛି ବୁଝିପାରୁ ନଥିଲି । ମୋର ଦୁଇ ହାତ ମୁଁ ସତାଂଶୁ ବେକରେ ଛନ୍ଦିଦେଇ ନୀରବରେ ଆଖିବୁଜି ଦେଇଥିଲି ।

ସତାଂଶୁ ତା' ମୁହଁଟାକୁ ମୋ' କାନ ପାଖରେ ରଖି କହିଲା, ମୋତେ ମନେ ରଖିପାରିବ ତ ରାଧା ?

ହଁ ।

ଆଜିର ରାତିକୁ ?

ଭୁଲିପାରିବିନି ।

କେତେ ସମୟ ଆମେ ସେଦିନ ସେହିପରି ବସି ରହିଥିଲୁ ମୋର ମନେ ନାହିଁ । କିନ୍ତୁ ମୋ' ଜୀବନର ସେଦିନର ସେହି ପରମ ଆନନ୍ଦର ରାତ୍ରିଟି ମୋତେ ଯେ ଦିନେ ଚରମ ଦୁର୍ଦ୍ଦିନ ପଥରେ ଟାଣିନେବ, ମୁଁ କ'ଣ ଜାଣିଥିଲି !

ସତାଂଶୁ ଗଲାବେଳକୁ କହିଗଲା, ମୁଁ କାଲି ପୁଣି ଆସିବି ରାଧା ! ତମର ପ୍ରତୀକ୍ଷାରେ ବସି ରହିବି ବାଡ଼ି ଦୁଆରେ ।

ସତାଂଶୁ ଚାଲିଗଲା । ମୁଁ ମୋର ଅବଶ ଦେହଟାକୁ ଉଠାଇ ଘରକୁ ନେଇପାରୁ ନଥିଲି । କିଛି ମୋର ମନେପଡୁ ନଥିଲା । ମୁଁ କେଉଁଠି ଅଛି କ'ଣ କରୁଚି । କେବଳ ରାତିଶେଷର ଶୀତଳ ପବନ ମୋ' ଦେହରେ ହେମ ଶୀତଳ ପ୍ରଲେପ ଲେପି ଦେଇ ଯାଉଥିଲା । ଅବଶତାରେ ଦେହ ଭାରି ଭାରି ଲାଗୁଥିଲା । ଆଖିରେ ନିଦ ଜମି ଆସୁଥିଲା । ବହୁ କଷ୍ଟରେ ମୁଁ ସେଦିନ ଦେହଟାକୁ ନେଇ ବିଛଣାରେ ଶୁଆଇ ଦେଇଥିଲି ।

ନିଦ ଯେତେବେଳେ ଭାଙ୍ଗିଲା, ବେଳ ସେତେବେଳକୁ ପହଡ଼େ ହେଲାଣି । ଖରା ଆସି ଆମ ଅଧକାନ୍ଥି ଉପରେ ପଡ଼ିଲାଣି । ମୁଁ ବ୍ୟସ୍ତ ହେଇ ଚାହିଁଲି । ଏତେ ବେଳଯାଏ ମୁଁ ଶୋଇରହିଛି ?

କାଲି ରାତିର ଘଟଣା ମୋ' ମନଭିତରେ ଏକ ଦୁଃସ୍ୱପ୍ନ ପରି ମନେ ହେଉଥିଲା । ପ୍ରଥମେ ଉଠି ମୁଁ ମୋ' ସାନ ଭଉଣୀକୁ ଦେଖିଲି, ସେ ଯେପରି ମୋତେ କିପରି ଏକ ବେଖାପ ଚାହାଣୀରେ ଚାହିଁଥିଲା । ପୁସି ବିରାଡ଼ିଟା ଆସି ମୋ' ଗୋଡ଼ରେ ଗୁଡ଼େଇ ହେଇଗଲା । ଲାଙ୍ଗୁଡ଼ ଫୁଲେଇ ମ୍ୟାଉଁ ମ୍ୟାଉଁ ହୋଇ ମୋ' ଚାରପଟେ ବୁଲିବାକୁ ଲାଗିଲା । ମନଟା ମୋର ଦୁର୍ବଳ ହୋଇପଡ଼ିଲା । ତା'ହେଲେ କ'ଣ...

ବାଡ଼ି ଦୁଆରୁ ବୋଉ ଡାକିଲା, ରାଧା ଶୁଣିଲୁ !

ମୋ' ଛାତିରୁ ଧଡ୍‌କରି ଗୋଟାଏ ଅତଡ଼ା ଖସିପଡ଼ିଲା ।

ବୋଉ କ'ଣ ତେବେ ସବୁକଥା ଜାଣିଚି !

ମୁଁ ନ ଶୁଣିଲା ପରି ଚୁପ୍‌ଚୁପ୍ ଯାଇ ଅଇନା କାଢ଼ି ମୁହଁ ଦେଖିଲି । ମୁହଁଟା ଭାରି ଭାରି ଦିଶୁଥିଲା । ଆଖି ଯୋଡ଼ାକ ଫୁଲିଲା ପରି ଜଣା ଯାଉଥିଲା । ଆଉ ଗାଲର ଏଇ ନାଲି ଦାଗଟା ? ଜିଭ କାମୁଡ଼ି ପକାଇଲି । କେହି ଯଦି ଏ ଦାଗ ସମ୍ବନ୍ଧରେ ପଚାରେ କି ଉତ୍ତର ଦେବି ?

ବୋଉ ପୁଣି ଡାକିଲା । ଅଇନାଟା ରଖିଦେଇ ଉଠି ଠିଆହେଲି । କୁନି ଆସି କହିଲା, ବୋଉ ଡାକୁଚି ପଲା !

ମୁଁ ତାକୁ କୋଳରେ ଉଠେଇ ଧୀରେ ଧୀରେ ଆଗେଇଲି । ବୋଉ ବାଇଗଣ କିଆରିରେ ପାଣି ଢାଳୁଥିଲା । ବଡ଼ ବଡ଼ ବାଇଗଣ କେତୁଟା ତୋଳି ତଳେ ଥୋଇଥିଲା । ମୋତେ କହିଲା, ଏଗୁଡ଼ାକ ନେଇ ଚାଲେ । ତୋ'ର ଆଜି ଜନ୍ମଦିନ ପରା । କମଳ ଆଉ ସତାଂଶକୁ ମୁଁ ଖାଇବାକୁ ଡାକିଚି !

ମୋ' ପେଟ ଭିତରଟା କ'ଣ ହୋଇଗଲା । ଆନନ୍ଦରେ କି ଭୟରେ କହିପାରିବି ନାହିଁ । କୁନିକୁ କୋଳରୁ ଓହ୍ଲେଇ ବାଇଗଣଗୁଡ଼ାକ ତଳୁ ଗୋଟେଇଲି । ମୋର ଆଜି ଜନ୍ମଦିନ । ବର୍ଷ ଆରମ୍ଭ ହେବ ବୋଧେ !

ସେଦିନ କମଳ ଓ ସତାଂଶୁ ମୋ' ପାଇଁ ଉପହାର ଆଣିଥିଲେ, କଲମ ଆଉ ଶାଢ଼ୀ । ଜୀବନରେ ପ୍ରଥମ ଥର ମୁଁ ମୋ' ପାଇଁ ଅନ୍ୟ ଠାରୁ କିଛି ପାଇଲି । ଅନ୍ତରଙ୍ଗତାର ବନ୍ଧନ ମୋ' ମନକୁ ସମୃଦ୍ଧ କଲା ।

ତା'ପରେ ଆରମ୍ଭ ହେଲା ବିରହର ଦିନ । କମଳ ଆଉ ସୀତାଂଶୁ ଗାଁରୁ ଚାଲିଗଲେ । ସତାଂଶୁ ସହିତ ନିର୍ଜନ ମୁହୂର୍ତ୍ତ ଅତିବାହିତ କରିବାର ସୁଯୋଗ ଆଉ ପାଇଲି ନାହିଁ । ମନଟା ଆଉଟି ପାଉଟି ହେଲା । ରାତିରେ ବେଳେ ବେଳେ ଦେହଟା ଶୀତେଇ ଶୀତେଇ ଉଠୁଥିଲା ।

ସତାଂଶୁ ମୋତେ ମନେ ରଖିଥିଲା । ସେ ଯାଇ ପ୍ରଥମେ ମୋ' ପାଖକୁ ଚିଠି ଦେଇଥିଲା । ସେହି ଚିଠିଟି ଯେଉଁଦିନ ପାଇଲି, ସେଦିନ ଯେଉଁ ସୁଖ ମୁଁ ଅନୁଭବ କରିଥିଲି, ଆଜି ଏତେ ବୈଭବ ଭିତରେ ଥାଇ ବି ସେପରି ଆନନ୍ଦରୁ କାଣିଚାଏ ପାଉନାହିଁ ।

ଚିଠିଟା ଅବଶ୍ୟ ଆଜି ମୋ' ପାଖରେ ନାହିଁ । କିନ୍ତୁ ତା'ର ପ୍ରତିଟି ଧାଡ଼ିର ପ୍ରତିଟି ଶବ୍ଦ ଆଜି ମୋର ମନେଅଛି । ସେ ଲେଖିଥିଲା ମାମୁଲି କେଇଟା ଧାଡ଼ି ।

କିନ୍ତୁ ପ୍ରଥମ ଜୀବନରେ ସେହିପରି ଲେଖା କିଶୋରୀ ମନରେ ଯେ କି ପ୍ରଭାବ ବିସ୍ତାର କରେ, ତାହା ହୁଏତ ଅନେକଙ୍କୁ ଜଣା ନଥିବ ।

ସତାଂଶୁ ଲେଖିଥିଲା, ଯେଉଁ କେତୋଟି ଦିନ ଗାଁରେ କଟାଇଚି, ସେ କେତୋଟି ଦିନର ସ୍ମୃତି ତା' ଜୀବନ ପଟରେ ଅଲିଭା ଅକ୍ଷରରେ ଲେଖା ହୋଇରହିଥିବ । ଆଉ ଯେଉଁ କେତୋଟି ମୁହୂର୍ତ୍ତ ମୋ' ସହିତ ନିରୋଳାରେ କଟାଇଚି, ସେ ମୁହୂର୍ତ୍ତଗୁଡ଼ାକ ଯେ ତା' ଜୀବନର କେତେ ମୂଲ୍ୟବାନ ଆଉ କେତେ ଲୋଭନୀୟ, ଭାଷାରେ ପ୍ରକାଶ କଲାଭଳି ଶକ୍ତି ତା'ର ନାହିଁ ।

ମୁଁ ତା' ଜୀବନର ଏକମାତ୍ର ଧ୍ରୁବତାରା । ଜୀବନ ସମୁଦ୍ରରେ ମୋତେ ହିଁ ଲକ୍ଷ୍ୟକରି ସେ ତା'ର ଜୀବନ ନୌକାବାହିବ । ମୁଁ ତାକୁ ମନେରଖିବା ପାଇଁ ସେ ନେହୁରା ହେଇ ଲେଖିଥିଲା । ତା'ର ଧନସମ୍ପଦ, ଭବିଷ୍ୟତରେ ସବୁ ସେ ମୋରି ପାଦତଳେ ଅଜାଡ଼ି ଦେବାପାଇଁ ପ୍ରସ୍ତୁତ ହେଉଛି । ଲେଖିଥିଲା, ମୁଁ ଯେତେବେଳେ ସେଇ ସବୁ ନେଇ ତମ ପାଦତଳେ ଅଜାଡ଼ି ଦେଇ ପଣତ ତଳେ ଆଶ୍ରୟ ଭକ୍ଷା ମାଗିବି, ତମେ ଠେଲି ନ ଦେଲେ ହେଲା ।

ସେଦିନ ପ୍ରକୃତରେ ମୁଁ ନିଜକୁ ହରାଇ ଦେଇଥିଲି । ସତାଂଶୁର ଛବି ମୋ' ମନପଟରେ ଏକ ମହାପୁରୁଷ ରୂପେ ଆଙ୍କି ହୋଇଗଲା, ତାକୁ ଆଉ ସହଜରେ ମୁଁ ଘୁଞ୍ଚେଇ ପାରିଲି ନାହିଁ ।

ଅବଶ୍ୟ ସେତେବେଳେ ଏଇସବୁ ଜଟିଳ ତତ୍ତ୍ୱ ବୁଝିବା ପାଇଁ ମୋର ବୟସ ହୋଇ ନଥିଲା କିମ୍ବା ବିଦ୍ୟା ବୁଦ୍ଧି ହୋଇ ନଥିଲା । ପନ୍ଦର ଷୋଳ ବର୍ଷର ଗୋଟିଏ ଝିଅ । ପାଠପଢ଼ା ସପ୍ତମ ଶ୍ରେଣୀଯାଏ । ଜୀବନଦର୍ଶନ ସମ୍ବନ୍ଧରେ ଚିନ୍ତା କରିବାର କ୍ଷମତା ଆସିଲା କୁଆଡୁ ? କେବଳ ସତାଂଶୁ ତା' ବ୍ୟବହାରରେ ମୋ' ମନ ଉପରେ ଏକ ମହାନ ରୂପରେ ଆସନ ଜମେଇ ବସିଲା ।

ସତାଂଶୁ ଚିଠିର ଉତ୍ତର ଦେବାପାଇଁ ମୁଁ ଅନେକ ରାତି ଉଜାଗର ହୋଇଚି । ରଚନାଖାତାର ଗାରପକା କାଗଜଗୁଡ଼ିକ ସବୁ ଚିରି ନଷ୍ଟକରି ଦେଇଛି । କିନ୍ତୁ ସତାଂଶୁ ଚିଠିର ଉତ୍ତର କେବେ ମନ ମାଫିକ ହୋଇନାହିଁ । ପୁଣି ସତାଂଶୁର ଚିଠି ଆସିଚି ।

ଚାଲିଥିଲା ଭଲ, ଚିଠି ଆଉ ଉତ୍ତର । ମୁଁ ସବୁବେଳେ ସତାଂଶୁ ଚିନ୍ତାରେ ମଗ୍ନ ରହୁଥିଲି । କେଉଁଠି କିଛି ମୋତେ ଭଲ ଲାଗୁ ନଥିଲା । ମୋର ସାଙ୍ଗସାଥୀ

ସେପରି କେହି ନଥିଲେ, ଯା' ପାଖରେ ଯାଇ ମୋ' ମନର କଥା କହି ସାମାନ୍ୟ ଶ୍ୱସ୍ତି ପାଇବି ।

ହଠାତ୍ ଦିନେ ସ୍କୁଲରୁ ଫେରି ଦେଖିଲି, ସତାଂଶୁ ଆସି ଆମ ଘରେ ହାଜିର୍ ହେଇଚି । ବାପାଙ୍କ ସହିତ ଆଳାପ ଜମେଇଛି । ସତାଂଶୁକୁ ଦେଖିଦେବା କ୍ଷଣି ମୋ' ଛାତିଟା ଧଡ୍‌କରି ଉଠିଲା । ମୁଁ ବାଟଭାଙ୍ଗି ଚାଲି ଯାଉଥିଲି । ବାପା ଡାକିଲେ, କହିଲେ—ତୋ' ସତାଂଶୁ ଭାଇ ମ ! ଲାଜ କାହାକୁ କରୁଛୁ ।

ପାଦଯୋଡ଼ିକ ମୋର କିଏ ଯେପରି ଜଞ୍ଜିରରେ ବାନ୍ଧି ଦେଇଥିଲା । ମୁଁ ଆଗକୁ କି ପଛକୁ ଘୁଞ୍ଚିପାରୁ ନଥିଲି । ବାପାଙ୍କ କଥା ଶୁଣି ମୋତେ ଆଗେଇବାକୁ ହେଲା । ମୁଁ ଯାଇ ମୁଣ୍ଡ ନୁଆଁଇ ସତାଂଶୁକୁ ଦଣ୍ଡବତ ହେଲି ।

ସେ ଉଠିପଡ଼ି ଦୁଇ ହାତରେ ଧରି ମୋତେ ତଳୁ ଉଠାଇ ଦେଲା । କହିଲା, ଏ କ'ଣ ହେଉଛି । ଉଠ୍ ଉଠ୍, ଢେର ହେଲାଣି ।

ବାପା ହସି ହସି କହିଲେ, ରାଧା ପିଲା ମଣିଷ । କିଛି ଅକଲ ପସନ୍ଦ ଶିଖିଲା ନାହିଁ ।

ସତାଂଶୁର ହାତଲାଗି ମୋ' ଦେହରେ ଯେପରି ଝଡ଼ ସୃଷ୍ଟି ହୋଇ ଯାଇଥିଲା । ଏତେଦିନ ହେବ ପ୍ରତିଟି ନିରୋଳା ମୁହୂର୍ତ୍ତରେ ଯିଏ ମୋ' ମନଟାକୁ ଆଚ୍ଛନ୍ନ କରି ରଖିଥିଲା, ଆଜି ଅଚାନକ ତା' ହାତର ସ୍ପର୍ଶ ପାଇ ମୁଁ ନିଜତ୍ୱ ହରାଇ ଦେଇଥିଲି ।

ବାପା ସତାଂଶୁର କୋଉ କଥାର ଉତ୍ତର ଦେବାକୁ ଯାଇ କହିଲେ, ମୋର ଆପତ୍ତି କରିବାର କ'ଣ ଅଛି । ରାଧା ତ ଆଉ ଏକା ଯାଇପାରିବ ନାହିଁ । ଯେତେହେଲେ ସେ ବଡ଼ ହେଇଚି । ତମ ସହର ବଜାରର କଥା ଅଲଗା ବାପା, ଆମେ ଚାଷୀ ମୂଲିଆ ମଣିଷ । ଆମର ସାମାଜିକ ଚଳଣ ବଡ଼ ଅଡୁଆ ।

ମୁଁ ଜାଣିଛି ମଉସା । କମଳକୁ ପଚାରିଥିଲି । ସେ କହିଲା, ରାଧାକୁ ଆଣିବାକୁ ହେଲେ ମାଉସୀଙ୍କୁ ସାଙ୍ଗରେ ଆଣିବାକୁ ହେବ । ମୁଁ ତ ସେଥିପାଇଁ ପ୍ରସ୍ତୁତ ହେଇଆସିଛି ।

ବାପା କହିଲେ ବୋଉକୁ ପଡ଼ିଶା ଘରୁ ଡାକି ଆଣିବା ପାଇଁ ।

ମୁଁ ଗଲି । ବୋଉ ଆସିଲା । ବୁଝିଲି ଯେ, ସତାଂଶୁର ଭଉଣୀ ବାହା ହେଉଛି । ସେଥିପାଇଁ ସେ ଆସିଛି ମୋତେ ଓ ବୋଉକୁ ନେଇଯିବା ପାଇଁ ।

ବହୁ ଯୁକ୍ତି ତର୍କ ଆଲୋଚନା ପରେ ଆମେ ସତାଂଶୁ ସହିତ ତାଙ୍କ ଘରକୁ ଯିବାକୁ ପ୍ରସ୍ତୁତ ହେଲୁ ।

ସେଦିନ ସତାଂଶୁର ଘରେ ପହଞ୍ଚି ମୋ' ଆଖିରୁ ଜୁଲୁଜୁଲିଆ ପୋକ ଉଡ଼ିଗଲେ । କମଳ ଠିକ୍ କହୁଥିଲା । ବିରାଟ ବଡ଼ଲୋକର ପୁଅ ସତାଂଶୁ । ଦୋ'ମହଲା କୋଠା । ବାଗ ବଗିଚା, ଦାସ ଦାସୀ । କେଉଁଥିରେ ଊଣା ନାହିଁ । ସତାଂଶୁର ମା' ଖୁବ୍ ଭଲ ମଣିଷ । ସେ ମୋତେ ତାଙ୍କର ନିଜ ଝିଅଭଳି କୋଳରେ ଜାକି ଧରିଲେ ।

ଲୋକ ଗହଳ, ଆନନ୍ଦ ମହୋତ୍ସବ ଭିତରେ କେହି ଯେପରି କାହାରି ଅସ୍ତିତ୍ୱ ଅନୁଭବ କରିପାରୁ ନଥିଲେ । ବୋଉ ଓ ମୁଁ କାବା ହୋଇ ସବୁ ଦେଖୁଥିଲୁ । କମଳ ମଝିରେ ମଝିରେ ଆସି ଆମ ଖବର ବୁଝି ଯାଉଥିଲା । କେମିତି ଚଳିବାକୁ ହେବ, କିମିତି କାହା ସହିତ କଥାବାର୍ତ୍ତା କରିବାକୁ ହେବ, ସେ ମୋତେ ଉପଦେଶ ଦେଇ ଯାଉଥିଲା । କିନ୍ତୁ ସତାଂଶୁ ସେଇ ଯିଏ ଆମକୁ ତା' ମା'ଙ୍କ ପାଖରେ ଛାଡ଼ିଦେଇ ଚାଲିଗଲା, ଆଉ ସେ ଫେରିଲା ନାହିଁ । ରାତି ଆସି ପହଡ଼େ ହେଲା, ତଥାପି ମୁଁ ସତାଂଶୁକୁ ଦେଖିଲି ନାହିଁ । ମନଟା ଖାଲି ମୋର କାଉଳି ବାଉଳି ହେଉଥାଏ । କାହାକୁ ପଚାରିପି ପଚାରିବି ହେଇ କିଛି ପଚାରିପାରୁ ନଥାଏ । ଶେଷରେ ସେଦିନ ଖାଇପିଇ ରାତି ଅଧରେ ବୋଉ ପାଖରେ ଶୋଇପଡ଼ିଲି । କିନ୍ତୁ ସତାଂଶୁ ସହିତ ଆଉ ଦେଖା ହେଲାନାହିଁ ।

ପରଦିନ ବାହାଘର । ବର ଆସିବ । ଯିଏ ଯେଉଁଠି ବନ୍ଧୁବାନ୍ଧବମାନେ ବାକି ଥିଲେ ଗୋଟି ଗୋଟି ହୋଇ ସମସ୍ତେ ଆସି ପହଞ୍ଚିବାକୁ ଲାଗିଲେ । କମଳ ମୋତେ ସଙ୍ଗରେ ନେଇ ସତାଂଶୁର ଘରଦ୍ୱାର, ବାଗବଗିଚା ସବୁ ବୁଲେଇ ଦେଖାଉ ଥିଲା ।

ଜାତିଜାତିକା ବେଶର ଝିଅବୋହୂମାନେ ଆସି ପ୍ରଜାପତି ପରି ଉଡ଼ି ବୁଲୁଥିଲେ । ସେମାନଙ୍କ ନିକଟରେ ମୋତେ ଭାରି ସଂକୋଚ ଲାଗୁଥିଲା । ମୋର ବେଶ ପୋଷାକ, ଗହଣାଗାଣ୍ଠି ଏତେ ସଂକ୍ଷିପ୍ତ ଯେ, ମୁଁ ସେମାନଙ୍କ ପାଖରେ ମନେ ମନେ ଅତି ଛୋଟ ହେଇଯାଉଥିଲି । କିନ୍ତୁ ମୋର ଗୋଟାଏ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଥିଲା, ସେଇଟା ମୋର ରୂପ ।

ରଙ୍ଗ ଅଳତାର ଖୋଳ ଭିତରେ ନିଜକୁ ମୁଁ ବନ୍ଦୀ କରିପାରି ନଥିଲେ ବି ମୋ' ଦେହର ଗଢଣ, ମୁହଁରେ ଲାବଣ୍ୟ ଏତେ ଗହଳ ଭିତରେ, ଏତେ ମେଳ ଭିତରେ ଏକ ସ୍ୱତନ୍ତ୍ର ସ୍ଥାନ ନେଇଥିଲା । ନିରାଡ଼ମ୍ବର ବେଶପୋଷାକ ମୋତେ କୁଆଡ଼େ ଏତେ ସୁନ୍ଦର ମନେ ହେଉଥିଲା ଯେ, ଲୋକେ କୁଆଡ଼େ ମୋରି ଆଡ଼େ

କୌତୂହଳୀ ହୋଇ ଚାହୁଁଥିଲେ । କମଳ କହୁଥିଲା, ଅନେକଙ୍କର ମୁଁ କୁଆଡ଼େ ଆଲୋଚନାର ସାମଗ୍ରୀ ହୋଇଉଠିଥିଲି ।

ସତରେ, ଏବେ ବି ମୁଁ ଡ୍ରେସିଂ ଟେବୁଲ ଆଗରେ ବସି ନିଜ ରୂପରେ ନିଜେ ମୁଗ୍ଧ ହୁଏ । ଏହି ରୂପ ହିଁ ମୋତେ ଦୁନିଆ ଦରବାରରେ ଦେଇଛି ଗୌରବ ଆଉ ମନକୁ ଦେଇଛି କ'ଣ ?

ଛାଡ଼ । ସତାଂଶୁର ଭଉଣୀ । ନାଁ ମୋହିନୀ । ସାଙ୍ଗସାଥୀ ମେଳରେ ସେ ବଡ଼ ବିବ୍ରତ ହୋଇଉଠିଥିଲା । ଥଟ୍ଟା ପରିହାସ ବେଳେବେଳେ ଏତେ ଉତ୍କଟ ହୋଇ ଉଠୁଥିଲା ଯେ, ମୋହିନୀ ଆଖିରୁ ପାଣି ବହି ଆସୁଥିଲା । ଝିଅମାନଙ୍କ ଗହଳରେ ମୁଁ ପଶିପାରୁ ନଥିଲି । ହୁଏତ ମୋର ମନର ସଂକୀର୍ଣ୍ଣତା ମୋ' ଗୋଡ଼ରେ ବେଡ଼ି ପିନ୍ଧାଇ ଦେଇଥିଲା ଆଉ ମୋ' ପରିପାଟୀର ଦୀନତା ସେମାନଙ୍କଠୁଁ ଦୂରେଇ ରଖିଥିଲା । ମୁଁ ମନେ ମନେ କିପରି ଅଶ୍ୱସ୍ତି ଅନୁଭବ କରୁଥିଲି । ବୋଉ କିନ୍ତୁ ତା' ବୟସୀମାନଙ୍କ ସହିତ ନିଜକୁ ମିଶେଇ ନେଇସାରିଥିଲା । ଭଣ୍ଡାର ଘରର ଦାୟିତ୍ୱ ତା' ହାତରେ ସତାଂଶୁର ମା' ଦେଇଥିଲେ । ତା'ର ବ୍ୟସ୍ତତା ସେଥିରେ ଏତେ ବଢ଼ି ଯାଇଥିଲା ଯେ, ଆଉ ସେ ଅନ୍ୟଆଡ଼େ ତକେଇବାର ବେଳ ପାଉ ନଥିଲା ।

ମୁଁ କିନ୍ତୁ ଗୋଲକଧନ୍ଦାରେ ପଡ଼ି ଯାଇଥିଲି । ସବୁଠାରୁ ମୋର ଦୁଶ୍ଚିନ୍ତା ହୋଇଥିଲା ସତାଂଶୁ ଗଲା କୁଆଡ଼େ ?

କମଳ ଆସି ମୋତେ ଡାକିଲା, କହିଲା, ବୁଲିଯିବୁ ?

ମୁଁ କହିଲି — କୁଆଡ଼େ ?

ସେ ତା' କାନ୍ଧରେ ଗୋଟାଏ କ୍ୟାମେରା ଝୁଲେଇ ଥିଲା । ସେଇଟାକୁ ଦେଖେଇ କହିଲା, ଆ, ତୋ' ଫଟୋ ଉଠେଇବି ।

ସେତେଦିନ ଯାଏ ମୋର ଖଣ୍ଡିଏ ବୋଲି ଫଟୋ ଉଠି ନଥିଲା । ନିଜ ଚେହେରା ଦେଖିବା ପାଇଁ କାହାର ଆଗ୍ରହ ନଥାଏ ? କମଳ ଠାରୁ ଫଟୋ ଉଠାଇବା କଥା ଶୁଣିବା ମାତ୍ରେ ମୁଁ ସଙ୍ଗେସଙ୍ଗେ ରାଜି ହୋଇଗଲି । ବହୁଦିନରୁ ଫଟୋ ଉଠାଇବାର ଲାଳସା ମୋ' ମନରେ ଚପି ଚପି ରହିଥିଲା ।

କମଳ ସଙ୍ଗରେ ମୁଁ ଦୁଇ ପାହୁଣ୍ଡ ଆଗେଇଚି କି ନାହିଁ, ଆଉ ଗୋଟିଏ ଝିଅ ଛୁଟିଆସି କହିଲା, କମଳ ଭାଇ ! କ୍ୟାମେରାରେ ରିଲ୍ ଅଛି ? ଆଉ ଗୋଟିଏ ଝିଅ ଛୁଟିଆସିଲା — କମଳ ଭାଇ ମୋ' ଫଟୋ ଉଠାଇ-ଦିଅ । କମଲ୍‌ଦା, ଆମର ଛବି ତୁଲେ ଦେବେନା ?

ଏକ ଦୁଇ, ତିନ୍ ଚାରି, ପାଞ୍ଚ ଛଅ । କମଳର ଚାରି ପାଖରେ ଝିଅମାନେ ଆସି ବେଢ଼ିଗଲେ । ସେମାନଙ୍କ ବେଶ ପୋଷାକ ଯଦିଓ ଆଗରୁ ମୁଁ ଦେଖିଥିଲି କିନ୍ତୁ ଜଣେ ପୁରୁଷ ପିଲା ସହିତ ଏପରି ବ୍ୟବହାର ମୁଁ କଳ୍ପନା କରିପାରି ନଥିଲି । କିଏ ହାତକଟା ବ୍ଲାଉଜ୍ ଖଣ୍ଡେ ପିନ୍ଧିଚି ତ, କାହାର ଶାଢ଼ୀ ବ୍ଲାଉଜ୍ ଉପରେ ନାହିଁ, କାହାର ବ୍ରେସିଅରର ସମସ୍ତ ଅଂଶ ନାଇଲନ୍ ବ୍ଲାଉଜ୍ ତଳୁ ଝଟକି ଦିଶୁଚି, ଆଉ କାହାର ତିନିପାଆ କନାର ବ୍ଲାଉଜ୍‌ଟା ବର୍ତ୍ତୁଳ ଦେହର ଲଜ୍ଜା ଅଂଶ ଢାଙ୍କିବାକୁ ଅସମର୍ଥ ହୋଇଉଠିଚି । ଆଉ କିଏ କମଳକୁ ପଛଆଡୁ ଦୁଇ ହାତରେ ଜାବୁଡ଼ି ଧରି କହୁଛି, ତମେ ଯେମିତି ପୋଜ୍‌ରେ କହିବ ମୁଁ ସେମିତି ପୋଜ୍‌ରେ ଉଠାଇବାକୁ ରାଜି ଅଛି କମଲଦା, ଆଗ ମୋର ଉଠାଇ ଦିଅ ।

କମଳ ବଡ଼ ହଇରାଣରେ ପଡ଼ି ଯାଇଥିଲା ବୋଧେ ! କିନ୍ତୁ ମୁଁ ଦେଖିଲି, ସେ ବେଶ୍ ଚଳେଇ ନେଲା । ସମସ୍ତଙ୍କୁ ସଙ୍ଗରେ ଡାକି ନେଇଗଲା ବାଡ଼ି ବଗିଚାକୁ । ମୁଁ ବି ସେମାନଙ୍କ ପଛେ ପଛେ ଯାଉଥିଲି । କେହି ମୋତେ ନ ଡାକିଲେ ମଧ୍ୟ କମଳର ଅସହାୟ ଅବସ୍ଥା କଥା ଚିନ୍ତା କରି ଶେଷ ପରିଣତି ଦେଖିବା ପାଇଁ ଯାଇଥିଲି ।

ଇସ୍, ଏଡ଼େ ଅଲାଜୁକୀ ଏଇ ଝିଅଗୁଡ଼ାକ । ଲାଜ ଗାଁ ବାଟେ କେବେ ବି ଯାଇନାହାନ୍ତି !

ଗୋଟାଏ ଝିଅ ତା' ଦେହର ଶାଢ଼ୀଟାକୁ ହାଲ୍‌କା କରିଦେଇ ମାଂସଳ ବକ୍ଷକୁ ବାହାରକୁ ଦେଖାଇ କହିଲା — ଠିକ୍ ହେଇଚି କମଲଦା ?

କମଲ ସେତେବେଳେ ଦୂରରେ ଠିଆହୋଇ, କ୍ୟାମେରାର ଭିଉଫାଇଣ୍ଡରରେ ହୁଏତ ସେହି ଚପଳା କିଶୋରୀର ଗର୍ବିତ ବକ୍ଷସ୍ଥଳକୁ ଲକ୍ଷ୍ୟ କରୁଥିଲା । ପର ମୁହୂର୍ତ୍ତରେ କ୍ୟାମେରାଟା କାନ୍ଧରେ ଝୁଲେଇ ଦେଇ ନିଜେ ସେ ଯାଇ ଝିଅଟିର ବକ୍ଷବାସକୁ ଦୁଇ ହାତରେ ସଜାଡ଼ି ଦେଲା ।

ମୁଁ ଲାଜରେ ସଢ଼ି ଯାଇଥିଲି । କମଳଟା ବି ଏଡ଼େ ବେହିଆ ହୋଇଗଲାଣି ।

ଗୋଟିକ ପରେ ଗୋଟିଏ ପ୍ରତ୍ୟେକ ଝିଅଙ୍କର ସେ ଛବି ଉଠାଇଲା । ଇମିତି ଠିଆ ହୁଅ, ସିମିତି ମୁହଁ କର, ଏଠୁ ଲୁଗା ଖସାଅ, ସେଠୁ ହାତ ଘୁଞ୍ଚାଅ, ଏହିପରି ପ୍ରତ୍ୟେକଙ୍କ ଦେହରେ ହାତଦେଇ, ପ୍ରତିଟି ଝିଅଙ୍କୁ ସଜାଡ଼ି ସାରି କମଳ ଫଟୋ ଉଠାଇବା ଶେଷ କରିଲାବେଳକୁ ପ୍ରାୟ ଘଣ୍ଟାଏ ଲାଗି ଯାଇଥିଲା ।

ମୁଁ ଅଦୂରରେ ଏକ ଉହାଡ଼ିଆ ଜାଗାରେ ଠିଆହୋଇ ସବୁ ଲକ୍ଷ୍ୟ କରୁଥିଲି । କମଳ ବୋଧହୁଏ ମୋ' କଥା ଭୁଲି ଯାଇଥିଲା । କିନ୍ତୁ କମଳଟା ଯେ ଏତେ ବେହିଆ ହୋଇଗଲାଣି, ମୁଁ ମୋଟେ ଧାରଣା କରିପାରି ନଥିଲି । ଏମାନଙ୍କ ଭିତରୁ କେଉଁ ଝିଅର ବକ୍ଷରେ ହାତରଖି ସେ ଯେ ବକ୍ଷବାସ ନ ସଜାଡ଼ିଛି ! ସମସ୍ତେ ଗୋଟି ଗୋଟି କରି ତାକୁ ଅନୁରୋଧ ଜଣାଇଚନ୍ତି, ହୋ ହୋ ହୋଇ ହସି ଉଠିଚନ୍ତି ।

ଦୂରରେ ଠିଆହୋଇ ମଧ୍ୟ ମୋ' ବକ୍ଷଦେଶରେ ଶିହରଣ ଅନୁଭବ କରୁଥିଲି ଆଉ ସମଗ୍ର ଦେହରେ ଅନୁଭବ କରୁଥିଲି କମ୍ପନ ।

ଫଟୋ ଉଠା ଶେଷକରି ସେମାନେ ଗୋଟି ଗୋଟି କରି ଲେଉଟି ଗଲେ । ଶେଷରେ ଯେଉଁ ଝିଅଟି ଥିଲା, କମଳ ତାକୁ ପାଖକୁ ଡାକି କହିଲା, ଶୁଣ ।

ଝିଅଟା କମଳ ପାଖକୁ ଲାଗିଗଲା । କମଳ ତା'ର ଅସଂଯତ ବକ୍ଷଦେଶକୁ ଲାଳସାପୂର୍ଣ୍ଣ ଚାହାଣରେ ଚାହିଁ କହିଲା, ଆଉ ଫଟୋ ଉଠେଇବ ?

ଝିଅଟି ହସିଦେଲା । କହିଲା, ନା ଥାଉ, ଆଉ ଦିନେ ଉଠେଇବି ।

କମଳ ହୁଏତ ତାକୁ ଆଉ କ'ଣ କହିଥା'ନ୍ତା । କିନ୍ତୁ ପର ମୁହୂର୍ତ୍ତରେ ମୋ' ଉପରେ ତା'ର ଦୃଷ୍ଟି ପଡ଼ିବାରୁ ସେ ଟିକିଏ ଶଙ୍କିଗଲା ଏବଂ କହିଲା, ଆରେ ରାଧା ଯେ ! ତୋ' ଫଟୋ ତ ଉଠା ହେଲା ନାହିଁ ।

ମୁଁ କମଳ ଆଡ଼କୁ ଆଗେଇ ଆସିଲି । ସେ ଝିଅଟି ମୋ' ଆଡ଼କୁ ଚାହିଁଦେଇ ଚାଲିଗଲା । କମଳ ପାଖରେ ପହଞ୍ଚି କହିଲି, ମୋର ଭଲ ଶାଢ଼ି ନାହିଁ କି ରୂପ ଭଲ ନୁହେଁ । କାହିଁକି ମିଛରେ ଉଠେଇବ ?

ମୋର ଏହି ଅଭିମାନପୂର୍ଣ୍ଣ କଥା ବୋଧହୁଏ କମଳକୁ ଟିକିଏ ବାଧିଲା । ସେ କୌଣସି ଉତ୍ତର ନ ଦେଇ ନୀରବେ ଠିଆହୋଇ କ୍ୟାମେରାଟା ଆଡ଼େ ଅନେଇ ଥିଲା । ମୁଁ ଚାଲିଯିବାକୁ ବାହାରିଥିଲି । ତା'ଛଡ଼ା ଫଟୋ ଉଠାଇବା ପାଇଁ କମଳ ଆଗରେ ଏପରି ଅଲାଜୁକୀ ଭାବରେ ଠିଆ ହେବାକୁ ମୋର ଆଗ୍ରହ ନଥିଲା ।

କମଳ କହିଲା, ତୁ ମନ ଦୁଃଖ କରନି ରାଧା । ଆଜି ତ ସମୟ ନାହିଁ । କାଲି ତୋ' ଫଟୋ ଉଠାଇବା ପାଇଁ ଗୋଟିଏ ସଂପୂର୍ଣ୍ଣ ରିଲ୍ ଖର୍ଚ୍ଚ କରିବି ।

ମୋର ଫଟୋ ଉଠେଇବାରେ ଆଉ ବିଶେଷ ଆଗ୍ରହ ନଥିଲା । ମୁଁ ଘରଆଡ଼କୁ ଚାଲି ଯାଉଥିଲି । ସଂଧ୍ୟା ନଇଁ ଆସୁଥିଲା । ଆଜି ବର ଆସିବ । ଗହଳ ଚହଳ

ବଢ଼ି ଆସୁଥିଲା । ସେଥିପାଇଁ ସତାଂଶୁର ବନ୍ଧୁବାନ୍ଧବ ଆତ୍ମୀୟସ୍ୱଜନ ଯିଏ ଯେଉଁଠି ବାକି ଥିଲେ ଧୀରେ ଧୀରେ ସମସ୍ତେ ଆସି ଯାଉଥିଲେ ।

ମୁଁ କ'ଣ କରିବି ! ମୋର ସମୟ ମୋଟେ କଟୁ ନଥିଲା । ଏକାଟିଆ ବାର୍‌ହା ପରି ମୁଁ ନିଜ ମନକୁ ଘରି ବୁଲୁଥିଲି । ସେଇଥିପାଇଁ ବୋଧେ ସତାଂଶୁ ଖାଲି ମୋର ମନେପଡୁଥିଲା । କିଭଳି ଲୋକ ସେ ! ଜଣକୁ ଏକ ଅପରିଚିତ ସ୍ଥାନକୁ ଧରିଆଣି ଛାଡ଼ିଦେଇ ନିଶ୍ଚିନ୍ତରେ କିପରି ରହି ଯାଇଛନ୍ତି । ମୋ' ମନର ସମସ୍ତ ରାଗ, ଅଭିମାନ ସୀତାଂଶୁ ଉପରେ ଠୁଳ ହୋଇଥିଲା ।

ସେଇ ଭିଡ଼ ଓ ଗୋଳମାଳ ଭିତରେ ନିଜକୁ ମୋଟେ ମୁଁ ହଜାଇ ଦେଇପାରୁ ନଥିଲି । ଅନ୍ୟ ପାଞ୍ଚଟା ଝିଅଭଳି ଆଉ ପାଞ୍ଚଟା ପୁଅଙ୍କ ସହିତ ଥଟ୍ଟା ପରିହାସ ହୋଇପାରୁ ନଥିଲି । ମୋତେ ବଡ଼ କଷ୍ଟ ହେଉଥିଲା । ଶେଷରେ ମୁଁ ବୋଉ ପାଖକୁ ଯାଇ ଦେଖିଲି ସେ ଭୀଷଣ ବ୍ୟସ୍ତ । ତା'ର କଥା କହିବାକୁ ବେଳ ନାହିଁ ।

ଅଧରାତି ବେଳକୁ ବର ଆସିଲା । ସେ କି ଜାକଜମକ । ବାଣ ନିଶାଣ, ନାଚ ଗାନରେ ଗାଁ ଫାଟି ପଡୁଥିଲା । ଆଖି ମୋର କପାଳକୁ ଉଠିଗଲା । ଏପରି ଭାବରେ ଏତେ ଢମକରେ କୌଣସି ବର ଆସିଥିବାର କେବେ ମୁଁ ଦେଖି ନଥିଲି । ସେଇଥିପାଇଁ ଅଶେଷ ଆଗ୍ରହରେ ମୁଁ ପଟୁଆର ଭିତରେ ମିଶି ଯାଇଥିଲି ।

ସେହି ଭିଡ଼ ଭିତରେ କିଏ ମୋତେ ପଛଆଡୁ ଟାଣି ଧରିବାର ଅନୁଭବ କଲି । କିଏ ? ବୁଲି ଅନେଇବାର ଉପାୟ ନଥିଲା । ଭିଡ଼ରେ ଠେଲି ପେଲି ହୋଇ ମୁଁ ଆଗକୁ ଚାଲିଥିଲି ।

ପୁଣି କିଏ ଟାଣି ଧରିଲା ପରି ମନେହେଲା ।

ଏଥର ବୁଲି ଅନେଇଲି । ସତାଂଶୁ ହସୁଚି ।

ଦେହଟା ମୋର ଗୋଟିପଣ ଥରିଉଠିଲା । ମୁଁ କିଛି ନ କହି ଭିଡ଼ ଭିତରୁ ବାହାରକୁ ବାହାରିବାକୁ ଚେଷ୍ଟା କଲି । ସେ ମଧ୍ୟ ମୋତେ ସାହାଯ୍ୟ କଲା ।

କ'ଣ ଖବର ? କିମିତି ଅଛ ? ସତାଂଶୁ ପଚାରିଲା ।

ଯିମିତି ରଖିଛ ! ଅଭିମାନଭରା ଗଳାରେ ମୁଁ ଉତ୍ତର ଦେଲି । କହିଲି, ଗୋଟିଏ ଲୋକକୁ ଆଣି ଏଠାରେ ଛାଡ଼ିଦେଇ ଚାଲିଯାଇଛ, ସେ ମଲା କି ହଜିଲା ତା' ଖବର ନେବାକୁ କେହି ନାହିଁ ।

ସତାଂଶୁ ହସିଲା, କହିଲା, ସେ ଭୟ ନାହିଁ ରାଧା । କିନ୍ତୁ ତମକୁ ଏଠାରେ

ଛାଡ଼ିଯିବା ମୋର ଉଚିତ ହୋଇନାହିଁ । କିନ୍ତୁ ଉପାୟ କ'ଣ କୁହ ! ବାହାଘର କଥା କ'ଣ ଜାଣିନାହଁ ? ବରଘର ପୁଣି ବାଲେଶ୍ୱରରେ । ମୁଁ ଯାଇଥିଲି ତାକୁ ଆଣିବାକୁ । ତମର କ'ଣ କିଛି ଅସୁବିଧା ହେଲା ? କମଳକୁ ତ କହି ଯାଇଥିଲି ଖବର ଅନ୍ତର ବୁଝିବା ପାଇଁ ।

ଏକା ସଙ୍ଗରେ ଏତେଗୁଡ଼ିଏ କଥା ଶୁଣି ମନଟା ଟିକିଏ ମୋର ତରଳି ଗଲା । ଭାବିଲି, ସତକଥା । ସେ ବିଚରାର ଦୋଷ କ'ଣ ! ନିଜ ଭଉଣୀର ବିଭାଘର ଯେତେବେଳେ, ତା'ର ତ ପୁଣି କର୍ତ୍ତବ୍ୟ ଅଛି !

ରାଗଟା ଧୀରେ ଧୀରେ ନରମି ଆସୁଥିଲା । ସତାଂଶୁ କହିଲା, କୁଆଡ଼େ ଯିବ ରାଧା ! ବର ଦେଖିବ ନା ଘରକୁ ଯିବ ?

ତମେ ? ହଠାତ୍ ତାଙ୍କୁ ତମେ କହିପକାଇ ସେଦିନ ମୁଁ ଜିଭ କାମୁଡ଼ି ପକାଇଥିଲି । ତା' ପରଠାରୁ ଆଉ ଆପଣ କହିବା ଆବଶ୍ୟକ ପଡ଼ି ନାହିଁ ।

ମୁଁ ଘରକୁ ଯିବି । ବିଶେଷ କ୍ଳାନ୍ତ ହୋଇପଡ଼ିଛି । ବର ଏଇକ୍ଷିଣା ଗାଁଯାକ ବୁଲି ବୁଲି ବାଣ ନିଶାଣ ସବୁ ଶେଷକରି ଘରକୁ ଆସୁ ଆସୁ ବୋଧହୁଏ ସକାଳ ହେଇଯିବ । ତମେ ଦେଖିବ ଯଦି ଦେଖୁଥାଅ । ମୁଁ ଯାଉଛି ।

ସତାଂଶୁ ମୋ' ଉତ୍ତରକୁ ଅପେକ୍ଷା ନ କରି ଘରଆଡ଼କୁ ଆଗେଇ ଯାଉଥିଲା । ମୁଁ ମଧ୍ୟ ତା' ପଛେ ପଛେ ମୋ' ଅଜାଣତରେ ପାଦ ପକାଇ ଚାଲିଥିଲି । କେଜାଣି କାହିଁକି ସେହି ବାଣ ନିଶାଣ ଓ ଆନନ୍ଦ କଳରୋଳ ଭିତରେ ନିଜକୁ ମୁଁ ହଜାଇ ଦେଇପାରୁ ନଥିଲି ।

ତମେ ତା'ହେଲେ...

ହଁ ମୁଁ ଫେରିଯିବି । ମତେ ଏ ଭିଡ଼ ଠେଲି ଆଗେଇବାକୁ ଆଦୌ ଭଲ ଲାଗୁ ନାହିଁ ।

ଘରେ ପହଞ୍ଚି ଦେଖିଲି ସବୁ ଶୁନ୍‌ଶାନ୍ । କେହି କୁଆଡ଼େ ନାହାନ୍ତି । ବୋଧହୁଏ ବର ଦେଖିବା ପାଇଁ ଯିଏ ଯୁଆଡ଼େ ବାହାରି ଚାଲିଯାଇଛନ୍ତି ।

ସତାଂଶୁ ତା' ଘରକୁ ଯାଇ ଆଲୁଅ ଜଳେଇଲା । ଲୁଗାପଟା ବଦଳେଇଲା । ମୁଁ ବାହାରେ ଠିଆ ହେଇଥିଲି । କାହିଁକି ଠିଆ ହେଇଥିଲି ? ସେଦିନ ମୋତେ ସତାଂଶୁର ଆକର୍ଷଣ ଛଡ଼ା ଆଉ ଯେପରି କୌଣସି ମୋହ ଆକର୍ଷିତ କରିପାରୁ ନଥିଲା । ଛାତି ଭିତରଟା କିନ୍ତୁ ମୋର କି ଏକ ଅବ୍ୟକ୍ତ ଯନ୍ତ୍ରଣାରେ ରହି ରହି ଥରି ଉଠୁଥିଲା ।

ସତାଂଶୁ ଡାକିଲା, ଭିତରକୁ ଆସ ରାଧା ! ବାହାରେ ଠିଆ ହେଲ କାହିଁକି ?

ଯିବାକୁ ଇଚ୍ଛା ଥାଇ ବି ମୁଁ ଯାଇପାରିଲି ନାହିଁ ।

କ'ଣ ଭୟ କରୁଛ ?

ମୁଁ କିଛି ଉତ୍ତର ଦେଇପାରିଲି ନାହିଁ । ମୁହଁଟା ମୋର ବନ୍ଦ ହେଇ ଯାଇଥିଲା ।

ସତାଂଶୁ ଆସି ମୋ' ହାତ ଧରିଲା ।

ମୁଁ କଂପି ଉଠିଲି ।

ସତାଂଶୁର ପଛେ ପଛେ ଘର ଭିତରକୁ ଗଲି । ତା' ଖଟ ଉପରେ ଯାଇ ବସିଲି । ଲଣ୍ଠନର ଧୀର ଆଲୋକରେ ଦେଖିଲି ସତାଂଶୁର ପ୍ରଶସ୍ତ ଛାତି, ମାଂସଳ ବାହୁ । ମୁଣ୍ଡର ବାଳଗୁଡ଼ାକ ଅଲରାବଲରା । ସତାଂଶୁ ଏକଲୟରେ ମୋ' ମୁହଁକୁ ଅନାଇ ରହିଛି ।

ବାହାରୁ ଅନେକ କଳରୋଳ ଭାସିଆସି କାନରେ ବାଜୁଛି । ଘରଟା କିନ୍ତୁ ନିସ୍ତବ୍ଧ । ଆର ଖଞ୍ଜାରେ ସତାଂଶୁର ଭଉଣୀ ଓ ତା' ସାଙ୍ଗସାଥୀମାନେ ହୁଏତ ଥଟ୍ଟା ପରିହାସରେ ଲାଗି ପଡ଼ିଛନ୍ତି । କିନ୍ତୁ କାହାରି କଣ୍ଠସ୍ୱର ଏ ଘରଯାଏ ପହଞ୍ଚି ପାରୁ ନାହିଁ ।

ସତାଂଶୁ ମୋ' ମୁହଁକୁ ଓ ମୁଁ ସତାଂଶୁ ମୁହଁକୁ ଏକଲୟରେ ଚାହିଁ ରହିଥିଲୁ । ସେ ଠିଆ ହୋଇଥିଲା, ମୁଁ ବସିଥିଲି । ସତାଂଶୁ କହିଲା, ତମ ଜୀବନରେ ଇମିତି ବି ଗୋଟିଏ ଦିନ ଆସିବ ରାଧା ! ବାଇଦ ବାଜଣା ବାଜିବ, ବାଣ ନିଶାଣ ଫୁଟିବ । କେଉଁ ଅଜଣା ଦେଶର ରାଜକୁମାର ଆସି ତମକୁ ଘୋଡ଼ା ପିଠିରେ ବସେଇ ନେଇ ଚମ୍ପଟ୍ ଦେବ ।

ମୁଁ ହସିପକାଇଲି । ମନର ଜଡ଼ତା ଧୀରେ ଧୀରେ ଭାଙ୍ଗି ଭାଙ୍ଗି ଆସୁଥିଲା । କହିଲି, ଏଡ଼େ ଭାଗ୍ୟ ମୋର କାହିଁ ?

ଭାଗ୍ୟ । ଆରେ ଭାଗ୍ୟ ତମର ପରିବର୍ତ୍ତନ ପାଇଁ କେଇ ଘଣ୍ଟା ଲାଗିବ ? ପୁରୁଷର ଭାଗ୍ୟ ସିନା ପଥର ତଳେ, ତମମାନଙ୍କର ଭାଗ୍ୟ ପରା ପତର ତଳେ !!

ମୁଁ ଆଉ କିଛି ଉତ୍ତର ଦେଇପାରିଲି ନାହିଁ । ଗୋଡ଼ ନଖ ତଳେ ଘଷୁଥିଲି ।

ସତାଂଶୁ କ'ଣ ଭାବି କେଜାଣି ହଠାତ୍ ଆସି ମୋ' ପାଖରେ ବସିପଡ଼ିଲା । ତା' ବାଁ ହାତଟା ମୋ' ପିଠି ଉପରେ ପକେଇ କହିଲା, ତମେ ଚିନ୍ତା କରନି ରାଧା, ମୁଁ ତମକୁ ଗୋଟିଏ ରାଜପୁତ୍ରର ସନ୍ଧାନ ଦେବି ।

ସତାଂଶୁ ହାତର ସ୍ପର୍ଶ ପାଇ ମୋ' ଦେହଟା ଶୀତେଇ ଉଠିଥିଲା । ମୁଁ ଜଡ଼ସଡ଼ ହୋଇଯାଇଥିଲି ।

ସେ ଆଉ ଟିକିଏ ଭିଡ଼ି ନେଇ, ମୋତେ ତା' କୋଳ ଉପରେ ଶୁଆଇ ଦେଇ ହସିଲା ମୁହଁରେ କହିଲା, ତମେ ମୋ' କଥାକୁ ବିଶ୍ୱାସ କରିପାରୁନା ରାଧା ? ଦେଖିବ ତମ ଗାଁଦାଣ୍ଡ ଏହିପରି ଉଜ୍ଜ୍ୱଳ କରି ତମକୁ ଜଣେ ଧରି ନେଇଯିବ ।

ମୁଁ ଏକରକମ ଜଡ଼ ପାଲଟି ଯାଇଥିଲି । ସତାଂଶୁ ମୁହଁ ନୁଆଁଇ ମୋ' ମୁହଁ ସହିତ ମିଳେଇବାକୁ ଯାଉଛି, ହଠାତ୍ ଘର ଭିତରେ ମେଞ୍ଚାଏ ଆଲୁଅ ବିଜୁଳି ପରି ଜଳି ଉଠି ନିଭିଗଲା । ମୁଁ ଶିହର ଉଠିଲି । ସତାଂଶୁ ମଧ୍ୟ ଧଡ଼କରି ଉଠିପଡ଼ିଲା । ମୁଁ ମୋ' ଅସଂଯତ କେଶବାସ ସଜାଡ଼ିବାକୁ ଯାଇ ଦେଖିଲି ମୃଦୁ ହସି କମଳ ଭିତରକୁ ପଶି ଆସୁଛି । କାନ୍ଧରେ ତା'ର କ୍ୟାମେରା ଝୁଲୁଚି, ତା' ସହିତ ଫ୍ଲାସ୍‌ଗନ୍ ।

ସେଦିନ କିଛି ମୁଁ ବୁଝିପାରି ନଥିଲି । କେବଳ କମଳ ସେଇ ମୁହୂର୍ତ୍ତରେ ଘର ଭିତରକୁ ପଶି ଆସୁଥିବାରୁ ମୋ' ମନଟା ଦବି ଯାଇଥିଲା । ମୁଁ ଧଡ଼୍‌ପଡ଼୍ ହୋଇ ଉଠି ଘରର ଅନ୍ୟ ଗୋଟାଏ କୋଣକୁ ଚାଲି ଯାଇଥିଲି ।

କେଜାଣି କାହିଁକି ସତାଂଶୁ କମଳ ଉପରେ ଟିକିଏ ବିରକ୍ତ ହେଲା । କହିଲା, ସବୁ କଥାରେ ତୋ'ର ଏ ଚପଳାମ ଶୋଭା ପାଏନା କମଳ ! ସ୍ଥାନ, କାଳ, ପାତ୍ର କିଛି ତୋ'ର ବାରଣ ନାହିଁ ।

କମଳ ହି ହି ହସି ଦେଇଥିଲା । କହିଲା, ଜୀବନଟାକୁ ଉପଭୋଗ କରି ଶିଖ ସତାଂଶୁ । ମନଟାକୁ ଆଉ ଟିକିଏ ବିସ୍ତୃତ କର । ଏ ଦୁନିଆରେ ବଞ୍ଚିବା ପାଇଁ ହେଲେ, ଏ ଦୁନିଆ ସହିତ ତାଳଦେଇ ଚଳିବାକୁ ହେବ ।

ସତାଂଶୁ କହିଲା, ତୁ ତେଣେ ଫଟୋ ଉଠାଇବା ଛାଡ଼ି ଏଣିକି କାହିଁକି ଭିଡ଼ି ଆସିଲୁ ?

କମଳ ପୁଣି ହସିଲା, କହିଲା, ନିଶ୍ଚିତ ବର୍ତ୍ତମାନ ଅପେକ୍ଷା ଅନିଶ୍ଚିତ ଭବିଷ୍ୟତର କଥା କଳ୍ପନା କରିବାକୁ ମୋତେ ଭାରି ଭଲ ଲାଗେ । ଆଉ ସେହି ଅନିଶ୍ଚିତ ଭବିଷ୍ୟତର ଯଦି ନିଶ୍ଚିତ ପ୍ରତିଶ୍ରୁତିକୁ ମୁଁ ମୋ' ସେଲୁଲଏଡ୍ ଫିତା ଭିତରେ ଧରି ରଖିପାରିଲି, ତା'ହେଲେ ଯଥେଷ୍ଟ ବାହାଦୂରୀ ପାଇଁ ଦାବୀ କରିବାକୁ ସହଜ ହେବ ।

ମୁଁ ସେଦିନ କମଳର ସେହି ଇଂଗିତପୂର୍ଣ୍ଣ କଥାରୁ ବିନ୍ଦୁବିସର୍ଗ ବୁଝିପାରି ନଥିଲି । ସତାଂଶୁ ହସି ହସି କହିଥିଲା, କିଛି ନିଶ୍ଚିତ ନୁହେଁ କମଳ, ସବୁ ଖାଲି ମନର ଭ୍ରମ ।

ଦୁଇ ବନ୍ଧୁ ବସି ଅନେକ ବେଳଯାଏ କଥାବାର୍ତ୍ତା ହେଲେ । ମୁଁ ଘରର ଗୋଟିଏ କୋଣରେ ଜଡ଼ସଡ଼ ହୋଇ ଠିଆ ହୋଇଥିଲି, ଦେହସାରା ମୋର କମ୍ପନ ଆରମ୍ଭ ହୋଇଯାଇଥିଲା ।

ବାହାଘର ଶେଷ ହେବାପରେ ଆଉ ଦୁଇଦିନ ରହି ଆମେ ଘରକୁ ଲେଉଟି ଆସିଥିଲୁ । ସତାଂଶୁ ଓ ତା'ର ମା' ଆମକୁ ଆଉ କିଛିଦିନ ରଖିବା ପାଇଁ କହୁଥିଲେ । ବୋଉ ମୋଟେ ରାଜି ହେଲାନାହିଁ । ସାନ ଭଉଣୀ କୁନିଟାକୁ ସେ ବାପାଙ୍କ ପାଖରେ ଛାଡ଼ିଦେଇ ଆସିଥିଲା । ମୋର କିନ୍ତୁ ଆଉ କିଛି ଦିନ ରହିଯିବା ପାଇଁ ପ୍ରବଳ ଆଗ୍ରହ ଥିଲା । ମୁଁ ବାଧ୍ୟ ହୋଇ ବୋଉ ସହିତ ଫେରିଗଲି ।

ଏଥର ବହୁ ସୁନେଲି ଭାବନା ମୋ' ମନ ଭିତରେ ଜାଗି ଉଠିଲେ । ନିରୋଳା ବସି ମୁଁ କେତେ ଯେ ନୂଆ ନୂଆ କଥା ଭାବି ଶିଖିଥିଲି, ଆଜି ସେଗୁଡ଼ାକ ମନେ ପକେଇଲେ ହସ ମାଡ଼େ ।

ଚିଠି ଆଉ ଉତ୍ତର । ସ୍ୱପ୍ନର ଆନନ୍ଦ ଭିତରେ ଦିନଗୁଡ଼ାକ ଗଡ଼ି ଚାଲିଲା ।

ମୁଁ ସେ ବର୍ଷ ଦକ୍ଷତାର ସହିତ ସପ୍ତମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେଲି । ଆମ ଗାଁରୁ ମୋ' ପାଠପଢ଼ା ଶେଷ ହେଲା । ଅବଶ୍ୟ ପାଠ ତୁଳନାରେ ମୋ' ବୟସ ଅନେକ ବଢ଼ି ଯାଇଥିଲା । ଏଥର ପଢ଼ିବାକୁ ହେଲେ ମୋତେ ନିତି ଚାରିମାଇଲ ଚାଲି ଚାଲି ଯିବାକୁ ହେବ । ଆମ ଗାଁଠାରୁ ହାଇସ୍କୁଲ ଚାରି ମାଇଲ ଦୂରରେ ଥିଲା । ବାପା ବୋଉ ବିଚାର କରି ମୋ ପାଠପଢ଼ା ବନ୍ଦ ରଖିବାକୁ ସିଦ୍ଧାନ୍ତ କଲେ ।

କମଳ ଏହା ଭିତରେ ଆଉ ଘରକୁ ଆସି ନଥିଲା । ସତାଂଶୁ ବେଳେ ବେଳେ ତା' କଥା ମୋତେ ଚିଠିରେ ଲେଖୁଥିଲା । ପାଠ ପଢ଼ାରେ କମଳର ଆଉ ମନ ନ ନଥିଲା । କେବଳ ଫଟୋ ଉଠାଇବା ତା'ର ଗୋଟାଏ ରୋଗ ହୋଇଯାଇଥିଲା ।

ମୋ' ପାଠପଢ଼ା ବନ୍ଦ ହେବା କଥା ମୁଁ ସତାଂଶୁକୁ ଲେଖିଲି । ଦୁଇ ଚାରିଦିନ ପରେ ଦେଖିଲି କମଳ ଆଉ ସୀତାଂଶୁ ଦୁହେଁ ଆସି ହାଜର ହୋଇଯାଇଛନ୍ତି । ସତାଂଶୁ ତା' ମା'ଠାରୁ ଖଣ୍ଡିଏ ଚିଠି ଲେଖେଇ ଆଣିଥିଲା । ସତାଂଶୁର ମା' ମୋ' ବୋଉ ପାଖକୁ ଲେଖିଥିଲେ, ରାଧାର ପାଠପଢ଼ା ବନ୍ଦ ହୋଇଯିବା କଥା ପୁଅଠାରୁ ମୁଁ ଶୁଣିଲି । ତା'ର ଅସୁବିଧା କଥା ମଧ୍ୟ ଜାଣିଲି । କିନ୍ତୁ ରାଧାକୁ ଆମ ଘରେ ରଖି ପାଠ ପଢ଼ାଇଲେ ହୁଅନ୍ତା ନାହିଁ । ମୋହିନୀ ପରଘରକୁ ଗଲା ଦିନରୁ ମୋର କୋଳ ଶୂନ୍ୟ ହୋଇଯାଇଛି । ରାଧା ଆସି ସେହି ସ୍ଥାନ ପୂରଣ କଲେ ମୁଁ ଖୁସି ହୁଅନ୍ତି ।

ସେଥିପାଇଁ ବାପା ବୋଉ ଭିତରେ ବହୁ ଆଲୋଚନା ହେଲା । ବାପା ମୋତେ ପରଘରେ ରହି ପାଠ ପଢ଼ିବା ପାଇଁ ମୋଟେ ରାଜି ହେଉ ନଥିଲେ କିନ୍ତୁ ବୋଉ ବାପାଙ୍କୁ ରାଜି କରେଇଲା । ସେ ଯେଉଁ କେଇଦିନ ସତାଂଶୁ ଘରେ ରହିଥିଲା, ସତାଂଶୁ ମା'ଙ୍କର ବ୍ୟବହାରରେ ତରଳି ଯାଇଥିଲା ।

ଶେଷରେ ମୁଁ ସହରକୁ ଗଲି । ବୋଉ ମୋତେ ନେଇ ସତାଂଶୁ ମା'ଙ୍କ ପାଖରେ ଜିମା କରିଦେଇ ଆସିଲା । ସ୍କୁଲରେ ନାଁ ଲେଖା ହେଲା । ମନ ଭିତରେ ମୋର ଆନନ୍ଦର ବନ୍ୟା କୂଳ ଡେଇଁ ବହିଯାଉଥିଲା ।

ଦିନ କେଇଟା ପରେ ସତାଂଶୁ ଘରେ ମୁଁ ଘରଲୋକ ପରି ହୋଇଗଲି । ସତାଂଶୁ କେତେ ଦିନ ଯାଏ ମୋ' ପାଖ ମାଡ଼ିଲା ନାହିଁ । କେବଳ ଯେଉଁଠି ଯେତେବେଳେ ଭେଟ ହେଉଥିଲା, ହସି ଦେଉଥିଲା, ମୁଁ ବି ପାଟି ଵୁଜିପାରୁ ନଥିଲି ।

କମଳ ମଝିରେ ମଝିରେ ଆସୁଥିଲା । ମୁଁ କମଳକୁ ଯେତେବେଳେ ଦେଖୁଥିଲି, ସେତେବେଳେ ତା' କାନ୍ଧରେ ଗୋଟାଏ କ୍ୟାମେରା ଝୁଲୁଥିଲା । ମୋ' ଫଟୋ ଉଠାଇବା ପାଇଁ ସେ ଅନେକଥର କହିଥିଲା, କିନ୍ତୁ ମୁଁ ରାଜି ହୋଇ ନଥିଲି ।

ଦିନେ ସଞ୍ଜବେଳେ । ମୁଁ ମୋ' ପଢ଼ାଘରେ ବସି ପଢୁଥିଲି । ସତାଂଶୁ ହସି ହସି ଭିତରକୁ ପଶି ଆସିଲା । ମୁଁ ଚେଆରରୁ ଉଠି ଠିଆ ହୋଇଗଲି । ସେ ମୋତେ ବସିବାକୁ କହି ଆଗ ଚେଆରରେ ବସିପଡ଼ିଲା । କହିଲା, କିମିତି ଲାଗୁଚି ? ସହର ଜୀବନ ଭଲ ନା ମଫସଲ ଜୀବନ ଭଲ ?

ମୋ' ସ୍ୱରରେ ଯେ ଅଭିମାନ ଫୁଟି ଉଠିଥିଲା, ମୁଁ କଥା କହିଲା ବେଳେ ତାହା ବୁଝିପାରିଥିଲି । କହିଲି, ଏତେଦିନ ପରେ ବୋଧହୁଏ ମୋତେ ମନେପଡ଼ିଲା ।

ସେ ହସି ହସି କହିଲା, ତୁ ଜାଣିନୁ ରାଧା ! ବେଶି ମିଳାମିଶା କଥାବାର୍ତ୍ତା କରିବା ଭଲ ନୁହେଁ । ବାର ଲୋକ ତେର କଥା ଭାବିବେ, ଲାଭ କ'ଣ ?

ଏହାପରେ ମୁଁ ଆଉ ଉତ୍ତର ଦେବାକୁ ଭରସି ପାରିଲି ନାହିଁ । ଚୁପ୍‌ଚାପ୍ ଝରକା ବାଟେ ଆକାଶକୁ ଚାହିଁ ବସିଥିଲି ।

ସତାଂଶୁ ପୁଣି ଆରମ୍ଭ କଲା, ମୁଁ କିନ୍ତୁ ଆଜି ଗୋଟାଏ ପ୍ରସ୍ତାବ ନେଇଆସିଛି ରାଧା, ଜାଣେନି ସେଥିରେ ତୁ ରାଜି ହେବୁ କି ନାହିଁ ।

ପ୍ରସ୍ତାବ !! ମୋ' ଛାତିଟା ବହୁତ ଦିନପରେ ଆଉ ଥରେ କମ୍ପିଉଠିଲା । ମୁଁ କେବଳ ସତାଂଶୁ ମୁହଁକୁ ବିସ୍ମିତ ହୋଇ ଚାହିଁ ରହିଲି ।

ପ୍ରସ୍ତାବଟା ସେପରି କିଛି ଗୁରୁତର ନୁହେଁ, ସତାଂଶୁ ସରଳ ସ୍ୱରରେ କହିଲା । ଆମ କ୍ଲବରେ ଏଥର ଦୁର୍ଗାପୂଜାରେ ଡ୍ରାମା କରିବାକୁ ଠିକ୍ କରିଛନ୍ତି । ନାଟକ ସ୍ଥିର ହୋଇଯାଇଛି । ପାତ୍ରପାତ୍ରୀ ମଧ୍ୟ ନିର୍ବାଚନ ଶେଷ ହୋଇଛି । କେବଳ ବାକି ଅଛି ହିରୋଇନ୍ ଭୂମିକାଟା । କମଳର ଇଚ୍ଛା ଯେ, ସେ ଭୂମିକାରେ ତୁ ଅଭିନୟ କଲେ କୁଆଡ଼େ ନାଟକଟା ଜମି ଉଠିବ ।

ଥିଏଟର, ଆଉ ଅଭିନୟ ! ତା' ଭିତରେ ପୁଣି ପ୍ରଧାନ ଭୂମିକାରେ ମୁଁ ଅଭିନୟ କରିବି ! ସମଗ୍ର ଜୀବନ ଭରିରେ ମୁଁ ଦୁଇଥର ମାତ୍ର ଥିଏଟର ଦେଖିଛି । ସେ ପୁଣି ଏହି ସହରକୁ ଆସିବା ପରଠାରୁ ।

ମୁଣ୍ଡଟା ମୋର ଝାଇଁ ମାରିଗଲା । ତଣ୍ଟିଟା ଶୁଖି ଆସୁଥିଲା । ମୁଁ ଖାଲି ସତାଂଶୁ ମୁହଁକୁ ଅନାଇ ରହିଥିଲି ।

କ'ଣ କହ ରାଧା ! ତୋ ମତାମତ ପାଇଁ କ୍ଲବରେ ସମସ୍ତେ ଅପେକ୍ଷା କରିବସିଛନ୍ତ । ସେମାନଙ୍କୁ ଯାଇ ଖବର ଦେବାକୁ ହେବ ।

ଥରିଲା କଣ୍ଠରେ କହିଲି, ମୁଁ କ'ଣ ପାରିବି ?

ଢେର୍ ଢେର୍ ପାରିବୁ ! କେହି ମା' ପେଟରୁ ପଡ଼ି ସବୁ ଶିଖି ଆସି ନଥାଏ । କମଳ କହୁ କହୁ ଭିତରକୁ ପଶି ଆସିଲା ।

ମନଟା ମୋର ଆହୁରି ଦବିଗଲା । ମୁଁ କିଛି ଉତ୍ତର ଦେଇପାରିଲି ନାହିଁ । କମଳ ସତାଂଶୁର ହାତଧରି ଟାଣି ଟାଣି ନେଇଗଲା । କହିଲା, ତୁ ଚାଲିଆ ସତାଂଶୁ ମୁଁ ଜାଣିଛି ରାଧା ଅମତ ହେବନାହିଁ । କିନ୍ତୁ ଦେଖିବୁ ମୋ' ସିଲେକ୍‌ସନ କିପରି ଅବ୍ୟର୍ଥ ହେବ ।

ସତକୁ ସତ କମଳର ସିଲେକ୍‌ସନ ଅବ୍ୟର୍ଥ ହୋଇଥିଲା । ବହୁ ସଂକୋଚ ପରେ ଯେଉଁ ଦିନ ପ୍ରଥମେ ମୁଁ ଶହ ଶହ ଦର୍ଶକଙ୍କ ଆଗକୁ ଆସିଲି, ସେଦିନ ମୋ' ଗୋଡ଼ ଥରୁଥିଲା, ଛାତି ଧଡ଼ପଡ଼ ହେଉଥିଲା । କିନ୍ତୁ ସେହି ଭୟ, ସଂକୋଚ ଓ ଜଡ଼ତା ବେଶୀକ୍ଷଣ ରହିଲା ନାହିଁ । ମୁଁ ନିଜେ ବି ବୁଝିପାରିଲି ନାହିଁ ମୁଁ କ'ଣ କରୁଛି, କିପରି କରୁଛି । ସବୁ ଯନ୍ତ୍ରଚାଳିତ ପରି କରି ଯାଉଥିଲି । ନୃତ୍ୟ, ଗୀତ, ଅଭିନୟ ତିନୋଟି ଯାକ ମୋ' ଭୂମିକାରେ ଥିଲା । ଯେତେବେଳେ ମୁଁ ମୋ' ଅଭିନୟ ଶେଷକରି ଗ୍ରୀନ୍ ରୁମ୍‌କୁ ଫେରିଆସିଲି, ସତାଂଶୁ ଛୁଟିଆସି ମୋତେ ଦୁଇ

ହାତରେ ଟେକିନେଇ କାନ୍ଧରେ ବସାଇ ଦେଲା । ଲଜ୍ଜା ସଂକୋଚ ପରିବେଶ ସବୁ ଯେପରି ସେ ଭୁଲି ଯାଇଥିଲା । କମଳ ଛୁଟିଆସି ତା' କ୍ୟାମେରାର ଫ୍ଲାସଗନ୍ ଝଲସେଇ ଦେଲା । ଅଭିନୟ ଓ ନୃତ୍ୟବେଳେ କେଜାଣି କେତେ ସଟ୍ ନେଇଥିଲା, ମୁଁ ହିସାବ ରଖିପାରି ନ ଥିଲି ।

ସେଦିନ ସବୁଠାରୁ ମୁଁ ବେଶୀ କ୍ଳାନ୍ତ ହୋଇପଡ଼ିଥିଲି । ରାତି ପ୍ରାୟ ଦେଢ଼ଟାବେଳେ ଆମେ ଘରକୁ ଫେରିଲୁ । ସତାଂଶୁ ଓ ମୁଁ ଗୋଟିଏ ରିକ୍ସାରେ ବସି ଫେରୁଥିଲୁ । ମୋର ଦେହଭାର ସଂପୂର୍ଣ୍ଣରୂପେ ସତାଂଶୁ ବହନ କରିଥିଲା । ସେଦିନ ମୁଁ ମୋ' ମନକୁ ଖୋଜି ପାଉ ନଥିଲି । ବିରାଟ ଏକ ପରିବର୍ତ୍ତନ ହୋଇଥିଲା ମୋ' ଭିତରେ । ସତାଂଶୁ ମୋତେ କ'ଣ କହୁଥିଲା, ମୁଁ ତାକୁ କି ଉତ୍ତର ଦେଉଥିଲି କିଛି ମୋର ମନେ ରହୁ ନ ଥିଲା ।

ଆରଦିନ ବହୁତ ଡେରିରେ ମୁଁ ନିଦରୁ ଉଠିଲି । ବୈଠକଖାନାରେ କମଳ, ସତାଂଶୁ ଓ ସେମାନଙ୍କ କଲେଜ ବନ୍ଧୁ ଅନେକ ଆସି ଭିଡ଼ ଜମେଇ ଥିଲେ । ମୋତେ ଅଭିନନ୍ଦନ ଜଣେଇବା ପାଇଁ ଆସିଥିଲେ ସବୁ ।

ସେମାନେ କୁଆଡ଼େ ସ୍ଥିର କରିଥିଲେ, ସେହି ନାଟକକୁ ଆହୁରି ଦୁଇରାତି ଅଭିନୟ କରିବେ । କମଳ ଆଉ ସତାଂଶୁ ଯେତେବେଳେ ଆସି ମୋତେ ଖବରଟା ଦେଲେ, ସେତେବେଳେ ମୋ' ମନ ଭିତରେ କୌଣସି ଦ୍ୱନ୍ଦ୍ୱ ଉପଲବ୍ଧି କଲି ନାହିଁ । ବରଂ ହସି ହସି କହିଲି, ଥରେ ଲଜ୍ଜା ସଂକୋଚର ମୁଣ୍ଡ ଖାଇସାରିଚି ଯେତେବେଳେ, ଆଉ ଡର କ'ଣ ?

କମଳ ମୋ' ଆଡ଼କୁ ହାତ ବଢ଼ାଇ ଦେଲା, ବୋଧହୁଏ କରମର୍ଦ୍ଦନ ପାଇଁ । ମୁଁ ଆଜି ଆଉ ପଛେଇ ଯାଇ ନଥିଲି । କମଳର ହାତ ସହିତ ହାତ ମିଳେଇ ମନର ଦୃଢ଼ତାକୁ ପ୍ରକାଶ କରିଥିଲି ।

ସେଦିନ ରାତିରେ ମଧ୍ୟ ଅଭିନୟ ହେଲା । କିନ୍ତୁ ଦର୍ଶକଙ୍କ ଭିଡ଼ ଏତେ ବଢ଼ି ଯାଇଥିଲା ଯେ ସମସ୍ତଙ୍କ ଧାରଣାର ବାହାରର କଥା ହୋଇ ଯାଇଥିଲା । ମୁଁ କୁଆଡ଼େ ସେଦିନ ଆହୁରି ସୁନ୍ଦର ଓ ସହଜ ଭାବରେ ଅଭିନୟ କରିପାରିଥିଲି ।

ଅଭିନୟ ଶେଷରେ ବହୁ ଦର୍ଶକଙ୍କର ଆଶୀର୍ବାଣୀ ଓ ଅଭିନନ୍ଦନ ନେଇ ଘରକୁ ଫେରିଲି । ସେଦିନ ପ୍ରକୃତରେ ମୋ' ମନଟା ଅତି ହାଲ୍‌କା ଓ ପ୍ରଫୁଲ୍ଲ

ଥିଲା । ମୋ' ରିକ୍ସାରେ ସେଦିନ ସତାଂଶୁର ମା' ବସିଥିଲେ । ସତାଂଶୁ ଓ କମଳ ଅନ୍ୟ ଗୋଟାଏ ରିକ୍ସାରେ ଯାଉଥିଲେ ।

ଆରଦିନ ସକାଳୁ ମୁଁ ଉଠି ନଥିଲି । କିନ୍ତୁ ସତାଂଶୁର ପାଟି ଶୁଣି ଓ ହାତର ସ୍ପର୍ଶ ପାଇ ମୋ' ନିଦ ଚାଉଁକରି ଭାଙ୍ଗିଗଲା । ସତାଂଶୁ ହାତରେ ଗୁଡ଼ାଏ ଖବରକାଗଜ ଧରି ମୋ' ଅସଂଯତ ଦେହ ଆଡ଼େ ନିର୍ଲଜଙ୍କ ପରି ଚାହିଁ ଠିଆ ହୋଇଥିଲା । ମୁଁ ଲାଜେଇ ଯାଇ ଗାଧୁଆ ଘରକୁ ଛୁଟି ପଳାଇଲି ।

ଯେତେବେଳେ ମୁହଁ ହାତ ଧୋଇ, କେଶବାସ ସଜାଡ଼ି ପୁଣି ଫେରିଆସିଲି, ଦେଖିଲି ସତାଂଶୁ ମୋରି ବାସି ବିଛଣା ଉପରେ ଶୋଇଯାଇଚି । ଖବରକାଗଜଗୁଡ଼ାକୁ ମେଲେଇ ଧରି ଶୋଇଶୋଇ ପ୍ରତୀକ୍ଷା କରୁଛି ।

ମୁଁ ଗାଧୁଆ ଘରୁ ବାହାରିବା ମାତ୍ରେ ସେ ଛୁଟିଯାଇ ମୋତେ ଦୁଇ ହାତରେ ଜାବୁଡ଼ି ଧରିଲା ଏବଂ କପାଳରେ ଗୋଟିଏ ଚୁମ୍ବନ ଦେଇ ମୋତେ ଛାଡ଼ି ଅଲଗା ହୋଇଗଲା । ଏଭଳି ଆକସ୍ମିକ ଆକ୍ରମଣ ପାଇଁ ମୁଁ ମୋଟେ ପ୍ରସ୍ତୁତ ନଥିଲି । ଏହା ପୂର୍ବରୁ ସତାଂଶୁ ପାଇଁ ଯେ ମୋର ବହୁ ପ୍ରତୀକ୍ଷିତ ମୁହୂର୍ତ୍ତ ବ୍ୟର୍ଥ ହୋଇ ନଥିଲା, ସେକଥା ମୁଁ ଟାଣ ଗଳାରେ କହିପାରିବି ନାହିଁ । କିନ୍ତୁ ଆଜି ହଠାତ୍ ଏହି ଆକ୍ରମଣକୁ ମୁଁ କେଜାଣି କାହିଁକି ସହ୍ୟ କରିପାରିଲି ନାହିଁ ।

ସତାଂଶୁ ମୋତେ ଆଉ କିଛି କହିବାକୁ ବା କରିବାକୁ ଅବକାଶ ଦେଇ ନଥିଲା । ଖବରକାଗଜର ନିର୍ଦ୍ଦିଷ୍ଟ ପୃଷ୍ଠାଗୁଡ଼ାକ ଖୋଲି ମୋ' ଆଗରେ ମେଲେଇ ଧରି କହିଲା, ଦେଖ୍ ରାଧା, ତୋ'ର ପ୍ରଶସ୍ତିରେ ସହରର ସବୁ ଖବରକାଗଜ ଯାକ ଭରିଯାଇଚି ।

ମୁଁ ·ମୋ' ନୃତ୍ୟଛନ୍ଦର ଛବି ପ୍ରଥମ କାଗଜଟା ଉପରେ ଦେଖି ବିସ୍ମିତ ହୋଇଯାଇଥିଲି । ଏତେ ସୁନ୍ଦର ମୋର ରୂପ । ଏତେ ମନଲୋଭା ମୋର ଭଙ୍ଗୀ ! ମୁଁ ବି ମୋ' ଛବିକୁ ମୁଗ୍‌ଧ ହୋଇ ଅନାଇ ରହିଲି ।

ତା'ପରେ ଆଉ ଖଣ୍ଡିଏ କାଗଜ ସତାଂଶୁ ବଢ଼େଇ ଦେଲା ମୋ' ହାତକୁ । ସେଥିରେ ଅଭିନୟର ଗୋଟିଏ ଦୃଶ୍ୟ ଥିଲା । ମୋ' ପାଦ ଦୁଇଟା ବୋଧେ ମୋ' ଦେହଭାର ଆଉ ସହି ପାରୁ ନଥିଲା । ମୁଁ ସତାଂଶୁ ପାଖରେ ମୋରି ଖଟ ଉପରେ ବସିପଡ଼ିଲି ।

ଗୋଟିକ ପରେ ଗୋଟିଏ କାଗଜ ବାହାର କରି ସତାଂଶୁ ମୋତେ

ଦେଖେଇବାରେ ଲାଗିଲା । ମୋର ପ୍ରଶସ୍ତି ପଢ଼ି ଶୁଣାଇବାରେ ଲାଗିଲା । ମୁଁ ତନ୍ମୟ ହୋଇ ଶୁଣୁଥିଲି, ବିସ୍ଫାରିତ ଦୃଷ୍ଟିରେ ଚାହିଁଥିଲି ।

ସେଦିନ ମୋ' ଜୀବନ୍‌ପ୍ରଭାତର ନବ ସୂର୍ଯ୍ୟୋଦୟରେ ମୁଁ ଯେଉଁ ନୂତନ ଆଲୋକର ରଶ୍ମି ଦେଖିଥିଲି, ସେ କଥା ବହୁ ଚେଷ୍ଟା କରି ବି ମନେପକାଇ ପାରୁନାହିଁ । କିନ୍ତୁ ଏତିକି ମନେଅଛି, ମୋର ଦୁଇ ବାହୁକୁ ସତାଂଶୁର ଗଳାରେ ଛନ୍ଦି କହିଥିଲି, ଏ ଯଶ, ଏ ଖ୍ୟାତି, ଏ ପ୍ରଶଂସା ସବୁ ତମରି ସତାଂଶୁ ଭାଇ ! ମୋର ଏଥିରେ ଗର୍ବ କରିବାର କିଛି ନାହିଁ ।

କିନ୍ତୁ କମଳ ପୁଣି ଆସି ଝଡ଼ପରି ପହଞ୍ଚି ଥିଲା ଏବଂ କ୍ୟାମେରାର ସଟର ଟିପିବା ଆଗରୁ ମୁଁ ଠିଆହୋଇ ପଡ଼ିଥିଲି ।

ସେ ହି ହି ହେଇ ହସିଉଠି କହିଥିଲା, ମୋତେ ଗୋଟାଏ ଜୀବନ୍ତ ଦୃଶ୍ୟରୁ ବଞ୍ଚିତ କଲୁ ରାଧା ! ଫଟୋଗ୍ରାଫରର ମନସ୍ତତ୍ତ୍ୱ କେହି ବୁଝିବେ ନାହିଁ । ସେଦିନ କମଳ ସେହି ମୁହୂର୍ତ୍ତରେ ଗୋଟିଏ ଛୋଟ ବକ୍ତୃତା ଦେଇ ବୁଝେଇବାକୁ ଚେଷ୍ଟା କରିଥିଲା ଯେ, ଫଟୋଗ୍ରାଫିର ଧର୍ମ ହେଲା ପ୍ରତିଟି ବାସ୍ତବ ମୁହୂର୍ତ୍ତକୁ ହିଁ ସେଲୁଲଏଡ୍ ଫିତା ଭିତରେ ବନ୍ଦୀ କରିବା । କୌଣସି ଶ୍ଳୀଳ, ଅଶ୍ଳୀଳ ବା ଦୁଃଖ ଦାରିଦ୍ର୍ୟର ପ୍ରଶ୍ନ ଫଟୋଗ୍ରାଫରର ମନରେ ନ ଜାଗିବା ହିଁ ଶ୍ରେୟ ।

ସତାଂଶୁ କମଳ ଉପରେ ଚିଡ଼ି ଉଠି କହିଥିଲା, ମନେ ମନେ ତୁ ଗୋଟାଏ ବଡ଼ ଫଟୋଗ୍ରାଫର ହେଇଗଲୁଣି । କେଇଟା ସିନେରି, କେଇଟା ସଭାସମିତି, ଯାତ୍ରା ଥିଏଟରରେ ଫଟୋ ଉଠାଇ ମନଟା ତୋ'ର କୁଣ୍ଢେମୋଟ ହେଇଗଲାଣି । ଏଇଆ କରି ପାଠ ଘରେ ତ ଶୁନ ବସିଲାଣି । ବାପାଙ୍କ ଟଙ୍କା ଆଣି ପୁଏ ସହରରେ ଯେ କି ପାଠ ପଢୁଛନ୍ତି, ମୁଁ ବେଶ୍ ଅନୁଭବ କରିପାରୁଚି ।

କମଳ କିଛି ଉତ୍ତର ନ ଦେଇ ଭଲ ପିଲାଟି ପରି କ୍ୟାମେରାଟା ପିଠି ଆଡ଼କୁ ଝୁଲେଇ ଦେଇ ମୋରି ଖଟ ଉପରେ ଯାଇ ସତାଂଶୁ ପାଖରେ ବସିଲା । ଥରେ ମୋ' ଆଡ଼କୁ ଓ ଆଉଥରେ ସତାଂଶୁ ଆଡ଼କୁ ଚାହିଁ କହିଲା, ଦେଖ୍ ସତାଂଶୁ ! ବାପାଙ୍କର ଟଙ୍କା ମୁଁ ବାଜେ ଖର୍ଚ୍ଚ କରି ଉଡ଼େଇ ଦେଉଚି, ଏ କଥା ତୁ ମୋତେ କହିପାରିବୁ ନାହିଁ । ବାପା ଯେ ମୋ' ପାଇଁ ଟଙ୍କା ଖର୍ଚ୍ଚ କରୁଛନ୍ତି, କାହିଁକି କହିପାରିବୁ ? ଏକା ମୋ' ବାପା କାହିଁକି ପ୍ରତ୍ୟେକ ବାପା ତାଙ୍କ ପୁଅ ପଛରେ ଟଙ୍କା ଖର୍ଚ୍ଚ କରିବା ହେଉଚି ଗୋଟାଏ ଇନ୍‌ଭେଷ୍ଟମେଣ୍ଟ । ଦେଖିବୁ ମୋ' ପାଇଁ ବାପାଙ୍କର ଇନ୍‌ଭେଷ୍ଟମେଣ୍ଟ ବୃଥା ଯିବ ନାହିଁ ।

ଧର ମୁଁ ବି.ଏସ୍‌ସି. ପଢ଼ୁଛି । ପାଶ୍ କରିସାରିଲେ କ'ଣଟାଏ ଆଉ କରିବି କହ ! ବି.ଏସ୍‌ସି. ପରେ ମୋତେ ତ ପୁଣି ଅନ୍ୟ କୌଣସି ଟେକ୍‌ନିକାଲ ଲାଇନ୍‌ରେ ଯିବାକୁ ହେଇଥାଆନ୍ତା ! ଏଇ ଫଟୋଗ୍ରାଫି କ'ଣ ମୋତେ ସେତିକି ରିଟର୍ଣ୍ଣ ଦେବ ନାହିଁ ?

ସତାଂଶୁ ହସିଲା । କହିଲା, ଯା ଯା ! ମୋତେ ଆଉ ତତ୍ତ୍ୱ ଶିଖା ନାହିଁ । ଫଟୋ ଉଠାଇ ଏ ପତ୍ରିକାକୁ ଗୋଟାଏ, ସେ କାଗଜକୁ ଗୋଟାଏ ପଠାଇ ଦେଲେ ଯଦି ରୋଜଗାର ହୋଇଯାଉଥାଆନ୍ତା, ତା'ହେଲେ ଅନେକ ଲୋକ କ୍ୟାମେରା କାନ୍ଧରେ ଝୁଲେଇ ରାସ୍ତାଯାକ ବୁଲୁ ଥାଆନ୍ତେ ।

କମଳ କହିଲା, ଖାଲି କାନ୍ଧରେ କ୍ୟାମେରା ଝୁଲେଇ ବୁଲିଲେ ଫଟୋଗ୍ରାଫର ହେଇ ହେବନି ବନ୍ଧୁ ! ସେଥିପାଇଁ ଭିନ୍ନ ଦୃଷ୍ଟିର ପ୍ରୟୋଜନ । ଦେଖିବୁ, ଭବିଷ୍ୟତରେ ଏହି ଫଟୋଗ୍ରାଫି ହିଁ ହେବ ମୋ' ଜୀବନର ଏକମାତ୍ର ଜୀବିକା ନିର୍ବାହର ପନ୍ଥା ଏବଂ ଏହାରି ସାହାଯ୍ୟରେ ମୁଁ ଯଶ ଆଉ ଅର୍ଥ ଦୁଇଟାଯାକ ପାଇବି ।

ସତକୁ ସତ କମଳ ଫଟୋଗ୍ରାଫି ଲାଇନ୍‌ରେ ଖ୍ୟାତି ଅର୍ଜନ କରିବାକୁ ଲାଗିଲା । ଭାରତବର୍ଷଯାକ ବିଭିନ୍ନ ପତ୍ରପତ୍ରିକାରେ ତା' ଫଟୋଗ୍ରାଫ୍ ଛପା ହେବାକୁ ଲାଗିଲା ।

ଦିନେ ସେ ବମ୍ବେରୁ ପ୍ରକାଶ ପାଉଥିବା ଗୋଟାଏ ସିନେମା ପତ୍ରିକା ଧରି ଉଦ୍ଧ୍ୱ 'ଶ୍ୱାସରେ ଧାଇଁ ଧାଇଁ ଆସି ମୋ' ପାଖରେ ପହଞ୍ଚିଲା । ସେତେବେଳକୁ ମୁଁ ମୋ' ପଢ଼ାଘରେ ବସି ପଢୁଥିଲି ଏବଂ ସତାଂଶୁ ମୋ' ପାଖରେ ବସି ମୋତେ ପଢ଼େଇ ଦେଉଥିଲା । ସିନେମା ପତ୍ରିକାଟିକୁ ଟେବୁଲ ଉପରେ କଚାଡ଼ି ଦେଇ କହିଲା, ଦେଖ ସତାଂଶୁ, ମୋତେ ପରିହାସ କରିବୁ ନା ? ମୋ' ଫଟୋଗ୍ରାଫିର ମୂଲ୍ୟ ନାହିଁ ? ମୋତେ ଫଟୋ ଉଠେଇ ଆସେ ନାହିଁ ? ଖେଳେଇ ଦେଖିଲୁ ?

ସତାଂଶୁ ସିନେମା ପତ୍ରିକାଟି ଖେଳେଇ ଦେଖି ସ୍ତବ୍ଧ ହେଇ ମୋ' ମୁହଁକୁ ଚାହିଁଲା । ମୋରି ଚାରୋଟି ଫଟୋ ସେଥିରେ ପ୍ରକାଶିତ ହୋଇଥିଲା । ମୋ' ନୃତ୍ୟର ଓ ଅଭିନୟର ପ୍ରଶଂସା କରାଯାଇଥିଲା । ଆଉ ସିନେମା ପତ୍ରିକା ତରଫରୁ ମତ ଦିଆ ଯାଇଥିଲା, ଏହାଙ୍କର କ୍ୟାମେରା ଫେସ୍ ଖୁବ୍ ସୁନ୍ଦର । ଯଦି କେବେ ଫିଲ୍‌ମରେ ଅଭିନୟ କରିବାର ସୁଯୋଗ ପାଆନ୍ତି, ତେବେ ଜୀବନରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିପାରିବେ ।

କମଳ ମୁହଁରେ ବିଜୟର ଦୀପ୍ତି ଲାଗି ରହିଥିଲା । ଆଉ ସତାଂଶୁ ମୋ' ମୁହଁକୁ ଗର୍ବିତ ନୟନରେ ଚାହିଁଥିଲା । ମୁଁ କେବଳ ଆଖିଯୋଡ଼ିକ ନତକରି ଚୁପ୍‌ଚାପ ବସିଥିଲି ।

ସତାଂଶୁ କହିଲା, ଏ ଛବି ତଳେ ତ ତୋ' ନାଁ ନାହିଁ କମଳ ? ପ୍ରତିଟି ଛବି ତଳେ ଭୁଜଙ୍ଗଧର ଲେଖା ହୋଇଛି । ଭୁଜଙ୍ଗଧର କିଏ ?

କମଳ ଗର୍ବର ହସ ହସି କହିଲା, ଏ ଫଟୋଗ୍ରାଫ୍‌ଗୁଡ଼ିକ ମୋର କି ନୁହେଁ କହ, ତା'ପରେ ଭୁଜଙ୍ଗଧର କିଏ ମୁଁ କହିବି ।

ହଁ, ମୁଁ ସ୍ୱୀକାର କରୁଛି ଏ ଛବିଗୁଡ଼ିକ ତୁଇ ଉଠାଇଥିଲୁ । କିନ୍ତୁ ଭୁଜଙ୍ଗଧର ?

ସେଇଟା ମୋର ପେନ୍ ନେମ୍ । ଏଣିକି ଭୁଜଙ୍ଗଧର ନାମରେ ଯେତେ ଫଟୋଗ୍ରାଫ ଯେଉଁଠି ବାହାରିବ, ଜାଣିବୁ ସବୁଗୁଡ଼ିକ ମୋରି ତୋଳା ।

କେଜାଣି କାହିଁକି ସେଦିନ ମୋ' ମନ ଭିତରେ କିପରି ଏକ ଉତ୍ତେଜନା ପୂରି ରହିଥିଲା । ମୁଁ ସେହି ସିନେମା ପତ୍ରିକାରେ ମୋ' ଛବିଗୁଡ଼ିକ କେତେଥର ଯେ ଦେଖିଚି, କଳନା କରିହେବ ନାହିଁ । ମନ ଭିତରେ ମୋର ଜାଗିଛି ଏକ ନୂତନ ସ୍ୱପ୍ନ । ସିନେମାରେ ଅଭିନୟ କରିବା ପାଇଁ ମୋ' ଚେହେରା ଉପଯୁକ୍ତ । ମୁଁ ସିନେମାର ଅଭିନେତ୍ରୀ ହୋଇପାରିବି !

ସ୍ୱପ୍ନର ପାହାଡ଼ ଉପରକୁ ମନଟା ମୋର ଉଠି ଯାଇଥିଲା । ମୁଁ ଭୁଲି ଯାଇଥିଲି ମୋର ବର୍ତ୍ତମାନ । ଅନ୍ଧାର ଘର ଭିତରେ ବସି ଭାବନାରେ ବୁଡ଼ି ଯାଇଥିଲି । ମୁଁ ହେବି ଗୋଟିଏ ଅଭିନେତ୍ରୀ ? ରୂପେଲି ପର୍ଦ୍ଦାରେ ଫୁଟିଉଠିବ ମୋର ଅଭିନୟ । ଲୋକେ ପାଗଳ ହୋଇ ଛୁଟିବେ ମୋତେ ଦେଖିବା ପାଇଁ । ଅନ୍ୟାନ୍ୟ ଅଭିନେତ୍ରୀଙ୍କ ଅଭିନୟ ମୋ' ଆଖି ଆଗରେ ଭାସିଉଠିଲା । ମୁଁ ସେହି ଅନ୍ଧକାରରେ ବସି ଯେପରି ଆଖି ଆଗରେ ପର୍ଦ୍ଦା ଉପରେ ଅଭିନୟ ଦେଖୁଥିଲି ।

ସତରେ କ'ଣ ମୋର ଅଭିନୟ କରିବାର ଯୋଗ୍ୟତା ଅଛି ? ମନେ ମନେ ମୁଁ ମୋ' ଅଙ୍ଗଲତାର ତୁଳନା ବିଭିନ୍ନ ଅଭିନେତ୍ରୀଙ୍କ ସହିତ କରିବାକୁ ଲାଗିଲି । ମୋ' ଆଖି ଦୁଇଟା କାହାପରି ? ନାକ, ଗାଲ, ଓଠ ସବୁଗୁଡ଼ିକର ତୁଳନା ଖୋଜିଲି ବିଭିନ୍ନ ଅଭିନେତ୍ରୀମାନଙ୍କ ସହିତ । ଆଉ ବକ୍ଷ ? ଅଜାଣତରେ ମୋ' ହାତ ଦୁଇଟାଯାକ ଦୁଇ ବକ୍ଷକୁ ଅନୁସନ୍ଧାନ କଲା । ମନଟା ନରମି ଗଲା ଟିକିଏ । ବୟସ ତୁଳନାରେ ବକ୍ଷ ଦୁଇଟା ଆଉ ଟିକିଏ ଉନ୍ନତ ହେବାର ଥିଲା ହୁଏତ !

ସେହି ଅନ୍ଧକାରରେ କାହାର ପଦଧ୍ୱନି ମୋ' କାନରେ ବାଜିଲା । କିନ୍ତୁ ନିଜ ଚିନ୍ତାରେ ମୁଁ ଏତେ ନିବିଷ୍ଟ ହୋଇପଡ଼ିଥିଲି ଯେ, ଘର ଭିତରକୁ କିଏ ଆସିଲା ସେ ଖବର ନେବାକୁ ଆଗ୍ରହ ନ ଥିଲା ।

ଧୀରେ ଧୀରେ କାହା ହାତର ସ୍ପର୍ଶ ମୁଁ ପାଇଲି ।

ଦେହଟା ମୋର ଶୀତେଇ ଉଠିଲା । ମନରେ ରଙ୍ଗଫୁଲ ଫୁଟି ଦେହଯାକ ଯେଉଁ ପୁଲକରେଣୁ ଲାଗିଥିଲା, ହାତର ସ୍ପର୍ଶ ଯେପରି ଆସ୍ତେ ଆସ୍ତେ ସେଗୁଡ଼ିକୁ ପୋଛି ଦେଉଥିଲା ।

ଆରଦିନ ସକାଳୁ ମୁଁ ଏକ ଦୁଃସମ୍ବାଦ ପାଇଲି । ବାପାଙ୍କ ଦେହ ଖୁବ୍ ଖରାପ ହୋଇଯାଇଥିଲା । ଶ୍ୱାସରୋଗଟା ତାଙ୍କର ଏତେ ବଢ଼ି ଯାଇଥିଲା ଯେ ବେଳେବେଳେ ସେ କାଶି କାଶି ଅଚେତ ହୋଇପଡୁଥିଲେ । ମୋତେ ଦେଖିବା ପାଇଁ ସେ ବ୍ୟାକୁଳ ହୋଉ ଉଠିଥିଲେ ।

ମୋତେ ଘରକୁ ଯିବାକୁ ହେଲା । କମଳ ମୋ' ସହିତ ଗଲା । ବାଟଯାକ ସେ ମୋ' ଉଜ୍ଜ୍ୱଳ ଭବିଷ୍ୟତ କଥା ଶୁଣାଉଥିଲା । କମଳ କିପରି ମୋତେ ଦୁନିଆ ଦୁଆରେ ଏକ ବିରାଟ ଅଭିନେତ୍ରୀ କରି ଠିଆ କରେଇବ, ସେଥିପାଇଁ ସେ ପ୍ରାଣପଣେ ଉଦ୍ୟମ କରୁଥିଲା । କମଳର କଥାଗୁଡ଼ିକ ମୁଁ ଶୁଣି ମଧ୍ୟ ଶୁଣିପାରୁ ନଥିଲି । କାରଣ ରହି ରହି ବାପାଙ୍କ କରୁଣ ମୁହଁ ମୋ' ଆଖି ଆଗରେ ଭାସି ଉଠୁଥିଲା ।

ମୁଁ ଘରେ ପହଞ୍ଚିଲି । କିନ୍ତୁ ବାପା ଆଉ ସେ ଯାତ୍ରାରୁ ଫେରିଲେ ନାହିଁ । ଆଖିର ଅଶ୍ରୁ ନ ଶୁଖୁଣୁ ବୋଉ ବି ତାଙ୍କରି ପଥର ପଥିକ ହେଲା । ମୁଁ ହେଲି ଅସହାୟା ଆଉ ମୋ' ଗଳାରେ ଛନ୍ଦିହୋଇ ରହିଲା, ସାନ ଭଉଣୀ କୁନି ।

ଚାରିଦିଗ ମୋତେ ଅନ୍ଧାର ଦିଶିଲା । କ'ଣ କରିବି ? କେଇଦିନ ଆଗରୁ ବଡ଼ ହେବାର ଯେଉଁ ବିରାଟ ସ୍ୱପ୍ନ ମୁଁ ଦେଖୁଥିଲି, ସବୁଗୁଡ଼ିକ ଝରାପତ୍ର ପରି ଝରିପଡ଼ିଲା । ମୁଁ ପଥର ପାଲଟି ଯାଇଥିଲି । କେବଳ ଅଶ୍ରୁ ଛଡ଼ା ମୋର ଆଉ କିଛି ସମ୍ବଳ ନ ଥିଲା ।

ଏହି ଦୁଃସମ୍ବାଦରେ ସମବେଦନା ଜଣାଇବା ପାଇଁ ସତାଂଶୁ ତା' ମା'ଙ୍କୁ ଧରି ଆସିଲା । ମା' ମୋତେ କୋଳକୁ ଟେକି ନେଲେ । କହିଲେ, ମୁଁ ତୋତେ ନିଜର ଝିଅ ବୋଲି ଧରିନେଇଚି ଯେତେବେଳେ ପେଟ ପୂରେଇ କ'ଣ ଗଣ୍ଡାଏ ଖାଇବାକୁ ଦେଇପାରିବି ନାହିଁ !

ସେତେବେଳେ ମୋର ଏକମାତ୍ର ମ଼ରବ ମାମୁ ଆଉ କୌଣସି ପ୍ରତିବାଦ କଲେ ନାହିଁ । ସେ ମୋର ସାନ ଭଉଣୀଟିକୁ ନିଜ ତତ୍ତ୍ୱାବଧାନରେ ରଖିବା ପାଇଁ ନେଇଗଲେ । ମୁଁ ମୋର ସମସ୍ତ ପରିଜନଙ୍କର ସୂତ୍ର ଛିନ୍ନକରି ଆସିଲି ସତାଂଶୁ ଘରକୁ । ତା'ଛଡ଼ା ଉପାୟ ନ ଥିଲା ।

ପାଠପଢ଼ା ଚାଲିଥାଏ । କିନ୍ତୁ ପାଠପଢ଼ା ଅପେକ୍ଷା ମୋର ଖ୍ୟାତି ଧୀରେ ଧୀରେ ବଢ଼ିଲା ଅଭିନୟ ପାଇଁ । ସହରରେ କେଉଁଠି ସ୍କୁଲ କଲେଜରେ ଥିଏଟର ଆୟୋଜନ ହେବାମାତ୍ରେ ପ୍ରଥମେ ଆସି ମୋ' ସହିତ କଣ୍ଟ୍ରାକ୍ଟ କରାହୁଏ । ମୁଁ ବି ମୋର ସମସ୍ତ ଶକ୍ତି ଖଟେଇ ନିଜର ଭୂମିକାଟିକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ଚେଷ୍ଟା କରିଥାଏ ।

ସେଦିନ ମୁଁ ଓ ସତାଂଶୁ ବସି ଗପ କରୁଥିଲୁ । ଆମର ପ୍ରଧାନ ଆଲୋଚ୍ୟ ବିଷୟ ଥିଲା ଗତ ରାତ୍ରିର ଅଭିନୟ ।

ମୁଁ ଏକ ଦ୍ୱୈତ ଭୂମିକାରେ ଅଭିନୟ କରିଥିଲି । ଥିଏଟରରେ ଏହି ଦ୍ୱୈତ ଭୂମିକାରେ ଅଭିନୟ ଯେ ଖୁବ୍ କଷ୍ଟ ସତାଂଶୁ ସେହିକଥା ମୋତେ ବୁଝାଉ ଥିଲା । ଆଉ ମୁଁ କିପରି ସଫଳତାର ସହିତ ତାହା ସଂପନ୍ନ କରିଛି, ସେ କଥା ମଧ୍ୟ ମୋତେ ସେ କହୁଥିଲା ।

ସେତିକିବେଳେ ଝଡ଼ ବେଗରେ ସେଠାରେ ଉପସ୍ଥିତ ହେଲା କମଳ । ହାତରେ ଗୋଟିଏ କାଗଜ ପୁଡ଼ିଆ । କହିଲା, କିଛି ମନେକରିବୁ ନାହିଁ ସତାଂଶୁ । ରାଧା ପାଇଁ ମୁଁ ସାମାନ୍ୟ ଭେଟି ଆଣିଚି । ମୋ' ଜୀବନର ଉନ୍ନତି ପଥରେ ରାଧାର ଯେ ଯଥେଷ୍ଟ ଦାନ ଅଛି, ଏହା ବୋଧହୁଏ ତୁ ଅସ୍ୱୀକାର କରିବୁ ନାହିଁ । ତେଣୁ ମୋର ପ୍ରଥମ ରୋଜଗାରର ସମସ୍ତ ଅର୍ଥ ବ୍ୟୟ କରି ମୁଁ ରାଧା ପାଇଁ ଏତକ ଆଣିଚି ।

ମୋ' ମନଟା ଚଞ୍ଚଳ ହୋଇଉଠିଥିଲା । କିନ୍ତୁ ସତାଂଶୁର ମୁହଁଟା କିପରି ଝାଉଁଳି ପଡ଼ିଥିଲା । ଇଚ୍ଛା ନ ଥିଲେ ବି ହସିବାକୁ ଚେଷ୍ଟାକରି ସେ କହିଲା, ମୋର ଏଥିରେ ମନେକରିବାର କ'ଣ ଅଛି ? ତୁ ରାଧାକୁ ଉପହାର ଦେବୁ, ସେ ଅଧିକାର କ'ଣ ତୋ'ର ନାହିଁ ?

ପୁଡ଼ିଆଟା ଟେବୁଲ ଉପରେ ଥୁଆ ହୋଇଥିଲା । ମୋର ଯଥେଷ୍ଟ ଆଗ୍ରହ ଥିଲେ ମଧ୍ୟ ମୁଁ ଉଠାଇ ଆଣି ଫିଟାଇବାକୁ ସାହସ କରିପାରୁ ନଥିଲି । କାରଣ ସତାଂଶୁର ମୁହଁରେ ମୁଁ ଯେଉଁ ଛାୟା ଦେଖିଥିଲି, ସେ ଛାୟାକୁ ଅନୁଭବ କରିବାର ଶକ୍ତି କମଳର ନ ଥିଲା ।

କମଳ ଗର୍ବିତ କଣ୍ଠରେ କହି ଚାଲିଥିଲା, ମୁଁ ଗୋଟାଏ ଆପଏଣ୍ଟମେଣ୍ଟ ପାଇଚି ସତାଂଶୁ । ଦେଖିଲେ ବୋଧହୁଏ ଖୁସି ହେବୁ ।

କମଳ ତା' ପକେଟରୁ ଖଣ୍ଡିଏ ଟାଇପ୍ କରା ଚିଠି ବାହାର କରି ବଢ଼େଇ ଦେଲା । ସତାଂଶୁ ଚିଠିଟି ପଢ଼ିସାରି କହିଲା, ଭଲ ହେଇଚି । ଫିଲ୍ମଷ୍ଟାର ବର୍ତ୍ତମାନ

ଭାରତବର୍ଷରେ ଏକ ଲିଡିଙ୍ଗ୍ ସିନେମା ପତ୍ରିକା । ଓଡ଼ିଶା ତରଫରୁ ତୁ ତା'ର ପ୍ରତିନିଧି ହେଲୁ, ଓଡ଼ିଶାର ନୃତ୍ୟନାଟ୍ୟ ସମ୍ବନ୍ଧରେ ବାହାରେ ଚର୍ଚ୍ଚା ହେବ, ଏହା ଏକା ମୋ' ପକ୍ଷରେ କାହିଁକି ସମଗ୍ର ଓଡ଼ିଶାବାସୀଙ୍କ ପକ୍ଷରେ ଗୌରବର କଥା । ବିଶେଷତଃ ତୁ ମୋର ବନ୍ଧୁ, ମୋର ହାର୍ଦ୍ଦିକ ଅଭିନନ୍ଦନ ଗ୍ରହଣ କର । ଏହା କହି ସତାଂଶୁ କମଳର କରମର୍ଦ୍ଦନ କଲା ।

ମୋତେ କାହିଁକି ସତାଂଶୁର କଥାଗୁଡ଼ାକ ଶ୍ରୁତିକଟୁ ଜଣାଗଲା । ମନହେଲା ଯେପରି କମଳ ପ୍ରତି ସତାଂଶୁର ଏହା ଆନ୍ତରିକ ଶୁଭେଚ୍ଛା ନୁହେଁ । ସତାଂଶୁ କେବଳ କର୍ତ୍ତବ୍ୟ ରକ୍ଷାକରି ଏହା କହିଲା ।

କମଳ ହୁଏତ ସତାଂଶୁର ଏହି ମନୋବୃତ୍ତି ବୁଝିପାରି ନ ଥିଲା । ସେ ହସ ହସ ମୁହଁରେ କହିଲା, ମୁଁ ଜାଣେ ସତାଂଶୁ, ତୋ'ର ଶୁଭେଚ୍ଛା ସବୁବେଳେ ମୋ' ପଛରେ ରହିଛି । ତା'ପରେ ସେ ଉଠି ଠିଆ ହେଲା ଏବଂ ମୋ'ଆଡ଼େ ଚାହିଁ କହିଲା, ତୋତେ ମୋର ଜୀବନଭରି ମନେରହିବ ରାଧା ! ଆଉ ତୋ'ର ଉନ୍ନତି ପାଇଁ ମୁଁ ଜୀବନଭରି ଚେଷ୍ଟା କରିବି ।

କମଳ ଚାଲିଗଲା । ମୁଁ ତା' ଯିବା ପଥକୁ ସତୃଷ୍ଣ ନୟନରେ ଚାହିଁଥିଲି । ସତାଂଶୁ କିପରି ଗମ୍ଭୀର ହୋଇ ବସିଥିଲା ।

ନୀରବତା । କେବଳ ନୀରବତାର ରାଜତ୍ୱ ।

ଏକ ସମୟରେ ସତାଂଶୁ ମୋତେ କିଛି ନ କହି ଧୀରେ ଧୀରେ ଉଠି ଚାଲିଗଲା । କେବଳ ମୁଁ ଏକା ରହିଗଲି । ଆଉ ମୋ' ଆଖି ଆଗରେ ଟେବୁଲ ଉପରେ ପଡ଼ି ରହିଥିଲା କାଗଜରେ ପ୍ୟାକ୍ ହୋଇଥିବା ପ୍ୟାକେଟଟାଏ । ଯେଉଁଥିରେ କମଳ ରଖିଯାଇଚି ତା' ଜୀବନରେ ପ୍ରଥମ ଉପାର୍ଜନର ସମସ୍ତ ଅର୍ଥ । ସେ ପୁଣି ମୋରି ପାଇଁ ।

ଅଥଚ ସତାଂଶୁ ! ସେ ମୁହଁ ଫୁଲାଇ ଉଠିଗଲା । ହୁଏତ କମଳର ଏହି ଅଧିକାର ସେ ସହିପାରିଲା ନାହିଁ । ତା' ନ ହେଲେ ସେ ନୀରବରେ ଏପରି ଗମ୍ଭୀର ଭାବରେ ଚାଲିଗଲା କାହିଁକି ?

ମୁଁ ବଡ଼ ଦ୍ୱନ୍ଦ୍ୱରେ ପଡ଼ି ଯାଇଥିଲି । ସତାଂଶୁ ଆଉ କମଳ । ଦୁହେଁ ମୋର ବନ୍ଧୁ, ଦୁହେଁ ମୋର ପରମ ଆତ୍ମୀୟ । ଅଥଚ ମୋ' ଉପରେ କାହାର କେତେ ଅଧିକାର ସେ କଥା ମୋତେ ଜଣା ନଥିଲା । ମୋର ମଧ୍ୟ ଜାଣିବାର ଆବଶ୍ୟକ ନ ଥିଲା । ମୁଁ ଧୀରେ ଧୀରେ ପୁଡ଼ିଆଟିକୁ ଖୋଲିବାକୁ ଲାଗିଲି ।

ଖଣ୍ଡିଏ ନୀଳ ବେନାରସୀ ଶାଢ଼ୀ ।

ଶାଢ଼ୀ ଖଣ୍ଡିକ ଖୋଲିଦେଇ ମୁଁ ଏକ ଦୃଷ୍ଟିରେ ଚାହିଁ ରହିଥିଲି । ଏତେ ମୂଲ୍ୟବାନ ଆଉ ଏତେ ସୁନ୍ଦର ଶାଢ଼ୀ ଇତି ପୂର୍ବରୁ ମୁଁ କେବେ ପିନ୍ଧିବାର ସୁଯୋଗ ପାଇ ନଥିଲି । ଏକ ଅଜଣା ପୁଲକ ମୋର ସମଗ୍ର ଦେହସାରା ଖେଳି ଯାଇଥିଲା ।

ମୁଁ ଶାଢ଼ୀ ଖଣ୍ଡିକୁ ଏପାଖ ସେପାଖ କରି ବହୁ ସମୟ ଦେଖିଲି । ଆଖିଯୋଡ଼ାକ ରହି ରହି ଚାରିଆଡ଼େ ବୁଲୁଥିଲା । ଲୁଚେଇ ଲୁଚେଇ ଶାଢ଼ୀ ଖଣ୍ଡିକ ପିନ୍ଧିବା ପାଇଁ ମନରେ ଆଗ୍ରହ ଉଙ୍କି ମାରୁଥିଲା । ଶେଷରେ ମୁଁ ଦମନ କରିପାରିଲି ନାହିଁ ନିଜକୁ । ଶାଢ଼ୀ ଖଣ୍ଡିକ ପିନ୍ଧିଲି । କିନ୍ତୁ କେଜାଣି କାହିଁକି ମନ ଭିତରେ ଏକ ଅହେତୁକ ଭୟ ଯେପରି ମୋ' ଛାତିଟାକୁ ଥରେଇ ଦେଉଥିଲା ।

ମୁଁ ଯେତେବେଳେ ଯାଇ ଅଇନା ଆଗରେ ଠିଆହୋଇ ମୋର ପ୍ରତିବିମ୍ବ ଆଡ଼େ ଚାହିଁଲି, ଆଖି ଦୁଇଟା ମୋର ଆପଣା ଛାଏଁ ବୁଜିହୋଇ ଆସିଲା । ମୁଖର ଶିରୀ, ବକ୍ଷର ଶୋଭା ଆଉ ସର୍ବୋପରି ଅଙ୍ଗ-ପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ ମୋର ବହୁ ଗୁଣରେ ବଢ଼ିଯାଇଛି ।

ଅଇନାରେ ପ୍ରତିବିମ୍ବିତ ହୋଇଉଠିଲା ଆଉ ଗୋଟିଏ ମୁହଁ । ମୋ' ପଛଆଡୁ ସତାଂଶୁ ଆସୁଛି । ଥରିଉଠିଲା ଛାତିଟା । ଭାବିବ ନାହିଁ ତ କିଛି !!

ମୁଁ ବୁଲି ଠିଆହୋଇ ପଡ଼ିଲି । ସେ ମୋ' ଆଡ଼େ ଚାହିଁଲା । ନୀରବ ଚାହାଣ, ନିଷ୍ପଲକ ଆଖି । ଭାବଲେଶହୀନ ମୁଖ ।

କିମିତି ଦିଶୁଚି ? ମୁଁ ଯାଚିହୋଇ ପଚାରିଲି ।

ଭଲ । ଶୁଖିଲା ଉତ୍ତର ପଦେ ଦେଇ ଘର ଛାଡ଼ି ଚାଲିଗଲା ସତାଂଶୁ ।

ମୋ' ମନର ସମସ୍ତ ଆନନ୍ଦ, ସମସ୍ତ ଆଗ୍ରହ ଧୂଳିଘର ପରି ନିମିଷକେ ଭାଜିଗଲା । ମୁଁ ସେଦିନ କେଜାଣି କାହିଁକି କାନ୍ଦି ପକାଇଥିଲି । ବିଛଣାରେ ଶୋଇରହି ରାତିଭରି ଚିନ୍ତା କରିଥିଲି । ପୁରୁଷର ମନ କ'ଣ ଯେ ଚାହେଁ, ଠିକ୍ କରିବା ମୋ' ପକ୍ଷରେ ସମ୍ଭବ ହୋଇ ନ ଥିଲା ।

ଦୁଇ ତିନି ଦିନ ସୀତାଂଶୁ ସହିତ ମୋର ଆଉ ଦେଖା ହୋଇନାହିଁ । ଆରଦିନ ସକାଳୁ ସେ କୁଆଡ଼େ ସହର ଛାଡ଼ି ଚାଲି ଯାଇଥିଲା । ମା'ଙ୍କୁ ପଚାରିଲି, (ସତାଂଶୁର ମା'ଙ୍କୁ ମୁଁ ମା' ବୋଲି ଡାକୁଥିଲି) ସେ କହିଲେ, ତା'ର କେଉଁ ବନ୍ଧୁର ବାହାଘର ସେ ଯାଇଛି । ଚାରି ପାଞ୍ଚଦିନ ପରେ ଫେରିବ ।

ମୋ' ମନରେ ଆହୁରି ଆଘାତ ଲାଗିଲା । କାରଣ ଏଇ କେତେ ମାସ ହେବ ସତାଂଶୁ ଜୀବନରେ ଏପରି କୌଣସି ଗୋପନ ଘଟଣା ନ ଥିଲା, ଯାହା ମୁଁ ଜାଣି ନଥିଲି । ଅଥଚ ମୋତେ ସେ ନ ଜଣାଇ ବନ୍ଧୁର ବାହାଘରକୁ ଚାଲିଗଲା ! ଗୋଟାଏ ବିରାଟ ଅଭିମାନରେ ମୋ' ମନଟା ଭରି ଯାଇଥିଲା ।

ସେଦିନ ସଂଧ୍ୟାବେଳେ ମୁଁ ଆନମନା ହୋଇ ଗୀତ ଗାଉଥିଲି । ଆଉ ଭାବୁଥିଲି କମଳ କଥା । ତା' ଉପହାରଟା ଗ୍ରହଣ କରିବା ମୋ' ପକ୍ଷରେ ହୁଏତ ଉଚିତ୍ ହୋଇନାହିଁ । କିନ୍ତୁ ନାଁ କରି ଥାଆନ୍ତି କିପରି ! ସତାଂଶୁର ଅନ୍ତତଃ ଏତିକି ବିଚାର କରିବା ଉଚିତ୍ ଥିଲା ।

ସେତିକିବେଳେ ଆସି କମଳ ମୋ' ଘର ମଧ୍ୟରେ ପ୍ରବେଶ କଲା । ଖୁବ୍ ଫିଟ୍‌ଫାଟ୍ ଟିପ୍‌ଟପ୍ ହୋଇ ଆସିଥିଲା । ତାକୁ ଦେଖିବା କ୍ଷଣି ମୁଁ ସାମାନ୍ୟ ଶଙ୍କି ଯାଇଥିଲି । ସେ କିନ୍ତୁ ମୋର କୌଣସି ଭାବଭଙ୍ଗୀ ପ୍ରତି ଲକ୍ଷ୍ୟ ନ କରି କହିଲା, ଶୀଘ୍ର ପ୍ରସ୍ତୁତ ହୋଇଯା' ରାଧା । ମୋ' ସହିତ ଗୋଟାଏ ପ୍ରୋଗ୍ରାମରେ ଆଟେଣ୍ଡ କରିବାକୁ ଯିବାକୁ ହେବ ।

ମୁଁ କାବା ହୋଇଗଲି । ସ୍ଥିରହୋଇ ଠିଆହୋଇ ରହିବା ଛଡ଼ା କୌଣସି ଉତ୍ତର ଦେବାକୁ ମୋ' ତୁଣ୍ଡରେ ଭାଷା ନ ଥିଲା ।

କମଳ ମୋତେ କହିଦେଇ ଘରୁ ବାହାରି ଚାଲିଯାଉଥିଲା । ବୋଧହୁଏ ସତାଂଶୁକୁ ଖୋଜିବା ପାଇଁ ।

ଅଳ୍ପ ସମୟ ପରେ ଫେରିଆସି, ମୋତେ ସ୍ଥିର ହୋଇ ବସିଥିବାର ଦେଖି କହିଲା, ଜୀବନରେ ସୁଯୋଗ ଥରେ ଆସେ ରାଧା, ବାରମ୍ବାର ନୁହେଁ । ଆଜି ଗୋଟାଏ ବିଶେଷ ଧରଣର ନୃତ୍ୟଗୀତ ଆୟୋଜିତ କରାହୋଇଛି । ଏଠାକାର ସାମ୍ବାଦିକ ସଂଘ ତରଫରୁ ବମ୍ବେ ଓ କଲିକତାର କେତେକ ଫିଲ୍ମ ଡିରେକ୍ଟର ଓ ପ୍ରଡ୍ୟୁସରମାନଙ୍କୁ ସମ୍ବର୍ଦ୍ଧନା କରାହେଉଛି । ସେଥିରେ ବଛାବଛା ମାତ୍ର କେତେଜଣ ଆର୍ଟିଷ୍ଟଙ୍କୁ ଡକାଯାଉଛି । ମୁଁ ତୋ ନାଁଟା ଜୋର ଜବରଦସ୍ତ ସେଥିରେ ଭର୍ତ୍ତି କରିଛି । ତୁ ଯଦି ନ ଯାଉ ରାଧା, ହୁଏତ ଜୀବନରେ ସବୁଠାରୁ ମୂଲ୍ୟବାନ ସୁଯୋଗଟିକୁ ହରାଇବୁ ।

ତଥାପି ମୁଁ ନୀରବରେ ବସିରହିଥିଲି । କମଳ ମୋ' ପାଖକୁ ଯାଇ ମୋର ଦୁଇହାତ ଧରି ଉଠାଇ ଠିଆ କରାଇଦେଲା । କହିଲା, ସତାଂଶୁ ଭବିଷ୍ୟତରେ ତୋ' ଜୀବନରେ ସର୍ବନିୟନ୍ତା ହୋଇପାରିବ ନାହିଁ ରାଧା ! ତା' ଯଦି ଭାବୁଥାଉ,

ତେବେ ଭୁଲ୍ କରୁଚୁ । ସତାଂଶୁ ମୋର ବନ୍ଧୁ, ତୋ'ଠାରୁ ମୁଁ ତାକୁ ବେଶୀ ଚିହ୍ନିଚି । ଉଠ୍ ଲୁଗାପଟା ପିନ୍ଧି ମୋ' ସହିତ ବାହାରି ଆ' ।

ଅନିଚ୍ଛା ସତ୍ତ୍ୱେ ମୁଁ ସେଦିନ କମଳ ସହିତ ବାଧ୍ୟହୋଇ ଯାଇଥିଲି । ଗୋଟିଏ ରିକ୍ସାରେ ବସି ଦୁଇଜଣ ଯାକ ଗଲୁ । ବାଟସାରା ମୁଁ କେବଳ ସତାଂଶୁ କଥା ଚିନ୍ତା କରିଯାଉଥିଲି । ଫେରିଆସି ସେ ନିଶ୍ଚୟ ଶୁଣିବ, ଆଉ ଜାଣିବ ଯେ କମଳ ସହିତ ମୁଁ ଯାଇଥିଲି । କିନ୍ତୁ ଅନ୍ୟାୟଟା ମୁଁ କ'ଣ ବା କଲି ? ସତାଂଶୁ ସହିତ ଯଦି ନିର୍ଜନ ରାତ୍ରିରେ ଏକା ଯାଇପାରେ, କମଳ ସହିତ ଯିବାରେ ଦୋଷ କ'ଣ ଅଛି !

ସେଦିନ ପ୍ରକୃତରେ ମୋ' ଜୀବନର ସୂର୍ଯ୍ୟୋଦୟ ଆରମ୍ଭ ହୋଇଥିଲା । ଅଳ୍ପ କେତେଜଣ ଆର୍ଟିଷ୍ଟଙ୍କ ମଧ୍ୟରେ ମୋ' ଭୂମିକାଟା ସର୍ବଶ୍ରେଷ୍ଠ ଥିଲା । ସେଦିନ ନିମନ୍ତ୍ରିତ ଅତିଥିମାନଙ୍କ ଚାଲିଚଳନରୁ ମୁଁ ବୁଝିପାରିଥିଲି, ଡିରେକ୍ଟର ଓ ପ୍ରଡ୍ୟୁସରମାନଙ୍କ କ୍ୟାମେରା ମୋରି ଫଟୋ ଉଠାଇବା ପାଇଁ ବେଶୀ ଲାଳାୟିତ ହୋଇଉଠିଥିଲା ।

ଆଳାପ, ଆଲୋଚନା, ସାମାନ୍ୟ ଟିକିଏ ନୃତ୍ୟଗୀତ ପରେ ଭୋଜି ମଉଜ ଶେଷ ହେଉହେଉ ପ୍ରାୟ ଦଶଟା ବାଜି ଯାଇଥିଲା । ବହୁ ଉଜ୍ଜ୍ୱଳ ପ୍ରତିଶ୍ରୁତି ଆଗନ୍ତୁକମାନଙ୍କ ଠାରୁ ପ୍ରାପ୍ତିସ୍ୱୀକାର କରି ମୁଁ କମଳ ସହିତ ଘରକୁ ଫେରିଲି । ମନଟା ମୋର କମଳ ପାଇଁ ଦରଦୀ ହୋଇଉଠିଥିଲା । ମୋର ଉନ୍ନତି ପାଇଁ କେତେ ସେ ଚେଷ୍ଟା ନ କରୁଚି । ଅଥଚ ସତାଂଶୁ ତାକୁ ସହିପାରୁ ନାହିଁ କାହିଁକି ?

କମଳ କହିଲା, ଗୋଟାଏ କଥା ସବୁବେଳେ ମନେରଖିବୁ ରାଧା ! ଜୀବନରେ ଉନ୍ନତି କରିବାକୁ ହେଲେ, ବିଶେଷତଃ ଏଇ ଲାଇନ୍‌ରେ, ସବୁବେଳେ ମୁହଁରେ ହସ ଫୁଟେଇ ପରକୁ ଆପଣାର କରିବାକୁ ହେବ । ତା' ନ ହେଲେ ଆଜି ଯେଉଁଠି ଅଛୁ, ଜୀବନଭରି ସେଇଠି ପଡ଼ି ରହିଥିବୁ ।

ଅନ୍ତତଃ ତୁ ଯଦି ରାଧା ନ ହୋଇ ଅନ୍ୟ କେହି ହେଇଥାଆନ୍ତୁ, ମୁଁ ତୋତେ ଏହି ଉପଦେଶ ଦେଇ ନଥାନ୍ତି । ତୋ'ର ଭବିଷ୍ୟତ ଅତି ଅନ୍ଧକାର । ସତାଂଶୁ ତୋତେ ଭଲପାଏ, ସେ କଥା ମୁଁ ଜାଣେ । କିନ୍ତୁ ମନପ୍ରାଣରେ ତୁ ସତାଂଶୁକୁ ଭଲପାଇବା ଉଚିତ ହେବ ନାହିଁ । ସତାଂଶୁ ମୋର ବନ୍ଧୁ, ତଥାପି ତା' ବିରୁଦ୍ଧରେ ମୋତେ କହିବାକୁ ହେଉଚି, କେବଳ ତୋ'ରି କୁହେଳିକାପୂର୍ଣ୍ଣ ଭବିଷ୍ୟତ ଆଡ଼େ ଚାହିଁ ।

ମୁଁ ଜାଣିଚି ରାଧା, ସତାଂଶୁର ଏ ଭଲପାଇବା ବେଶୀ ଦିନ ସ୍ଥାୟୀ ହୋଇ

ରହିବ ନାହିଁ । ତୋତେ ହୁଏତ ମୋର ଏଇ କଥାଗୁଡ଼ାକ ଖୁବ୍ ଅପ୍ରୀତିକର ମନେ ହେଉଥିବ । ତଥାପି ମୁଁ ମୋ' କହିବା କଥା ତୋତେ କହିଲି । ସତାଂଶୁ ତା' ବାପା ମା'ଙ୍କର ଅତି ବାଧ୍ୟ, ପୁଣି ଏକମାତ୍ର ସନ୍ତାନ । ତେଣୁ ତୁ କ'ଣ ଆଶା କରିପାରୁଚୁ ସେମାନେ ତୋତେ ପୁତ୍ରବଧୂ ରୂପେ ଗ୍ରହଣ କରିପାରିବେ ?

ମୋ' ଦେହଟା ସଂପୂର୍ଣ୍ଣ ରୂପେ କଂପି ଉଠିଲା । ମୁଁ ସେତିକିବେଳେ କମଳକୁ ଜାବୁଡ଼ି ଧରି ନ ପକାଇ ଥିଲେ ହୁଏତ ତଳେ ପଡ଼ି ଯାଇଥାଆନ୍ତି । କମଳ ବୋଧହୁଏ ମୋ' ମନର ଅବସ୍ଥା ବୁଝିପାରିଲା । ଆଉ ତା' ମନର କଥା କିଛି ପ୍ରକାଶ କଲା ନାହିଁ । ନୀରବରେ ରିକ୍ସା ଆଗେଇ ଚାଲିଥିଲା ।

ମୋତେ ଘରେ ଛାଡ଼ି ଦେଇ କମଳ ଫେରିଗଲା ।

କିନ୍ତୁ ମୋ' ମନରେ ଯେଉଁ ବେଦନାର ନିଆଁ ଜଳେଇ ଦେଇଗଲା, ସେଦିନ ରାତିଭରି ସେଥିରେ ଦଗ୍ଧ ହେବାକୁ ଲାଗିଲି । ସତାଂଶୁ ମୋତେ ଭଲପାଏ, ହଁ ନିଶ୍ଚୟ ଭଲପାଏ । ତା' ନ ହୋଇଥିଲେ ମୋର ଏପରି ଦୁର୍ଦ୍ଦିନରେ ସେ ମୋତେ ଆଶ୍ରୟ ଦେଇ ନଥାନ୍ତା । କିନ୍ତୁ କ'ଣ ସେଇ ଭଲପାଇବାର ପରିଣତି ?

ମୁଁ କେବେ ଏହି ବିବାହ କଥାଟାକୁ ଗଭୀର ଭାବରେ ଚିନ୍ତା କରି ନ ଥିଲି । ସତାଂଶୁର ସମସ୍ତ ଅଭିଳାଷ ପୂରଣ କରିବା ପାଇଁ ମନେ ମନେ ମୁଁ ପ୍ରସ୍ତୁତ ହୋଇ ରହିଥିଲି । କେବେ ଯଦି ସେ ମୋ' ଜୀବନର ଏକମାତ୍ର ଅମୂଲ୍ୟ ମଣିକୁ ହାତ ପତେଇ ମାଗିନେଇ ଥାଆନ୍ତା, ମୁଁ ଆଦୌ ଆପତ୍ତି ଜଣାଇ ନ ଥାନ୍ତି । କାରଣ ମୁଁ ଦେହ ଓ ମନରେ ସତାଂଶୁର ହୋଇଯାଇଥିଲି ।

କିନ୍ତୁ ଆଜି ହଠାତ୍ କମଳ ଏ କ'ଣ କହିଲା ?

ସତାଂଶୁର ବାପା ମା' ମୋତେ କେବେ ପୁତ୍ରବଧୂ କରିବାକୁ ଏକମତ ହେବେ ନାହିଁ । ସତେତ ! ସେମାନେ ବଡ଼ଲୋକ । ଗୋଟାଏ ଚାଷୀ ଘରର ଝିଅ ମୁଁ । ସାମୟିକ ଆଶ୍ରୟ ଦେଇଛନ୍ତି ବୋଲି ଜୀବନବ୍ୟାପୀ ନିର୍ଭୟ ଆଶ୍ରୟର ତ ପ୍ରତିଶ୍ରୁତି ଦେଇନାହାନ୍ତି ?

କମଳ ଠିକ୍ କହିଚି । ମୁଁ ନିଜକୁ ହଜେଇ ଦେବା ଆଗରୁ ସେ ମୋତେ ସଚେତନ କରେଇ ଦେଇଛି । ମୋର ଭବିଷ୍ୟତ ମୋତେ ନିଜ ହାତରେ ଗଢ଼ିବାକୁ ହେବ । ପାଥେୟ ?

ପୁଣି ଅନ୍ଧକାର ଘୋଟିଆସିଲା ଆଖି ଆଗରେ ।

ନା ନା, ସତାଂଶୁକୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ସତାଂଶୁ ତ

ମୋତେ ନା କରିନାହିଁ । ମୁଁ ତ କେବେ ସତାଂଶୁ ସହିତ ଖୋଲାଖୋଲି ଭାବରେ କଥାବାର୍ତ୍ତା ହୋଇନାହିଁ । ତେଣୁ କିଛି ନ ବୁଝି, ନ ଶୁଣି ଅବିଶ୍ୱାସ କରିବା କ'ଣ ଠିକ୍ ହେବ ?

ମୁଁ ସେଦିନ ମହାଦ୍ୱନ୍ଦ୍ୱରେ ପଡ଼ିଯାଇଥିଲି ।

ରାତି ପାହି ସକାଳ ହେଲା ।

ଆଖି ମୋର ସିମିତି ଅବୁଜା ରହି ଯାଇଥିଲା । କୂଅମୂଳେ ବାସନମଜା ଶବ୍ଦ ଶୁଣି ମୁଁ ଉଠିବସିଲି । ଘଡ଼ିକି ଚାହିଁଲି, ସାତଟା ବାଜିଗଲାଣି ।

ତର ତର ହୋଇ ଉଠିପଡ଼ିଲି । ପ୍ରତିଦିନ ସକାଳୁ ମୋର ଗୋଟିଏ ଡିଉଟି ଥିଲା । ବାପା ଓ ମା' ସକାଳେ ଏକାଠି ବସି ଚା' ପିଅନ୍ତି । ସେତିକିବେଳେ ମୁଁ ସେମାନଙ୍କୁ ଚା' ଜଳଖିଆ ପରିବେଷଣ କରେ । ଏ ଘରକୁ ଆସିଲା ପରଠାରୁ ଏହି ଡିଉଟିଟି ମୋ' ଉପରେ ଆପଣାଛାଏଁ ନଦି ହୋଇପଡ଼ିଚି । ମୁଁ ଅତି ଆଗ୍ରହରେ ସବୁଦିନ ତାହା କରିଆସିଚି ।

ଆଜି ସାମାନ୍ୟ ଡେରି ହୋଇଯାଇଥିବାରୁ ସିଧା ମୁଁ ଧାଇଁଗଲି ରୋଷେଇ ଘରକୁ । ଚା' ଜଳଖିଆ ପ୍ରସ୍ତୁତ ହୋଇଥିଲା । ଚାକରାଣୀ ଟ୍ରେ'ଟି ଉଠାଇ ଆଣିବାକୁ ବାହାରି ଥିଲା । ମୁଁ ଯାଇ ମୋ' କର୍ତ୍ତବ୍ୟରେ ଲାଗିପଡ଼ିଲି ।

ବାପା ଓ ମା' ବସି ବସି ଗଳ୍ପ କରୁଥିଲେ । ମୋତେ ଦେଖି ମା' କହିଲେ, କାଲି ରାତିରେ ନିଦ ହେଇନି କି ରାଧା ! ଆଖିଯୋଡ଼ାକ କାହିଁକି ଫୁଲିଲା ପରି ଦିଶୁଚି ।

ମୁଁ ଖାଲି ହସିଦେଲି ।

ବାପା କିଛି କହିଲେ ନାହିଁ ।

ଟେବୁଲ ଉପରେ ଦୁଇ ତିନୋଟି ଝିଅଙ୍କ ଫଟୋ ପଡ଼ିଥିଲା । ଚା' କପ୍ ସଜାଡ଼ି ଆଣିଲା ବେଳକୁ ମା' ସେଗୁଡ଼ିକ ଗୋଟେଇ ନେଉଥିଲେ । ମୁଁ ଫଟୋଗୁଡ଼ିକ ଆଡ଼େ ଚାହିଁବାରୁ କହିଲେ, ଦେଖିବୁ ? ହେଇ ନିଏ, ଦେଖି କହିଲୁ, ଏ ତିନିଜଣଙ୍କ ଭିତରୁ କାହାକୁ ତୋ' ସିତାଂଶୁ ଭାଇ ପାଇଁ ବାଛିବା ।

ମୁଁ ବୋଧହୁଏ କେତୋଟି ମୁହୂର୍ତ୍ତ ପାଇଁ ପଥର ପାଲଟି ଯାଇଥିଲି । ତିନୋଟିଯାକ ଫଟୋ ମୋ' ହାତରେ ଥିଲା । ମୋର ମନେହେଲା, ସେମାନେ ଯେପରି ବଡ଼ ବଡ଼ ଆଖି ଦେଖେଇ, ପରିହାସ ଭଙ୍ଗୀରେ ମୋ' ମୁହଁକୁ ଚାହିଁ ହୋ ହୋ ହୋଇ ହସୁଛନ୍ତି । ମୋ' ମୁଣ୍ଡଟା ବୁଲେଇବାକୁ ଲାଗିଲା । ମନେହେଲା ଯେପରି ଚେଆର, ଟେବୁଲ, ବାପା ମା' ସମସ୍ତେ ଘୂରୁଛନ୍ତି ।

ମୁଁ କୌଣସି ପ୍ରକାର ଫଟୋ ତିନୋଟି ମା'ଙ୍କ ହାତକୁ ବଢ଼ାଇ ଦେଇ ସେଠାରୁ ଖସି ପଳାଇଲି । ବିଛଣା ଉପରେ ଯାଇ ମୁହଁମାଡ଼ି କଇଁ କଇଁ ହୋଇ କେତେବେଳେ ଯାଏ ଯେ କାନ୍ଦିଥିଲି କହିପାରିବି ନାହିଁ, କିନ୍ତୁ କାହା ହାତର ସ୍ପର୍ଶ ପାଇ ମୁଁ ଚମକି ଉଠିଲି ।

କମଳ ମୋ' ପଛଆଡ଼େ ଠିଆ ହୋଇଚି ।

ଆଖିରେ ମୋର ଲୁହ ଦେଖି ସେ ଅବାକ୍ ହେଇ ଯାଇଥିଲା । ପକେଟରୁ ରୁମାଲ୍ ବାହାର କରି ମୋ' ଆଖି ପୋଛି ଦେଲା । କହିଲା, ଏକଦା ନାରୀର ଭୂଷଣ ଅଶ୍ରୁ ଥିଲା । ଆଜି ଆଉ ନୁହେଁ ରାଧା । ନାରୀ ଆଜି ସ୍ୱାବଲମ୍ବନୀ ହେବାର ବହୁ ପଥ ଖୋଲିଯାଇଚି ।

ମୁଁ ବହୁତ ବେଳଯାଏ କମଳର ମୁହଁକୁ କରୁଣ ନୟନରେ ଅନାଇ ରହିଥିଲି । ମୋର ମନେପଡୁଥିଲା ସେଇ ତିନୋଟି ମୁହଁ, ଯେଉଁମାନଙ୍କ ଭିତରୁ ଜଣେ କେହି ଘତାଂଶୁର ଆପଣାର ହୋଇ ଆସିବ । ସେଦିନ ରାଧା ହେବ ସାତପର ।

ମୁଁ କାନ୍ଦି କାନ୍ଦି ସେଦିନ କମଳକୁ କହିଥିଲି, ତମେ ମୋତେ ଏଠାରୁ ଉଦ୍ଧାର କରିପାରିବ କମଳ ଭାଇ ? ସ୍ୱାବଲମ୍ବୀ ହେବାର ପନ୍ଥା ଗୋଟାଏ ଧରାଇ ଦେଇପାରିବ ମୋତେ ?

କମଳ ହସି ହସି କହିଥିଲା, ତୋ' ପାଇଁ ପଥ ପ୍ରସ୍ତୁତ ହେଇରହିଛି ରାଧା । ତୁ ଯେଉଁ ମୁହୂର୍ତ୍ତରେ ଇଚ୍ଛା କରିବୁ ନିଜକୁ ସ୍ୱାବଲମ୍ବୀ କରିପାରିବୁ । ମୁଁ ତୋତେ ଗୋଟାଏ ଶୁଭସମ୍ବାଦ ଦେବାକୁ ଆସିଚି ରାଧା ! ଏଇ ଦେଖ, ବମ୍ବେରୁ ଫିଲ୍ମ ଷ୍ଟାର ନାମରେ ଯେଉଁ ସିନେମା ପତ୍ରିକା ପ୍ରକାଶ ପାଏ, ସେମାନେ ମୋତେ କଲିକତା ପ୍ରତିନିଧି ରୂପେ ନିର୍ବାଚିତ କରିଛନ୍ତି । ମୁଁ ଏଇ ସପ୍ତାହରେ କଲିକତା ଚାଲିଯିବି । କହିବୁ ଯଦି, ତୋତେ ମୋ' ସଂଗରେ ନେଇଯାଇପାରିବି ।

ସେଇ ମୁହୂର୍ତ୍ତରେ ମୁଁ କମଳକୁ କୌଣସି ଉତ୍ତର ଦେଇପାରିଲି ନାହିଁ । ଘତାଂଶୁର ଆନ୍ତରିକତା ମୋ' ମନଟାକୁ ଏପରି ବିକଳ କରିପକାଇ ଥିଲା ଯେ, ତା' ଭିତରେ ମୁଁ ଆଉ କାହାରି ଚିନ୍ତାକୁ ପ୍ରଶ୍ରୟ ଦେଇପାରୁ ନଥିଲି ।

କମଳ କହିଲା, ଭାବିଚିନ୍ତି ତୁ ନିଜକୁ ତିଆରି କର । କିନ୍ତୁ ମନେରଖ ଏ ଦେହ, ଏ ମନ ଏହାପରେ ଆଉ ନ ଥିବ । ତେଣୁ ତୋତେ ବଞ୍ଚି ରହିବା ପାଇଁ ହେଲେ ନିଜ ଗୋଡ଼ରେ ଠିଆ ହେବାକୁ ହେବ । ମୁଁ କଲିକତା ଯିବା ପୂର୍ବରୁ ତୋତେ ଆଉ ଥରେ ଦେଖାକରିବି, ତୋ'ର ମତାମତ ଜଣାଇବୁ ।

ସୀତାଂଶୁର ବାହାଘର ପାଇଁ ଖୁବ୍ ଜୋର୍‌ସୋର୍‌ରେ ଆଲୋଚନା ଚାଲିଥିଲା । ଶେଷରେ ବାପା ମା' ମଧୁପୁରର ଜମିଦାରଙ୍କ ଝିଅ ସହିତ ସତାଂଶୁର ବିବାହ ଦେବାକୁ ସ୍ଥିର କଲେ ।

ସତାଂଶୁ ଚାରି ପାଞ୍ଚ ଦିନ ପରେ ଫେରିଆସିଲା ।

ମୋତେ ଦେଖା କଲା ନାହିଁ କିମ୍ବା ମୋ' ସହିତ କଥାବାର୍ତ୍ତା କରିବାକୁ ଆସିଲା ନାହିଁ । ମନଟା ମୋର ଭୀଷଣ ଛୋଟ ହୋଇଗଲା । ଅପରାଧଟା ଯେ ମୋର କେଉଁଠି, ମୁଁ ବୁଝିପାରୁ ନ ଥିଲି ।

ଦିନେ ମୁଁ ସତାଂଶୁର ପଢ଼ାଘରେ ଯାଇ ଉପସ୍ଥିତ ହେଲି । ବିବାହ ପ୍ରସଙ୍ଗ ବହନ କରି ଯେଉଁ ଫଟୋଗୁଡ଼ିକ ଆସିଥିଲା, ସେଇ ଫଟୋଗୁଡ଼ିକୁ ଗୋଟିକ ପରେ ଗୋଟିଏ ସେ ଖେଳେଇ ଦେଖୁଥିଲା । ମୋତେ ଘର ଭିତରେ ପଶିବାର ଦେଖି ମଧ୍ୟ ନୀରବରେ ଫଟୋଗୁଡ଼ିକ ଦେଖିଯାଉଥିଲା ।

ମୁଁ ଅନେକ ସମୟ ନୀରବରେ ଠିଆହୋଇ ରହିବା ପରେ ଡାକିଲି, ସତାଂଶୁ ଭାଇ !

ସେ ମୋ' ଆଡ଼କୁ ଟିକିଏ ଚାହିଁଲା ଏବଂ ପୁଣି ଫଟୋଗୁଡ଼ିକ ମନଯୋଗ ସହକାରେ ଦେଖିବାକୁ ଲାଗିଲା ।

ମୁଁ କହିଲି, ମୋର ଦୋଷ କ'ଣ ସତାଂଶୁ ଭାଇ !

ସେ କହିଲା, ନିମ୍ନସ୍ତରର ଜୀବ କେବେ ଆଭିଜାତ୍ୟର ଅଧିକାରୀ ହୋଇପାରନ୍ତି ନାହିଁ । ମୋର ଧାରଣା ବଦଳିଛି । ବାପା ମା' ମୋର ବିବାହ ସିଦ୍ଧାନ୍ତ କରିଛନ୍ତି । ମଧୁପୁରର ଜମିଦାରଙ୍କ କନ୍ୟାଙ୍କ ସହିତ ମୋର ବିବାହ ସ୍ଥିର ହୋଇଛି । ଆଶା କରୁଛି ତୁ ଶୁଣୁଥିବୁ ବୋଧହୁଏ ।

ଏହାପରେ ମୋର ଆଉ କିଛି ଶୁଣିବାକୁ ଧୈର୍ଯ୍ୟ ନ ଥିଲା । ମୁଁ ଏକପ୍ରକାର ଧାଇଁ ଧାଇଁ ମୋ' ଘରକୁ ପଳାଇ ଆସିଲି । ବିଛଣାରେ ମୁହଁମାଡ଼ି କାନ୍ଦିବାକୁ ଲାଗିଲି । ସତାଂଶୁ ଯେ ମୋ' ମୁହଁ ଉପରେ ଏପରି ଜବାବ ଦେଇପାରିବ, ମୁଁ କଳ୍ପନା ସୁଦ୍ଧା କରିପାରି ନଥିଲି ।

କମଳ ସେଦିନ ସନ୍ଧ୍ୟାବେଳେ ପୁଣି ଆସିଲା ।

ମୋର ଏଠାରୁ ସମସ୍ତ ଆଶାଭରସା ତୁଟିଯାଇଥିଲା । ମୁଁ କମଳ ସହିତ କଲିକତା ଚାଲିଯିବା ପାଇଁ ପ୍ରସ୍ତୁତ ହେବାକୁ ଲାଗିଲି ।

କମଳ ସହତ କଲିକତା ଚାଲିଆସିବା ପରେ ପ୍ରକୃତରେ ମୋ' ଜୀବନରେ

ଏକ ବିରାଟ ପରିବର୍ତ୍ତନ ଦେଖାଦେଲା । କମଳ ମୋତେ ସଙ୍ଗରେ ଧରି ସେଠାକାର ପ୍ରତିଟି ଡିରେକ୍ଟର ଓ ପ୍ରଡ୍ୟୁସରମାନଙ୍କ ଦୁଆରେ ଯାଇ ହାଜିର ହେଲା । ସମସ୍ତେ ମିନିଟ୍ ମିନିଟ୍ ଧରି ମୋର ଅଙ୍ଗସୌଷ୍ଠବ ଆଡ଼େ ଚାହିଁରହି ଆଶାର ବାଣୀ ଶୁଣାଇଲେ ।

କଲିକତାରେ ଆମର ଗୋଟାଏ ସପ୍ତାହ ଅତିବାହିତ ନ ହେଉଣୁ ମୁଁ ଗୋଟିଏ ଚିତ୍ରରେ ଏକ ଛୋଟ ଭୂମିକା ପାଇଁ କଣ୍ଟ୍ରାକ୍ଟ ପାଇଲି । ସେତକ ପାଇବା ପାଇଁ ମୋତେ ଡାଇରେକ୍ଟରଙ୍କ ଘରକୁ ଚାରିଥର ଏବଂ ପ୍ରଡ୍ୟୁସରଙ୍କ ଘରକୁ ଦୁଇଥର ଯିବାକୁ ହୋଇଥିଲା ।

ସେ ଭୂମିକାଟିରେ ମୁଁ ଯଥେଷ୍ଟ ସୁନାମ ଅର୍ଜନ କଲି ।

ବିଭିନ୍ନ ପତ୍ରପତ୍ରିକାରେ 'ନବାଗତା' ରୂପେ ମୋର ଛବି ଛପା ହେଲା । ଯେଉଁଦିନ ସେ ଚିତ୍ରଟି ରିଲିଜ୍ ହେଲା, ସେଦିନ ମୋ' ଜୀବନରେ ଆଉ ଏକ ପରିବର୍ତ୍ତନ ଘଟିଲା ।

ସେଦିନ କମଳ ଓ ମୁଁ ଛବି ଦେଖି ଫେରିଲୁ । ମନଟା ମୋର ଏତେ ଆନନ୍ଦ ହୋଇଯାଇଥିଲା ଆଉ କମଳ ଉପରେ ମୁଁ ଏପରି ପ୍ରସନ୍ନ ହୋଇ ଉଠିଥିଲି ଯେ, ମନେ ହେଉଥିଲା କମଳ ମୋର ସର୍ବସ୍ୱ । ମୋର ସେହି ମନର ଦୁର୍ବଳତାର ସୁଯୋଗ ସେଦିନ ନେଲା କମଳ ।

ଆମେ ଯେତେବେଳେ ବସାରେ ଯାଇ ପହଞ୍ଚିଲୁ, ସେତେବେଳକୁ ରାତି ନ'ଟାରୁ ଅଧିକ ହୋଇଯାଇଥିଲା । ମୁଁ ଲକ୍ଷ୍ୟ କରିଥିଲି ବାଟଯାକ କମଳ କିପରି ଗୋଟିଏ ଭୋକିଲା ଆଖିରେ ମୋ' ଆଡ଼େ ଚାହିଁ ଚାହିଁ ଫେରୁଥିଲା । ଟ୍ୟାକ୍ସିରୁ ଓହ୍ଲାଇ ଆମେ ବସାକୁ ଚାଲି ଯାଇଥିଲୁ । ମୋ' ଘରେ ମୁଁ ଯାଇ ଆରାମ ଚେଆରଟା ଉପରେ ବସିପଡ଼ିଥିଲି । ଭାରି ହାଲ୍‌କା ଲାଗୁଥିଲା ମନଟା ।

କମଳ ଆସି ମୋରି ଘରେ ମୋରି ସାମ୍ନାରେ ଗୋଟାଏ ଚେଆର ଉପରେ ବସିଲା । କହିଲା, ଆଜି ଆମ ଜୀବନର ସବୁଠାରୁ ଆନନ୍ଦର ଦିନ ରାଧା ! ଏହି ଆନନ୍ଦକୁ ଆହୁରି ମଧୁର କରିବା ପାଇଁ ମୁଁ ତୋତେ ଗୋଟିଏ ଅନୁରୋଧ କରିବି, ରଖିବୁ ?

ମୁଁ ନାହିଁ କରିପାରିଲି ନାହିଁ । କମଳ ଉଠିଯାଇ ଆରଘରୁ ଗୋଟାଏ ବୋତଲ ଏବଂ ଦୁଇଟା ଗ୍ଲାସ ଧରି ଫେରିଆସିଲା ।

ମୋ' ଛାତିଟା ମୁହୂର୍ତ୍ତକ ପାଇଁ ନାଚିଉଠିଲା । ମୁଁ କ'ଣ କହିବାକୁ ଯାଇ ପୁଣି ନୀରବ ହୋଇଗଲି ।

କମଳ ବୋତଲର ଠିପି ଖୋଲି ଦୁଇଟିଯାକ ଗ୍ଲାସରେ ବିଦେଶୀ ପାନୀୟରୁ କିଛି କିଛି ଢାଳି କହିଲା, ଜୀବନର ସବୁ ବ୍ୟଥାବେଦନା ଏ ଭୁଲେଇ ଦେବ ରାଧା ! ଆହୁରି ମଧୁର କରିବ ମୁହୂର୍ତ୍ତକୁ । ଦ୍ୱିଧା ସଂକୋଚ କିଛି କରନାହିଁ ।

କମଳ ମନରେ ଆଘାତ ଦେବା ପାଇଁ ମୋର ସେଦିନ ମୋଟେ ଇଚ୍ଛା ନ ଥିଲା । ମୁଁ ସେହି ପାନୀୟତକ ପାନକରି ସାରି ଅନେକ ବେଳଯାଏ ହସିଥିଲି । କମଳ ମୋତେ ଆହୁରି ଢାଳିଦେଇଥିଲା । ମୁଁ ସେତକ ବି ନିଃଶେଷ କରିଥିଲି ।

ତା'ପରେ ଆଉ କିଛି ମୋର ମନେ ନ ଥିଲା ।

ଆରଦିନ ବହୁତ ଡେରିରେ ଯେତେବେଳେ ମୋର ନିଦ ଭାଙ୍ଗିଲା, ଦେଖିଲି କମଳର ଶେଯ ଉପରେ ମୁଁ ଶୋଇଛି । ତଟସ୍ଥ ହୋଇ ଏଣେତେଣେ ଚାହିଁଲି । କମଳ ଘରେ ନାହିଁ ।

ଇଏ କ'ଣ ହେଲା ? ମୁଁ କମଳର ଶେଯ ଉପରକୁ ଆସିଲି କିପରି ?

ନିଜର ଦେହକୁ ଚାହିଁଲି । କେଶବାସ ଅସଂଯତ । ଉଠିବାକୁ ଚେଷ୍ଟା କଲି, କିନ୍ତୁ ଦେହରେ ଟିକିଏ ହୋଇ ବଳ ନ ଥିଲା । ହେ ଭଗବାନ ! ମୋର ଏ ପରିଣତି ହେଲା କିପରି ?

ଭାବିବାକୁ ଆଉ ବେଳ କାହିଁ ?

ଦେଖିଲି, କମଳ ହସି ହସି ଘର ଭିତରକୁ ପ୍ରବେଶ କରୁଚି । ମୁଁ ତା' ମୁହଁକୁ ଶଙ୍କିତ ନୟନରେ ଚାହିଁ କିଛି କହିବା ପୂର୍ବରୁ ସେ ଆରମ୍ଭ କରିଦେଲା, ଶୀଘ୍ର ଶୀଘ୍ର ଉଠ ରାଧା । ନିଉ ଥିଏଟର୍ସର ପ୍ରତ୍ୟୁଷର ଆସିଚନ୍ତି । ତାଙ୍କର ଆଗାମୀ ଚିତ୍ରର ନାୟିକା ପାଇଁ ତୋ' ସହିତ କଣ୍ଟ୍ରାକ୍ଟ କରିବେ ।

ମୁଁ ବିସ୍ଫାରିତ ନୟନରେ କମଳ ମୁହଁକୁ ଚାହିଁଥିଲି । ମୁଁ ହେବି ନାୟିକା ? ଏତେ ଶୀଘ୍ର ? ସବୁ ଯେ ସ୍ୱପ୍ନାତୀତ !

କମଳ ଆସି ମୋ' ଦେହର ଲୁଗା ସଜାଡ଼ି ଦେଲା । ଦୁଇ ହାତରେ ଧରି ବିଛଣାରୁ ଉଠାଇଲା । ସ୍ମିତ ହସି କହିଲା, ଆଉ ଡେରି କରନି ରାଧା ! ସେମାନଙ୍କ ସହିତ ଲାଜସଂକୋଚ ନ ରଖି କଥା କହିବୁ । ସେମାନଙ୍କୁ ତୋ' ପ୍ରତି ଆକୃଷ୍ଟ କରେଇବା ପାଇଁ ଚେଷ୍ଟା କରିବୁ । ମୋର ସେ ଦୁଇ ବାହୁଧରି ଶେଯରୁ ଉଠାଇଲା । କୌଣସି ପ୍ରତିବାଦ କରିବାର ଶକ୍ତି ଯେପରି ମୁଁ ଆଜି ହରାଇ ବସିଥିଲି ।

ବାଥ୍‌ରୁମ୍‌କୁ ଯାଇ ନିତ୍ୟକର୍ମ ଶେଷକରି ଯେତେବେଳେ ମୋ' ରୁମ୍‌କୁ ଫେରିଆସିଲି, ଦେଖିଲି କମଳ ମୋରି ପ୍ରତୀକ୍ଷାରେ ଠିଆ ହୋଇଛି । ମୋତେ

ଦେଖି ସାମାନ୍ୟ ହସିଦେଇ କହିଲା, ଦେଖ୍ ରାଧା ! ଏ ଲାଇନ୍‌ର ସବୁଠାରୁ ବଡ଼ ଆକର୍ଷଣ ହେଉଚି ରୂପସଜ୍ଜା । ନିଜକୁ ତୁ ଯେତେ ପାରିବୁ, ଅସଂଯତ ଭାବରେ ସଜେଇବାକୁ ଚେଷ୍ଟା କରିବୁ । ହୁଏତ ତୋ' ଦ୍ୱାରା ତାହା ସମ୍ଭବ ହେବନାହିଁ । ମୁଁ ମୋ' ନିଜ ହାତରେ ତୋତେ ଆଜି ସଜାଇ ଦେବି ।

ମୁଁ କୌଣସି ପ୍ରତିବାଦ ସେଦିନ କରି ନ ଥିଲି । କମଳ ନିଜ ହାତରେ ମୋତେ ସଜେଇ ଦେଇଥିଲା । ସେ ଯେ ଏକ ନିପୁଣ ଶିଳ୍ପୀ ଭଳି ମୋତେ ସଜେଇ ପାରିଥିଲା, ମୁଁ ଅଇନା ସାମ୍‌ନାରେ ଠିଆହୋଇ ସ୍ତବ୍ଧ ହୋଇଯାଇଥିଲି । ସେ ମୋତେ କହିଥିଲା, ଆଜିଠାରୁ ତୁ ଆଉ ରାଧା ନୁହଁ, ତୋ'ର ନୂତନ ନାମକରଣ ହେଲା ଚିତ୍ରାଙ୍ଗଦା । ମୁଁ ତୋତେ ଚିତ୍ରା ବୋଲି ଡାକିବି ।

ନିଉ ଥିଏଟର୍ସର ପ୍ରବୀଣ ପ୍ରଡ୍ୟୁସର ମୋତେ ସେଦିନ ପ୍ରାୟ ଦୁଇ ମିନିଟ୍ ଏକଲୟରେ ଅନାଇ ରହିଥିଲେ । ତା'ପରେ ଧୀରେଧୀରେ କମଳ ଆଡ଼େ ମୁହଁ ବୁଲେଇ କହିଥିଲେ, ଜାଣିଲେ ଭୁଜଙ୍ଗଧରବାବୁ ! ଆଖିଟା ମୋର ନିର୍ଭୁଲ । ଡାଇରେକ୍ଟରମାନେ ସିନା ଡିରେକ୍‌ସନ ଦିଅନ୍ତି, କିନ୍ତୁ ମୋର ସିଲେକ୍‌ସନଟାକୁ କେହି କେବେ ଖୁଣି ଦେଇପାରି ନାହାନ୍ତି ।

ସେଦିନ ଏକହଜାର ଏକ ଟଙ୍କାରେ ନିଉଥିଏଟର୍ସର ଏକ ସାମାଜିକ ଚିତ୍ରରେ ପ୍ରଧାନ ଭୂମିକା ପାଇଁ ମୁଁ ଚୁକ୍ତିବଦ୍ଧ ହେଲି । ଭଦ୍ରଲୋକ ଟ ୫୦୧ଙ୍କାର ଖଣ୍ଡିଏ ଚେକ୍ କାଟି ମୋ' ହାତରେ ଧରାଇ ଦେଇଗଲେ । ଗଲାବେଳକୁ କହିଗଲେ, ଆପଣଙ୍କର ଭବିଷ୍ୟତ ଅଛି ଚିତ୍ରାଙ୍ଗଦା ଦେବୀ । ଏଇ ଲାଇନ୍‌ରେ ମୁଁ ଅନେକ ବର୍ଷ ରହିଲିଣି କିନା ! ସେଇଥିପାଇଁ କହୁଚି । ଆପଣ ଯଦି ଟିକିଏ ମନଯୋଗ ସହକାରେ ଅଧ୍ୟବସାୟ କରିଯାଆନ୍ତି, ତେବେ ଦେଖିବେ ସମଗ୍ର ଚିତ୍ରଜଗତଟା ଦିନେ ଆପଣଙ୍କୁ ଚାହିଁବସିବ ।

ସେ ଉଠୁଥିଲେ । କମଳ କିନ୍ତୁ ଘର ଭିତରୁ କ୍ୟାମେରା ଆଣି କହିଲା, ଟିକିଏ ଅପେକ୍ଷା କରନ୍ତୁ ସାର୍ । ଆପଣଙ୍କ ନୂତନ ଚିତ୍ରର ଶୁଭ ମୋ'ରି କ୍ୟାମେରାରେ ଦିଆଯାଉ ।

ସେହିଦିନ ଠାରୁ ମୋ' ଜୀବନର ଶୁଭକ୍ଷଣ ଉପସ୍ଥିତ ହେଲା କହିବାକୁ ହେବ । ନିଉ ଥିଏଟର୍ସର ସେହି ଚିତ୍ରଟି ରିଲିଜ୍ ହେବା ପରେ ପରେ ମୋ' ଭାଗ୍ୟ ଖୋଲିଗଲା । ମୁଁ ମଧ୍ୟ ସେତେବେଳକୁ ବହୁତ କଥା ଶିଖି ଯାଇଥିଲି ।

କମଳ ମୋତେ ବିଭିନ୍ନ ଡିରେକ୍ଟର ଓ ପ୍ରଡ୍ୟୁସରମାନଙ୍କ ପାଖରେ ନେଇ

ପରିଚୟ କରାଇ ଦେଉଥିଲା । ପ୍ରଥମ ସାକ୍ଷାତରେ ହିଁ ସେମାନେ ମୋତେ ସ୍ତବ୍ଧ ହୋଇ ଚାହିଁ ରହୁଥିଲେ । ତା'ପରେ ଚା'ର ନିମନ୍ତ୍ରଣ ହେଉଥିଲା । ବଂଧୁତ୍ୱ, ଘନିଷ୍ଠତା, ସ୍ଥଳ ବିଶେଷରେ ଗଢ଼ି ଉଠୁଥିଲା ।

କମଳ 'ଫିଲ୍ମ ଷ୍ଟାର'ରେ ମୋର ପ୍ରଶସ୍ତି ଗାଇବାକୁ ଲାଗିଲା । ଦୁଇ ତିନି ବର୍ଷରେ ମୁଁ ବିଖ୍ୟାତ ହୋଇଗଲି ।

କିନ୍ତୁ ଏହି ବିଖ୍ୟାତ ହେବା ମୂଳରେ ମୋତେ ମୋ' ଇଚ୍ଛା ବିରୁଦ୍ଧରେ ଯେଉଁ ଦୁଷ୍କର୍ମମାନ କରିବାକୁ ପଡ଼ିଥିଲା, ସେ କଥା ଆଜି ମନେପଡ଼ିଲେ ହାଡ଼ରେ ନିଆଁ ଲାଗିଯାଉଛି । କମଳ କିନ୍ତୁ ସବୁବେଳେ କହୁଥିଲା, ନିଜକୁ ମୁକ୍ତ କରିଦେବୁ । ଦେହ, ମନ କୌଣସିଟାକୁ ନିଜର କରିରଖିବୁ ନାହିଁ । ମାଂସର ଲୋଭ ଦେଖାଇ ମୁହଁରେ ହସର ହାସ୍ନା ଫୁଟାଇ ପରକୁ ଆପଣାର କରିବାକୁ ହେବ । ଏ ଲାଇନ୍‌ର ଟେକ୍‌ନିକ୍ ଅଲଗା । ସେଥିପାଇଁ କିଛିଦିନ ତ୍ୟାଗ ସ୍ୱୀକାର କରିବାକୁ ହେବ । ତା'ପରେ ଯାଇ ଖ୍ୟାତି ଆଉ ଯଶର ପାହାଡ଼ ଉପରେ ବସିବାର ସୁଯୋଗ ପାଇବୁ ।

ଛି ଛି ଛି । ନରକ । ନରକଠାରୁ ଆଉରି ଯଦି କିଛି ଘୃଣ୍ୟ ଥାଏ, ତା'ହେଲେ ସେଇଟା ହେଉଚି ମୋ' ଜୀବନ । ସାନଠାରୁ ବଡ଼୍‌ଯାଏ କେତେ ଲୋକଙ୍କର ମନ କେତେ ଭାବରେ ଯେ ମୋତେ ରଖିବାକୁ ପଡ଼ିଛି, ସେଗୁଡ଼ା ମୁହଁ ଫିଟାଇ କହିପାରିବି ନାହିଁ । ବାର୍, ରେଷ୍ଟୁରେଣ୍ଟ, ଟ୍ୟାକ୍‌ସି, ରିକ୍‌ସା, ଦିନ, ରାତି – ଯେକୌଣସି ସମୟ । କିଛି ବାରଣ ନ ଥିଲା । ପ୍ରତ୍ୟେକର ମନ ରଖିବାକୁ ମୁଁ ଚେଷ୍ଟା କରିଥିଲି । ବଡ଼ ହେବାର ଯେଉଁ ମୋହାଞ୍ଜନ ମୋ' ଆଖିରେ ବୋଳା ହୋଇଥିଲା, ସେଥିରେ ଜୀବନଟାର ମୂଲ୍ୟ ମୁଁ ଅତି ତୁଚ୍ଛ ବୋଲି ଧରି ନେଇଥିଲି ।

କମଳ ମୋତେ ସବୁବେଳେ ଉତ୍ସାହ ଦେଉଥିଲା । ତା' ମନରେ କୌଣସି ବିକାର ନ ଥିଲା । ସେ ମୋତେ ସବୁବେଳେ ଅତି ସହଜରେ ଗ୍ରହଣ କରିପାରୁ ଥିଲା ।

ଚିତ୍ରଜଗତରେ ମୋର ଖ୍ୟାତି ବଢ଼ିବା ସଙ୍ଗେସଙ୍ଗେ କମଳର ପ୍ରସ୍ତାବ କ୍ରମେ, ମୁଁ ସ୍ୱତନ୍ତ୍ର ଭାବରେ ଜୀବନଯାପନ କରିବା ପାଇଁ ଅଲଗା ଘରଭଡ଼ା ନେଲି । ମୋ' ମନକୁ ମଧ୍ୟ କଥାଟା ପାଇଲା ।

କିନ୍ତୁ ଏହା ମୂଳରେ ଯେ କମଳର ଏକ ବିରାଟ ଚକ୍ରାନ୍ତ ଥିଲା, ସେ କଥା ମୁଁ ବୁଝିପାରି ନ ଥିଲି । ଆମେ ଅଲଗା ହୋଇଯିବା ପରେ ମଧ୍ୟ କମଳ ସହିତ ମୋର ନିତି ଦେଖାସାକ୍ଷାତ ହୁଏ । ମୁଁ କମଳ ଘରକୁ ଏବଂ କମଳ ମୋ' ଘରକୁ ପ୍ରାୟ ଯିବାଆସିବା କରୁ ।

ପୂର୍ବରୁ ମୋର ସମସ୍ତ ଟଙ୍କାପାଇସା କମଳ ହାତରେ ରହୁଥିଲା ଆଉ ସେ ତା'ର ମନଇଚ୍ଛା ଖର୍ଚ୍ଚ କରୁଥିଲା । ଏବେ ମୁଁ ସ୍ୱତନ୍ତ୍ର ଭାବରେ ରହିଲା ପରେ ସୁଦ୍ଧା କମଳ ଭାବିଥିଲା ମୋ' ଟଙ୍କାପଇସା ପୂର୍ବପରି ସେ ଖର୍ଚ୍ଚ କରିବ, କିନ୍ତୁ ସେଥିରେ ମୁଁ ଏକମତ ନ ହେବାରୁ ସେ ହସି ହସି କହିଲା, ମୁଁ ତ ସେଇଆ ଚାହେ ଚିତ୍ରା । ତୁ ସବୁ ଦୃଷ୍ଟିରୁ ସ୍ୱାବଲମ୍ବୀ ହେବା ଉଚିତ ।

ମୁଁ କମଳର କଥା ଶୁଣି ଆନନ୍ଦିତ ହୋଇଥିଲି ।

ଆଉଦିନେ କମଳ ମୋତେ ନିମନ୍ତ୍ରଣ କରିଥିଲା । ଗୋପନରେ କହିଥିଲା, ମୁଁ ବିବାହ କରୁଚି ଚିତ୍ରା । ତୋ'ର ଯିଏ ଭାଉଜ ହେବ, ତାକୁ ଆଜି ଆସିବାକୁ କହିଛି । ତୁ ନିଶ୍ଚୟ ଆସିବୁ ।

ମୁଁ ଯାଇଥିଲି । କିନ୍ତୁ ଯାଇ ଯେଉଁ ଭୁଲ୍ କରିଥିଲି, ସେ ଭୁଲ୍‌ର ପ୍ରାୟଶ୍ଚିତ୍ତ ଆଉ ବୋଧହୁଏ ଏ ଜୀବନରେ କରିପାରିବି ନାହିଁ ।

ସେଦିନ ଯାଇ ଦେଖିଲି, କମଳ ଘରର ଦୁଆର ବନ୍ଦ ହେଇରହିଛି । ଠେଲିଦେବା ମାତ୍ରେ ଖୋଲିଗଲା । ମୁଁ ନୂଆ ଭାଉଜ ଦେଖିବାର କୌତୂହଳ ଦମନ କରି ନ ପାରି ପାଦେ ପାଦେ କରି ଆଗକୁ ବଢ଼ିଲି । ବୈଠକଖାନାରେ କେହି ନ ଥିଲେ ।

କମଳର ଶୋଇବା ଘରେ ଯାଇ ଦେଖିଲି, ଗୋଟିଏ ତରୁଣୀ ରକ୍ତାକ୍ତ ହୋଇ ଚଟାଣ ଉପରେ ଲୋଟୁଛି । କାତର ବେଦନାରେ କଣ୍ଠ ତା'ର ରୁଦ୍ଧ ହୋଇଆସୁଛି । ସେଇ ମୁହୂର୍ତ୍ତରେ କ'ଣ କରିବା ମୋର କର୍ତ୍ତବ୍ୟ, ମୁଁ ଭାବି ସ୍ଥିର କରିପାରିଲି ନାହିଁ । ଦେଖିଲି ତରୁଣୀଟିର ପିଠିରେ ଗୋଟାଏ ଛୁରା ଭୁକିଛି । ମୁଁ ଛୁଟିଯାଇ ଛୁରାଟା ଟାଣି ବାହାର କରିଦେବା କ୍ଷଣି ତରୁଣୀଟି ସ୍ଥିର ହୋଇଗଲା । ଆଉ ସେଇ ମୁହୂର୍ତ୍ତରେ ଜଳିଉଠିଲା ମେଞ୍ଚାଏ ଆଲୁଅ । ମୋ' ହାତରେ ରକ୍ତାକ୍ତ ଛୁରାଟା ଝଲମଲ କରୁଥିଲା ।

କମଳ କ୍ୟାମେରାଟା କାନ୍ଧରେ ଝୁଲାଇ ମୋ' ସାମ୍ନାରେ ଆସି ଠିଆହେଲା । କହିଲା, ଏଇଟା କିନ୍ତୁ ଖୁବ୍ ଅନ୍ୟାୟ ହେଲା ଚିତ୍ରା । ପ୍ରତିଯୋଗୀଠାରୁ ଯେ ଏପରି ନୃଶଂସ ଭାବରେ ପ୍ରତିଶୋଧ ନେବାକୁ ହୁଏ, ମୁଁ ଅନ୍ତତଃ ତୋ'ଠାରୁ ଆଶା କରି ନ ଥିଲି ।

ମାନେ ? ମୋ' ଆଖିରେ ବିସ୍ମୟ ଫୁଟିଉଠିଲା ।

ହି ହି ହି । କମଳ ଏକ ବିଚିତ୍ର ହସ ହସି କହିଲା, ଇନ୍ଦ୍ରଧନୁ ଚିତ୍ରରେ ଏ ଝିଅଟି ତୋ'ର ପ୍ରତିଦ୍ୱନ୍ଦୀ ହୋଇ, ତୋ' କଣ୍ଟ୍ରାକ୍ଟଟି କ୍ୟାନ୍‌ସେଲ କରାଇଥିବା କଥା ମୋତେ ଜଣାଅଛି । ତା' ବୋଲି ପ୍ରତିଶୋଧଟା ଅନ୍ୟ ବାଟରେ କ'ଣ ନେଇ ହେଇ ନ ନଥାନ୍ତା ! ଏକଦମ୍ ତାକୁ ଖୁଣ୍ କରି ପ୍ରତିଶୋଧ ନେବାଟା କ'ଣ ଠିକ୍ ହେଲା ?

ଏ ତୁମେ କ'ଣ କହୁଛ କମଳ ଭାଇ ! ମୁଁ ସାହାଜାଦାକୁ ଖୁଣ୍ କରିଚି ? ମୋ' ନାଁରେ ଏ ମିଥ୍ୟା ଅଭିଯୋଗ ତମେ ଦେଉଚ ! ପାଦ ଦୁଇଟା ମୋର ଥର ଥର ହେଉଥିଲା । ସାହାଜାଦାର ପ୍ରାଣହୀନ ଦେହଟା ଯେପରି ରହି ରହି ହଲି ଯାଉଥିଲା ।

ହି ହି ହି । କମଳ ପୁଣି ହସିଉଠିଲା । ମୋତେ ସିନା ଫାଙ୍କିଦେଇ ପାରିବୁ ଚିତ୍ରା, କିନ୍ତୁ ମୋ' କ୍ୟାମେରାଟାକୁ ତ ଫାଙ୍କି ଦେଇ ହେବ ନାହିଁ । ଏଇଟା କିନ୍ତୁ ବଡ଼ ଅନ୍ୟାୟ ହେଲା ଚିତ୍ରା । ସାହାଜାଦାକୁ ମୁଁ ଡାକିଥିଲି ଗୋଟାଏ ଇଣ୍ଟରଭିଉ ପାଇଁ । ଅବଶ୍ୟ ତାକୁ ଘରେ ବସାଇ କିଛି ସମୟ ବାହାରକୁ ଯିବାକୁ ପଡ଼ିଥିଲା । ଏହାରି ଭିତରେ ତୁ ଆସି ଯେ ଏପରି ଏକ ଅପ୍ରୀତିକର କାଣ୍ଡ କରିବସିବୁ...

କିନ୍ତୁ କମଳ ଭାଇ ! ମୋତେ ବିଶ୍ୱାସ କର । ମୁଁ ମୁଁ...

କମଳ ସାହାଜାଦାର ନିଥର ଦେହର ଗୋଟାଏ ଫଟୋ ଉଠାଇ ମୋ' ମୁହଁକୁ ଚାହିଁ କହିଲା, ଖୁବ୍ ଅନ୍ୟାୟ, ଖୁବ୍ ଅନ୍ୟାୟ ଚିତ୍ରା । ମୋ' ଘରେ ଅନ୍ତତଃ ଏପରି କରିବା ଉଚିତ ହୋଇନାହିଁ । ଥାନା, ପୋଲିସ୍ ଏସବୁ ଭିତରକୁ ଯିବାର ଇଚ୍ଛା ମୋର କେବେ ନ ଥିଲା । ତା'ଛଡ଼ା ତୋ'ର ଭବିଷ୍ୟତ ଉପରେ ନିଜେ ତୁ କୁଠାରାଘାତ କଲୁ ।

ମୁଁ ମୋ' ନିଜତ୍ୱ ହରାଇ ବସିଥିଲି । ଛୁଟିଯାଇ କମଳର ଗୋଡ଼ ଦୁଇଟା ଯାବୁଡ଼ି ଧରି ଅନୁନୟ ସ୍ୱରରେ କହିଲି, ମୋତେ ବଞ୍ଚାଅ କମଳ ଭାଇ । ମୋର ଖ୍ୟାତି ଯଶ ଯେପରି ଅମଳିନ ରହେ, ସେଥିପାଇଁ ଚେଷ୍ଟା କର । ବିନିମୟରେ ମୁଁ ମୋର ସର୍ବସ୍ୱ ଦାନ କରିବାକୁ ପ୍ରସ୍ତୁତ ଅଛି ।

ସେଇଦିନ ଠାରୁ ମୋ' ଜୀବନଟା କମଳ ହାତରେ ବନ୍ଧା ପଡ଼ିଲା । ମୋତେ କମଳର ପ୍ରତିଟି କଥା ମାନି ଚଳିବାକୁ ହେଲା । ମୁଁ ତା' ହାତର କଣ୍ଢେଇ ହୋଇଗଲି । ମୋତେ ସେ ଇଚ୍ଛା ଅନୁସାରେ ନଚେଇବାକୁ ଲାଗିଲା । ମୋ' ଆୟର ୭୫ ଭାଗ ମୋ'ଠାରୁ ସେ ନେଇ ଯାଉଥିଲା, ବାକି ୨୫ ଭାଗରେ ମୋତେ ଚଳିବାକୁ ହେଉଥିଲା ।

ମୋ' ମନର ସମସ୍ତ ସରାଗ ଧୀରେଧୀରେ ମଉଳି ପଡୁଥିଲା । କିନ୍ତୁ ବାହାରେ ଖ୍ୟାତି ମୋର ଦିନକୁ ଦିନ ବଢ଼ିବାରେ ଲାଗିଥିଲା । ସେଥିପାଇଁ କମଳର ଚେଷ୍ଟା ଥିଲା ଅଦମ୍ୟ । ଅବଶ୍ୟ ମୋ' ଖ୍ୟାତି ସହିତ ମୋ' ଆର୍ଥିକ ସଂଗତିର ପ୍ରଶ୍ନ

ଥିଲା, ସେଥିରେ ଲାଭ ଥିଲା କମଳର । ଏ କଥା ମୁଁ ଆଉ କମଳ ଛଡ଼ା ଅନ୍ୟ କେହି ଜାଣିପାରୁ ନ ଥିଲେ । ଉପାୟ ନ ଥିଲା । ମୋର ମଧ୍ୟ ପାଟି ଫିଟାଇବାର ପଥ ନ ଥିଲା ।

ବିଷଣ୍ଣ ଓ ବିରସ ଦିନଗୁଡ଼ିକ କଟିବାକୁ ଚାହୁଁ ନ ଥିଲେ ।

ହଠାତ୍ ଦିନେ ସତାଂଶୁ ଠାରୁ ଖଣ୍ଡିଏ ଚିଠି ପାଇଲି । ତାହା ଏପରି ଆକସ୍ମିକ ଆଉ ଅଭାବିତ ଥିଲା ଯେ, ସେଇଦିନଠାରୁ ମୋ' ମନରେ ନୂଆକରି ପୁଣି ଆଶା ସଂଚାର ହେଲା ।

ସତାଂଶୁ ଲେଖିଥିଲା, ତୁ ମୋ' ଉପରେ ରାଗ ଅଭିମାନ କରି ଚାଲିଗଲୁ । ମୁଁ ମଧ୍ୟ ତୋତେ ଆଉ ଫେରେଇ ଆଣିବାକୁ ଆଗ୍ରହ ପ୍ରକାଶ କଲି ନାହିଁ । ତା'ର କାରଣ ଆଉ ଦୀର୍ଘ କେତେ ବର୍ଷ ପରେ ସୂଚେଇ କିଛି ଲାଭ ନାହିଁ ।

ମୁଁ ବିବାହିତ ଜୀବନ ପ୍ରାୟ ପାଞ୍ଚଛଅ ବର୍ଷ କଟାଇବା ପରେ ସ୍ତ୍ରୀଙ୍କର ବିୟୋଗ ଘଟିଛି । ମୁଁ ଖାଲି ଗୋଟିଏ ଯନ୍ତ୍ରପରି ଏ କେତୋଟି ବର୍ଷ କଟାଇ ଆସିଲି । ସ୍ତ୍ରୀଙ୍କ ସହିତ ମୋର ସମ୍ବନ୍ଧ ଥିଲା କେବଳ କର୍ତ୍ତବ୍ୟ ପାଳନ କରିବା ପରି । ତୁ କିନ୍ତୁ ମୋ' ଜୀବନରେ ଏକ ବିରାଟ ଦାଗ କାଟିଦେଇଗଲୁ । ଯେଉଁ ଦାଗ ଆଜିଯାଏ ବି ଅଲିଭା ରହିଯାଇଛି । ମୋର ବିବାହିତ ଜୀବନର ପ୍ରତିଟି ମୁହୂର୍ତ୍ତରେ ତୋ' ଅଭାବ ମୁଁ ଅନୁଭବ କରିଛି । ମୋ' ସ୍ତ୍ରୀଙ୍କ ମଧ୍ୟରେ ମୁଁ ତୋତେ ଖୋଜିବାକୁ ଚେଷ୍ଟା କରିଛି, କିନ୍ତୁ ପାଇନାହିଁ । ଜୀବନର ଦୁଃସହ ଜ୍ୱାଳାରେ ମୁଁ ଜଳିପୋଡ଼ି ମରୁଛି ।

ଥାଉ, ସେ ସବୁ ଆଉ ତୋତେ ଜଣାଇ କିଛି ଲାଭ ନାହିଁ । ତୋ'ର ଖ୍ୟାତି ଆକାଶଚୁମ୍ବୀ । ହୁଏତ ମୋ'ଠାରୁ ବହୁ ବିରାଟ ବିରାଟ ଲୋକ ତୋ' ଦୁଆରେ ଆଜି ଭିଡ଼ ଜମଉଥିବେ । ଟିକିଏ ହସ, ପଦେ କଥା ଶୁଣି ସେମାନଙ୍କର ଜ୍ୱାଳା ମେଣ୍ଟାଉଥିବେ । ତୋ' ପାଖରେ ମୋର ଏହି ଚିଠିଖଣ୍ଡିକ ପହଞ୍ଚିବ କି ନାହିଁ ମୋତେ ଜଣା ନାହିଁ । ଯଦିବା ପହଞ୍ଚିବ, ତେବେ ତୁ ଏହାକୁ କିପରି ଗ୍ରହଣ କରିବୁ ତା' ମଧ୍ୟ ଜାଣେ ନାହିଁ । କିନ୍ତୁ ଏତିକି ଜାଣିଥା ରାଧା । ଆଜି ତୋ' ଚାଲିଯିବାର ବହୁ ବର୍ଷ ପରେ ମଧ୍ୟ ମୁଁ ତୋତେ ଅନ୍ତର ମନରେ ଜିଆଇ ରଖିଛି ।

ବାପା ବୋଉ ସମସ୍ତେ ମୋତେ ଛାଡ଼ି ଚାଲିଯାଇଚନ୍ତି । ସ୍ତ୍ରୀ ମଧ୍ୟ ଅନେକ ଦିନରୁ ଚାଲିଗଲେଣି । ବର୍ତ୍ତମାନ ଏ ଦୁନିଆରେ ମୁଁ ଏକା, ଅତ୍ୟନ୍ତ ଏକା ।

ମୁଁ ଏଇ ଚିଠି ଖଣ୍ଡିକର ଉତ୍ତର ତୋ'ଠାରୁ ଆଶା କରୁଛି । ତୋ'ର ମନୋବୃତ୍ତି କିପରି ଜାଣିପାରିଲେ, ମୁଁ ତୋତେ ଗୋଟିଏ ପ୍ରସ୍ତାବ ଦେବି ।

ପ୍ରସ୍ତାବ । ପୁଣି ସତାଂଶୁ ଦେବ ମୋତେ ପ୍ରସ୍ତାବ !!

ସେ ପ୍ରସ୍ତାବ ଯାହା ହେଉନା କାହିଁକି, ସଙ୍ଗେ ସଙ୍ଗେ ମୁଁ ସତାଂଶୁକୁ ଉତ୍ତର ଲେଖି ପଠାଇଥିଲି । ଆଉ ଲେଖିଥିଲି, ତା'ର ଯେକୌଣସି ପ୍ରସ୍ତାବ ଗ୍ରହଣ କରିବା ପାଇଁ ଏବେ ମଧ୍ୟ ମୁଁ ଚାହିଁବସିଛି ।

କିନ୍ତୁ ସତାଂଶୁ ମୋ' ଚିଠିର ଉତ୍ତର ଆଉ ଦେଲା ନାହିଁ । କେବଳ ଗୋଟାଏ କ୍ଷୀଣ ଆଶା ମୋ' ମନ ଭିତରେ ସବୁବେଳେ ଜିଇ ରହିଥିଲା । ମୁଁ ଆଶା କରିଥିଲି, ସତାଂଶୁ ମୋତେ ଚିଠି ଲେଖି ଜଣାଇବ, ମୁଁ ତତେ ବିବାହ କରିବାକୁ ଚାହେଁ ରାଧା, ତୋ'ର ସମସ୍ତ କାଳିମା ଗରଳକୁ ମୁଁ ନୀଳକଣ୍ଠ ପରି ପାନକରି ତୋତେ ନିଜର କରିବାକୁ ଚାହେ !!

କିନ୍ତୁ କାହିଁ ?

ପ୍ରତୀକ୍ଷା, କେବଳ ପ୍ରତୀକ୍ଷା ।

ପ୍ରତୀକ୍ଷାର କ'ଣ ଆଉ ଶେଷ ନାହିଁ ?

ଲେଖା ଖାତାଟି ଶେଷ ହୋଇଗଲା । ଏଇଟା ଯେ ଚିତ୍ରାଙ୍ଗଦାର ଆତ୍ମଚରିତ, ସେଥିରେ ଦ୍ୱିଧା କରିବାର କିଛି ନ ଥିଲା । ଏହାପରେ ଆଉ କ'ଣ ଚିତ୍ରାଙ୍ଗଦା ଜୀବନରେ କିଛି ଘଟି ନାହିଁ ? ସେ କେବଳ ସତାଂଶୁର ପ୍ରତୀକ୍ଷାରେ ଏତେ ଦିନଯାଏ ବସିରହିଥିଲା ?

ସତ୍ୟବ୍ରତ ହସି ହସି ଘର ମଧ୍ୟରେ ପ୍ରବେଶ କଲା ।

କହିଲା : ନା କେବଳ ପ୍ରତୀକ୍ଷା ନୁହେଁ, ଚିତ୍ରାଙ୍ଗଦାର ପ୍ରତୀକ୍ଷାର ଶେଷ ଦିନେ ହୋଇଥିଲା ଏବଂ ତାହାରି ଶେଷ ପରିଣତି ଯୋଗୁ ହୁଏତ ଚିତ୍ରାଙ୍ଗଦାକୁ...

: ଆତ୍ମହତ୍ୟା କରିବାକୁ ପଡ଼ିଲା । ମୁଁ ପାଦପୂରଣ କଲି ।

ସତ୍ୟବ୍ରତ କାଲି ରାତିରେ ଖାତାଟି ପଢ଼ି ଶେଷ କରିଥିଲା ଏବଂ ତା'ପରେ ମୋତେ ପଢ଼ିବାକୁ ଦେଇ ସେ କେଉଁଆଡ଼େ ବାହାରି ଯାଇଥିଲା । କାଲି ମୁଁ ବହୁତ ରାତିରେ ଶୋଇଥିବାରୁ ଆଜି ଉଠୁ ଉଠୁ ପ୍ରାୟ ନଟା ବାଜିଯାଇଥିଲା । ତା'ପରେ ଖାତାଟି ମୁଁ ପଢ଼ିବାକୁ ଆରମ୍ଭ କରି ତିନିଚାରି ଘଣ୍ଟାରେ ଶେଷ କରିଥିଲି ।

: ତଥାପି ସନ୍ଦେହ ଅଛି ବନ୍ଧୁ । ଥାନାକୁ ଯାଇଥିଲି । ଧୂର୍ଜଟବାବୁଙ୍କ ସହିତ ଦେଖା ହେଲା । ପୋଷ୍ଟମର୍ଟମ ରିପୋର୍ଟ ବିଲ୍‌କୁଲ ଫାଙ୍କା । ସନ୍ଦେହର କୌଣସି କାରଣ ନାହିଁ । ତେଣୁ ଧୂର୍ଜଟବାବୁ ନିଶ୍ଚିନ୍ତ ଯେ, ଚିତ୍ରାଙ୍ଗଦାର କେସ୍‌ଟା ଆତ୍ମହତ୍ୟା ଛଡ଼ା ଅନ୍ୟ କିଛି ହୋଇପାରେନା ।

: ଆଉ ତୁ ସନ୍ଦେହ କରିବାର କ'ଣ ଅଛି ? ଚିତ୍ରାଙ୍ଗଦାର ଆତ୍ମଚରିତ ପଢ଼ିସାରିବା ପରେ ସ୍ପଷ୍ଟ ଜାଣିହେଉଛି ଯେ, ବ୍ୟର୍ଥତାର ଚରମ କଷାଘାତ ସହି ନ ପାରି ଚିତ୍ରାଙ୍ଗଦା ଆତ୍ମହତ୍ୟା କରିଛି ।

: ତା' ନୁହେଁ ବନ୍ଧୁ ! ତା' ନୁହେଁ । ଏଇଥିପାଇଁ ସାଧାରଣ ଲୋକ ଆଉ ଆମ ଭିତରେ ପାର୍ଥକ୍ୟଟା ଯଥେଷ୍ଟ ରହିଯାଇଛି । ମୋ' ହାତରେ ଧରିଥିବା ଚିତ୍ରା[illegible]ର ଆତ୍ମଚରିତ ଖାତାଟି ଆଡ଼େ ଚାହିଁ ସତ୍ୟବ୍ରତ କହିଲା, ପଢ଼ା ଶେଷ ହୋଇ...

ମୁଁ ହଁ କହି ଖାତାଟି ତା'ଆଡ଼େ ବଢ଼ାଇ ଦେଲି ।

ସେ ପକେଟରୁ ଖଣ୍ଡିଏ କାଗଜ ବାହାର କରି କହିଲା : ଏଇ କାଗଜ ଖଣ୍ଡିକ ଚିହ୍ନିପାରୁଚୁ ?

ସେ ଖଣ୍ଡିକ ମୁଁ ଏହା ପୂର୍ବରୁ ଦେଖିଥିଲି । ଚିତ୍ରାଙ୍ଗଦା ଏହି ଲେଖା ଖଣ୍ଡିକ ଟେବୁଲ ଉପରେ ଛାଡ଼ିଯାଇ ଆତ୍ମହତ୍ୟା କରିଥିଲା । ସେଇ ଖଣ୍ଡିକ ବୋଧହୁଏ ସତ୍ୟବ୍ରତ ଧୂର୍ଜଟବାବୁଙ୍କଠାରୁ ମାଗି ଆଣିଛି ।

ମୁଁ କୌଣସି ଉତ୍ତର ଦେବା ପୂର୍ବରୁ ସତ୍ୟବ୍ରତ କହିଲା : ତୋ ହାତରେ ଥିବା ଖାତାଟି ଖୋଲିଲୁ ।

ମୁଁ ଖୋଲିଲି ।

: ଏ କାଗଜ ଆଉ ସେ କାଗଜ ଭିତରେ କୌଣସି ତଫାତ୍ ଅଛି ?

ମୁଁ ଖାତା ସହିତ କାଗଜ ଖଣ୍ଡିକ ମିଳେଇ ଦେଖିଲି, ତିଳେମାତ୍ର ତଫାତ୍ ନାହିଁ । ଯେପରି ମନେହେଉଛି ଏଇ ଖାତାରୁ କାଗଜ ଖଣ୍ଡିକ ଛିଡ଼ାହୋଇ ଲେଖାହୋଇଛି । ସତ୍ୟବ୍ରତ ମୁହଁକୁ ମୁଁ ବିସ୍ଫାରିତ ନୟନରେ ଅନାଇ ରହିଲି ।

ସତ୍ୟବ୍ରତ କହିଲା : ଖାତାର ଲେଖା ଯେଉଁଠି ଶେଷ ହୋଇଛି, ଲକ୍ଷ୍ୟକରି ଦେଖିଲୁ, ସେଠାରୁ କେତେ ଖଣ୍ଡ କାଗଜ ଛିଡ଼ା ହୋଇଛି ?

ଏତେବେଳଯାଏ ସେଇଟା ମୁଁ ଲକ୍ଷ୍ୟକରି ନ ଥିଲି । ଖାତାଟିରେ ପୃଷ୍ଠାଙ୍କ ଦିଆଯାଇ ନ ଥିବାରୁ ସେତକ ଧରିବାର ଉପାୟ ନ ଥିଲା । ସତ୍ୟବ୍ରତ ଖାତାଟି

ମେଲେଇ ମୋତେ ଦେଖେଇ ଦେଲା ଯେ, ପ୍ରାୟ ସାତଆଠଖଣ୍ଡ କାଗଜ ଖାତାରୁ ଛିଡ଼ା ହୋଇଯାଇଛି ।

ସତ୍ୟବ୍ରତ କହିଲା : ଏ ଖଣ୍ଡିକ ସେହି ପୃଷ୍ଠାଗୁଡ଼ିକ ମଧ୍ୟରୁ ଖଣ୍ଡିଏ । ହୁଏତ ଏହା ସହିତ ବାକି ନଷ୍ଟ ହୋଇଥିବା ପୃଷ୍ଠାଗୁଡ଼ିକ ଲେଖା ହୋଇଥିଲା ।

: କିନ୍ତୁ... ମୁଁ କ'ଣ ପଚାରିବି କିଛି ସ୍ଥିର କରିପାରିଲି ନାହିଁ ।

ସତ୍ୟବ୍ରତ ମୋ' ମନୋଭାବ ବୁଝିପାରି କହିଲା : ଭୁଜଙ୍ଗଧରବାବୁ ଓରଫ କମଳ ହୁଏତ ନାଟକର ଏକମାତ୍ର ନାୟକ ।

କିନ୍ତୁ ଏ ଖାତାଟା ତ ରହୁଥିଲା ମିତ୍ରବିନ୍ଦା ଘରେ, ପୁଣି ବାକ୍ସରେ ଚାବି ଦିଆହୋଇ । ଅଥଚ ମିତ୍ରବିନ୍ଦା ଭୁଜଙ୍ଗଧରକୁ କିମ୍ବା ଭୁଜଙ୍ଗଧର ମିତ୍ରବିନ୍ଦାକୁ ଚିହ୍ନି ନ ଥିଲେ ବା ଜାଣି ନ ଥିଲେ ! ସେ ଖାତାରୁ ଭୁଜଙ୍ଗଧର ପୃଷ୍ଠା ଛିଡ଼େଇ ଆଣିଲା କିପରି ?

: ମିଷ୍ଟ୍ରି ତ ସେଇଠି ବନ୍ଧୁ । ଦ୍ୱିତୀୟ ଥର ମିତ୍ରବିନ୍ଦା ଗୃହରେ ପ୍ରବେଶ କରି ମୁଁ ବୁଝିପାରିଲି ଯେ, ମିତ୍ରବିନ୍ଦା ଆମ ପାଖରେ ଅନେକ କଥା ଗୋପନ କରୁଛି ଏବଂ ସବୁଠାରୁ ସେ ମିଛକଥା କହିଛି ଭୁଜଙ୍ଗଧର ସମ୍ପର୍କରେ । କାରଣ ଭୁଜଙ୍ଗଧରର ଯେ ମିତ୍ରବିନ୍ଦା ସହିତ ଘନିଷ୍ଠ ସମ୍ପର୍କ ଅଛି, ମୁଁ ତାହା ଅତି ସହଜରେ ଅନୁମାନ କରିନେଇଥିଲି ।

: କିପରି ?

: ମିତ୍ରବିନ୍ଦାର ବୈଠକଖାନାରେ ଖଣ୍ଡିଏ ବିରାଟ ଫଟୋଗ୍ରାଫ୍ ଟଙ୍ଗା ହୋଇଥିବାର ତୁ ଲକ୍ଷ୍ୟ କରିଚୁ ?

: ହଁ, ସେ ତ ଦୁଇ ଭଉଣୀଙ୍କର ।

: କିନ୍ତୁ ବନ୍ଧୁ ! ସେଇ ଫଟୋଗ୍ରାଫ୍‌ଟି 'ଇଲଷ୍ଟ୍ରେଟେଡ୍ ଉଇକ୍‌ଲି'ର ଫଟୋ କମ୍ପିଟେସନରେ ଦ୍ୱିତୀୟ ପୁରସ୍କାର ପାଇଥିଲା ଏବଂ ତା'ର ଫଟୋଗ୍ରାଫ୍‌ର ଥିଲେ ସ୍ୱୟଂ ଭୁଜଙ୍ଗଧର ସେନାପତି ।

ମୁଁ ଯେପରି ଆକାଶରୁ ପଡ଼ିଲି ।

ସତ୍ୟବ୍ରତ ସ୍ମିତହସି କହିଲା : ମୋର ସେଇ ଧାରଣାଟାକୁ ଦୃଢ଼ କରିବା ପାଇଁ ମୁଁ ଯାଇଥିଲି 'ଟାଇମ୍‌ସ ଅଫ୍ ଇଣ୍ଡିଆ' ଅଫିସକୁ । । ପ୍ରାୟ ବର୍ଷକ ତଳର କଥା ତ ! ଠିକ୍ ମନେପଡୁ ନ ଥିଲା । କିନ୍ତୁ ସେଠାରୁ ଫାଇଲ୍ ଦେଖିଆସିବା ପରେ

ଧାରଣା ମୋର ବଦଳିବାର ଆଉ କିଛି ନାହିଁ । ବାଟରେ ମଧ୍ୟ ଧୂର୍ଜଟବାବୁଙ୍କଠାରୁ ପୋଷ୍ଟମର୍ଟମ ରିପୋର୍ଟ ସମ୍ବନ୍ଧରେ ଜାଣିଆସିଲି ଏବଂ ଚିଠିଟି ଘଣ୍ଟାକ ଭିତରେ ଫେରେଇ ଦେବା ସର୍ତ୍ତରେ ମାଗି ଆଣିଛି ।

ମୁଁ ସତ୍ୟବ୍ରତର କଥା ଉପରେ ତଥାପି ଆସ୍ଥା ସ୍ଥାପନ କରିପାରୁ ନ ଥିଲି । ଭାବୁଥିଲି, ମିତ୍ରବିନ୍ଦା ତା' ଭଉଣୀ ସହିତ ଏପରି ବିଶ୍ୱାସଘାତକତା କରିବାର କାରଣ କ'ଣ ଥିଲା ?

ପଚାରିଲି : ଏଥିରେ ମିତ୍ରବିନ୍ଦାର ଲାଭ କେଉଁଠି ହେଲା ?

: ଅନୁସନ୍ଧାନ କଲେ ସବୁ ତଥ୍ୟ ଗୋଟି ଗୋଟି ହୋଇ ବାହାରି ପଡ଼ିବ ବନ୍ଧୁ ! ମିତ୍ରବିନ୍ଦା ଘରେ ଯେ ଭୁଜଙ୍ଗଧରର ଅବାଧ ଗତି ଥିଲା, ବର୍ତ୍ତମାନ ତାହା ମୁଁ ସହଜରେ ଅନୁମାନ କରିପାରୁଛି । ଆଉ ସେହି ଅବାଧ ଗତିର ପରିଣତି ହେଉଛି, ଚିତ୍ରାଙ୍ଗଦାର ଡାଇର ଖାତାରୁ ପୃଷ୍ଠାଚୋରୀ ।

: ସେ କଥା କ'ଣ ମିତ୍ରବିନ୍ଦା ଜାଣିନାହିଁ ?

: ହୁଏତ ଜାଣିନାହିଁ । କାରଣ ମିତ୍ରବିନ୍ଦାର ପରାମର୍ଶକ୍ରମେ ଡାଇର ପୃଷ୍ଠା ଚିରା ହୋଇଥିଲେ ସେ ହୁଏତ ଡାଇରଟା ବାକ୍ସ ସହ ଆମକୁ ସମର୍ପଣ କରିବାକୁ ସାହସ କରିପାରି ନ ଥାନ୍ତା ।

ମୁଁ ବଡ଼ ଚିନ୍ତିତ ହୋଇପଡ଼ିଥିଲି । ପଚାରିଲି : ତୋ' ଅନୁମାନ ଯଦି ସତ୍ୟ ହୁଏ ଏବଂ ଭୁଜଙ୍ଗଧରବାବୁଙ୍କ ଷଡ଼ଯନ୍ତ୍ରକ୍ରମେ ଚିତ୍ରାଙ୍ଗଦା ଯଦି ନିହତ ହୋଇଥାଏ, ତେବେ ମିତ୍ରବିନ୍ଦା କ'ଣ ଏହି ଷଡ଼ଯନ୍ତ୍ରର ସାମାନ୍ୟ ସୂଚନା ବି ପାଇଲା ନାହିଁ ?

: ତା' ବି ହୋଇପାରି ଥାଏ । ସତ୍ୟବ୍ରତ ନିର୍ବିକାର କଣ୍ଠରେ କହିଲା ।

: ତା'ହେଲେ ?

: ତା'ହେଲେ ଆଉ କ'ଣ ! ବର୍ତ୍ତମାନ ଆମେ ନିଶ୍ଚିନ୍ତ ଯେ, ଚିତ୍ରାଙ୍ଗଦା ଆତ୍ମହତ୍ୟା କରିନାହିଁ । ତାକୁ ହତ୍ୟା କରାହୋଇଛି । ଆଉ ହତ୍ୟାକାରୀ ?

: ଭୁଜଙ୍ଗଧର ସେନାପତି । ମୁଁ କହିଲି ।

ସତ୍ୟବ୍ରତ ହୋ ହୋ ହୋଇ ହସିଉଠିଲା । କହିଲା : ଯେତେ ସହଜରେ ଭୁଜଙ୍ଗଧରକୁ ହତ୍ୟାକାରୀ ବୋଲି କହିପାରିଲୁ, ସେତେ ସହଜରେ ପ୍ରମାଣ କରିପାରିବୁ ?

: ପ୍ରମାଣ ଆଉ କ'ଣ ! ପୋଲିସ୍ ତ କେସ୍‌ଟାକୁ ଆତ୍ମହତ୍ୟା ବୋଲି ସ୍ୱୀକାର କରିନେଇଛି । ତୁ ଆଉ ଅଧିକ କ'ଣଟା କରିବୁ ?

: ବନ୍ଧୁ ! ସତ୍ୟସନ୍ଧାନୀ ସତ୍ୟବ୍ରତ ମହାପାତ୍ର ଦୋଷୀକୁ ଏତେ ସହଜରେ କ୍ଷମା ଦେଇପାରିବ ନାହିଁ ।

: ଆଉ ?

: ଶାସ୍ତି ! ଅପରାଧୀକୁ ଶାସ୍ତି ଦେବାହିଁ ମୋର ଧର୍ମ ।

: କିନ୍ତୁ ପ୍ରମାଣ ?

: ସଂଗ୍ରହ କରିବାକୁ ହେବ ।

: କିପରି ସଂଗ୍ରହ କରିବୁ ମୁଁ ତ କିଛି ଭାବିପାରୁ ନାହିଁ ।

: ଏ ତ ଗଳ୍ପ ଉପନ୍ୟାସ ନୁହେଁ ବନ୍ଧୁ ! ସତ୍ୟବ୍ରତ ସ୍ମିତହସି କହିଲା, ପୁରାପୁରି କ୍ରିମିନଲୋଜି ! ଧୈର୍ଯ୍ୟ ଆଉ ସାଧନା, ଦୁଇଟାର ଆବଶ୍ୟକ । ତୋତେ ବୋଧହୁଏ କାଲି କଲମରେ ରୂପ ଦେବାକୁ ଅସୁବିଧା ହେବନାହିଁ ।

: କିନ୍ତୁ ମୁଁ ତ କ୍ରାଇମ୍‌ଷ୍ଟୋରି କେବେ ଲେଖେନି ଭାଇ !

: କ'ଣ ଶସ୍ତା ସାହିତ୍ୟ ହୋଇଯିବା ଭୟରେ ?

ମୁଁ ହସିଲି । କହିଲି ନା ସେ ସବୁ ଭୟ ମୋର ନାହିଁ ଯେ, ତେବେ ସେ ଷ୍ଟୋରି ଲେଖିବାପାଇଁ ଭିନ୍ନ ଟେକ୍‌ନିକ୍‌ର ପ୍ରୟୋଜନ ହୋଇଥାଏ, ସେ ଯା'ହେଉ ମୁଁ ଚିତ୍ରାଙ୍ଗଦାର ଆତ୍ମହତ୍ୟା ଘଟଣାଟିକୁ ବାସ୍ତବ ରୂପ ଦେବାକୁ ଚେଷ୍ଟା କରିବି । ସେ ତ ପରର କଥା । କିନ୍ତୁ ବର୍ତ୍ତମାନ ତୁ ଅନୁସନ୍ଧାନ କେଉଁଠୁ ଆରମ୍ଭ କରିବୁ ?

: ସେଇଠୁ । ଯେଉଁଠୁ ଡାଇରର ଲେଖା ଶେଷ ହୋଇଛି । ପ୍ରତୀକ୍ଷା ଆଉ ପ୍ରତୀକ୍ଷା । ମୋତେ ପ୍ରଥମେ ଦେଖିବାକୁ ହେବ ଚିତ୍ରାଙ୍ଗଦାର ସେହି ପ୍ରତୀକ୍ଷାର ଅବସାନ ହୋଇଥିଲା କି ନାହିଁ ?

: ତା' ମାନେ ?

ମୋତେ ସତାଂଶୁ ସହିତ ଦେଖା କରିବାକୁ ହେବ ।

ଶେଷ ପର୍ଯ୍ୟନ୍ତ ଚିତ୍ରାଙ୍ଗଦାର ଆତ୍ମହତ୍ୟା ରହସ୍ୟ ମୋତେ କାଗଜ କଲମରେ ରୂପ ଦେବାକୁ ପଡ଼ିଲା । ସତ୍ୟବ୍ରତ ତା' ଅନୁସନ୍ଧାନ ଶେଷକରି ଘଟଣାଟା ସମ୍ବନ୍ଧରେ ଗୋଟାଏ ଛକ କାଟିଦେଲା । ଗଳ୍ପଟି କେଉଁଠୁ ଓ କିପରି ଆରମ୍ଭ କଲେ, ଏ ଧରଣର ଗଳ୍ପର ଧର୍ମରକ୍ଷା ହେବ – ସବୁ ସେ ମୋତେ ବୁଝେଇ ଦେଲା । ଆଉ

କହିଲା, ଚିତ୍ରାଙ୍ଗଦାର ଡାଇରଟିକୁ ପୁରାପୁରି ଭାବରେ ଲେଖା ଭିତରେ ରଖିଦେବା ପାଇଁ । ତା'ହେଲେ ଗଳ୍ପଟା ଆହୁରି ଜୀବନ୍ତ ହୋଇପାରିବ ।

ମୁଁ ସତ୍ୟବ୍ରତର କଥା ରକ୍ଷା କରିଚି ମାତ୍ର ।

ଏ ରହସ୍ୟରେ ଯବନିକାପାତ କରିବା ପାଇଁ ସତ୍ୟବ୍ରତକୁ ଅବଶ୍ୟ ପନ୍ଦର ଦିନରୁ ଅଧିକ ସମୟ ଲାଗିଥିଲା ।

ହଁ, ତା'ପରେ ଶୁଣନ୍ତୁ । ଚିତ୍ରାଙ୍ଗଦାର ଡାଇର ଯେଉଁଠୁ ଶେଷ ହୋଇଥିଲା, ଏ କାହାଣୀ ପୁଣି ମୁଁ ସେଉଠୁ ଆରମ୍ଭ କଲି ।

କେବଳ ପ୍ରତୀକ୍ଷା ଆଉ ପ୍ରତୀକ୍ଷା ।

ପ୍ରତୀକ୍ଷାର କ'ଣ ଶେଷ ନାହିଁ ?

ଚିତ୍ରାଙ୍ଗଦାର ଏହି ପ୍ରତୀକ୍ଷା ଦିନେ ଶେଷ ହୋଇଥିଲା । ଚିତ୍ରାଙ୍ଗଦାଠାରୁ ଚିଠି ପାଇ ସତାଂଶୁ ସଙ୍ଗେସଙ୍ଗେ ଉତ୍ତର ଦେଇ ପଠାଇଥିଲା । କିନ୍ତୁ ସେ ଚିଠିଖଣ୍ଡିକ ଚିତ୍ରାଙ୍ଗଦା ହାତଯାଏ ଆସି ନ ଥିଲା । ମଝିରେ ଚିଠିଟି ହସ୍ତଗତ କରିଥିଲା କମଳ ।

ସତାଂଶୁ ସେ ଚିଠିରେ ଲେଖିଥିଲା – ଚିତ୍ରାଙ୍ଗଦା ଯଦି ଚାହେଁ, ସେ ତାକୁ ନିଃସଙ୍କୋଚରେ ଗ୍ରହଣ କରିବ । ତା' ମନରେ ଆଜି କୌଣସି ଗର୍ବ ବା ଗୌରବ ବୋଧ ନାହିଁ । ଚିତ୍ରାଙ୍ଗଦା ପାଇଁ ସେ କାଙ୍ଗାଳଙ୍କ ପରି ପ୍ରତୀକ୍ଷା କରି ବସିରହିଛି ।

କମଳ ଚିଠିଟି ପଢ଼ି ସ୍ତବ୍ଧ ହୋଇଯାଇଥିଲା ।

ଚିତ୍ରାଙ୍ଗଦା ଯଦି ହାତଛଡ଼ା ହୁଏ, ତା'ହେଲେ ତା'ର ସର୍ବନାଶ ହେବ ଯେ ! ଫିଲ୍‌ମଷ୍ଟାରରୁ ସେ କେତେଟା ଟଙ୍କା ବା ପାଏ ! ସେଥିରେ ତା'ର ଚଳିବ କିପରି !

ତା' ବିରୁଦ୍ଧରେ ଗଢ଼ିଉଠୁଥିବା ଚକ୍ରାନ୍ତକୁ ପଣ୍ଡ କରିବା ପାଇଁ ମନେ ମନେ ଗୋଟାଏ ଉପାୟ ସ୍ଥିର କରିନେଲା । ଯଦି ସେ ଚିତ୍ରାଙ୍ଗଦା ସହିତ ବିବାହ କରିନିଏ, ତେବେ ଭବିଷ୍ୟତରେ ଆଉ କୌଣସି ଡର ରହିବ ନାହିଁ ।

କମଳ ଦିନେ ଯାଇ ଚିତ୍ରାଙ୍ଗଦାକୁ ବିବାହ କରିବା ପାଇଁ ପ୍ରସ୍ତାବ ଦେଲା । ଚିତ୍ରାଙ୍ଗଦା କମଳ ଆଡ଼େ ସ୍ନିଗ୍ଧ ନୟନରେ ଥରେ ଚାହିଁ କେବଳ ହସିଥିଲା । ସେଦିନ କୌଣସି ପ୍ରତିଶ୍ରୁତି କମଳ ଆଦାୟ କରିପାରି ନ ଥିଲା ।

ସେଇଦିନ ଠାରୁ ସେ ଚିତ୍ରାଙ୍ଗଦାର ପଛରେ ଛାଇପରି ଲାଗି ରହିଲା । ତା' ସହିତ ଆଇନସିଦ୍ଧ ଭାବରେ ବିବାହ କରିବା ପାଇଁ ବାରମ୍ବାର

ପ୍ରବର୍ତ୍ତାଇଲା । କିନ୍ତୁ ଚିତ୍ରାଙ୍ଗଦା ନୀରବ ହୋଇଯାଇଥିଲା । ଆଉ ସେ କମଳ ସହିତ ଆଗଭଳି ଖୁବ୍ ଆଗ୍ରହରେ କଥାବାର୍ତ୍ତା କରୁ ନ ଥିଲା । କିନ୍ତୁ ନିର୍ବିକାର ଚିତ୍ତରେ କମଳ ଚିତ୍ରାଙ୍ଗଦାଠାରୁ ତା' ଆୟର ୭୫ ଭାଗ ଆଦାୟ କରି ନେଉଥିଲା ।

ଏହିପରି ଦ୍ୱନ୍ଦ୍ୱ ଭିତରେ ଆହୁରି କିଛି ଦିନ କଟିଗଲା । ଚିତ୍ରାଙ୍ଗଦାର ମନବେଦନା ବାହାର ଦୁନିଆରେ ଫୁଟି ଉଠିବାର ଉପାୟ ନ ଥିଲା ।

ହଠାତ୍ ଦିନେ ଚିତ୍ରାଙ୍ଗଦା ସତାଂଶୁଠାରୁ ଆଉ ଖଣ୍ଡିଏ ଚିଠି ପାଇଲା । ସେ ଚିଠିରେ ସତାଂଶୁ ଅଭିମାନ କରି ନାନା କଥା ଲେଖିଥିଲା । ପୂର୍ବ ଚିଠିର ଉତ୍ତର ନ ପାଇ ସେ ଯେ କେତେ ଦୁଃଖରେ କାଳ କଟାଉଚି, ସେ କଥା ବିସ୍ତୃତ ଭାବରେ ବର୍ଣ୍ଣନା କରିଥିଲା ।

ପୂର୍ବ ଚିଠି ? ସତାଂଶୁ ତେବେ ଉତ୍ତର ଦେଇଥିଲା ତା' ଚିଠିର ! ଭାଗ୍ୟ ଯେତେବେଳେ ଖରାପ ଆସେ, ସେତେବେଳେ ସୁନା ବି ଭେଣ୍ଡି ପାଲଟି ଯାଏ । ତା' ନ ହେଲେ କମଳର ଏହି ପ୍ରତାରଣା ଭିତରେ ସେ ନିଃସହାୟଙ୍କ ପରି ଆଜିଯାଏ ଜୀବନଯାପନ କରୁଥାଆନ୍ତା କାହିଁକି ?

ସେହିଦିନ ସେ ସୀତାଂଶୁ ପାଖକୁ ଚିଠି ଲେଖିଲା — ମୋତେ ଯଦି ତମର ବାହୁଛାୟା ତଳେ ଆଶ୍ରୟ ଦେବାର କୌଣସି ଦ୍ୱିଧା ନ ଥାଏ, ତେବେ ମୁଁ ବି ମୋର ସମସ୍ତ ଯଶଖ୍ୟାତିକୁ ପାଦରେ ମକଚି ଦେଇ ତମର ଘରକରଣା ସଜାଡ଼ିବାକୁ ପହଞ୍ଚିଯିବି । ତେଲ ଲୁଣର ସଂସାର ଭିତରେ ନିଜକୁ ହଜାଇ ଦେଇ ସ୍ୱସ୍ତିର ନିଃଶ୍ୱାସଟିଏ ମାରିବାକୁ ଅବସର ପାଇବି ।

ଆଉ ମୋର କିଛି ଲୋଡ଼ା ନାହିଁ । ଯଶ, ଖ୍ୟାତି ଗୌରବ ଏଗୁଡ଼ା ଯଦି ମୋ' ଜୀବନରେ କେବେ ଆସିଥାଏ, ସେଗୁଡ଼ିକ ପାପଜର୍ଜରିତ । ମୋର ଆଉ ଲୋଡ଼ା ନାହିଁ ସେ ସବୁ । ମୁଁ ଖାଲି ଚାହେ ତମରି ଅଭୟ ଆଶ୍ରୟ ।

ଚିଠି ପାଇ ସତାଂଶୁ ନିଜେ ଛୁଟି ଆସିଥିଲା ।

ଚିତ୍ରାଙ୍ଗଦା ସତାଂଶୁକୁ ତା' ଘରେ ଯେଉଁପରି ଅଭ୍ୟର୍ଥନା ଜଣାଇଥିଲା, ସତାଂଶୁ ଜୀବନରେ କେବେ ତାହା ଭୁଲି ପାରିବ ନାହିଁ ।

ସ୍ଥିର ହେଲା, ସତାଂଶୁ ଚିତ୍ରାଙ୍ଗଦାକୁ ବିବାହ କରିବ ।

ଆଉ ଚିତ୍ରାଙ୍ଗଦା ପ୍ରତିଶ୍ରୁତି ଦେଲା, ସେ ଆଉ କୌଣସି ନୂତନ ଚିତ୍ରର କଣ୍ଟ୍ରାକ୍ଟ ଗ୍ରହଣ କରିବ ନାହିଁ । ଯେଉଁ କେତୋଟି ଚିତ୍ରରେ ସେ ଅଭିନୟ କରିବା ପାଇଁ

ଚୁକ୍ତିବଦ୍ଧ ହୋଇଛି, ସେତକର କାର୍ଯ୍ୟ ଶେଷ ହୋଇଗଲେ, ସେ ମୁକ୍ତି ପାଇବ । ଚିତ୍ରଜଗତରୁ ଚିରଦିନ ପାଇଁ ବିଦାୟ ନେଇ ଶ୍ୱସ୍ତିରେ ନିଃଶ୍ୱାସ ମାରିବ । ସତାଂଶୁର ଗୃହକୋଣରେ ଯାଇ ଗାମ୍ୟ ବଧୂପରି ମୁଣ୍ଡରେ ଓଢ଼ଣା ଟାଣି ଅସୂର୍ଯ୍ୟମ୍ପଶ୍ୟା ହୋଇ ରହିବ ।

ସବୁ ଠିକ୍ ହୋଇଗଲା ।

ଚିତ୍ରାଙ୍ଗଦା ମନରେ ଫେରିଆସିଲା ନୂଆ ଆଶା, ନୂଆ ଉନ୍ମାଦନା ।

ସତାଂଶୁ ଚିତ୍ରାଙ୍ଗଦା ଘରେ ପ୍ରାୟ ଏକ ସପ୍ତାହ ଅତିବାହିତ କରି ଘରକୁ ଫେରିଗଲା ।

ବିବାହର ଦିନ ସ୍ଥିର ହୋଇଯାଇଥିଲା । ମାସକ ପରେ ସତାଂଶୁ ଆଉ ଥରେ ଆସିବ । କୋର୍ଟରେ ରେଜିଷ୍ଟ୍ରୀ ବିବାହ ଶେଷ ହେବାପରେ, ଗାଁରେ ପୁଣି ଲୋକାଚାର ଅନୁଯାୟୀ ସମସ୍ତ ବିବାହ ବିଧି ପାଳନ କରାଯିବ ।

ଚିତ୍ରାଙ୍ଗଦାର ଦେହ ମନରେ ଏକ ବିରାଟ ପରିବର୍ତ୍ତନ ଦେଖା ଦେଇଥିଲା ।

କମଳ କିନ୍ତୁ ନିର୍ବିକାର ଚିତ୍ତରେ ସବୁ ଦେଖିଶୁଣି ହାତତାଳି ଦେଉଥିଲା । ବରଂ ସେ ଚିତ୍ରାଙ୍ଗଦାର ଏହି ସିଦ୍ଧାନ୍ତରେ ଖୁସି ହୋଇଥିଲା । ଦୁଇ ଜଣଙ୍କର ଫଟୋ ଉଠାଇଥିଲା ।

ସତାଂଶୁ ଚାଲିଯିବାର ପରଦିନ ଠାରୁ ଚିତ୍ରାଙ୍ଗଦା ଆଉ କୌଣସି ନୂତନ ଚିତ୍ର ପାଇଁ ଚୁକ୍ତିବଦ୍ଧ ହେବନାହିଁ ବୋଲି ମନକୁ ଦୃଢ଼ କରୁଥିଲା ।

କିନ୍ତୁ ସପ୍ତାହକ ପରେ କମଳ ଆସିଲା ଜଣେ ପ୍ରଡ୍ୟୁସରଙ୍କୁ ସଙ୍ଗରେ ଧରି । ତାଙ୍କର ନୂତନ ଚିତ୍ର ପାଇଁ ସେମାନେ ଚିତ୍ରାଙ୍ଗଦା ସହିତ ଚୁକ୍ତିବଦ୍ଧ ହେବାକୁ ଚାହାନ୍ତି ।

ଚିତ୍ରାଙ୍ଗଦା ମୁହେଁ ମୁହେଁ ମନା କରିଦେଲା ।

ସେ ଆଉ କୌଣସି ଚିତ୍ରରେ ଅଭିନୟ କରିବ ନାହିଁ ।

ପ୍ରଡ୍ୟୁସର ଫେରିଗଲେ ।

କିନ୍ତୁ କମଳ ମୁହଁରେ ଫୁଟିଉଠିଲା ଚିନ୍ତାର କୁଟିଳ-କୁଂଚିତ ରେଖା । ନିରୋଳାରେ ସେ ଚିତ୍ରାଙ୍ଗଦାକୁ କହିଲା, ତୁ ମନେକରନା ଯେ ଭାରତବର୍ଷରେ ତୁ ଏକ ଖ୍ୟାତିସମ୍ପନ୍ନ ଅଭିନେତ୍ରୀ । ତୋତେ ସବୁବେଳେ ମନେରଖିବାକୁ ହେବ ଯେ ତୁ ଗୋଟାଏ ଖୁଣୀ ଆସାମୀ, ଏବଂ ତା'ର ପ୍ରତ୍ୟକ୍ଷ ସାକ୍ଷ୍ୟ ହେଉଛି ଏଇ ଫଟୋଗ୍ରାଫ୍ । କମଳ ଫଟୋ ଖଣ୍ଡିକ ପକେଟରୁ ବାହାର କରି ଦେଖାଇଲା । ତେଣୁ ମୁଁ ଇଚ୍ଛା କଲେ ଏଇ ମୁହୂର୍ତ୍ତରେ ତୋ' ମନର ସମସ୍ତ ସୁନେଲି ସ୍ୱପ୍ନକୁ ଭାଙ୍ଗିରୁଜି ଦେଇ ତୋତେ

ଫାଶୀକାଠିରେ ଝୁଲାଇ ଦେଇପାରିବି । ତୁ ଆଉ ଯାହା କର ନ କର ଚିତ୍ରା, ମୋ' ନିର୍ଦ୍ଦେଶ ମାନି ଚଳିବାକୁ ହେବ । ଅନ୍ତତଃ ତତେ ଚିତ୍ରରେ ଅଭିନୟ କରିବାକୁ ପଡ଼ିବ ।

ଚିତ୍ରାଙ୍ଗଦା ନୀରବରେ ବସିଥିଲା ।

କମଳ କହିଚାଲିଥିଲା, ତୁ ମୋ' ସହିତ ଆଉ ଗୋଟାଏ ସର୍ତ୍ତ କରିପାରୁ । ତୋ' ଆୟର ୭୫ ଭାଗ ମୁଁ ନେଉଥିଲି, ଏଣିକି ସେଥିରୁ ଆଉ କିଛି କମେଇ ଫିଫ୍‌ଟି ଫିଫ୍‌ଟି କରିପାରେ । ତୁ ସତାଂଶୁକୁ ବିବାହ କର, ମୋର ଆପତ୍ତି ନାହିଁ । କିନ୍ତୁ ଚିତ୍ରରେ ଅଭିନୟ କରିବୁ ନାହିଁ, ଏ ସିଦ୍ଧାନ୍ତ ମନରୁ ପରିହାର କରିବାକୁ ପଡ଼ିବ ।

ଚିତ୍ରାଙ୍ଗଦା ସେଦିନ ଦୃଢ଼ କଣ୍ଠରେ କହିଲା, ନା-ନା-ନା । ମୁଁ ଆଉ ଅଭିନୟ କରିବି ନାହିଁ, କରିବି ନାହିଁ । ତମର ମୋ' ବିରୁଦ୍ଧରେ ଯାହା କରିବାର ଥାଏ କରିପାର । ଫାଶୀରେ ଯଦି ମୋତେ ଝୁଲାଇ ପାର, ତା'ହେଲେ ତାହାହିଁ ହେବ ମୋ' ଜୀବନର ପରମ ସାର୍ଥକତା ।

ସେଦିନ ଚିତ୍ରାଙ୍ଗଦା ଦୃଢ଼ପଦ ଚାଳି ସେଠାରୁ ଚାଲି ଯାଇଥିଲା ।

କମଳ ବହୁତ ସମୟ ନୀରବରେ ବସି ରହି ତା' ମୁଭି କ୍ୟାମେରାଟା ଆଡ଼େ ଚାହିଁଥିଲା । ତା'ପରେ ଧୀରେଧୀରେ ଉଠି ଚିତ୍ରାଙ୍ଗଦାର ଗୃହରୁ ବାହାରି ଚାଲି ଯାଇଥିଲା ।

ଚିତ୍ରାଙ୍ଗଦା ସେତେବେଳେ ଗୁଣୁ ଗୁଣୁ ହୋଇ ଗୀତ ଗାଇ ତା' ବଗିଚାରେ ଥିବା ଫୁଲଗଛଗୁଡ଼ିକରେ ନିଜ ହାତରେ ପାଣି ଢାଳୁଥିଲା ।

କମଳ ଠିଆ ହୋଇଯାଇ ମୁହୂର୍ତ୍ତେ ଚିନ୍ତା କଲା । ତା'ପରେ ମୁଭି କ୍ୟାମେରାଟି ବାହାର କରି ଷ୍ଟାର୍ଟ ଦେଇଦେଲା ।

କର୍‌କର୍ ଶବ୍ଦରେ ଚିତ୍ରାଙ୍ଗଦା ମୁହଁ ବୁଲେଇ ଚାହିଁଲା । କମଳ ଫଟୋ ଉଠାଇବାରେ ବ୍ୟସ୍ତ ।

ଚିତ୍ରାଙ୍ଗଦା କମଳ ପାଖକୁ ଲାଗିଆସି ଯୋଡ଼ ହାତରେ ବିନୟ ସହକାରେ କହିଲା, କ୍ଷମା କରନ୍ତୁ ଭୁଜଙ୍ଗଧରବାବୁ ! ମୋର ଆଉ ଫଟୋ ଉଠାଇ ମୋତେ ଆକାଶକୁ ଉଠାଇବା ଆବଶ୍ୟକ ନାହିଁ ।

କମଳର ମୁଭିଟା ବନ୍ଦ ହୋଇଗଲା । ସେ ଆଶ୍ଚର୍ଯ୍ୟ ଭଙ୍ଗୀରେ ଚିତ୍ରାଙ୍ଗଦା ଆଡ଼କୁ ଅନେଇ ରହିଲା । କହିଲା, ମୁଁ ପୁଣି କହୁଚି ଚିତ୍ରା, ତୁ ଭୁଲ୍

କରନାହିଁ । ବିବାହ ବନ୍ଧନ ହେଉଛି ମଣିଷକୁ ଅଧପାତକୁ ନେବାର ଏକମାତ୍ର ପଥ । ତା'ଛଡ଼ା ସୀତାଂଶୁ – ହି ହି ହି । ସେ ଗୋଟାଏ ଅର୍ଦ୍ଧପାଗଳ ହୋଇଯାଇଛି । ବାହାର ଦୁନିଆ ସହିତ ତା'ର କୌଣସି ସମ୍ପର୍କ ନାହିଁ । ଯାହାକୁ କହନ୍ତି କୂପମଣ୍ଡୁକ । ତା' ସହିତ ତୋ'ର ଆଉ ସଂଯୋଗ ! ଅସମ୍ଭବ । କେହି ସୁଖୀ ହୋଇପାରିବ ନାହିଁ ।

ଚିତ୍ରାଙ୍ଗଦା କମଳର ସବୁକଥା ମନଦେଇ ଶୁଣିଲା । ହସି ହସି କହିଲା, ଅଶେଷ ଧନ୍ୟବାଦ । ମୁଁ ତମ ଉପଦେଶ ପାଳନ କରିବାକୁ ଚେଷ୍ଟା କରିବି । ଚିତ୍ରାଙ୍ଗଦା କଣ୍ଠରେ ବିଦ୍ରୂପର ସ୍ୱର ଫୁଟି ଉଠିଥିଲା ।

ମୋତେ ଜଳେଇ ତୋ'ର ମଙ୍ଗଳ ହେବ ନାହିଁ ଚିତ୍ରା । କମଳ ଶାନ୍ତ ସ୍ୱରରେ କହିଲା ।

ଚିତ୍ରଙ୍ଗଦା ଆଉ କୌଣସି ଉତ୍ତର ନ ଦେଇ ସେଠାରୁ ବାହୁଡ଼ି ଗଲା । ପୁଣି ନିଜ କାର୍ଯ୍ୟରେ ଯାଇ ମନ ଲଗେଇଲା ।

କମଳର ମୁହଁଟା ଲାଲ ପଡ଼ିଯାଇଥିଲା ।

ଆଉ ମୁହୂର୍ତ୍ତେ ଡେରି ନ କରି ଚିତ୍ରାଙ୍ଗଦାର ବାସଭବନ ଛାଡ଼ି ସେ ରାଜରାସ୍ତାକୁ ଓହ୍ଲେଇ ପଡ଼ିଲା ।

ସତାଂଶୁ ସହିତ ଚିତ୍ରାଙ୍ଗଦାର ବିବାହର ଦିନ ଯେତେ ପାଖେଇ ଆସୁଥିଲା, ସେ ସେତେ ପ୍ରଫୁଲ୍ଲ ଦେଖା ଯାଉଥିଲା । ତା'ର ପ୍ରତିଟି କାର୍ଯ୍ୟକଳାପରେ ଆଗ୍ରହ ପୂରି ରହିଥିଲା । ଷ୍ଟୁଡିଓରେ ଅଭିନୟ ମଧ୍ୟ ଆଶାତୀତ ସାଫଲ୍ୟର ସହିତ କରିଚାଲିଥିଲା ।

ଏସବୁ ଛଡ଼ା ଆଉ ଗୋଟାଏ ଡିଉଟି ବଢ଼ି ଯାଇଥିଲା ଚିତ୍ରାଙ୍ଗଦାର । ପ୍ରତିଦିନ ସେ ସତାଂଶୁକୁ ଚିଠି ଲେଖୁଥିଲା । ନିତି ଦିନର ସମସ୍ତ କାର୍ଯ୍ୟକଳାପ ସେହି ଚିଠିରେ ଲିପିବଦ୍ଧ କରି ପଠାଉଥିଲା । ଏପରିକି କମଳ କିପରି ତା'ପଛରେ ଛାଇପରି ଲାଗିଛି, ସବୁ କଥା ସେ ସତାଂଶୁକୁ ଜଣାଉଥିଲା ।

ଇମିତି ବେଶ୍ ଚାଲିଥିଲା ।

ବିବାହର ଦିନ ପାଖେଇ ଆସୁଥିଲା ।

ଚିତ୍ରାଙ୍ଗଦାର ଚିତ୍ରଜଗତର କାମ ମଧ୍ୟ ଧୀରେଧୀରେ ଶେଷ ହୋଇଆସୁଥିଲା । ଆଉ କୌଣସି ନୂତନ ଚିତ୍ର ପାଇଁ ସେ କଣ୍ଟ୍ରାକ୍ଟ କରୁ ନ ଥିଲା ।

ଚିତ୍ରାଙ୍ଗଦା ମୃତ୍ୟୁର ସାତ ଆଠଦିନ ପୂର୍ବରୁ ପୁଣି ତା' ଦେହମନରେ ଭାବାନ୍ତର ଲକ୍ଷ୍ୟ କରାଗଲା । ପୁଣି ସେ ଗଭୀର ଦୁଃଖରେ ଝାଉଁଳି ପଡ଼ିଲା । ଏପରିକି ଦୁଇ ତିନିଦିନ ଷ୍ଟୁଡିଓ ଯିବା ମଧ୍ୟ ହଠାତ୍ ବନ୍ଦ କରିଦେଲା ।

ସତାଂଶୁ ତାକୁ ଗୋଟିଏ ଚିଠିରେ ଲେଖିଥିଲା ଯେ, ଆପାତତଃ ବିବାହ ପ୍ରସ୍ତାବଟା ମୁଁ ବନ୍ଦ ରଖିବାକୁ ଚାହୁଛି । କାରଣ ପାଇଁ ଚିନ୍ତାକରି ମୁଣ୍ଡ ଖରାପ କରିବୁ ନାହିଁ । ଏହା ଭିତରେ କମଳ ଥରେ ମୋ' ପାଖକୁ ଆସିଥିଲା । ତୋ' ବିରୁଦ୍ଧରେ ଅନେକ କଥା କହିଲା । ତୋ'ର ବହୁ ଅଶ୍ଳୀଳ ଭଙ୍ଗୀର ଫଟୋଗ୍ରାଫ୍ ମଧ୍ୟ ମୋତେ ଦେଖାଇଲା । କିନ୍ତୁ ସେ ସବୁ ପାଇଁ ମୁଁ ପରବାଏ କରିନାହିଁ । ଆପାତତଃ ବିବାହ ବନ୍ଦ ରଖିବାର ପ୍ରସ୍ତାବ ଏଇସବୁ କାରଣରୁ ବୋଲି ଭାବିବୁ ନାହିଁ । ମୁଁ ଏ ସମ୍ବନ୍ଧରେ ସର୍ବଶେଷ ଚିଠି ତତେ ଠିକ୍ ସାତଦିନ ପରେ ଲେଖିବି ।

ସେଇ ସାତଟି ଦିନ ଚିତ୍ରାଙ୍ଗଦାର ଯେ କି କଷ୍ଟରେ କଟିଛି, ତା'ଛଡ଼ା ଆଉ କେହି ବୁଝିପାରି ନାହାନ୍ତି । କମଳର କିନ୍ତୁ ଉତ୍ସାହ ବଢ଼ିଯାଇଛି । ତିନିଗୁଣ । ଦୈନିକ ପାଞ୍ଚ ସାତଥର କରି ସେ ଚିତ୍ରାଙ୍ଗଦା ପାଖକୁ ଧାଇଁଛି, ତାକୁ ସାନ୍ତ୍ୱନା ଦେଇଛି । ଆଉ ସତାଂଶୁ କଥା ଭୁଲିଯିବା ପାଇଁ ପ୍ରବର୍ତ୍ତାଇଛି ।

କିନ୍ତୁ ଠିକ୍ ସାତଦିନ ପରେ ଯେତେବେଳେ ଚିତ୍ରାଙ୍ଗଦା ପୁଣି ସତାଂଶୁଠାରୁ ଚିଠି ପାଇଲା, ସତାଂଶୁ ଲେଖିଥିଲା — ନା, ମୋର ଆଉ ଭୟର କାରଣ କିଛି ନାହିଁ ରାଧା ! ମୁଁ ମୋ'ଠାରେ ଏକ କଠିନ ରୋଗର ଆଶଙ୍କା କରୁଥିଲି । କିନ୍ତୁ ପରୀକ୍ଷା ପରେ ଜାଣିପାରିଲି ଯେ, ମୋ' ଧାରଣା ଭ୍ରାନ୍ତ । ତେଣୁ ବିବାହରେ ମୋର ଆଉ ଆପତ୍ତି ନାହିଁ । ଆମ ନିର୍ଦ୍ଧାରିତ ତାରିଖରେ ମୁଁ ଯାଇ ତୋ' ପାଖରେ ପହଞ୍ଚିବି । ସେହିଦିନ ବିବାହ କାର୍ଯ୍ୟ ସମାପନ କରି ଦାର୍ଜିଲିଂ ବା ସିମଲା ଆଡ଼େ ଚାଲିଯିବା । ମୋ' ସ୍ୱାସ୍ଥ୍ୟଟା ମଧ୍ୟ ଖୁବ୍ ଭାଙ୍ଗିପଡ଼ିଚି । ତୁ ଆସିଲେ ମୋତେ ଯେ ସଜାଡ଼ି ଦେଇପାରିବୁ, ସେଇ ଆଶାରେ ମୁଁ ପ୍ରତୀକ୍ଷା କରିବସିଛି ।

ଚିତ୍ରାଙ୍ଗଦା ମନରୁ ସମସ୍ତ କାଳିମା ଧୋଇ ପୋଛି ହୋଇଗଲା । ସେ ନୂତନ ଜୀବନ ଲାଭ କଲା ପରି ପୁଣି ପଲ୍ଲବି ଉଠିଲା ।

ଆଉ କେତେ ଦିନ ? ବିବାହର ତିଥି ଯେ ତା'ର ପାଖେଇ ଆସିଲାଣି । ଆଜି ଦିନଟା ଛାଡ଼ିଦେଲେ ଆଉ ସାତଦିନ । କାଲିକୁ ରହିବ ଛଅ ଦିନ, ତା'ପର ଦିନକୁ ପାଞ୍ଚଦିନ । ତା'ପରେ...

ଚିତ୍ରାଙ୍ଗଦା ଶେଯରୁ ଉଠି, ନୂଆ ବେଶପୋଷାକ ପିନ୍ଧି ଧାଇଁଲା ଷ୍ଟୁଡିଓକୁ । ଫୋନ୍ କଲା ପ୍ରଡ୍ୟୁସର ଓ ଡାଇରେକ୍ଟରମାନଙ୍କୁ । ଶୀଘ୍ର ଶୀଘ୍ର ସୁଟିଂ ଶେଷ କର । ଡେରି କଲେ ସେ ଆଉ ରହିପାରିବ ନାହିଁ । ଅଭିନୟ କରିପାରିବ ନାହିଁ ସେମାନଙ୍କ ଚିତ୍ରରେ । ଫଳରେ ଅସମାପ୍ତ ଯଦି ରହିଯାଏ କାହା ଚିତ୍ର, ସେଥିପାଇଁ ତାକୁ ଆଉ ଦୋଷ ଦେଲେ ଚଳିବ ନାହିଁ ।

ବନହରିଣୀ ପରି ନାଚି ନାଚି ଧାଇଁଥିଲା ଚିତ୍ରାଙ୍ଗଦା ।

ଏଇ ସାତ ଆଠ ଦିନ ଭିତରେ ସେ କ'ଣ ତା'ର ସୁଟିଂ ଶେଷ କରିପାରିବ ? ଯଦି ଶେଷ ନ ହେଲା ? ସତାଂଶୁ ଲେଖିଛି ବିବାହ ପରେ ଦାର୍ଜିଲିଂ ବା ସିମଲାରେ ଯାଇ ବିଶ୍ରାମ କରିବା ପାଇଁ । ତା'ର ମଧ୍ୟ ବିଶ୍ରାମ ଲୋଡ଼ା । ହଁ, ସେ ଏଇ କେତେ ବର୍ଷ ହେବ ଅକ୍ଳାନ୍ତ ପରିଶ୍ରମ କରିଯାଉଛି । କିନ୍ତୁ ଫଳ ?

କମଳର କୋଠା ତୋଳା ହୋଇଛି । ଗାଡ଼ି କିଣା ହେଇଛି । ଦାସଦାସୀ ଗହଣରେ କମଳ ମହାମଉଜମସ୍ତିରେ ଜୀବନଯାପନ କରୁଛି । ଆଉ ସେ ? ହସିଉଠିଲା ଚିତ୍ରାଙ୍ଗଦା । ତିଳ ତିଳ କରି ନିଜକୁ ନିଃଶେଷ କରିଛି କେବଳ ପର ପାଇଁ । ନା, ଆଉ ସେଗୁଡ଼ା ଚିନ୍ତା କରି ଲାଭ ନାହିଁ । ଦୁଃଖର ଦିନ ତା'ର ଶେଷ ହୋଇଆସିଛି ।

କମଳ ଚିତ୍ରାଙ୍ଗଦା ସହିତ ହାତ ମିଳେଇଲା । ଅଭିନନ୍ଦନ ଜଣାଇଲା ଆଉଥରେ । ସ୍ୱର ତା'ର ବଦଳି ଯାଇଥିଲା । ପ୍ରକୃତରେ ଏଥର ସେ ଚିତ୍ରାଙ୍ଗଦାର ମଙ୍ଗଳ କାମନା କରି କହିଥିଲା, ସତାଂଶୁକୁ ପାଇ ତୁ ସୁଖୀ ହୁଅ ଚିତ୍ରା । ମୁଁ ତୋ' ଜୀବନର ଆଉ ପ୍ରତିବନ୍ଧକ ହେବି ନାହିଁ । ବରଂ ତୋ'ର ସୌଭାଗ୍ୟ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବି ।

ଚିତ୍ରାଙ୍ଗଦା ବିଶ୍ୱାସ କରିପାରି ନଥିଲା କାନକୁ । କାହାଠାରୁ କ'ଣ ସେ ଶୁଣୁଛି ? କମଳ ତା'ହେଲେ ସତେରେ ବଦଳି ଯାଇଛି ? ସତରେ ସେ ଚିତ୍ରାଙ୍ଗଦାର ମଙ୍ଗଳ କାମନା କରୁଛି ? ଆଖି ଦୁଇଟା ତା'ର ଛଳଛଳ ହୋଇଆସିଥିଲା । ମୁଣ୍ଡ ନୁଆଁଇ କମଳର ପାଦଧୂଳି ନେଇ କପାଳରେ ବୋଳି କହିଥିଲା — କମଳ ଭାଇ, ତମ ତୁଣ୍ଡ ସୁତୁଣ୍ଡ ହେଉ ।

ତା'ପରେ କମଳ ଆଉ ଚିତ୍ରାଙ୍ଗଦା ମଧ୍ୟରେ ସାଲିସ୍ ହୋଇଯାଇଥିଲା ।

କମଳ ନିତି ଆସୁଥିଲା, ହସୁଥିଲା, ବସୁଥିଲା । ମଝିରେ ଆଉ କେଇଟା ଦିନ ? ଚାରିଟା ଦିନ ଗଲେ, ତା' ଜୀବନର ଗତିଚକ୍ର ଘୂରିଯିବ ।

କିନ୍ତୁ ହେଲା କ'ଣ ? ସେଦିନ ରାତିରେ ଚିତ୍ରାଙ୍ଗଦା ନିଜ ଘରେ ଆତ୍ମହତ୍ୟା କଲା । କାହିଁକି ?

ସତ୍ୟବ୍ରତ ସତାଂଶୁ ପାଖରୁ ଫେରିଆସିଥିଲା ଚିତ୍ରାଙ୍ଗଦାର ସମସ୍ତ ଚିଠିପତ୍ର ଧରି । ସେ ଯେଉଁ ତାରିଖରେ ଆତ୍ମହତ୍ୟା କରିଥିଲା, ସେଇ ତାରିଖର ଚିଠିରେ ଚିତ୍ରାଙ୍ଗଦା ସତାଂଶୁକୁ ଲେଖି ଜଣାଇ ଥିଲା, କମଳ ତା' ସହିତ ସାଲିସ୍ କରିନେଇଛି । ଆମ ଦୁହିଁଙ୍କର ମଙ୍ଗଳ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି । ତା' ମନର ଯଥେଷ୍ଟ ପରିବର୍ତ୍ତନ ହୋଇଛି ।

ତା'ହେଲେ ? କମଳ ଚିତ୍ରାଙ୍ଗଦାର ବିବାହ ସମ୍ବନ୍ଧରେ ସବୁ କଥା ଜାଣି ମଧ୍ୟ ନୀରବ ରହିଗଲା କାହିଁକି ? ଚିତ୍ରାଙ୍ଗଦାର ମୃତ୍ୟୁର ପରଦିନ ପ୍ରଭାତରୁ ସେ କେବଳ ଫଟୋ ଉଠାଇବା ଛଡ଼ା ଆଉ କୌଣସି ତଥ୍ୟ ପ୍ରକାଶ ନ କଲା କାହିଁକି ? ଯଦିଓ ସତ୍ୟବ୍ରତର ପୂର୍ବଧାରଣା ଜନ୍ମିଥିଲା ଯେ ଚିତ୍ରାଙ୍ଗଦାର ଆତ୍ମହତ୍ୟା ରହସ୍ୟ ମୂଳରେ କମଳର ଷଡ଼ଯନ୍ତ୍ର କାର୍ଯ୍ୟ କରୁଛି, ମାତ୍ର ତାହା ପ୍ରମାଣିତ କରିବା ପାଇଁ ସେ ବାଟ ଖୋଜି ପାଉ ନଥିଲା । ଚିତ୍ରାଙ୍ଗଦା ସତାଂଶୁକୁ ଲିଖିତ ଚିଠିଗୁଡ଼ିକ ତାକୁ ଯଥେଷ୍ଟ ସହାୟକ ହେଲା ।

ସତ୍ୟବ୍ରତ କମଳକୁ ନୂତନ ଢଙ୍ଗରେ ଅନୁସନ୍ଧାନ କରିବାକୁ ଆରମ୍ଭ କରି ଦେଇଥିଲା ।

ଆଉ ଦିନେ, ଆମେ ଯେତେବେଳେ ଯାଇ କମଳର ଢାକୁରିଆ ଘରେ ପହଞ୍ଚିଲୁ, ସେତେବେଳକୁ ସଞ୍ଜ ହୋଇ ଆସୁଥିଲା । କାହାରିକୁ ନ ଡାକି ନ ଜଣାଇ ଆମେ ଯାଇ ଅତର୍କିତ ଭାବରେ କମଳର ଦୋତାଲା ଉପରେ ପହଞ୍ଚି ଯାଇଥିଲୁ । ସେ ବାରଣ୍ଡାରେ ଚେଆର ଉପରେ ବସିଥିଲା, ଗୋଟାଏ ଆଲସିସିଆନ କୁକୁର ତଳେ ପଡ଼ି ଛଟପଟ ହେଉଥିଲା ।

ଆମର ପାଦଶବ୍ଦ ଶୁଣିଲା ମାତ୍ରେ କମଳ ହଠାତ୍ ବୁଲିପଡ଼ିଲା । କ'ଣ ଗୋଟାଏ ଶିଶି ତରବରରେ ପ୍ୟାଣ୍ଟ ପକେଟରେ ଭରିଦେଇ ଆମ ଉପରକୁ ଚିଡ଼ି ଉଠିଲା । କହିଲା, ଆପଣଙ୍କର ଟିକିଏ ହେଲେ ସମୟ ଜ୍ଞାନ ନାହିଁ । ତା'ଛଡ଼ା ନ ଡାକି ନ ହାକି ସିଧାସଳଖ ଏପରି ଭାବରେ ଆସି ବିରକ୍ତି କରିବା ଭଦ୍ରଲୋକର କାମ ନୁହେଁ ।

ପ୍ରକୃତରେ ସତ୍ୟବ୍ରତ ଯାହା କରୁଥିଲା, କୌଣସି ଭଦ୍ରଲୋକ ସହିତ ଏପରି ବ୍ୟବହାର କରାଯାଇପାରେ ନାହିଁ । କିନ୍ତୁ କମଳର କୌଣସି କଥାଆଡ଼େ କାନ ନ ଦେଇ ସେ ସିଧା ଛୁଟିଗଲା କୁକୁରଟା ପାଖକୁ । ତା'ର ଜୀବନ ଲୀଳାସାଙ୍ଗ ହୋଇଯାଇଥିଲା । ବାରଣ୍ଡାରେ ତା'ର ପ୍ରାଣହୀନ ବିଶାଳ ଦେହଟା ପଡ଼ି ରହିଥିଲା । କମଳ ସେଠି ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ଆର ଘରୁ ଫଟୋ କ୍ୟାମେରା ଏବଂ ଟ୍ରାନ୍‌ଜିଷ୍ଟର ସେଟ୍‌ଟି ଉଠେଇ ବାହାରକୁ ବାହାରି ପଡ଼ିଥିଲା ।

ଏ ମୃତ୍ୟୁ ବାସ୍ତବିକ ସୁଖମୃତ୍ୟୁ । ସତ୍ୟବ୍ରତ ମୋ' ଆଡ଼େ ଚାହିଁ କହିଥିଲା । ଆଜି ସକାଳେ ଆମେ ଯେତେବେଳେ ଆସିଥିଲେ, ଏଇ କୁକୁରଟା ସଂପୂର୍ଣ୍ଣ ସୁସ୍ଥ ଥିଲା । ହୁଏତ ଏଇ ପୂର୍ବ ମୁହୂର୍ତ୍ତରେ ଯେତେବେଳେ ଆମେ ଏହି କୋଠାରେ ପାଦ ଦେଇଥିଲେ, ତା'ର ପୂର୍ବ ମୁହୂର୍ତ୍ତ ଯାଏ କୁକୁରଟା ସୁସ୍ଥ ଥିଲା; କିନ୍ତୁ ହଠାତ୍ ଏପରି ମୃତ୍ୟୁ ବରଣ କରିବା ମୂଳରେ ନିଶ୍ଚୟ କମଳର କୌଣସି ମାରଣାସ୍ତ୍ର କାର୍ଯ୍ୟ କରିଚି ।

ଆମେ ଘରର ଚାରିଆଡ଼ ବୁଲି ଦେଖିଲୁ । କେହି କୁଆଡ଼େ ନାହାନ୍ତି । ଘରର ଆସବାବପତ୍ର ମଧ୍ୟ ଅନେକ ଖାଲି ହୋଇଗଲାଣି । ଅନ୍ୟ ଆଲ୍‌ସେସିଆନଟା ବି ଆଖିରେ ପଡ଼ିଲା ନାହିଁ । ଚାକର ବାକର କେହି କୁଆଡ଼େ ଦିଶୁ ନାହାନ୍ତି । ତେବେ କ'ଣ...।

ଆମେ ମୁହୂର୍ତ୍ତକ ପରେ ଶୁଣିବାକୁ ପାଇଲୁ ଗାଡ଼ି ଷ୍ଟାର୍ଟ ହେବାର ଶବ୍ଦ । କ'ଣ ଭାବି ସତ୍ୟବ୍ରତ ଚଞ୍ଚଳ ହୋଇଉଠିଲା ଏବଂ ଛୁଟିଯାଇ ଆର ଘରେ ଟେଲିଫୋନ୍‌ର ଡାଏଲ ବୁଲେଇଲା । କିନ୍ତୁ ନା, ହୁଏତ ଲାଇନ୍‌ଟା କଟା ହୋଇଛି, ଅଥବା ଟେଲିଫୋନ ଅଚଳ ହୋଇଯାଇଛି । ମୋତେ ଡାକି କ୍ଷିପ୍ରପଦରେ ସେ ତଳକୁ ଓହ୍ଲେଇ ଯାଉଥିଲା । ବାଟରେ ବାଧା ପାଇ ଠିଆ ହୋଇଗଲା । ଗୋଟିଏ ବୁଢ଼ାଲୋକ ସତ୍ୟବ୍ରତ ହାତକୁ ଖାମ୍‌ରେ ବନ୍ଦ ହୋଇଥିବା ଲଫାପାଟିଏ ବଢ଼େଇ ଦେଇ କହିଲା, ବାବୁ ଆପଣଙ୍କୁ ଦେବାକୁ କହିଗଲେ ।

ସତ୍ୟବ୍ରତ ହାତରେ ନେଇ ଦେଖିଲା, ତା'ରି ନାଁ ଠିକଣା ଲେଖା ହୋଇଥିବା ଖଣ୍ଡିଏ ଲଫାପା । ଡାକଟିକଟ ମଧ୍ୟ ଲଗା ହୋଇଛି । ବୋଧହୁଏ ପୋଷ୍ଟ କରିବା ପାଇଁ କମଳ ପ୍ରସ୍ତୁତ କରି ରଖିଥିଲା ।

ସତ୍ୟବ୍ରତ କ୍ଷିପ୍ର ହସ୍ତରେ ଲଫାପାଟି ଖୋଲି ଦେଖିଲା, ଖଣ୍ଡିଏ ଚିଠି ।

ବନ୍ଧୁବର !

ଏ ଚିଠି ଖଣ୍ଡିକ ତମ ହାତକୁ ଯିବାବେଳକୁ ମୁଁ ଏ ଜଗତରୁ ବିଦାୟ ନେଇସାରିଥିବି । ମୋର ସବୁଠାରୁ ଅବଶୋଷ ହେଉଛି ଜୀବନଯୁଦ୍ଧରେ ମୁଁ ହାରିଗଲି ।

ବହୁ ଆଶାଆକାଂକ୍ଷା ଧରି ମୁଁ ପୃଥିବୀରେ ଜନ୍ମଗ୍ରହଣ କରିଥିଲି ଆଉ ଭାବିଥିଲି ସଫ୍ଳୋଗର ଚରମକୁ ଉଠି ନିଜ ଜୀବନକୁ ସାର୍ଥକ କରିବି । ଯାହା ଆଜିଯାଏ କେହି ପାରିନାହିଁ । ସେଥିପାଇଁ ଅମୋଘ ଅସ୍ତ୍ରରୂପେ ବ୍ୟବହାର କରୁଥିଲି ଚିତ୍ରାଙ୍ଗଦାକୁ । କିନ୍ତୁ ସତାଂଶୁ ମୋର ବଇରୀ ହେଲା । ସେ ମୋ' ସହିତ ବାଦ ସାଧିଲା ।

ଚିତ୍ରାଙ୍ଗଦାର ଆତ୍ମହତ୍ୟା ମୂଳରେ କି ରହସ୍ୟ ଲୁଚି ରହିଛି, ତାହା ଜାଣିବା ପାଇଁ ତମେ ମନପ୍ରାଣ ଢାଳି ଲାଗିପଡ଼ିଚ । ଆଉ ସେହି କାରଣଟା ଜାଣିପାରିଲେ ବୁଝିପାରିବ ଯେ, ଚିତ୍ରାଙ୍ଗଦା ଆତ୍ମହତ୍ୟା କରିନାହିଁ, ତାକୁ ହତ୍ୟା କରାହୋଇଛି । ସେଇ ହତ୍ୟାର କୌଶଳ ଏତେ ନିପୁଣ ଭାବରେ କରା ହୋଇଥିଲା, ଯାହାର କୌଣସି ପ୍ରମାଣ ପୋଷ୍ଟମର୍ଟମରୁ ମିଳିବା ସହଜ ହେଲା ନାହିଁ ।

ଚିତ୍ରାଙ୍ଗଦାକୁ ମୁଁ ହତ୍ୟା କରିଛି, ଏ ସତ୍ୟ ସ୍ୱୀକାର କରିବାକୁ ମୋ' ମନରେ କୌଣସି ଦ୍ୱିଧା ନାହିଁ । କାରଣ ଏ ଚିଠି ଖଣ୍ଡିକ ତମେ ଯେତେବେଳେ ପଢୁଥିବ, ସେତେବେଳେ ମୁଁ ଏ ଇହଜଗତରେ ନ ଥିବି । ଚିତ୍ରାଙ୍ଗଦାକୁ ହତ୍ୟା ନ କରି ମୋର ଅନ୍ୟ ଉପାୟ ନ ଥିଲା । ସେ ସତାଂଶୁକୁ ବିବାହ କରି, ଚିତ୍ରଜଗତରୁ ବିଦାୟ ନେଇ ସୁଖରେ ଘର ସଂସାର କରି ରହିବ, ଆଉ ମୁଁ ଖାଇବାକୁ ନ ପାଇ ବାରଦୁଆର ହାତ ପତେଇ ବୁଲିବି – ଏହା କିପରି କଥା ।

ମୁଁ ରେସ୍ ଖେଳି ସର୍ବସ୍ୱାନ୍ତ ହୋଇପଡ଼ିଥିଲି । ଏକଲକ୍ଷ ଟଙ୍କାକୁ ମୋର ଢାକୁରିଆ ବାସଭବନଟି ବନ୍ଧକ ପଡ଼ିଥିଲା । ଆଶା କରିଥିଲି, ବର୍ଷକ ଭିତରେ ଚିତ୍ରାଙ୍ଗଦାର ଆୟରୁ କୋଠାଟା ମୁକୁଳେଇ ପାରିବି । କିନ୍ତୁ ସେ ମୋତେ ଫାଙ୍କି ଦେଇ ଚାଲିଯିବାକୁ ବସିଲା । ତାକୁ ଅଟକାଇ ରଖିବାର ସବୁପ୍ରକାର ଚେଷ୍ଟା ଯେତେବେଳେ ମୋର ବ୍ୟର୍ଥ ହେଲା, ମୁଁ ବିବ୍ରତ ହୋଇପଡ଼ିଲି ।

ଥରେ ସତାଂଶୁ ପାଖକୁ ଯାଇଥିଲି । ଚିତ୍ରାଙ୍ଗଦାର ଦୋଷ ଦୁର୍ବଳତା ଓ ଚାରିତ୍ରିକ ଦୁର୍ଗୁଣ ଦେଖେଇ ତା' ମନଟା ତିକ୍ତ କରିଦେବାକୁ ଚେଷ୍ଟା କରିଥିଲି । କିନ୍ତୁ ଦେଖିଲି, ସେ ବି ଚିତ୍ରାଙ୍ଗଦାକୁ ଗ୍ରହଣ କରିବା ପାଇଁ ଅଚଳ ଆଉ ଅଟଳ ହେଇ ବସିରହିଚି । ସେଠାରୁ ନିରାଶ ହୋଇ ଫେରିଲି ।

ଆସି ଦେଖିଲି, ଚିତ୍ରାଙ୍ଗଦା ଆଉ କୌଣସି ନୂତନ ଚିତ୍ର ପାଇଁ ଚୁକ୍ତି ପତ୍ରରେ ସ୍ୱାକ୍ଷର କରୁନାହିଁ ।

ଏଣେ ସେମାନଙ୍କର ବିବାହର ଦିନ ପାଖେଇ ଆସୁଛି ।

ତେଣେ ମୋର ଟଙ୍କା ପରିଶୋଧ କରିବାର ତାରିଖ ମଧ୍ୟ ନିକଟେଇ ଆସୁଛି ।

ମୁଁ ଆଉ ସ୍ଥିର ମସ୍ତିଷ୍କରେ କିଛି ବିଚାର କରିପାରିଲି ନାହିଁ । ମୁଣ୍ଡ ଭିତରେ ମୋର ଭୌତିକ କ୍ରିୟା ଆରମ୍ଭ ହୋଇଯାଇଥିଲା । କ'ଣ କରିବି । ନା ନା, ଚିତ୍ରାଙ୍ଗଦାକୁ ମୁଁ ହାତଛଡ଼ା କରିପାରିବି ନାହିଁ, କ୍ଷମା କରିପାରିବି ନାହିଁ ।

ତା'ହେଲେ ?

ହତ୍ୟା, ମୁଁ ତାକୁ ହତ୍ୟା କରିବି । ଆଉ ଜଗତ ଆଗରେ ପ୍ରମାଣିତ କରାଇବି ଯେ ସେ ଆତ୍ମହତ୍ୟା କରିଛି ।

ଏଥିପାଇଁ ମଧ୍ୟ ମୋତେ ଗଭୀର ଭାବରେ ଚିନ୍ତା କରିବାକୁ ପଡ଼ିଥିଲା । ମୁଁ ବି.ଏସ୍.ସି. ପଢୁଥିବା ବେଳେ ଲାବରେଟରୀରେ ବହୁ ଦୁଷ୍ଟ ବୁଦ୍ଧିର ପରିଚୟ ଦେଇଥିଲି । ସେତେବେଳକାର ଗୋଟାଏ ଫର୍ମୁଲା ମୋ' ମନ ଭିତରେ ଭାସିଉଠିଲା ।

ପୋଟାସିଅମ୍ ସାଇନାଇଡ୍ ଆଉ ହାଇଡ୍ରୋ କ୍ଲୋରିକ ଏସିଡ୍ ଏକାଠି ମିଶେଇ, ହାଇଡ୍ରୋସାନିକ୍ ଏସିଡ୍ ଗ୍ୟାସ ତିଆରି କରିପାରିଲେ ସବୁଠାରୁ ସୁବିଧା । ଆଉ ସେହି ଗ୍ୟାସ ଯଦି କୌଣସି ପ୍ରାଣୀର ଶ୍ୱାସପ୍ରଶ୍ୱାସ ସହିତ ମିଶିଯାଏ, ତେବେ ସେ ଯେ କି ସୁଖମୃତ୍ୟୁ, ତା'ର ତୁଳନା କରି ହୁଏନା ବୋଲି ଶୁଣିଥିଲି ।

ତା'ପରେ ଲାଗିଗଲି କାମରେ । ଏଥିପାଇଁ ମୋତେ ବହୁତ ଅର୍ଥ ଏବଂ ବହୁତ ସମୟ ନଷ୍ଟ କରିବାକୁ ପଡ଼ିଥିଲା । ବହୁ କଷ୍ଟରେ ମୁଁ ଦୁଇଜଣ ଡାକ୍ତର ବନ୍ଧୁଙ୍କ ସାହାଯ୍ୟରେ ହାଇଡ୍ରୋସିନିକ୍ ଏସିଡ୍ ଗ୍ୟାସ ତିଆରି କରିବାକୁ ସମର୍ଥ ହୋଇଥିଲି ।

ସେଦିନ ମୁଁ ଆନନ୍ଦରେ ଆତ୍ମହରା ହୋଇପଡ଼ିଥିଲି ।

ଆଉ ନୁହେଁ । ଚିତ୍ରାଙ୍ଗଦାର ବିବାହର ଦିନ ଯେ ପାଖେଇ ଆସୁଛି !!

ଦୁଇଥର ଚିତ୍ରାଙ୍ଗଦା ଘରକୁ ଯାଇ ମୁଁ ଫେରି ଆସିଥିଲି । ହାତ ଥରି ଉଠିଥିଲା, ମନ ଦୁର୍ବଳ ହୋଇପଡ଼ିଥିଲା ।

ଶେଷଥର ଯେତେବେଳେ ଯାଇ ପହଞ୍ଚିଲି, ସେତେବେଳକୁ ରାତି ଏଗାରଟା ।

ଚିତ୍ରାଙ୍ଗଦା ଶୋଇଯାଇଥିଲା ।

ମୁହଁରେ ତା'ର ହସର ଫୁଲ ଫୁଟିଥିଲା ।

ଏଇ ତ ସୁଯୋଗ । ମୁଁ ନିଃଶ୍ୱାସ ପ୍ରଶ୍ୱାସ ବନ୍ଦକରି ଧୀରେଧୀରେ ଚିତ୍ରାଙ୍ଗଦାର ନିଃଶ୍ୱାସ ସହିତ ହାଇଡ୍ରୋସିନିକ୍ ଏସିଡ୍ ଗ୍ୟାସ ମିଶେଇ ଦେଲି ।

ତା'ପରେ ? ଏହାଠାରୁ ସୁଖ ମୃତ୍ୟୁ ଆଉ ବୋଧହୁଏ ତା'ର ହୋଇପାରି ନ ଥାନ୍ତା ।

ମୁଁ ନିର୍ବିକାର ଚିତ୍ତରେ ଘରର କବାଟ ବନ୍ଦକରି ଅନ୍ୟାନ୍ୟ କାର୍ଯ୍ୟ ଶେଷ କଲି । ଚିତ୍ରାଙ୍ଗଦା ଯେ ଆତ୍ମହତ୍ୟା କରିଛି, ପୋଲିସ୍ ଯେପରି ଏଇ ପ୍ରମାଣ ପାଏ, ସେଥିପାଇଁ ସବୁ ପ୍ରକାର ବ୍ୟବସ୍ଥା କରି ମୁଁ ଫେରିଆସିଲି ।

ତା'ପରର ଘଟଣା ସହିତ ତମେ ସଂପୃକ୍ତ । ତେଣୁ ଯେତିକି ସନ୍ଦେହ ତମ ମନରେ ଥିଲା, ସେତକ ମୁଁ ଦୂର କରିଦେଲି ।

ମୁଁ ଏତେ ଶୀଘ୍ର ତମମାନଙ୍କଠାରୁ ବିଦାୟ ନେଇ ଯାଇ ନ ଥାନ୍ତି । କିନ୍ତୁ ଜାଣିପାରିଲି ଯେ, କାଲି ସକାଳେ ମୋର ଡାକ୍ତରିଆର ବାସଭବନଟି ନିଲାମ ହେବ । ମୋର ଆଉ ବାହାର ଦୁନିଆରେ ମୁହଁ ଦେଖାଇବାର ବାଟ ନ ଥିବ ।

ସେଇ ହାଇଡ୍ରୋସାନିକ୍ ଏସିଡ୍ ଗ୍ୟାସ ମୋ' ପାଖରେ ଅବଶିଷ୍ଟ କିଛି ରହିଛି । ଆଉ ଚିନ୍ତା କ'ଣ !!

ବିଦାୟ ନେଉଛି ବନ୍ଧୁ ! ତମକୁ ଅନ୍ଧକାରରୁ ମୁକ୍ତ କରିବା ପାଇଁ ମୋର ଏ ଚିଠି ଲେଖା । ଇତି ।। ଭୁଜଙ୍ଗଧର ।

ଚିଠିଟି ପଢ଼ିସାରି ସତ୍ୟବ୍ରତ ମୋ' ହାତକୁ ବଢ଼ାଇଦେଲା ।

ମୁଁ ମଧ୍ୟ ପଢ଼ି ଶେଷ କଲି ।

କିନ୍ତୁ ସତ୍ୟବ୍ରତ ମନରେ କୌଣସି କର୍ମଚଞ୍ଚଳତାର ସୂଚନା ପାଉ ନ ଥିଲି । ବ୍ୟଗ୍ର ସ୍ୱରରେ କହିଲି : ଭୁଜଙ୍ଗଧରକୁ ଏ ଯାତ୍ରାରୁ ରକ୍ଷା କରାଯାଇପାରିବ ନାହିଁ ?

ସତ୍ୟବ୍ରତ ତା' ସ୍ୱଭାବ-ସୁଲଭ ହସ ଟିକିଏ ହସି କହିଲା : ଅସମ୍ଭବ । ସେ ବର୍ତ୍ତମାନ ଆମ ଅକ୍ତ୍ୟାରର ବାହାରେ ।

ଦୁଇ ଦିନ ପରେ ଖବର କାଗଜରେ ଏକ ଚାଞ୍ଚଲ୍ୟକର ଖବର ପ୍ରକାଶ ପାଇଥିଲା ।

କଲିକତା ରାଞ୍ଚି ପଥରେ ଗୋଟିଏ ମଟରଗାଡ଼ି ଜଣେ ମୃତବ୍ୟକ୍ତି ଚଳାଉ ଥିବାରୁ, ଦୁଇଟି ଗୋରୁ ଏବଂ ଗୋଟିଏ ମହିଷିକି ଚାପା ଦେବା ପରେ ଗୋଟାଏ ଗଛ ସହିତ ଧକ୍‌କା ଲାଗି ଅଟକି ଯାଇଥିଲା ।

ଗାଡ଼ିର ଚାଳକ ଦୁଇ ହାତରେ ଷ୍ଟିଅରିଂଟା ଧରି, କେବଳ ବସି ରହିଥିଲା । ଗାଡ଼ିଟା ସିଧା ରାସ୍ତାରେ ଦ୍ରୁତବେଗରେ ଆଗେଇ ଚାଲିଥିଲା । ଗାଡ଼ିର ଗତି ଏବଂ ଚାଲିବାର ଢଙ୍ଗ ଦେଖି ଲୋକେ ଆତଙ୍କିତ ହୋଇ ଥାନାରେ ଖବର ଦେଇଥିଲେ । ଥାନାରୁ ଗୋଟିଏ ପୋଲିସ୍ ଭ୍ୟାନ୍ ଆସି ପଥଚାରୀମାନଙ୍କୁ ସତର୍କ କରାଇ କରାଇ ସେହି ଗାଡ଼ି ପଛେ ପଛେ ଛୁଟିଥିଲା ।

ସାମାନ୍ୟ ବାଙ୍କ ରାସ୍ତାରେ ଗାଡ଼ିଟା ଯେତେବେଳେ ମୋଡ଼ ବୁଲି ନ ପାରି ଗୋଟାଏ ଗଛରେ ଧକ୍‌କା ଲାଗି ଅଟକି ଗଲା, ସେତେବେଳେ ଚାଳକକୁ ବାହାର କରି ଆଣି ଦେଖାଗଲା ଯେ, ତା'ର ମୃତ୍ୟୁ ବହୁ ପୂର୍ବରୁ ହୋଇଯାଇଛି ।

ସେହି ମୃତ ଆସାମୀର ଯେଉଁ ଫଟୋ ଖବର କାଗଜରେ ପ୍ରକାଶିତ ହୋଇଥିଲା, ସେ ଯେ ଭୁଜଙ୍ଗଧର ସେନାପତି ଆମେ ଚିହ୍ନିବାରେ କୌଣସି ଅସୁବିଧା ହୋଇ ନ ଥିଲା ।



ରଚନାକାଳ : ୧୯୬୫




ନୌକା ବିହାର ଶେଷ ହୋଇଥିଲା ପ୍ରାୟ ସାଢ଼େ ଛଅଟାରେ । କିନ୍ତୁ ପ୍ରବଳ ଉତ୍ତେଜନା ପରେ ଯେ ଏତେ କ୍ଳାନ୍ତି ଆସି ଗ୍ରାସ କରିପାରେ, ମଧୁମିତା ମୋଟେ ଚିନ୍ତା କରିପାରି ନ ଥିଲା ।

ନୌକା ବିହାର ପରେ ସେମାନେ କ୍ଳବ୍‌କୁ ଯାଇଥିଲେ । ସାମାନ୍ୟ ଜଳଯୋଗ ପରେ ଦେବନାଥ ହାତ ଘଡ଼ିକୁ ଚାହିଁ, ଯେତେବେଳେ ଉଠିବାକୁ କହିଲା, ମଧୁମିତା ଉଠିବାକୁ ଚେଷ୍ଟା କରି ଉଠିପାରିଲା ନାହିଁ । ତା'ର ମନେହେଲା ଯେପରି ଗୋଡ଼ ଦୁଇଟା କିଏ ମାଟିରେ ପୋତି ପକାଇଛି ।

ସେ କିଛି ବୁଝିପାରିଲା ନାହିଁ । ଆକୁଳ ଆଖିରେ ଚାହିଁଲା ଦେବନାଥ ମୁହଁକୁ !

ଟି : କେ ଶୁଣିବେ କି ?

ଏକ ମଧୁକଣ୍ଠର କାକଳିରେ ଚନ୍ଦ୍ରକାନ୍ତ ବୁଲି ଅନେଇଲା ପଛକୁ । ସୁନ୍ଦରୀ, ଶୁଭ୍ରାଙ୍ଗୀ ଏକ ତରୁଣୀ । ଆଖିରେ ଫିକା ନୀଳରଙ୍ଗର ଚଷମା । ମୁହଁରେ ସ୍ମିତହାସ ।

: ମୁଁ କ'ଣ କହୁଥିଲି କି, ତରୁଣୀଟି ପୁଣି ଆରମ୍ଭ କଲା, କାଲି ପାଇଁ ଟିକେଟ ଅଛି ମାତ୍ର ତିନି ଖଣ୍ଡ । ମୋର କିନ୍ତୁ ଖଣ୍ଡେ ଏକାନ୍ତ ପ୍ରୟୋଜନ । ଆପଣ ଯଦି କାଲିର ଟିକେଟ କରୁଥାଆନ୍ତି, ତେବେ ମୋ ପାଇଁ ଖଣ୍ଡିଏ ଛାଡ଼ି କରିବେ ।

ଚନ୍ଦ୍ରକାନ୍ତ ତରୁଣୀଟି ମୁହଁରୁ ଆଖି ଉଠାଇ ଚାହିଁଲା, ଆହୁରି ତିନି ଚାରିଜଣ ଲୋକ ଲାଇନ୍‌ରେ ଠିଆ ହୋଇଛନ୍ତି । ସମସ୍ତେ ଆସିଛନ୍ତି ଟିକେଟ କାଟିବା ପାଇଁ । କିନ୍ତୁ ତରୁଣୀଟିର ଚନ୍ଦ୍ରକାନ୍ତକୁ ଏପରି ଅନୁରୋଧ କରିବା ମୂଳରେ କୌଣସି ସଙ୍ଗତ କାରଣ ଥିବା ପରି ମନେ ହେଉ ନ ଥିଲା ।

ତଥାପି ଚନ୍ଦ୍ରକାନ୍ତ ଲାଇନ୍‌ରୁ ବାହାରି ଆସି କହିଲା : ଆପଣ ଆଗକୁ ଯାଆନ୍ତୁ । ମୋଠାରୁ ଆପଣଙ୍କର ପ୍ରୟୋଜନଟା ଯେତେବେଳେ ଏକାନ୍ତ ଜରୁରୀ, ଟିକେଟଟା ଆପଣଙ୍କର ଆଗ କରିନେବା ଉଚିତ ।

ତରୁଣୀଟି ଟିକିଏ ଲଜ୍ଜା ପାଇଲା । ମୁହଁଟି ତା'ର ଆରକ୍ତ ଦିଶିଲା । କିନ୍ତୁ ସେ ସ୍ଥାନ ତ୍ୟାଗ କଲା ନାହିଁ କିମ୍ବା ଉତ୍ତର କିଛି ଦେଲା ନାହିଁ ।

ଚନ୍ଦ୍ରକାନ୍ତ ଆଘାତ ପାଇଲା । ତା'ର ମନେହେଲା, ଭଦ୍ରମହିଳା ତା' ଆଚରଣରେ କ୍ଷୁବ୍ଧ ହୋଇଛନ୍ତି ।

ଚନ୍ଦ୍ରକାନ୍ତ ଏଥର ବିନୟ ସହକାରେ କହିଲା : ଆପଣ କାଲିର ଟିକଟ ଯେତେ ଇଚ୍ଛା କାଟି ନିଅନ୍ତୁ, ମୁଁ ପହରି ଦିନର ଟିକେଟ ପାଇଁ ଆସିଛି; ତେଣୁ ମୋର କିଛି ଅସୁବିଧା ହେବ ନାହିଁ ।

ଏଥର ତରୁଣୀଟି ଧନ୍ୟବାଦ ଜଣାଇ ଆଗେଇ ଗଲା । ଚନ୍ଦ୍ରାକାନ୍ତ ଠିଆ ହୋଇ ରହିଲା ତରୁଣୀଟି ପଛରେ ।

ଚନ୍ଦ୍ରକାନ୍ତ  ଜୀବନରେ ଏ ଅଭିଜ୍ଞତା ପ୍ରଥମ । ଯେପରି ଏସ୍‌ପ୍ଲାନେଡ଼ର ଏହି ବୁକିଂ ଅଫିସ୍‌ରେ ତା'ର ପ୍ରବେଶ ସର୍ବପ୍ରଥମ । ସେହିପରି ଏକ ତରୁଣୀ ତନ୍ୱୀର ସାନ୍ନିଧର ଅନୁଭୂତି ମଧ ନୂତନ ।

ତରୁଣୀଟି ଟିକେଟ କାଟିସାରି, ଚନ୍ଦ୍ରକାନ୍ତକୁ ଧନ୍ୟବାଦ ଜଣାଇ ଚାଲିଗଲା ।

ଚନ୍ଦ୍ରକାନ୍ତ ନିଜର କାମ ଶେଷ କରି ଯେତେବେଳେ ବୁକିଂ ଅଫିସ୍‌ରୁ ବାହାରି ଆସିଲା, ଦେଖିଲି ସେହି ତରୁଣୀଟି ଫୁଟ୍‌ଫାଥ୍ ଉପରେ ଏପାଖ ସେପାଖ ହେଉଛି । ଯେପରି କାହାକୁ ପ୍ରତୀକ୍ଷା କରି ବିରକ୍ତ ହୋଇଉଠିଲାଣି ।

ଚନ୍ଦ୍ରକାନ୍ତ ମନରେ କୌଣସି ଭାବାନ୍ତର ହେଲା ନାହିଁ । ସେ ଯାଇ ତା' ଗାଡ଼ିର ଲକ୍ ଖୋଲି ଦରଜା ଖୋଲିଲା ।

ତରୁଣୀଟି ଯାଇ ଠିଆ ହେଲା କାର୍ ପାଖରେ ।

: ଆପଣ ? ଚନ୍ଦ୍ରକାନ୍ତ ସ୍ୱରରେ ବିସ୍ମୟ ଫୁଟାଇ ପଚାରିଲା ।

ନୀଳକାଚର ଆବରଣ ତଳେ କଳା ଡୋଳା ଯୋଡ଼ିକ ନାଚି ଉଠିଲା ଥରେ ଦି'ଥର । କଣ୍ଠରେ ମଧୁଛନ୍ଦ ତୋଳି କହିଲା : ଦୟା କରି ମୋତେ ଗୋଟାଏ ଲିଫ୍‌ଟ ଦେବେ ? ଅବଶ୍ୟ ଆପଣ ଯଦି ଭବାନୀପୁର ଆଡ଼େ ଯାଉଥାଆନ୍ତି । ଏ ସମୟଟାରେ ଟ୍ୟାକ୍‌ସି ମିଳିବା କାଠିକର ପାଠ ।

ଚନ୍ଦ୍ରକାନ୍ତ ଦରଜା ଖୋଲି କାର୍ ଭିତରେ ପଶିଲା । ପଛ ଦରଜାର ଲକ୍ ଖୋଲି ଦେଇ କହିଲା : ବସନ୍ତୁ ।

ତରୁଣୀଟି କିନ୍ତୁ ଉଠିଲା ଆଗ ସିଟ୍‌ରେ । ବସିଲା ଚନ୍ଦ୍ରକାନ୍ତ ପାଖରେ ।

ଚନ୍ଦ୍ରକାନ୍ତ ବଙ୍କେଇ ଥରେ ଚାହିଁଲା ତରୁଣୀଟି ଆଡ଼େ । ଗାଡ଼ି ଷ୍ଟାର୍ଟ କରିଦେଲା ।

ଚୌରଙ୍ଗୀର ବକ୍ଷ ଉପରେ ଛୁଟି ଚାଲିଥିଲା ଚନ୍ଦ୍ରକାନ୍ତର ଗାଡ଼ି ଖଣ୍ଡିକ । ଦୁହେଁ ନୀରବରେ ବସିଥିଲେ ।

ପାର୍କଷ୍ଟ୍ରୀଟ୍ ଛକରେ ଟ୍ରାଫିକ୍‌ର ରେଡ୍ ସିଗ୍‌ନାଲ ଦେଖି ଚନ୍ଦ୍ରକାନ୍ତ ଗାଡ଼ି ଅଟକେଇଲା । ଆଉ ଥରେ ଚାହିଁଲା ସେ ତରୁଣୀଟି ଆଡ଼େ ।

ଚାରି ଆଖିର ମିଳନରେ ତରୁଣୀଟି ସ୍ମିତ ହସିଲା । କହିଲା, : ଆପଣ ତ ମୋ ନାଁ ପଚାରିଲେ ନାହିଁ ?

: କ'ଣ ଲାଭ ? କ୍ଷଣିକର ପରିଚୟ । ଅଜ୍ଞାତରେ ରହିଯିବା ଭଲ ।

: ମୋତେ କିନ୍ତୁ ଆପଣଙ୍କ ନାମ ଠିକଣା ଦେଇଯିବେ ।

: କାହିଁକି ? ଚନ୍ଦ୍ରକାନ୍ତ ଆଖିରେ ବିସ୍ମୟ ଫୁଟାଇ ପଚାରିଲା ।

: ମୋର ପ୍ରୟୋଜନ । ତରୁଣୀଟି ନିର୍ବିକାର କଣ୍ଠରେ କହିଲା । ଆପଣ ପୁରୁଷ ବୋଲି, ଆପଣଙ୍କର ଅହଙ୍କାରର ସୀମା ନାହିଁ । ମୁଁ କିନ୍ତୁ କାହାରି ପାଖରେ ଋଣୀ ହୋଇ ରହିପାରେ ନାହିଁ ।

ଚନ୍ଦ୍ରକାନ୍ତ ମନେ ମନେ ହସିଲା । ସେ ଭାବିପାରିଲା ନାହିଁ ଅହଙ୍କାର କାହାର ବେଶୀ । ନୀରବରେ କିଛି ସମୟ ଗାଡ଼ି ଚଳେଇବା ପରେ କହିଲା : ମୋ ନାଁ ଚନ୍ଦ୍ରକାନ୍ତ ପଟ୍ଟନାୟକ । ନିଉ ଇଣ୍ଡିଆ ଆଲମୋନିୟମ କମ୍ପାନୀର ଲୋକାଲ ମ୍ୟାନେଜର । ଋଣ ଶୁଝିବା ପାଇଁ ଆଶା କରୁଚି ମୋର ଏତିକି ପରିଚୟ ଯଥେଷ୍ଟ ହେବ ।

ଚନ୍ଦ୍ରକାନ୍ତ ଭାବିଥିଲା, ଏହାପରେ ଝିଅଟି ହୁଏତ ତା'ଆଡ଼େ ବିସ୍ଫାରିତ ନୟନରେ ଅନାଇ ଦେଖିବ । ମୁହଁରେ ତା'ର ଫୁଟିଉଠିବ ବିସ୍ମୟର ବୈଚିତ୍ର୍ୟ । ସେ ଆଉ ଟିକିଏ ଦୂରରେ ବସିବ ଚନ୍ଦ୍ରକାନ୍ତଠାରୁ ।

କିନ୍ତୁ ତରୁଣୀଟି ନିର୍ବିକାର । ସେ କେବଳ ଥରେ ଚାହିଁଲା ଚନ୍ଦ୍ରକାନ୍ତ ମୁହଁକୁ । କହିଲା : ମୋ ନାଁ ମଧୁମିତା ଚୌଧୁରୀ । ବାରିଷ୍ଟର ଶଶୀ ଶେଖର ଚଉଧୁରୀଙ୍କ ଏକମାତ୍ର ସନ୍ତାନ ।

କେହି ବୋଧହୁଏ କାହାରି ପରିଚୟରେ କୌଣସି ବିଶେଷତ୍ୱ ଖୋଜି ପାଇ ନ ଥିଲେ । ତେଣୁ କାହାରି ଆଖିରେ ବିସ୍ମୟ ଫୁଟି ନ ଥିଲା କିମ୍ବା ଅନୁସନ୍ଧିତ୍ସା ଜାଗି ନ ଥିଲା ।

ଏକ ସମୟରେ ମଧୁମିତା କହିଲା : ଏଇଠି ବାଁ ପାଖରେ ଗାଡ଼ି ରଖନ୍ତୁ । ଏଇ ଯୋଉ ତିନିତାଲା କୋଠାଟା, ସେଇଟା ଆମର । ବାପା ଆଉ ମୁଁ । ବାପା ଭାରି ମେଳାପି ଲୋକ । ଆସନ୍ତୁନା ! ତାଙ୍କ ସହିତ ମୁଁ ଆପଣଙ୍କର ପରିଚୟ କରାଇ ଦେବି । ସେ ଆପଣଙ୍କ କଥା ଶୁଣିଲେ ଭାରି ଖୁସି ହେବେ ।

ଚନ୍ଦ୍ରକାନ୍ତର ଆଉ ବୋଧହୁଏ ଧୈର୍ଯ୍ୟ ନ ଥିଲା । ସେ ହାତ ଯୋଡ଼ି ନମସ୍କାର

କରି, ଗାଡ଼ିର ଦରଜା ବନ୍ଦ କରି କହିଲା : କ୍ଷମା କରିବେ । ଆଜି ମୋର ଅନେକ କାମ । ଆଉ ଦିନେ ସମୟ କରି ଆସି ମିଷ୍ଟର ଚୌଧୁରୀଙ୍କ ସଙ୍ଗରେ ଆଳାପ କରିବି ।

କିନ୍ତୁ ଚନ୍ଦ୍ରକାନ୍ତ ଗାଡ଼ି ଚଳେଇ ବାହାରି ଯାଇ ପାରିଲା ନାହିଁ ।

ସେଇ ମୁହୂର୍ତ୍ତରେ ତା' ଗାଡ଼ି ଆଗରେ ଆସି ଠିଆ ହେଲା ଆଉ ଗୋଟିଏ ଗାଡ଼ି । ଯେଉଁ ପ୍ରୌଢ଼ ଭଦ୍ରଲୋକ ଜଣକ ଗାଡ଼ିରେ ବସିଥିଲେ, ମଧୁମିତା ତାଙ୍କ ପାଖକୁ ଛୁଟି ଯାଇ କହିଲା : ତମେ ଠିକ୍ ସମୟରେ ଆସି ପହଞ୍ଚିଛ ଡାଡି ।

ଭଦ୍ରଲୋକ ଘଟଣା କ'ଣ ଜାଣିବା ଆଗରୁ ମଧୁମିତା ଚନ୍ଦ୍ରକାନ୍ତ ଆଡ଼େ ହାତ ବଢ଼ାଇ କହିଲା : ଜାଣ ଡାଡି, ୟାଙ୍କ ନାଁ ଚନ୍ଦ୍ରକାନ୍ତ ପଟ୍ଟନାୟକ । କିନ୍ତୁ ଭୀଷଣ ଅହଙ୍କାରୀ । ମୋତେ ସେ ଏସପ୍ଲାନେଡ଼ରୁ ଗାଡ଼ିରେ ବସାଇ ଏ ଯାଏ ଆଣିଲେ ଅଥଚ ଆମ ଘରକୁ ନ ଯାଇ ଚାଲି ଯାଉଛନ୍ତି । କହିଲ ଡାଡି, ଏଭଳି ଲୋକ ଶାସ୍ତି ପାଇବାର ଉପଯୋଗୀ କି ନୁହେଁ ?

ଆଡ଼ଭୋକେଟ ଶଶୀ ଶେଖର ଚଉଧୁରୀ ଥରେ ଚାହିଁଲେ ତରୁଣ ଚନ୍ଦ୍ରକାନ୍ତ ଆଡ଼େ, ଆଉ ଥରେ ଚାହିଁଲେ କନ୍ୟା ମଧୁମିତା ଆଡ଼କୁ । ଗାଡ଼ିରୁ ତଳକୁ ଓହ୍ଲେଇ ପଡ଼ି, ଚନ୍ଦ୍ରକାନ୍ତ ଏଥର ନିଜେ ଓହ୍ଲାଇ ଆସିଲା ଶଶୀ ଶେଖର ଚଉଧୁରୀଙ୍କ ନିକଟକୁ । ପ୍ରଣାମ କରି ଠିଆ ହେଲା ନୀରବରେ ।

ଶଶୀ ଶେଖର ଚଉଧୁରୀ କହିଲେ : ଏ ତମର ବଡ଼ ଅନ୍ୟାୟ ୟଙ୍ଗ୍‌ମ୍ୟାନ । ମିତା ତମକୁ ଘରକୁ ଡାକୁଛି ଯେତେବେଳେ, ତା' ଅନୁରୋଧ ଅନ୍ତତଃ ତମର ରଖିବା ଉଚିତ । ଅବଶ୍ୟ ସମୟର ମୂଲ୍ୟ ସମ୍ବନ୍ଧରେ ମୁଁ ସବୁବେଳେ ସଚେତନ । ତଥାପି ମିତା ତରଫରୁ ମୋର ଅନୁରୋଧ ତମକୁ ରଖିବାକୁ ହେବ ୟଙ୍ଗମ୍ୟାନ୍ ।

ଚନ୍ଦ୍ରକାନ୍ତ ବୃଦ୍ଧ ଶଶୀ ଶେଖର ଚଉଧୁରୀଙ୍କ ଅନୁରୋଧ ଏଡ଼େଇ ପାରିଲା ନାହିଁ । କିନ୍ତୁ ସେ ଯେତେବେଳେ ଲକ୍ଷ୍ୟ କଲା, ତା'ର ପରାଜୟରେ ମଧୁମିତା ଆହୁରି ପ୍ରଗଳ୍ଭ ହୋଇଉଠିଛି, ସେତେବେଳେ ଚନ୍ଦ୍ରକାନ୍ତ ମନରେ ଏକ ପ୍ରବଳ ପ୍ରତିହିଂସା ଜାଗି ଉଠିଲା । ସେ ପ୍ରତିଜ୍ଞା କଲା, ମଧୁମିତାଠାରୁ ଏହାର ପ୍ରତିଶୋଧ ନିଶ୍ଚୟ ନେବ ।

ଶଶୀ ଶେଖର ଚଉଧୁରୀ ଚନ୍ଦ୍ରକାନ୍ତ ପିଠିରେ ହାତ ଥାପୁଡ଼େଇ କହିଲେ : ମୁଁ ଗୋଟାଏ ଜରୁରୀ କାମରେ ବାହାରିଛି, ତେଣୁ ମୋର ନିମନ୍ତ୍ରଣ ଆଉ ଦିନକୁ ରହିଲା ୟଙ୍ଗମ୍ୟାନ୍ । ଆଶା କରୁଛି ତମ ସହିତ ପୁଣି ସାକ୍ଷାତ ହେବ ।

ଚନ୍ଦ୍ରକାନ୍ତ ମଧୁମିତା ସହିତ ବାଧ୍ୟ ହୋଇ ଆଗେଇଲା । ମଧୁମିତା ଭ୍ୟାନିଟି ବ୍ୟାଗଟା ବୁଲେଇ ବୁଲେଇ, ନିମିଷେ ପଛକୁ ଚାହିଁ ଲନ୍ ଭିତରେ ପଶିଲା ।

ପରିଚ୍ଛନ୍ନ, ରୁଚିସମ୍ପନ୍ନ ବାସଗୃହ ।

ମଧୁମିତା ଖମଲି ଗାଲିଚା ଉପର ଦେଇ ଉପରକୁ ଉଠୁଥିଲା ବେଳେ ତଳକୁ ଆଙ୍ଗୁଠି ଦେଖେଇ କହିଲା : ଡାଡ଼ିଙ୍କ ଲାଇବ୍ରେରୀ, ଚେମ୍ବର, ବେଡ଼ରୁମ୍ ସବୁ ଏଇ ତଳେ । ଦୋତାଲାଟା ଗେଷ୍ଟମାନଙ୍କ ପାଇଁ ।

ତିନିତାଲାରେ ପହଞ୍ଚିଲା ବେଳକୁ ଦୁଇଜଣ ପରିଚାରିକା ଦୁଆର ଖୋଲିଦେଲେ ।

ମଧୁମିତା କହିଲା : ଏଇ ତିନିତାଲାଟି ସବୁ ମୋ ଅଧିକାରରେ ।

ଦୁଇ ଚାରିଟା ଲୁମ୍ବୁରୁମିଆ କୁକୁର ଆସି ମଧୁମିତାକୁ ଚାଟି ପକେଇଲେ । ଆଉ ଦୁଇ ତିନିଟା ଆସି ଚନ୍ଦ୍ରକାନ୍ତକୁ ଶୁଙ୍ଘି ପକେଇଲେ ।

ମଧୁମିତା ଦୁଇ ହାତରେ ଦୁଇଟା କୁକୁର ଉଠାଇ ନେଇ, ଗୋଟାକୁ ଗାଲ ସଙ୍ଗରେ ଲଗାଇ ସ୍ମିତ ହସି କହିଲା : ଏମାନେ ମୋର ଅବସର ବିନୋଦନର ସହଚର ।

ଚନ୍ଦ୍ରକାନ୍ତ ତଥାପି ନୀରବରେ ମଧୁମିତାକୁ ଅନୁସରଣ କରୁଥିଲା । ତା'ର ସବୁ କଥା ଅତ୍ୟନ୍ତ ମନଯୋଗ ସହକାରେ ଶୁଣୁଥିଲା ।

: ଆରେ, ଆପଣ ବସନ୍ତୁ ମିଷ୍ଟର ପଟ୍ଟନାୟକ । ମାତ୍ର ଦୁଇମିନିଟ୍ ଅପେକ୍ଷା କରନ୍ତୁ । ପ୍ଲିଜ୍ ମୁଁ ଟିକିଏ ଆସୁଛି ।

ଚନ୍ଦ୍ରକାନ୍ତ ଗୋଟିଏ ସୋଫା ଉପରେ ବସି ଘରର ଚାରିଆଡ଼କୁ ଥରେ ଆଖି ବୁଲେଇ ନେଲା, ପ୍ରତିଟି ଆସବାବପତ୍ରରେ ଆଭିଜାତ୍ୟର ଛାପ ଲାଗି ରହିଛି । ମଧୁମିତା ଯେ ବାରିଷ୍ଟର ଚଉଧୁରୀଙ୍କ ଅଲିଅଳ ସନ୍ତାନ, ଚନ୍ଦ୍ରକାନ୍ତ ମନେ ମନେ ଚିନ୍ତା କରୁଥିଲା ।

କିନ୍ତୁ ହଠାତ୍ ମଧୁମିତା ତା' ପ୍ରତି ଏତେ ପ୍ରସନ୍ନ ହୋଇ ଉଠିଲା କାହିଁକି ? ଚନ୍ଦ୍ରକାନ୍ତ ନିଜର ପରିଚୟ ଦେବା ପୂର୍ବରୁ, ମଧୁମିତା ତ ତାକୁ ଚିହ୍ନି ନ ଥିଲା ?

ଦିଆଲି ଘଡ଼ିଟା ଠନ୍ ଠନ୍ ହୋଇ ବାଜି ଉଠିଲା ।

ଚନ୍ଦ୍ରକାନ୍ତ ସଚେତନ ହୋଇ ଦେଖିଲା, ଚାରିଟା ବାଜୁଛି । ତାକୁ ପୁଣି ଅଫିସ ଫେରିବାକୁ ହେବ । କେତେଟା ଜରୁରୀ ଫାଇଲ ସେକ୍ରେଟାରୀକୁ ଦେଇ ଆସିଥିଲା ।

ମଧୁମିତାର ପୁଣି ଆବିର୍ଭାବରେ ଚନ୍ଦ୍ରକାନ୍ତ ନିଜ ଭାବନା ଭିତରୁ ଫେରି ଆସିଲା ।

ସେ କାହାକୁ ଦେଖୁଛି ଆଖି ଆଗରେ ?

ମଧୁମିତା ହାଲ୍‌କା ପୋଷାକରେ ଅପୂର୍ବ ଦିଶୁଛି । ସେ ଆସି ବସିଲା ଚନ୍ଦ୍ରକାନ୍ତ ପାଖକୁ ଲାଗି । ହସି ହସି କହିଲା : ସାମାନ୍ୟ ଟିକେ ଜଳଖିଆ ଏବଂ କପେ ସ୍ପେଶାଲବ୍ରାଣ୍ଡ କଫି ଖାଇ ଆପଣ ଚାଲିଯିବେ । ମୁଁ ଆଉ ଆପଣଙ୍କୁ ବେଶୀ ସମୟ ଅଟକାଇବି ନାହିଁ ।

: ତା' ହେଲେ ଋଣ ପରିଶୋଧ ହୋଇଯିବ ? ଚନ୍ଦ୍ରକାନ୍ତ କଣ୍ଠରେ ଉତ୍ତେଜନା ଭରି ରହିଥିଲା ।

ମଧୁମିତା ଖାଲି ହସିଲା । ଆଖିରେ ଆନ୍ତରିକତା ଭରି କହିଲା : ଆପଣଙ୍କୁ ବାଗକୁ ଆଣିବାର କୌଶଳ ମୋତେ ଜଣା ଅଛି, କିନ୍ତୁ ମୋର ସେ ଅଧିକାର ନାହିଁ ।

: ମାନେ ? ଚନ୍ଦ୍ରକାନ୍ତ ଆଖିରୁ ଯେପରି ବିଜୁଳି ଝଲସି ଉଠିଲା ।

: ଆଉ ଯଦି କେବେ ଦେଖାହୁଏ, ସେ ପ୍ରଶ୍ନର ଉତ୍ତର ଦେବି । ହେଇ ଜଳଖିଆ ଆସିଗଲାଣି । ମୁଁ ଜାଣେ ଆପଣ ମୋ ଉପରେ ଭୀଷଣ ରାଗିଛନ୍ତି । ତଥାପି ଆପଣ ଜଳଖିଆ ଖାଇବେ, କଫି ପିଇବେ । କିନ୍ତୁ ବାଧ ହୋଇ । ଆପଣଙ୍କର ବାଧବାଧକତା ମୂଳରେ କୌଣସି ଆନ୍ତରିକତା ନ ଥିଲେ ବି, ମୁଁ ଜାଣେ ମୋ କଥା ଆପଣଙ୍କ ବନ୍ଧୁମହଲରେ ଆଲୋଚିତ ହେବ ।

ଚନ୍ଦ୍ରକାନ୍ତର ଆଉ ବୋଧହୁଏ ସହ୍ୟ ହେଉ ନ ଥିଲା । ମନେ ହେଉଥିଲା, ଏଥର ବିସ୍ଫୋରଣ ହେବ ହୁଏତ ।

କିନ୍ତୁ ସେ ନୀରବରେ ଜଳଖିଆଟକ ଶେଷ କରି, ଏକା ନିଃଶ୍ୱାସକେ କଫି କପ୍‌ଟି ପିଇ ପାରିଥିଲେ ବୋଧହୁଏ ଅଧିକ ଆନନ୍ଦ ପାଇ ଥାଆନ୍ତା । କିନ୍ତୁ ଧୂମାୟିତ କଫି କପ୍‌ଟା ଚନ୍ଦ୍ରକାନ୍ତକୁ ଆଉ କିଛି ସମୟ ଅଟକାଇ ଦେଲା ।

ଯେତେବେଳେ ସେ କଫି କପ୍‌ଟି ନିଃଶେଷ କରି ଉଠି ଠିଆ ହେଲା, ମଧୁମିତା ଆଶା କରିଥିଲା, ଚନ୍ଦ୍ରକାନ୍ତ ନୀରବରେ ଉଠି ଚାଲିଯିବ ।

କିନ୍ତୁ ଚନ୍ଦ୍ରକାନ୍ତ ଯିବା ପୂର୍ବରୁ କହିଗଲା : ଅଶେଷ ଧନ୍ୟବାଦ । ଆପଣଙ୍କ ପାଖରେ ମୁଁ କିନ୍ତୁ ଋଣୀ ହୋଇ ରହିଗଲି ।

ମଧୁମିତା ଯେଉଁଠି ସେଇପରି ବସି ରହି କହିଲା : କାହିଁ, ଆପଣ ତ ଋଣ ଶୁଝିବା ପାଇଁ ମୋତେ ନିମନ୍ତ୍ରଣ କରିଗଲେ ନାହିଁ ?

ଚନ୍ଦ୍ରକାନ୍ତ ବୁଲି ଅନେଇଲା । ମୁହୂର୍ତ୍ତେ ଚିନ୍ତା କଲା । କହିଲା : ହଁ, ନିମନ୍ତ୍ରଣ ରହିଲା । ଯଦି ପାରନ୍ତି, କେବେ ଆସିବେ ସୁବିଧା ଦେଖି ।

ଚନ୍ଦ୍ରକାନ୍ତ ଚାଲିଗଲା ।

ମଧୁମିତା ହସିଲା, ଖାଲି ହସିଲା ଚନ୍ଦ୍ରକାନ୍ତର ଯିବା ପଥ ଆଡ଼େ ଚାହିଁ ।

ଉଠିଲା ନାହିଁ ବି ଆସନରୁ ।

ଚନ୍ଦ୍ରକାନ୍ତ ପଛରେ ଛୁଟିଲା ନାହିଁ ତାକୁ ବାଟୋଇ ଦେଇ ଆସିବାକୁ । ଦୁଇ ହାତରେ କୁକୁର ଦୁଇଟା ଉଠାଇ ଆଣି, ଗାଲରେ ଲଗେଇ ଗେଲ କଲା ସେମାନଙ୍କୁ ।

ମଣିଷଠାରୁ ଏମାନେ ଅନେକ ଅହିଂସ । ଅନେକ ବିଶ୍ୱାସୀ ।

ଏହା ଭିତରେ ତିନି ଚାରିଦିନ ଅତିବାହିତ ହୋଇ ଯାଇଥିଲା । ଚନ୍ଦ୍ରକାନ୍ତ ବୋଧହୁଏ ସେଦିନର ସେହି ଘଟଣାଟି ଭୁଲି ଯାଇଥିଲା ପୂରାପୁରି । ଅଫିସର ନାନା କାର୍ଯ୍ୟରେ ଲିପ୍ତ ରହି ହୁଏତ ଆଉ ମନେ ପକାଇ ପାରି ନ ଥିଲା ମଧୁମିତାକୁ ।

ସେଦିନ ଥିଲା ରବିବାର ।

ଚନ୍ଦ୍ରକାନ୍ତ ଘରେ ବସି ବସି ଅଳସ ମୁହୂର୍ତ୍ତଗୁଡ଼ାକ କଟାଉଥିଲା । ସେ ବୋଧହୁଏ ଭଲ ପାଉଥିଲା ନିର୍ଜନତା । ସେଥିପାଇଁ ବେହେଲା ଅଞ୍ଚଳରେ ଗୋଟିଏ ଛୋଟ ବଂଗଲୋ ପାଟର୍ଣ୍ଣର ଘର ନେଇ ବସବାସ କରୁଥିଲା ସେଇଠି ।

ଗୋଟିଏ ଚାକର, ଗୋଟିଏ ମାଳୀ ଆଉ ସେ ।

ଘର ଆଗରେ ପ୍ରଶସ୍ତ ଜାଗାରେ ଏକ ସୁନ୍ଦର ବଗିଚାର ପରିକଳ୍ପନା କରିଥିଲା ଚନ୍ଦ୍ରକାନ୍ତ । ବୁଲି ବୁଲି ସେ ଦେଖୁଥିଲା ବଗିଚାରେ ଗଛଲତାଙ୍କର ବିସ୍ତୃତି । ମାଳୀକୁ ବୁଝାଉଥିଲା ତା'ର ପରିକଳ୍ପନାର କଥା ।

ହଠାତ୍ ଗୋଟାଏ ମଟର ଗାଡ଼ି ଆସିବାର ଶବ୍ଦ ଶୁଣି ଚନ୍ଦ୍ରକାନ୍ତ ବୁଲି ଅନେଇଲା ପଛକୁ । ଗାଡ଼ିଟା ପରିଚିତ ପରି ମନେ ହେଲା ତା'ର ।

ଆରେ, ଏ ଶଶୀ ଶେଖର ଚଉଧୁରୀ ଆଉ ତାଙ୍କ କନ୍ୟା ମଧୁମିତା ।

ମଧୁମିତା ଗାଡ଼ିରୁ ଓହ୍ଲେଇଲା । ଚନ୍ଦ୍ରକାନ୍ତ ନମସ୍କାର କରିବାକୁ ବି ଭୁଲି ଯାଇଥିଲା ।

ଶଶୀ ଶେଖର ଚଉଧୁରୀ ଗାଡ଼ିରେ ବସିଥିଲେ । ମଧୁମିତା ଛୁଟି ଆସିଥିଲା ଚନ୍ଦ୍ରକାନ୍ତ ପାଖକୁ । ହସି ହସି କହିଲା : ଆପଣଙ୍କ ନିମନ୍ତ୍ରଣ ରକ୍ଷା କରିବାକୁ ଚାଲି ଆସିଲି । ଡାଡିଙ୍କୁ ବି ସଙ୍ଗରେ ଆଣିଛି । ମୋର ଇଚ୍ଛା ନ ଥିଲା । କିନ୍ତୁ ସେ କହିଲେ ମୁଁ ବି ଯିବି ୟଙ୍ଗମ୍ୟାନ ପାଖକୁ ।

ଚନ୍ଦ୍ରକାନ୍ତ ଯେପରି ସଚେତନ ହୋଇ ଉଠିଲା । ଆଗେଇ ଗଲା ଗାଡ଼ି ପାଖକୁ । ନମସ୍କାର ଜଣାଇ ସମ୍ଭ୍ରମ ସହକାରେ ଦୁଆର ଖୋଲି ଦେଲା ଗାଡ଼ିର ।

ଶଶୀଶେଖର ଚଉଧୁରୀ ଖୁବ୍ ଉତ୍ସାହିତ ହେଲା ପରି କହିଲେ : ଇଉ ୟଙ୍ଗମ୍ୟାନ୍, ତୁମେ ଭୀଷଣ ମିଥ୍ୟାବାଦୀ । ମୁଁ ସେଦିନ କହିଥିଲି ନା ମୋ ସହିତ ଦେଖା କରିବା ପାଇଁ ! !

ଚନ୍ଦ୍ରକାନ୍ତ ବିନୟ ସହକାରେ କହିଲା : ମୋତେ ସମୟ ପାଇ ନାହିଁ ସାର୍ । କ୍ଷମା କରିବେ ।

ଶଶୀଶେଖର ଚଉଧୁରୀ ଗାଡ଼ିରୁ ଓହ୍ଲାଇ ପ୍ରଥମେ ଚନ୍ଦ୍ରକାନ୍ତର ବଗିଚାମୟ ବୁଲିଲେ । ଗୋଟି ଗୋଟି କରି ଗଛଲତାଗୁଡ଼ିକୁ ଦେଖିଲେ । ଯେତେବେଳେ ସେ ଚନ୍ଦ୍ରକାନ୍ତର ଛୋଟ ଘରଟି ଭିତରେ ପ୍ରବେଶ କଲେ, ଆନନ୍ଦରେ ଶତମୁଖ ହେଲା ପରି କହିଲେ : ତୁମର ରୁଚି ଅଛି ୟଙ୍ଗମ୍ୟାନ୍, ଜୀବନକୁ ଉପଭୋଗ କରି ଶିଖିଚ ତମେ । ମୋର ୟଙ୍ଗ ଏଜ୍‌ରେ ମୋ ମନ ଭିତରେ ତମରି ପରି ଏକ ସୌଖୀନ ମଣିଷର ଜନ୍ମ ହୋଇଥିଲା, କିନ୍ତୁ ମୁଁ ତାକୁ ଇଟା କଂକ୍ରିଟର ପାଚିରି ଜିଆଇଁ ଭିଜାଇ ରଖିପାରିଲି ନାହିଁ ।

ଚନ୍ଦ୍ରକାନ୍ତ ହସିଲା ଅଳ୍ପଟିକିଏ । ତାର କିଛି କହିବାର ନ ଥିଲା ।

: ଜାଣ ୟଙ୍ଗମ୍ୟାନ୍, ତମର ଏହି ଘରର ପରିବେଶ ମୋ ମନକୁ ବେଶ୍ ଆକୃଷ୍ଟ କରିଛି । ମୋର ମନ ହେଉଛି ଏଇଠି ରହିଯିବା ପାଇଁ ।

ମଧୁମିତା କିନ୍ତୁ ସେଠି ସେମାନଙ୍କ ପାଖରେ ନ ଥିଲା । ସେ ଘର ଭିତରେ ପଶି, ଏପାଖ ସେପାଖ ହୋଇ ଶେଷରେ ପହଞ୍ଚିଲା ଯାଇ ରୋଷେଇ ଘରେ । ଗଣେଶ ବସି ବସି ଚୁଲି ଫୁଙ୍କୁଥିଲା । ମଧୁମିତାକୁ ଦେଖି ସେ ଯେପରି ଆଖି ଆଗରେ ଭୂତ ଦେଖିଲା ।

ମଧୁମିତା ଗଣେଶ ପାଖକୁ ଯାଇ କହିଲା : ଏତେବେଳଯାଏ ଚା' କରି ନାହୁଁ ? ଆସି ଆଠଟା ବାଜିଲାଣି । ବାବୁ ସକାଳେ ଚା' ଖାଆନ୍ତି ନାହିଁ ବୋଧେ !

ଗଣେଶ ଏହି ଆକସ୍ମିକତାର ଆବିର୍ଭାବରେ ବୋଧହୁଏ ଆଶ୍ଚର୍ଯ୍ୟ ହୋଇ ଯାଇଥିଲା । କେବେ ସେ କୌଣସି ନାରୀର ପ୍ରବେଶ ଦେଖି ନ ଥିଲା ତାଙ୍କର ଏହି ନିକାଞ୍ଚନ ଘରଟି ଭିତରେ । ସେଇଥିପାଇଁ ହୁଏତ ଏହି ଅବାକ୍ ଚାହାଣିରେ ଅନାଇ ଥିଲା ସେ ମଧୁମିତା ମୁହଁକୁ ।

ମଧୁମିତା କିନ୍ତୁ ଅତି ପରିଚିତ ପରି ରୋଷେଇ ଘର ପରେ ଷ୍ଟୋର ରୁମ୍‌ରେ ପଶିଥିଲା । ଗୋଟିଏ ପରେ ଗୋଟିଏ ପଦାର୍ଥ ଖେଳେଇ ଦେଖିଲା ସେ । ବିସ୍କୁଟ ଟିଣଟି ହାତରେ ଧରି, ଛୋଟ ହରଲିକ୍‌ସ ବୋତଲ୍‌ଟି ଗଣେଶ ହାତକୁ ବଢ଼ାଇ ଦେଇ କହିଥିଲା : ତିନି କପ୍ ଶୀଘ୍ର ତିଆରି କର । ବାବୁଙ୍କୁ ଏତେବେଳଯାଏ କିଛି ଖାଇବାକୁ ଦେଇ ନାହୁଁ ?

ମଧୁମିତା ଗୋଟାଏ ଡିସ୍ ଆଣି ଟିଣରୁ ବିସ୍କୁଟ ବାହାର କରି ସଜେଇବାରେ ଲାଗିଲା । ଗଣେଶ ହାତରୁ ଚାମଚ ଟାଣି ନେଇ ହରଲିକ୍‌ସ କାଢ଼ି ଗରମ ପାଣିରେ ମିଶେଇଲା । ତା'ପରେ ଚାହିଁଲା ଚାରିଆଡ଼କୁ ।

: ଟ୍ରେ ନାହିଁ ?

: ଅଛି । ଗଣେଶ ଉଠିଗଲା ଟ୍ରେ ଆଣିବା ପାଇଁ ।

ମଧୁମିତା ବିସ୍କୁଟ ଡିସ୍‌ଟି ଏବଂ ଗଣେଶ ହରଲିକ୍‌ସ ଟ୍ରେ ଧରି ଆଗେଇ ଗଲେ ଡ୍ରଇଂରୁମ୍ ଆଡ଼କୁ ।

ଚନ୍ଦ୍ରକାନ୍ତ ସହିତ ଶଶୀଶେଖରଙ୍କର ଗଳ୍ପ ଜମି ଉଠିଚି ସେତେବେଳକୁ ।

ହଠାତ୍ ସେଠାରେ ମଧୁମିତାର ପ୍ଲେଟ ହାତରେ ଆବିର୍ଭାବ ଚନ୍ଦ୍ରକାନ୍ତ ଆଖିରେ ଅବାକ୍ ବିସ୍ମୟ ଫୁଟାଇଲା । ସେ ଉଠିପଡ଼ି ବୋଧହୁଏ ମଧୁମିତା ହାତରୁ ପ୍ଲେଟଟା କାଢ଼ି ଆଣିବା ପାଇଁ ଯାଉଥିଲା ।

ଶଶୀଶେଖର ଚଉଧୁରୀ କହିଲେ : ତୁମେ ବ୍ୟସ୍ତ ହୁଅନାହିଁ ୟଙ୍ଗମ୍ୟାନ୍ । ନାରୀମାନଙ୍କର ଜନ୍ମ ସେଇଥିପାଇଁ । ସେମାନେ ହେଲେ ସେବିକା । ଅନ୍ୟର ସେବା କରିବା ହିଁ ସେମାନଙ୍କର ଧର୍ମ ।

: ହୋଇପାରେ, ଚନ୍ଦ୍ରକାନ୍ତ କହିଲା, କିନ୍ତୁ ସେ ଯେ ମୋର ଅତିଥି ।

ଗଣେଶ ଆଡ଼େ ରାଗିଲା ଆଖିରେ ଚାହିଁ କହିଲା : ତୁ ଗୋଟାଏ ନିତାନ୍ତ ଅପଦାର୍ଥ । ନିଜେ ଆଣିପାରିଲୁ ନାହିଁ ?

ଗଣେଶ ଥଙ୍ଗଥଙ୍ଗ ହୋଇ କ'ଣ କହିବାକୁ ଯାଉଥିଲା ।

ମଧୁମିତା ବାଧା ଦେଇ କହିଲା : ତାର କିଛି ଦୋଷ ନାହିଁ । ତେବେ ଏତିକି ତା'ର ଅପରାଧ ହୋଇପାରେ, ସେ ମୋର କାର୍ଯ୍ୟକଳାପରେ ବାଧା ଦେଇପାରି ନାହିଁ ।

ଚନ୍ଦ୍ରକାନ୍ତର ଆଉ କିଛି କହିବାର ନ ଥିଲା ।

ଶଶୀଶେଖର ଗୋଟିଏ ବିସ୍କୁଟ ଉଠାଇ ନେଇ, ହରଲିକ୍‌ସ କପ୍‌ରେ ବୁଡ଼ାଇ କହିଲେ : ମୁଁ ଭାରି ଖୁସି ହେଲି ୟଙ୍ଗମ୍ୟାନ୍ । ତମର ନିରୋଳାରେ ଏହି ବାସଗୃହଟି ମୋତେ ଭାରି ଆନନ୍ଦ ଦେଲା । ଆଉ ତମ ଗାର୍ଡ଼େନର ଦାୟିତ୍ୱ ମୁଁ ନେଉଛି । ଦେଖିବ, ବୟସରେ ମୁଁ ପ୍ରୌଢ଼ତ୍ୱକୁ ଟପି ଯାଇଥିଲେ ବି ମୋ ମନ ଭିତରେ କିପରି ଏକ ସବୁଜ ମଣିଷ ଜିଇ ରହିଛି ।

ଶଶୀଶେଖର ଚଉଧୁରୀ ଅନର୍ଗଳ ଗପି ପାରନ୍ତି । ଯେଉଁଟା ହୁଏତ ଚନ୍ଦ୍ରକାନ୍ତକୁ ଭଲ ଲାଗେ ନାହିଁ । ସେ କାମର ମଣିଷ । ଚବିଶ ଘଣ୍ଟାରୁ ଷୋଳ ଘଣ୍ଟା କାମ କରୁ କରୁ କିପରି ଯେ କଟିଯାଏ, ସେ କଥା ସେ ବୁଝିପାରେ ନାହିଁ ।

ସେ କଲିକତାକୁ କାର୍ଯ୍ୟଭାର ନେଇ ଆସିଲାଣି ପ୍ରାୟ ସାତଆଠ ମାସ ହେବ । ଦୁଇ ତିନିମାସ ହୋଟେଲରେ କଟିଲା ଚନ୍ଦ୍ରକାନ୍ତର । କିନ୍ତୁ ହୋଟେଲ ଜୀବନ ତାକୁ ଜମା ଭଲ ଲାଗିଲା ନାହିଁ । ସେଥିପାଇଁ ସେ ବହୁତ ଖୋଜି ଖୋଜି ଏ ଘରଟିକୁ ପସନ୍ଦ କଲା । ସହରଠାରୁ ଦୂରରେ ନ ହେଲେ ବି କୋଳାହଳର ବହୁ ଦୂରରେ ସେ ବାଛିନେଲା

ବାସସ୍ଥଳୀଟି । ନିର୍ଜଞ୍ଜାଳ, ନିର୍ଝଞ୍ଝଟ ଲୋକ । ସକାଳ ଓ ସନ୍ଧ୍ୟାରେ ଟିକିଏ ମୁକ୍ତ ଆଲୋକ, ମୁକ୍ତ ବାୟୁ ସେବନ କରିପାରିଲେ, ବାକି ସମୟତକ ନିରଳସ ଭାବରେ କାମ କରି ଯାଇପାରିବ ଚନ୍ଦ୍ରକାନ୍ତ ।

ବାପା ମା' ଅନେକ ଦିନରୁ ଛାଡ଼ି ଚାଲିଯାଇଛନ୍ତି ଚନ୍ଦ୍ରକାନ୍ତକୁ । ଯେଉଁ ଆତ୍ମୀୟସ୍ୱଜନମାନେ ଅଛନ୍ତି, ସେମାନଙ୍କ ପାଖକୁ କେବେ ଯାଏ ନାହିଁ ଚନ୍ଦ୍ରକାନ୍ତ । କର୍ମମୟ ଜୀବନରେ କୌଣସି ଅଭାବ ଅସୁବିଧା ଚନ୍ଦ୍ରକାନ୍ତକୁ ବିଚଳିତ କରିପାରି ନାହିଁ । ଜୀବନଟା ତା'ର ଗତିଶୀଳ; କିନ୍ତୁ ଭାରି ଏକମୁଖୀ ।

ଶଶୀଶେଖର ଆଉ ମଧୁମିତାଙ୍କ ସହିତ ବସି କଥାବର୍ତ୍ତା ହେଲାବେଳେ ତା'ର ମନେ ହେଉଛି, ଏକ ନୂତନ ଆସ୍ୱାଦ, ଏକ ନୂତନ ରୋମାଞ୍ଚ ଯେପରି ରହି ରହି ଜାଗି ଉଠୁଛି ତା' ଦେହମନରେ । ବିଶେଷ କରି ଶଶୀଶେଖର ଚଉଧୁରୀ ତା' ମନ ଉପରେ ବିଶେଷ ପ୍ରଭାବ ପକାଇ ପାରିଛନ୍ତି ।

ଆଉ ମଧୁମିତା । ସେ ତ ତାରୁଣ୍ୟରେ ପାଦ ଦେଇଛି ମାତ୍ର । ଚନ୍ଦ୍ରକାନ୍ତର ଝିଅମାନଙ୍କ ପ୍ରତି କେଜାଣି କାହିଁକି ଗୋଟେ ବିତୃଷ୍ଣା ରହିଆସିଛି ସବୁଦିନ । କୌଣସି ଝିଅକୁ ସେ ସହ୍ୟ କରିପାରେ ନାହିଁ । ବୋଧହୁଏ ଅତି ଶୈଶବରୁ ମାତୃହରା ହୋଇଥିବାରୁ ଚନ୍ଦ୍ରକାନ୍ତ ମନରେ ଏହି ବିଦ୍ୱେଷ । ତେଣୁ ମଧୁମିତା ପ୍ରତି ତା'ର ଖୁବ୍ ଗୋଟାଏ ଆନ୍ତରିକତା ନ ଥିଲା ।

ମଧୁମିତା କିନ୍ତୁ ସେଠାରୁ ଉଠି ଯାଇଥିଲା । ବୋଧହୁଏ ରୋଷେଇ ଘରକୁ । ଗଣେଶ ପାଖକୁ ।

ଶଶୀଶେଖର କହିଲେ : ଇଉ ୟଙ୍ଗମ୍ୟାନ୍, ଏହି ବିଶାଳ ଦୁନିଆ ଭିତରେ ତମ ମନରେ ଅଶେଷ ରଙ୍ଗିନ ସପ୍ନ ଥିବ । ଯେମିତି ମୋର ଥିଲା ତମ ବୟସରେ । ସେତେବେଳେ ବାପାଙ୍କର ବିଶାଳ ସାମ୍ରାଜ୍ୟ । ଆମର ବିରାଟ ଜମିଦାରୀ । ମୁଁ ଏକମାତ୍ର ସନ୍ତାନ । ତେଣୁ ବୁଝୁଥିବ ୟଙ୍ଗମ୍ୟାନ୍, ମୋର ସ୍ଥିତି, ମୋର ଅବସ୍ଥିତି କଥା ।

ତଥାପି ଜୀବନଟା ମୋର ବ୍ୟର୍ଥ ହୋଇଗଲା । ସରସ, ସୁନ୍ଦର, ସପ୍ନମୟ ଜୀବନର ଯେଉଁ ଅଶେଷ କାମନା ପୂରି ରହିଥିଲା ମୋ ମନରେ, ସବୁ ବ୍ୟର୍ଥ ହୋଇଗଲା । ସବୁ ବ୍ୟର୍ଥ କରିଦେଲା ମାନି ।

ମାନି ନାଁ ଶୁଣି ଚନ୍ଦ୍ରକାନ୍ତ ଟିକିଏ ଚଞ୍ଚଳ ହୋଇ ଉଠିଲା । କିଏ ମାନି ? କିଏ ଶଶୀଶେଖର ଆଉ କିଏ ଚନ୍ଦ୍ରକାନ୍ତ ? ବିରାଟ ବ୍ୟବଧାନ । ପୂର୍ବ ପଶ୍ଚିମ ପରି, ଉତ୍ତର

ଦକ୍ଷିଣ ପରି । କିନ୍ତୁ ହଠାତ୍, ଦିନକର ଦେଖା, କେଇଘଣ୍ଟାର ପରିଚୟ ! ତା'ରି ଭିତରେ ଶଶୀଶେଖର ତାଙ୍କ ଜୀବନର ଅତୃପ୍ତ ପୃଷ୍ଠାଗୁଡ଼ିକୁ ଚନ୍ଦ୍ରକାନ୍ତ ଆଗରେ ଖୋଲି ଧରିଲେ କାହିଁକି ?

ଶଶୀଶେଖରଙ୍କ ତୁଳନାରେ ଚନ୍ଦ୍ରକାନ୍ତଙ୍କ ବୟସ ଅଳ୍ପ ହେଲେ ମଧ୍ୟ ତା'ର ବି ଜୀବନ ଅଛି । ସୁଖ ଦୁଃଖ, ଅଶ୍ରୁ ଆନନ୍ଦ ଭିତରେ ବୃହତ୍ ନ ହେଲେ ବି, ତା' ଜୀବନର ଇତିହାସ ପୃଷ୍ଠା କେବେ ସେ କାହାରି ପାଖରେ ମେଲି ଧରିବାକୁ ଭରସା କରିପାରେ ନାହିଁ । ଶଶୀଶେଖର ତା' ହେଲେ ଏତେ ଅଳ୍ପ ପରିଚୟରେ...

ବୁଝିଲ ୟଙ୍ଗମ୍ୟାନ୍ ! ବୟସ ମୋର ଯଥେଷ୍ଟ ହୋଇଛି । ଜୀବନରେ ବହୁ ଅଭିଜ୍ଞତା ଭିତରେ ଦେଇ ମୁଁ ଅନ୍ତତଃ ଏତିକି ଶିଖିଚି, ମଣିଷ ଦେଖିଲେ ମୁଁ ପ୍ରଥମ ଦର୍ଶନରେ ହିଁ ତାକୁ ଚିହ୍ନିପାରେ । ଯେମିତି ପ୍ରଥମ ଦର୍ଶନରେ ମୁଁ ତୁମକୁ ଚିହ୍ନିପାରିଲି । ଠିକ୍ ମୋର ମନର ମଣିଷଟିଏ । ଯାହା ପାଖରେ ନିର୍ବିଘ୍ନରେ ଜୀବନର ସମସ୍ତ ଅଶ୍ଳୀଳ ପୃଷ୍ଠାଗୁଡ଼ିକ ଖୋଲି ଦେଇହେବ ନିଃସଙ୍କୋଚରେ ।

ଚନ୍ଦ୍ରକାନ୍ତ ଲକ୍ଷ୍ୟ କରୁଥିଲା, ଶଶୀଶେଖର କ୍ରମଶଃ ଭାବବିହ୍ୱଳ ହୋଇପଡ଼ୁଛନ୍ତି । ସ୍ଥାନାସ୍ଥାନ ପାତ୍ରାପାତ୍ର କିଛି ତାଙ୍କର ମନେ ରହୁନାହିଁ । କିନ୍ତୁ ଚନ୍ଦ୍ରକାନ୍ତର କ'ଣ ତାଙ୍କର ଏପରି ଏକ ଦୁର୍ବଳତାର ସୁଯୋଗ ନେବା ଉଚିତ ?

: ସାର୍... ଚନ୍ଦ୍ରକାନ୍ତ ଡାକିବାକୁ ଚେଷ୍ଟା କରି ମଧ୍ୟ କୌଣସି ଉତ୍ତର ପାଇଲା ନାହିଁ ।

ଶଶୀଶେଖର ଆଖି ବୁଜି, ମନଟାକୁ ଯେପରି ଅତୀତର ଗଭୀର ଗହ୍ୱର ଭିତରେ ଭରି ଦେଇ, ଚୂନା ଚୂନା ସ୍ମୃତିର ଉପଳଖଣ୍ଡମାନ ଦୁଇ ହାତରେ ଗୋଟାଇବାକୁ ଚେଷ୍ଟା କରୁଥିଲେ ।

: ତା ନାଁ ମାନିନୀ । ମୁଁ ତାକୁ ଡାକୁଥିଲି ମାନି ।

ଆମ ଜମିଦାରୀର ଏକ କୃଷକ ପରିବାରରେ ତା'ର ଜନ୍ମ ।

ଯେତେବେଳେ ମାନି ସହିତ ମୋର ପରିଚୟ ହୁଏ, ସେତେବେଳେ ମୁଁ ତା'ର ଇତିହାସ ଜାଣି ନ ଥିଲି ।

କଲିକତାରେ ମୋର ମାନି ସହିତ ଭେଟ ହୋଇଥିଲା ।

ମୋର ସେତେବେଳେ ଛାତ୍ରଜୀବନ । ଶ୍ୟାମବଜାରରେ ଆମର ବିରାଟ କୋଠା । ଦାସଦାସୀ, ଗାଡ଼ିଘୋଡ଼ାରେ ଆମର ଶ୍ୟାମବଜାରର ଘର ଆଭିଜାତ୍ୟର ବିଜୟ ବୈଜୟନ୍ତୀ ଉଡ଼ାଉଥାଏ । ଆଉ ସହଜେ ମୁଁ କୁଳନନ୍ଦନ ।

ମାନି ସେତେବେଳେ ସ୍କୁଲରେ ପଢୁଥାଏ । ସେଇଟା ବୋଧହୁଏ ତା'ର ସ୍କୁଲ ଫାଇନାଲ୍ ଇଅର୍ । ସେ ତା'ର ଜଣେ ଆତ୍ମୀୟ ପାଖରେ ରହି ପାଠ ପଢୁଥାଏ ।

ଏକ ଆକସ୍ମିକ ବିପଦରୁ ମାନିକୁ ରକ୍ଷା କରିବାକୁ ଯାଇ ତା' ସହିତ ମୋର ପରିଚୟ ହୁଏ । ତା' ଆଖି ଦୁଇଟାର ଚାହାଣି ଆଡ଼େ ଚାହିଁ ମୁଁ ସ୍ଥିର ହୋଇଯାଏ । କ'ଣ ସେ ଆଖି ! ଯେପରି ଗୋଟିଏ ଶିଳ୍ପୀ ତା'ର ସମସ୍ତ ସାଧନା ଦେଇ ଜୀବନ ଭରି ବସି ବସି ଆଖି ଦୁଇଟିକୁ ଗଢ଼ିଛି ।

ମୋର ନିର୍ଲଜ୍ଜ ଚାହାଣି ଆଡ଼େ ମାନି ଚାହିଁପାରେ ନାହିଁ ସତ, କିନ୍ତୁ ସେ ବାଧ ହୋଇ ମୋ ଗାଡ଼ିରେ ବସେ । ମୁଁ ତାକୁ ନେଇ କୋଲୁଟୋଲାରେ ତା' ଆତ୍ମୀୟଙ୍କ ନିକଟରେ ଛାଡ଼ିଦେଇ ଆସେ ।

ସେତେବେଳେ ମୁଁ ଜମିଦାର ବା ସେ ପ୍ରଜା, ସେପରି କୌଣସି ପରିଚୟ ନ ଥାଏ ଆମର ।

କିନ୍ତୁ ମାନିର ଆଖି ଦୁଇଟାକୁ ମୁଁ ଭୁଲିପାରେ ନାହିଁ ।

ବାରମ୍ବାର ପ୍ରତିଦିନ ମୋତେ ଗାଡ଼ି ଧରି ଛୁଟି ଆସିବାକୁ ହୁଏ କଲୁଟୋଲାର ମୋଡ଼କୁ । ଗାଡ଼ି ଠିଆ କରି ମୁଁ ଚାହିଁ ରହିଥାଏ । ମାନି ବହିପତ୍ର ଧରି ସ୍କୁଲକୁ ଯିବାବେଳେ ମୋତେ ଚାହେଁ । କିନ୍ତୁ କୃତଜ୍ଞତା ଫୁଟିଉଠେ ତା' ମୁହଁରେ । ଅଳ୍ପ ଟିକିଏ ହସର ଝଲକ ଦିଶେ । ଅଦୃଶ୍ୟ ହେବା ଯାଏ ଫେରି ଫେରି ମୋ ଆଡ଼େ ଚାହିଁ ଚାଲିଯାଏ ।

ତୃପ୍ତିରେ ମୋ ମନ ଭରି ଉଠେ ।

ଗାଡ଼ି ନେଇ ମୁଁ ଫେରିଯାଏ ଆମ ଘରକୁ ।

କିଶୋରୀ ମାନି ଆଉ ତରୁଣ ଶଶୀଶେଖରର ଏହି ଆନ୍ତରିକତା ଦିନେ ପରିଣତ ହୁଏ ପ୍ରେମରେ ।

ତା'ପରେ ବିବାହ ।

କିନ୍ତୁ ମୋର ଏହି ବିବାହ ପ୍ରସ୍ତାବରେ ଆମ ସମଗ୍ର ଜମିଦାରୀରେ ଏକ ପ୍ରବଳ ଆଲୋଡ଼ନ ସୃଷ୍ଟି ହୋଇଯାଏ ।

ବାପା ଯେତେବେଳେ ମାନିର ବଂଶ ପରିଚୟ ସଂଗ୍ରହ କରିବାକୁ ଯାଇ ଜାଣିପାରନ୍ତି ଯେ, ଆମରି ଜମିଦାରୀର ସେ ଏକ କୃଷକ କନ୍ୟା, ସେତେବେଳେ ସେ ମୋ ଉପରେ ଭୀଷଣ ମୂର୍ତ୍ତି ଧାରଣ କରି ଏ ବିବାହ ବନ୍ଦ କରିବା ପାଇଁ ମୋତେ ଧମକ ଦିଅନ୍ତି ।

ବାପା ଆଉ ମୋ ଭିତରେ ମନ କଷାକଷି ହୁଏ । ତାଙ୍କର ଏକା ଜିଦ୍, ସେ ଏ ବିବାହ କରାଇଦେବେ ନାହିଁ ।

ଆଉ ମୋର ଏକା ଜିଦ୍, ମୁଁ ମାନି ଛଡ଼ା ଅନ୍ୟ କାହାକୁ ବିବାହ କରିବି ନାହିଁ । ଶେଷରେ ଦୁଇଜଣଙ୍କର ଜୟ ହେଲା ।

ମାନେ ବାପା ଜିଣିଲେ ମୋତେ ତ୍ୟଜ୍ୟପୁତ୍ର କରି । ଆଉ ମୁଁ ଜିଣିଲି ମାନିକୁ ବାହା ହେଇ ।

ସେଇଦିନଠାରୁ ମୁଁ ବାପାଙ୍କଠାରୁ ସମ୍ପୂର୍ଣ୍ଣ ଅଲଗା ହୋଇଗଲି । ସେତେବେଳକୁ ମୁଁ ବି.ଏ. ପରୀକ୍ଷା ଦେଇ ସାରିଥାଏ । ମାନିକୁ ଧରି ମୁଁ କଲିକତା ଛାଡ଼ି ଚାଲିଗଲି । ଏଲହାବାଦ ବ୍ୟାଙ୍କରେ ମୋ ନାମରେ ଯାହା ଗଚ୍ଛିତ ଟଙ୍କା ଥିଲା, ସେଇଥିରେ ମୁଁ ଲ' ପଢ଼ିଲି ।

ମାନିକୁ ପାଇ ମୁଁ ପ୍ରକୃତରେ ଭୁଲି ଯାଇଥିଲି ସବୁ ।

ଅବସରବେଳେ ମୁଁ ଖାଲି ମାନିର ଆଖିକୁ ଅନାଇ ବସି ଦୁନିଆର ସବୁ କଥା ଭୁଲିଯାଏ । ମାନିକୁ କେନ୍ଦ୍ର କରି ମୁଁ ଏକ ସୁନ୍ଦର ସଂସାରର ପରିକଳ୍ପନାରେ ମତ୍ତ ହୋଇ ଉଠେ ।

କିନ୍ତୁ ମାନି ମୋତେ ମୋ ଅଭିଳାଷ ପୂରଣର ସୁଯୋଗ ଦେଲା ନାହିଁ । ଯେତେବେଳେ ମୁଁ ଆର୍ଥିକ ସଂଗତି ଫେରି ପାଇଲି; ଯଶ ଖ୍ୟାତି ଗୋଟିଏ ପରେ ଗୋଟିଏ ଆସି ମୋ ଆଗରେ ଠିଆ ହେଲେ, ମାନି ସେତେବେଳେ ମୋତେ ଏକା ଛାଡ଼ି ଚାଲିଗଲା । ରଖିଗଲା ବର୍ଷକର ସନ୍ତାନ ଏଇ ମିତାକୁ ।

ବ୍ୟର୍ଥ କରିଦେଲା ମୋ ଜୀବନଟାକୁ ।

ଯାହା ପାଇଁ ସବୁ ହରେଇଥିଲି, ଶେଷରେ ମୋତେ ତାକୁ ବି ହରେଇବାକୁ ପଡ଼ିଲା । ଭଗବାନଙ୍କୁ ଅଭିଶାପ ଦେଲି । କାହିଁକି ତୁମର ଏ ସୃଷ୍ଟି ?

ଶଶୀଶେଖରଙ୍କ ଆଖିରେ ଲୁହ ଭରି ଆସିଥିଲା ।

ମୁହଁଟା ଫୁଲି ଉଠିଥିଲା ।

ତାଙ୍କ ବେଦନା ହୁଏତ ଅନୁଭବ କରୁଥିଲା ଚନ୍ଦ୍ରକାନ୍ତ । ସେ ସ୍ତବ୍ଧ ହୋଇ ଯାଇଥିଲା ।

ଶଶୀଶେଖର ଆଖିରୁ ରୁମାଲଟା କାଢ଼ି ପୁଣି ଆରମ୍ଭ କରିଥିଲେ : ଜୀବନର ଧକ୍କା ବଡ଼ ସାଂଘାତିକ ଯଙ୍ଗମ୍ୟାନ୍ । ସହି ନ ପାରିଲେ ଦୁନିଆରେ ଠିଆ ହୋଇପାରିବ ନାହିଁ । ମୁଁ ଯେପରି..

ଦୂରରୁ ମଧୁମିତାର କଣ୍ଠସ୍ୱର ଶୁଣି ଶଶୀଶେଖର ନୀରବ ହେଇଗଲେ : ହେଇ ଆସିଲାଣି ମିତା । ବଡ଼ କଷ୍ଟରେ ମୁଁ ତାକୁ ମଣିଷ କରିଛି । ତୁମେ ମିତାର ଆଖିକୁ ଲକ୍ଷ୍ୟ କରିବ ୟଙ୍ଗମ୍ୟାନ୍ । ଦେଖିବ ଏକ ସ୍ୱାତନ୍ତ୍ର୍ୟ ରହିଛି । ହେଲେ ମାନିର ଶହେ ଭାଗରୁ ଭାଗେ ବି ହେବ ନାହିଁ ।

ମଧୁମିତା ମୁହଁରେ ହସର ଫୁଲ ଫୁଟାଇ ଝାଳସରସର ହୋଇ ଆସି ସେମାନଙ୍କ ଆଗରେ ଠିଆ ହେଲା ।

ଚନ୍ଦ୍ରକାନ୍ତ ମଧୁମିତାର ଝାଳସରସର ଦେହ ଓ ଅଡୁଆ ତଡୁଆ କେଶବାସ ଆଡ଼େ ଚାହିଁ ଆଶ୍ଚର୍ଯ୍ୟ ହୋଇ ପଚାରିଲା : ଆପଣ କ'ଣ କରୁଥିଲେ ?

ଉତ୍ତର ଦେଲେ ଶଶୀଶେଖର ।

ମୁହଁରେ ବାତ୍ସଲ୍ୟ ହସ ଫୁଟାଇ କହିଲେ : ମିତାର ଗୋଟିଏ ଆଲୁ ଦୋଷ ଅଛି ମିଷ୍ଟର ପଟ୍ଟନାୟକ । ସେଇଟା ସମ୍ପୂର୍ଣ୍ଣ ତା'ର ମାତୃଦତ୍ତ । ଯେତେ ଦାସଦାସୀ ଚାକର ପୂଝାରୀ ଥିଲେ ବି ଅନ୍ତତଃ ତରକାରୀଟା ସେ ନିଜ ହାତରେ ନ ରାନ୍ଧି ଛାଡ଼ିବ ନାହିଁ ।

: ତା'ହେଲେ ମିତାଦେବୀ କ'ଣ... ଚନ୍ଦ୍ରକାନ୍ତଙ୍କ କଥା ଅସମ୍ପୂର୍ଣ୍ଣ ରଖି ଉଠି ଠିଆ ହୋଇ ପଡ଼ିଥିଲା ।

ମଧୁମିତା ହସି ହସି କହିଲା : ଆପଣ ମୋତେ ବ୍ୟସ୍ତ ହୁଅନ୍ତୁ ନାହିଁ । ଗଣେଶ କିନ୍ତୁ ମୋତେ ଯଥେଷ୍ଟ ସାହାଯ୍ୟ କରିଛି । ଗଣେଶ ପରି ଯୋଗାଡ଼ିଆ ପାଇଲେ ମୁଁ ଘଣ୍ଟାକେ ନଅ ତରକାରୀ ଛଅ ଭଜା କରି ପରଷି ଦେଇପାରନ୍ତି ।

: କିନ୍ତୁ, ଆପଣମାନେ ରହିବେ ନାହିଁ, ଖାଇବେ ନାହିଁ ଅଥଚ... ଚନ୍ଦ୍ରକାନ୍ତ ଏଥର ବି ତା' କଥା ଶେଷ କରିପାରିଲା ନାହିଁ ।

ମଧୁମିତା ପୁଣି ହସି ହସି କହିଲା : ଆମେ ଏତେ ନିଃସ୍ୱାର୍ଥପର ନୋହୁ ଚନ୍ଦ୍ରବାବୁ । ମୁଁ ସମସ୍ତଙ୍କ ପାଇଁ ଖାଇବାର ଆୟୋଜନ କରିସାରିଛି । ଆପଣ ଆମକୁ ନିମନ୍ତ୍ରଣ ନ କଲେ ବି, ଖାଇବା ପିଇବାରେ ଆମର କିଛି ବାଛ ବିଚାର ନ ଥାଏ ।

ଚନ୍ଦ୍ରକାନ୍ତ ଏତେବେଳେ ବୋଧହୁଏ ଟିକିଏ ସ୍ୱସ୍ତିରେ ନିଃଶ୍ୱାସ ପକାଇ ପୁଣି ଆସନରେ ବସିଲା ।

ଏଥର ଚାହିଁଲା ସେ ମଧୁମିତାର ମୁହଁକୁ । ଶଶୀଶେଖର ଚଉଧୁରୀଙ୍କ କଥା ମନେ ପଡ଼ିଲା ତା'ର । ମଧୁମିତା ଆଖିରେ ଏକ ସ୍ୱାତନ୍ତ୍ର୍ୟ ଅଛି ସତରେ ।

କିନ୍ତୁ ମଧୁମିତା ଆଖି ସହିତ ଚାରି ଆଖି ହୋଇଯିବା ମାତ୍ରେ ଚନ୍ଦ୍ରକାନ୍ତ ଚାହାଣି ନତ ହୋଇ ଆସିଲା ।

ଜୀବନରେ ତା'ର ତିରିଶ ବତିଶଟି ବର୍ଷ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ କେଇଜଣ ଝିଅଙ୍କ ଆଡ଼େ ଚାହିଁପାରିଛି ସେ ସ୍ୱଚ୍ଛନ୍ଦରେ ? ସାଙ୍ଗମାନଙ୍କ ପାଖରେ ସବୁବେଳେ ସେ ଅପଦସ୍ତ ହୋଇଆସିଛି । ଲାଜକୁଳା, ମାଇଚିଆ ଇତ୍ୟାଦି ବହୁ ବିଶ୍ଳେଷଣରେ ତା'ର ଛାତ୍ରଜୀବନ କାହିଁକି, କର୍ମମୟ ଜୀବନରୁ ଅର୍ଦ୍ଧେକ ମଧ୍ୟ ଅତିବାହିତ ହୋଇଛି ।

କିନ୍ତୁ ଯେଉଁମାନେ ଝିଅମାନଙ୍କ ଆଡ଼େ ଚାହିଁ, ଶ୍ଳୀଳତା ହାନିକର ଇଙ୍ଗିତ କରି , ସେମାନଙ୍କ ପଛରେ ଘୂରି ବୁଲୁଥିଲେ, ସେମାନଙ୍କ ଭିତରୁ କେଇଜଣ ଜୀବନରେ ତା'ପରି ଉନ୍ନତି କରିପାରିଛନ୍ତି ?

ସମସ୍ତଙ୍କର ଅଧୋଗତି ଘଟିଛି ସେହି ନାରୀଘଟିତ ବ୍ୟାପାରରେ ।

କିନ୍ତୁ ମଧୁମିତା !

ବାରିଷ୍ଟର ଶଶୀଶେଖର ଚଉଧୁରୀଙ୍କର ଏକମାତ୍ର ଶିକ୍ଷିତା କନ୍ୟା । ସୁନ୍ଦରୀ, ତନ୍ୱୀ, ବିଦୁଷୀ ।

ଚନ୍ଦ୍ରକାନ୍ତ ଆଖି ଉଠାଇ ଆଉ ଥରେ ଚାହିଁବାକୁ ଚେଷ୍ଟା କଲା ମଧୁମିତାର ମୁହଁକୁ ।

ଶାନ୍ତ, କମନୀୟ ।

ସତେ ତ ! ଆଖି ଯୋଡ଼ାକ ଯେପରି ଚନ୍ଦ୍ରକାନ୍ତ ନୂଆ ଦେଖୁଛି ।

ଆହୁରି ଚାହିଁ ରହିବାକୁ ମନ ହେଉଥିଲା ଚନ୍ଦ୍ରକାନ୍ତର ।

କିନ୍ତୁ ଶଶୀଶେଖର ଚଉଧୁରୀ ଯଦି ତା' ଆଡ଼େ ଚାହାନ୍ତି, କ'ଣ ଭାବିବେ ସେ !

ଚନ୍ଦ୍ରକାନ୍ତ ଉଠି ଠିଆ ହୋଇ ପଡ଼ିଲା । କହିଲା : କ୍ଷମା କରିବେ । ଆପଣମାନଙ୍କୁ ଯେତେବେଳେ ଅତିଥି ରୂପେ ପାଇବାର ସୌଭାଗ୍ୟ ଅର୍ଜନ କରିଛି, ଟିକିଏ ଗଣେଶକୁ କହି ଆସେ । ଅନ୍ତତଃ ବଜାରକୁ ଯାଇ କିଛି ପରିବାପତ୍ର...

ଶଶୀଶେଖର ଚନ୍ଦ୍ରକାନ୍ତଙ୍କର ଏହି ବ୍ୟସ୍ତତା ଦେଖି ହୋ ହୋ ହୋଇ ହସିଉଠିଲେ । କହିଲେ : ତୁମେ ମୋଟେ ବିଚଳିତ ହୁଅ ନାହିଁ ୟଙ୍ଗମ୍ୟାନ୍, ମିତା ସବୁ ବନ୍ଦୋବସ୍ତ କରି ସାରିଥିବ । ଆମର ଏତେବଡ଼ ସଂସାରର ଦାୟିତ୍ୱ ମିତା ମୁଣ୍ଡରେ । କେଉଁଠି କେଉଁଦିନ ଟିକିଏ ହେଲେ ବ୍ୟତିକ୍ରମ ହୁଏ ନାହିଁ ।

: କିନ୍ତୁ ଘରେ ପନିପରିବା ନ ଥିଲେ...

: ମୁଁ ଗଣେଶକୁ ବଜାରକୁ ପଠାଇଛି । ଆପଣଙ୍କ ପାଇଁ ଚିକେନ, ଡାଡିଙ୍କ ପାଇଁ କଲିଜା, ଆଉ ମୋ ପାଇଁ ମାଛମୁଣ୍ଡ ଆଣିବାର ବରାଦ ମୁଁ କରି ଦେଇଛି । ସେ ପ୍ରାୟ ଫେରି ଆସୁଥିବ ।

ଚନ୍ଦ୍ରକାନ୍ତ ଆଉ ଥରେ ବିସ୍ମିତ ହୋଇ ମଧୁମିତା ଆଡ଼କୁ ଚାହିଁଲା । ସେ ଯେ ଚିକେନ ଭଲପାଏ, ମଧୁମିତା ସେକଥା ଜାଣିଲା କିପରି ?

ପୁଣି ଚାରିଆଖିର ମିଳନରେ ଚନ୍ଦ୍ରକାନ୍ତ ଆଖି ନୁଆଁଇଲା । ଏଥର କିନ୍ତୁ ସେ ଚେଷ୍ଟା କରୁଥିଲା ଚୋରେଇ ଚୋରେଇ ମଧୁମିତାର ଆଖି ଯୋଡ଼ାକୁ ଦେଖିବା ପାଇଁ ।

ମଧୁମିତା ଉଠି ଠିଆ ହେଲା । କହିଲା : ଆପଣ ଡାଡିଙ୍କୁ ନେଇ ଟିକିଏ ବୁଲି ଆସନ୍ତୁ ଚନ୍ଦ୍ରବାବୁ, ମୁଁ ଗଣେଶ ସଙ୍ଗରେ ରୋଷେଇ ଘରେ ଅଛି । ଠିକ୍ କିନ୍ତୁ ଏଗାରଟା ବେଳକୁ ଫେରି ଆସିବେ ।

ଶଶୀଶେଖର ଚନ୍ଦ୍ରକାନ୍ତର ହାତ ଧରି ଟାଣି ଉଠାଇଲେ । : ଇଏସ୍ ୟଙ୍ଗମ୍ୟାନ୍, ମିତା କହୁଥିଲା, ତମେ କୁଆଡ଼େ ସ୍ପିଡ୍‌ରେ ଗାଡ଼ି ଚଳେଇପାର । ଅନେକ ଦିନରୁ ମୁଁ କୋଡ଼ିଏ ପଚିଶ ମାଇଲରୁ ସ୍ପିଡୋମିଟର ଉପରକୁ ଉଠାଇ ପାରି ନାହିଁ । ମୋର କିନ୍ତୁ ପଚାଶ ଷାଠିଏ ମାଇଲକୁ ଭାରି ଲୋଭ ।

ଚନ୍ଦ୍ରକାନ୍ତଙ୍କର ସେଇ ଗୋଟିଏ ଦୁର୍ବଳତା । ମଟର ଡ୍ରାଇଭିଂ କଥା ପଡ଼ିଲେ ସେ ଆଉ ନୀରବ ହୋଇ ବସିପାରେ ନାହିଁ ।

ସେଦିନ ଖାଇବା ଟେବୁଲରେ ବସି ଶଶୀଶେଖର ଚନ୍ଦ୍ରକାନ୍ତର ଉଚ୍ଚ ପ୍ରଶଂସା କଲେ । ଚନ୍ଦ୍ରକାନ୍ତ ଗାଡ଼ି ଚଳେଇବାରେ ଯେ ଜଣେ ଏକ୍‌ସପର୍ଟ, ତାହା ସେ ନିଜେ ନ ଦେଖିଥିଲେ କେବେ ବିଶ୍ୱାସ କରିପାରି ନ ଥାନ୍ତେ । ଜୀବନରେ ଏହିପରି ଡେଆରିଙ୍ଗ ସ୍ପିରିଟ ନ ଥିଲେ ଜୀବନର ମାନ ଉନ୍ନତ କରିହୁଏ ନାହିଁ । ନା ହେବା ସମ୍ଭବ ନୁହେଁ । ଧୀର ସ୍ଥିର ସୁସ୍ଥ ଜୀବନପ୍ରବାହ, ଯାହା ଆବହମାନ କାଳରୁ ଚଳି ଆସୁଛି, ଶଶୀଶେଖର ସେ ସବୁ ପସନ୍ଦ କରନ୍ତି ନାହିଁ । ଜୀବନରେ ଲିଫ୍‌ଟ ପାଇଁ ଗୋଟାଏ କିଛି ବ୍ୟତିକ୍ରମ ଆବଶ୍ୟକ ଏବଂ ସେଇ ବ୍ୟତିକ୍ରମଟା ସେ ଚନ୍ଦ୍ରକାନ୍ତର ପ୍ରତିଟି କାର୍ଯ୍ୟକଳାପରେ ଲକ୍ଷ୍ୟ କରି ଭାରି ଖୁସି ହେଇଛନ୍ତି ।

ଚନ୍ଦ୍ରକାନ୍ତ କିନ୍ତୁ ସ୍ତବ୍ଧ ହୋଇଥିଲା ମଧୁମିତାର ଆଚରଣରେ । ବାରିଷ୍ଟର ଶଶୀଶେଖର ଚଉଧୁରୀଙ୍କ କନ୍ୟା ସେ ।

ପିଲାଟି ଦିନରୁ ବଢ଼ି ଆସିଛି ବିଳାସବ୍ୟସନ ଭିତରେ ।

କିନ୍ତୁ...ନା, ସେ କିନ୍ତୁର ସମାଧାନ ନାହିଁ । ଏତେ ସରଳ, ଏତେ ନିରାଡ଼ମ୍ବର ଆଉ ଏତେ ସଂସାରୀ ମଧୁମିତା ପରି ଗୋଟିଏ ଝିଅ ଯେ ଆଜିକାଲି ହୋଇପାରେ, ଚନ୍ଦ୍ରକାନ୍ତ ମଧୁମିତାକୁ ଏତେ ନିକଟରେ ନ ଦେଖିଲେ ହୁଏତ ବିଶ୍ୱାସ କରିପାରି ନ ଥାନ୍ତା ।

ଆପଣ ମୋଟେ ଖାଉ ନାହାନ୍ତି ଚନ୍ଦ୍ରବାବୁ, ସବୁବେଳେ ଏତେ ଭାବପ୍ରବଣ ହେଲେ ଦେହ ଭଙ୍ଗିପଡ଼ିବ ଯେ ।

ମଧୁମିତାର କଥାରେ ଚନ୍ଦ୍ରକାନ୍ତ ଯେପରି ଚେତନା ଫେରି ପାଇଲା । ସେ ତରତର ହୋଇ ଦୁଇଥର ଖାଇବାକୁ ଚେଷ୍ଟା କରି ଦେଖିଲା, ମଧୁମିତା ତା'ରି ହାତକୁ ଅନେଇ ରହିଛି ।

: ତରକାରୀ ଗୁଡ଼ା ବୋଧହୁଏ ଭଲ ହେଇନାହିଁ । ଗଣେଶ କହୁଥିଲା ଆପଣଙ୍କର ଖାଇଲା ବେଳେ କିଛି ବାଛ ବିଚାର ନ ଥାଏ, ମୋର ମନେ ହେଉଛି, ଆଜି ସବୁ ଅଖାଦ୍ୟ ହୋଇ ଯାଇଛି ।

ଚନ୍ଦ୍ରକାନ୍ତ ମନ ଭିତରୁ ସମସ୍ତ ଭାବନାଗୁଡ଼ାକୁ ଦୂରେଇ ଦେଇ ଯେତେ ସହଜ ହେବାକୁ ଚେଷ୍ଟା କରୁଥିଲା, ମୋଟେ ପାରୁ ନ ଥିଲା ।

ଖାଦ୍ୟସାମଗ୍ରୀର ସ୍ୱାଦ ଅପୂର୍ବ ହୋଇଛି । ମନେ ହେଉଛି, ବହୁ ବର୍ଷ ପରେ ସେ ଯେପରି ନୂତନ ଏକ ପୃଥିବୀର ସନ୍ଧାନ ପାଇଛି ।

ବିଶେଷତଃ ମଧୁମିତାର ଯତ୍ନ ! ମଧୁମିତାର ଆନ୍ତରିକତା ଚନ୍ଦ୍ରକାନ୍ତ ପ୍ରାଣରେ ଏକ ନବଦିଗନ୍ତର ସନ୍ଧାନ ଦେଇଛି ।

ରହିରହି ଚାହୁଁଛି ସେ ମଧୁମିତାର କେଶବାସ ଆଡ଼େ । ଜଞ୍ଜାଳ ଭିତରେ ଯେପରି ମଧୁମିତାକୁ ଆହୁରି ସୁନ୍ଦର ଦିଶୁଛି । ଆଖି ଯୋଡ଼ାକରୁ ଝରି ପଡୁଛି ଅଜଣା ଏକ ମଧୁ-ମଦିରା । ଯାହା ଚନ୍ଦ୍ରକାନ୍ତ ଜୀବନରେ ସମ୍ପୂର୍ଣ୍ଣ ନୂତନ ।

ଶଶୀଶେଖର ଚଉଧୁରୀ ଖାଇ ବସିଲେ ଆଉ ବୋଧହୁଏ ପାଟି ଫିଟାନ୍ତି ନାହିଁ କିମ୍ବା କେଉଁ ଆଡ଼କୁ ଚାହିଁପାରନ୍ତି ନାହିଁ ।

ଚନ୍ଦ୍ରକାନ୍ତ ଯେତେଥର ତାଙ୍କ ଆଡ଼େ ଅନେଇଛି, ଦେଖିଛି ସେ ଯେପରି ଖାଇବାରେ ଖୁବ୍ ବ୍ୟସ୍ତ ଅଛନ୍ତି ।

ମଧୁମିତା ନିରଳସ ଭାବରେ ପରିବେଷଣ କରିଚାଲିଛି ।

ଏଇଟା ଖାଅ, ସେଇଟା ଆଉ ଟିକେ ନିଅ । ମୋ ହାତର ରାନ୍ଧଣା ଆପଣଙ୍କୁ ଭଲ ଲାଗୁ ନାହିଁ । ଏହିପରି ନାନା କଥା କହି, ଚନ୍ଦ୍ରକାନ୍ତକୁ ସେ ବହୁତ ଖୁଆଇଁ ଦେଇଛି । ଏପରିକି ଚନ୍ଦ୍ରକାନ୍ତ ଖାଇବା ଟେବୁଲ ଉପରୁ ଉଠିବାର ସାମର୍ଥ୍ୟ ହରାଇ ବସିଛି ।

ଶେଷରେ ଶଶୀଶେଖର ହାତ ମୁହଁ ପୋଛି ସାରି, ପକେଟରୁ ଗୋଟାଏ ସିଗାରେଟ ବାହାର କରି, ତହିଁରେ ଅଗ୍ନିସଂଯୋଗ କରୁ କରୁ କହିଲେ : ଭୋଜନଟା

ଟିକିଏ ଅତିରିକ୍ତ ହୋଇଗଲା । ଜାଣ ୟଙ୍ଗମ୍ୟାନ, ମଣିଷ ମୃତ୍ୟୁ ଆଡ଼କୁ ଯେତିକି ଯେତିକି ଆଗେଇ ଚାଲିଛି, ତା' ମନରେ ମାୟା, ମୋହ, ଲୋଭ ସେତିକି ସେତିକି ବଢ଼ି ଚାଲିଛି ।

ସେ ହୋ ହୋ ହୋଇ ହସି ଉଠିଲେ ।

ମାୟା, ମୋହ, ଲୋଭ ଏ ଶବ୍ଦ କେତୋଟି ବାଦ୍ ଦେଲେ, ଭୋଜନଟା ଯେ ଆଜି ପ୍ରକୃତରେ ଅତିରିକ୍ତ ହୋଇ ଯାଇଛି ଶଶୀଶେଖର ସହିତ ଚନ୍ଦ୍ରକାନ୍ତ ଏକମତ ହୋଇଥିଲା ।

ମଧୁମିତା ଚାଲି ଯାଇଥିଲା ସେଠାରୁ । ସେ ବୋଧହୁଏ ଖାଇ ବସିଥିଲା ଗଣେଶର ତତ୍ତ୍ୱାବଧାନରେ ।

ଚନ୍ଦ୍ରକାନ୍ତର ଇଚ୍ଛା ହେଉଥିଲା, ନିଜେ ଯାଇ ସେ ମଧୁମିତାକୁ ଖୁଆଇବାର ଦାୟିତ୍ୱ ଗ୍ରହଣ କରିବ । କିନ୍ତୁ ଉଠିପାରିବା ଭଳି ଶକ୍ତି ନ ଥିଲା ତା'ର । ପେଟ ଭାରି ହୋଇ ଯାଇଥିଲା ବହୁ ଗୁଣରେ । ମନେ ହେଉଥିଲା, କିପରି ଟିକିଏ ଶୋଇପଡ଼ିପାରିଲେ ବଞ୍ଚି ଯାଆନ୍ତା ଚନ୍ଦ୍ରକାନ୍ତ ।

ଶଶୀଶେଖର କହିଲେ : ଖୁବ୍ ସାବଧାନ ୟଙ୍ଗମ୍ୟାନ । ଜୀବନର ଯାତ୍ରା ତମର ଆରମ୍ଭ ମାତ୍ର । ଖୁବ୍ ମାପି ଚୁପି ଚଳିବାକୁ ହେବ । ସମସ୍ତ ପ୍ରକାର ପ୍ରଲୋଭନଠାରୁ ଦୂରେଇ ରହିପାରିଲେ ଜୀବନର ଜୟଯାତ୍ରା ତମର ସଫଳ ହେବ, ନ ହେଲେ ମୋରି ପରି ବ୍ୟର୍ଥ ମନୋରଥ ନେଇ ଅନୁତାପ କରିବ ଜୀବନ ଭରି । ମୁଁ ତମର କେହି ନୁହେଁ । ତଥାପି ତମ ପରି ଏକ ଉଦୀୟମାନ ଯୁବକକୁ ଦେଖିଲେ ମୋ ପ୍ରାଣରେ ଶତ ସମ୍ଭାବନା ଜନ୍ମ ଗ୍ରହଣ କରେ, ମୋର ମନେହୁଏ ମୁଁ ଯେପରି ଆଉଥରେ ତାରୁଣ୍ୟ ଫେରି ପାଇଛି ।

ଚନ୍ଦ୍ରକାନ୍ତ ବୋଧହୁଏ କିଛି ଉତ୍ତର ଖୋଜି ପାଉ ନ ଥିଲା ।

ଆଜି ସେ ଯେଉଁ ପର୍ଯ୍ୟାୟ ପର୍ଯ୍ୟନ୍ତ ଉଠି ପାରିଛି, ସେ ତା' ନିଜ ଚେଷ୍ଟାରେ । ତାକୁ ପଛରୁ ଠେଲି ଉପରକୁ ଉଠାଇ ଦେବାକୁ କେହି ନ ଥିଲେ । ସେ କେବଳ ନିଜର ନିଷ୍ଠା ଓ ପ୍ରଚେଷ୍ଟା ବଳରେ ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ବିଶ୍ୱାସଭାଜନ ହୋଇ, ଆଜି ତାଙ୍କ ବ୍ୟବସାୟର ଏକଛତ୍ର ଅଧିକାରୀ ହୋଇପାରିଛି । ସେ ଜାଣନ୍ତି କେବଳ କର୍ତ୍ତବ୍ୟ କରିବା ହେଉଛି ମଣିଷର ଧର୍ମ । ଆଉ ସେ କିଛି ଜାଣନ୍ତି ନାହିଁ, ବୁଝନ୍ତି ନାହିଁ । ବିଳାସ, ବ୍ୟସନର ବହୁ ଦୂରରେ ତାଙ୍କର ସ୍ଥିତି । ଚନ୍ଦ୍ରକାନ୍ତ ତାଙ୍କରି ଶିଷ୍ୟ । ତାଙ୍କରି ପାଖରେ ତା'ର କର୍ମମୟ ଜୀବନର ଆରମ୍ଭ । ତେଣୁ ଚନ୍ଦ୍ରକାନ୍ତ ଜୀବନରେ ବିଳାସର ଗନ୍ଧ ନାହିଁ । ଫାଙ୍କି ସେ ଶିଖି ନାହିଁ । କେବଳ ନିରଳସ କର୍ମମୟ ଜୀବନ ।

ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କର ନାରୀ ଜାତି ପ୍ରତି କୌଣସି ଦୁର୍ବଳତ ନ ଥିଲା । ପରୋକ୍ଷରେ ସେ ଘୃଣା ବି କରୁଥିଲେ । କୌଣସି ନାରୀ ସହିତ କେବେ ପଦେ କଥା ହେବାର ଦେଖି ନାହିଁ ଚନ୍ଦ୍ରକାନ୍ତ । ବରଂ ମଙ୍ଗରାଜଙ୍କଠାରୁ ମଝିରେ ମଝିରେ ନାରୀ ଜାତି ସମ୍ବନ୍ଧରେ ବହୁ ତିକ୍ତ ଅଭିଜ୍ଞତାର କାହାଣୀ ଶୁଣି, ଚନ୍ଦ୍ରକାନ୍ତ ମନରେ ନାରୀବିଦ୍ୱେଷ ଧୀରେ ଧୀରେ ପ୍ରବଳ ହୋଇ ଉଠିଛି ।

ନାରୀ ତ ଯେତେ ଅନର୍ଥର ମୂଳ । ମୃତ୍ୟୁଞ୍ଜୟ ମଙ୍ଗରାଜ ବହୁ ଉଦାହରଣ ଦେଇଛନ୍ତି ଅବସର ସମୟରେ । ପୁରାଣର ସୀତାଠାରୁ ଆରମ୍ଭ କରି ପ୍ରୋଫୁମାକିଲର ପର୍ଯ୍ୟନ୍ତ ସେ ଅନେକଙ୍କ କଥା କହିଛନ୍ତି ଚନ୍ଦ୍ରକାନ୍ତକୁ । ଜୀବନରେ ବଡ଼ ହେବାକୁ ହେଲେ, ଯେତେ ସବୁ ତ୍ୟାଗର ଆବଶ୍ୟକ, ତା' ଭିତରୁ ପ୍ରଥମ ହେଉଛି ନାରୀ ।

: କ'ଣ ଏତେ ଚିନ୍ତା କରୁଚ ୟଙ୍ଗମ୍ୟାନ୍ ! ଶଶୀଶେଖର ଚଉଧୁରୀଙ୍କ ଡାକରେ ଚନ୍ଦ୍ରକାନ୍ତ ଯେପରି କେଉଁ ସପ୍ନରାଜ୍ୟରୁ ଫେରି ଆସିଲା ।

: ନା, ଖାଇବାଟା ଟିକିଏ ଅଧିକ ହୋଇଯାଇଛି । ସେଇଥିପାଇଁ ଆଖିଟା ବୁଜି ହେଇ ପଡୁଛି ।

ମଧୁମିତା ହସି ହସି ଆସି ସେଠାରେ ପହଞ୍ଚିଲା ।

ଆଖିରେ ବିସ୍ମୟ ଫୁଟାଇ, ସ୍ୱରରେ କୌତୂହଳ ମିଶାଇ କହିଲା : ଆପଣମାନେ ଏତେବେଳଯାଏ ଡାଇନିଂ ଟେବୁଲରେ ବସି ରହିଛନ୍ତି ! ଆଉ ମୁଁ ଭାବୁଛି ମୋର ଅନେକ ଡେରି ହୋଇ ଯାଇଛି ।

ଚନ୍ଦ୍ରକାନ୍ତ ମୁହଁରେ ଟିକିଏ ହସ ଫୁଟାଇବାକୁ ଚେଷ୍ଟା କରି କହିଲା : ଆପଣ କିଛି ଭାବିବେ ନାହିଁ ମଧୁମିତା ଦେବୀ । ଦେଖୁଛନ୍ତି ତ ମୁଁ ନିହାତି ଏକା ଲୋକ, ଆପଣଙ୍କ ଚର୍ଚ୍ଚାରେ ମୋର ଯଥେଷ୍ଟ ତ୍ରୁଟି ହୋଇଛି, ସେଥିପାଇଁ.....

ମଧୁମିତା ଚନ୍ଦ୍ରକାନ୍ତକୁ କଥା ଶେଷ କରିବାକୁ ନ ଦେଇ ହୋ ହୋ ହସି ଉଠି କହିଲା : ଦେଖିଲ ଡାଡ଼ି ! ତମ ପୁରୁଷ ଜାତିଟା ସମସ୍ତେ ସମାନ । କିଛି କରିବାର ଶକ୍ତି ନ ଥାଉ ପଛେ କଥାରେ ପାଣି ଗଳିବ ନାହିଁ । ତେବେ ମୋର ଗୋଟାଏ ଅନୁରୋଧ ଆପଣଙ୍କୁ ରଖିବାକୁ ହେବ ଚନ୍ଦ୍ରବାବୁ !

ଚନ୍ଦ୍ରକାନ୍ତ ମନରେ ଅଶେଷ ପ୍ରଶ୍ନର ଝଡ଼ ଉଠାଇ ମଧୁମିତା ନୀରବ ହୋଇଗଲା ।

: କ'ଣ ରଖିବେ ତ ? ପୁଣି ପ୍ରଶ୍ନ ମଧୁମିତାର ।

ଚନ୍ଦ୍ରକାନ୍ତ ତଥାପି ନୀରବ । କି ଉତ୍ତର ଦେବ ମଧୁମିତାକୁ ? ଏଇଟା ତ କୋଉ

ବ୍ୟବସାୟର ପେଣ୍ଡିଙ୍ଗ୍ ଫାଇଲ୍ ନୁହେଁ ଯେ, ଘଣ୍ଟାଏ ବସିଲେ ସବୁ ଚିଠିର ଉତ୍ତର ଶେଷ କରି ଦେଇ ହେବ ।

ଏ ଯେପରି ଅନ୍ୟ ଏକ ଆର୍ଟ୍, ଅନ୍ୟ ଏକ ଜୀବନ ।

ଶେଷରେ ମଧୁମିତା ତା' ବକ୍ତବ୍ୟ ପେଶ୍ କଲା : ଆପଣ ସ୍ୱୀକୃତି ନ ଦେଲେ ବି ମୁଁ ବାଧ କରି ଆଦାୟ କରିନେବି । ମୋର ଅନୁରୋଧ ହେଉଛି, ଆପଣ ମୋତେ ମଧୁମିତା ନ ଡାକି ଖାଲି ମିତା ଡାକିବେ ଏବଂ ଆପଣ ନ କହି ତମେ କହିବେ ।

ଚନ୍ଦ୍ରକାନ୍ତର ଉର୍ଦ୍ଧ୍ୱମୁଖୀ ଟେମ୍ପରେଚରଟା ଯେପରି ହଠାତ୍ ନିମ୍ନଗାମୀ ହୋଇ ଆସିଲା । ସେ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ି, ସରଳ ସହଜ ଭାବରେ ମଧୁମିତା ଆଡ଼କୁ ଚାହିଁ କହିଲା : ଓଃ ଏଇ କଥା ! ମୁଁ ଭାବିଥିଲି...

ମଧୁମିତା ଅଳ୍ପ ହସି, ଥରେ ଶଶୀଶେଖରଙ୍କ ଆଡ଼େ କଣେଇ ଚାହିଁ ହସି ହସି କହିଲା : ଆପଣ କ'ଣ ଭାବିଥିଲେ ? ହୁଏତ ମୁଁ ରାଜ୍ୟ ନ ହେଲେ ରାଜରାଣୀ, ଦୁଇଟାରୁ ଗୋଟାଏ ମାଗି ବସିବି ?

ଏଥର ଶଶୀଶେଖର ଚଉଧୁରୀ ମଧ ନ ହସି ରହିପାରିଲେ ନାହିଁ । ସମସ୍ତଙ୍କ ଉଚ୍ଛ୍ୱସିତ ହାସ୍ୟରୋଳରେ ଘରଟା ଯେପରି ମୁଖରିତ ହୋଇଉଠିଲା ।

ହଠାତ୍ ପୁଣି ମଧୁମିତା ଆବହାଓ୍ୱାର ମୋଡ଼ ଘୂରେଇ ଦେଲା ।

ହାତଘଡ଼ିକୁ ଚାହିଁ କହିଲା : ଡାଡି, ତମର ଆଜି ବାର୍ ଆସୋସିଏସନ୍‌ରେ ଲେକ୍‌ଚର ଅଛି ନା ? ସାଢ଼େ ପାଞ୍ଚଟାରେ ମିଟିଂ । ଏଠିତ ଆସି ଦୁଇଟା ବାଜିଲା । ତମର ପୁଣି ସ୍ପିଚ୍ ରେଡ଼ି କରିବାକୁ ହେବ । ସମୟ ବି ହୋଇଗଲା ।

ଶଶୀଶେଖର ଚଉଧୁରୀ ଚଞ୍ଚଳ ହୋଇଉଠିଲେ ।

: ସତେ ତ ! ସେ କହିଲେ, ଆଜି ବାର୍ ଆସୋସିଏସନର ବାର୍ଷିକ ଅଧିବେଶନ । ମୋତେ ସେଠାରେ ପ୍ରିଜାଇଡ୍ କରିବାକୁ ହେବ । ଯେତେ ବାରଣ କଲେ ବି ସେମାନେ ମୋତେ ଛାଡ଼ିଲେ ନାହିଁ । ଅଲ୍ ରାଇଟ୍ ୟଙ୍ଗମ୍ୟାନ୍ । ତୁମ ସହିତ ଆଜି ଦିନଟା ବଡ଼ ଆନନ୍ଦରେ କଟିଲା । ଗତ ବହୁ ବର୍ଷ ଭିତରେ ଏପରି ଏକ ପବିତ୍ର ଦିନ ମୋ ଜୀବନରେ ଆସି ନ ଥିଲା । ସମୟ ପାଇଲେ ତୁମେ ଆସ ଆମ ଘରକୁ ।

ଶଶୀଶେଖରଙ୍କ ସହିତ ଚନ୍ଦ୍ରକାନ୍ତ ଆଗେଇ ଯାଇଥିଲା ଗାଡ଼ି ପର୍ଯ୍ୟନ୍ତ । ଗାଡ଼ିରେ ଷ୍ଟାର୍ଟ ଦେଇ ଶଶୀଶେଖର ପୁଣି କହିଲେ : ହେଲେ ନିଶ୍ଚୟ ଆସୁଛ ୟଙ୍ଗମ୍ୟାନ୍ । ଆମ ଘରକୁ ତମ ନିଜର ଘର ପରି ମନେ କରିନେଲେ ଆଉ କୌଣସି ସଙ୍କୋଚ ରହିବ ନାହିଁ ।

ଚନ୍ଦ୍ରକାନ୍ତ ଚାହିଁଲା ମଧୁମିତା ଆଡ଼େ ।

ମୁହଁରେ ସ୍ମିତହାସ୍ୟ । ଆଖିର ଇଙ୍ଗିତରେ ଏକ ମଦିର ମହକ । ଚନ୍ଦ୍ରକାନ୍ତ ପ୍ରାଣଟା କେଜାଣି କାହିଁକି ଶୀତଳ ହୋଇଆସିଲା । ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ପରି ତା' ନାରୀ ବିଦ୍ୱେଷୀ ମନ ବୋଧହୁଏ ଶକ୍ତ ରହିପାରିଲା ନାହିଁ ।

ଗାଡ଼ି ଚାଲି ଯାଇଥିଲା ।

ଚନ୍ଦ୍ରକାନ୍ତ ସେଇଠି ଠିଆ ହୋଇଥିଲା ଶୂନ୍ୟକୁ ଚାହିଁ । ରହି ରହି କାନରେ ତା'ର ବାଜି ଉଠୁଥିଲା ଶଶୀଶେଖରଙ୍କ ଶେଷ କଥା ପଦିକ । 'ଆମ ଘରକୁ ତମ ନିଜର ଘର ପରି ମନେ କରିନେଲେ ଆଉ ସଙ୍କୋଚ ରହିବ ନାହିଁ ।'

କିନ୍ତୁ ମୃତ୍ୟୁଞ୍ଜୟ ମଙ୍ଗରାଜ ! ତାଙ୍କର ସେ ତେଜୋଦୀପ୍ତ କଣ୍ଠସ୍ୱର ଯେପରି ଆହୁରି ଜୋର୍‌ରେ ପ୍ରତିଧ୍ୱନିତ ହୋଇଉଠିଲା ଚନ୍ଦ୍ରକାନ୍ତ କାନ ପାଖରେ । 'ଜୀବନରେ ବଡ଼ ହେବା ପାଇଁ ଯେତେ ସବୁ ତ୍ୟାଗର ଆବଶ୍ୟକ, ତା' ଭିତରୁ ପ୍ରଥମ ହେଉଛି ନାରୀ ।'

ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କର ନିଜ ଅନୁଭୂତିର କାହାଣୀ ସେ !

କିନ୍ତୁ ଚନ୍ଦ୍ରକାନ୍ତ ମନରେ ଆଜି ହଠାତ୍ ଏ ଦ୍ୱନ୍ଦ୍ୱ କାହିଁକି ?

ସେ ତ କୌଣସି ଦିନ ନାରୀର ସାନ୍ନିଧ୍ୟ କାମନା କରି ନାହିଁ । ଆକସ୍ମିକ ଭାବରେ ଯଦି ବା ଭେଟ ହେଲା ମଧୁମିତା ସହିତ, ଏଇଟା କ'ଣ ତା'ର ନାରୀ ପ୍ରତି ଦୁର୍ବଳତା ! ତା'ର ଯଦି ମା' ଥାଆନ୍ତେ, ଭଉଣୀ ଥାଆନ୍ତା, ଚନ୍ଦ୍ରକାନ୍ତ କ'ଣ ସେମାନଙ୍କ ସାନ୍ନିଧ୍ୟରେ ଆସନ୍ତା ନାହିଁ ? ସେମାନଙ୍କ ସହିତ କଥାବାର୍ତ୍ତା କରନ୍ତା ନାହିଁ ?

ଧେତ୍, ଯେତେ ସବୁ ବାଜେ ଦୁର୍ଭାବନା ।

ଚନ୍ଦ୍ରକାନ୍ତ ଆଉ ଥରେ ଚାହିଁଲା ରାଜପଥ ଆଡ଼େ । କିନ୍ତୁ ସେମାନଙ୍କ ଗାଡ଼ି ବହୁ ପୂର୍ବରୁ ଅଦୃଶ୍ୟ ହୋଇ ଯାଇଥିଲା । ଚନ୍ଦ୍ରକାନ୍ତ ମୁହଁ ବୁଲାଇଲା ଏଥର ।

ଗଣେଶ ତା' ପାନପିକବୋଳା କଳା କଳା ଦାନ୍ତ ଦୁଇଟା ଦେଖାଇ ଚନ୍ଦ୍ରକାନ୍ତ ମୁହଁକୁ ଚାହିଁ ଥିରି ଥିରି ହସୁଛି ।

: କ'ଣ କିରେ ? କ'ଣ ଦେଖୁଛୁ ଏଠି ଠିଆ ହୋଇ ?

: ବାବୁ... ହେଃ ହେଃ ହେଃ - ଗଣେଶ କିଛି ଉତ୍ତର ଦେଇ ନ ପାରି ଖାଲି ହସିବାରେ ଲାଗିଲା ।

ଚନ୍ଦ୍ରକାନ୍ତ ଧମକ ଦେଲାପରି କହିଲା : ଚୁପ୍‌କର୍ ! କଥା ନାହିଁ, ବାର୍ତ୍ତା ନାହିଁ; ହେଃ ହେଃ ହେଃ, ହିଃ ହିଃ ହିଃ । ଯାଆ ଘରକୁ ଯାଁ ।

ଗଣେଶ କହିଲା : ଆପଣ ଯାହା କୁହନ୍ତୁ ପଛେ, ଦିଦିଟି ଭାରି ଭଲ ମଣିଷ । ଆପଣଙ୍କ ନାଖି ଏକା ।

: ଚୁପ୍ ବେ । ଚନ୍ଦ୍ରକାନ୍ତ ଧମକରେ ଗଣେଶ ଛୁଟି ପଳାଇଲା ।

ମଧୁମିତା ରାତ୍ରିର ହାଲ୍‌କା ପୋଷାକଟା ପିନ୍ଧି ଶୋଇଥିଲା । ବେଡ୍‌ଟି'ରୁ ସେତେବେଳ ଯାଏ ଧୂଆଁ ଉଠୁଥିଲା । ରଙ୍ଗବେରଙ୍ଗର ଜାତିଜାତିକା ଲିଲିପୁଟ୍ କୁକୁରଗୁଡ଼ାକ ମୁହଁ ଉପରେ ମୁହଁ ରଖି କୁଁ କାଁ ହେଉଥିଲେ । ମଧୁମିତା କାଲି ରାତିରେ ଦେଖୁଥିବା ଆଲ୍‌ବମ୍‌ଟା ତକିଆ ତଳୁ ବାହାର କରି ପୁଣି ଥରେ ପୃଷ୍ଠା ଓଲଟେଇଲା । ପ୍ରଥମରେ ଗୋଟିଏ ସୁଦର୍ଶନ ଯୁବକର ଫଟୋ । ପୂରାପୂରି ସାହେବୀ ପୋଷାକରେ ସଜ୍ଜିତ । ଆଖିରେ ମୋଟା ଫ୍ରେମ୍‌ର ଚଷମା । ମୁହଁରେ ପାଇପ୍ । ମଧୁମିତା ମନେ ମନେ ହସି ଉଠିଲା ।

ପୁଣି ସେ ପୃଷ୍ଠା ଓଲଟାଇଲା ଆଲବମ୍‌ର । କିନ୍ତୁ ଦ୍ୱିତୀୟ ଫଟୋଟି ଆଡ଼େ ଚାହିଁବା ପୂର୍ବରୁ, ଘର ଭିତରେ ପ୍ରବେଶ କଲା ନାଜ୍‌ନିନ୍ । ମଧୁମିତାର ପରିଚାରିକା । ସୁନ୍ଦରୀ, ସୁଶ୍ରୀ; ଦୀର୍ଘାଙ୍ଗୀ ।

: ତମର ଫୋନ୍ ଆସିଛି ଦିଦି । ବାଁ ହାତରେ ଆଣିଥିବା ଟେଲିଫୋନ୍ ଯନ୍ତଟି ଟି'ପୟ ଉପରେ ଥୋଇ, ପ୍ଲଗ୍‌ଟା ଲଗେଇ ଦେଲା । ରିସିଭର ବଢ଼ାଇଦେଲା ମଧୁମିତା ହାତକୁ ।

: ହ୍ୟାଲୋ ? ଆରେ ରଞ୍ଜନ ! ହଁ, ମୁଁ ମିତା କହୁଛି । କ'ଣ ହେଲା ?

ଅପର ପାଖରୁ କ'ଣ ଶୁଣିଲା କେଜାଣି; ହସି ହସି ଗଡ଼ିଗଲା ମଧୁମିତା । ତା'ପରେ ଧୀରେ ଧୀରେ କହିଲା : ତମେ ବିଶ୍ୱାସ କର ରଞ୍ଜନ, କାଲି ଡାଡିଙ୍କ ସଙ୍ଗରେ ତାଙ୍କର ଜଣେ ୟଙ୍ଗଫ୍ରେଣ୍ଡଙ୍କ ଘରକୁ ଯାଇଥିଲି । ତମେ ଜାଣ ତ ଡାଡିଙ୍କ କଥା । ଗଳ୍ପ ଆରମ୍ଭ ହେଲେ ତାଙ୍କର ଆଉ ଶେଷ ହୁଏ ନାହିଁ । ବେଳେବେଳେ ମୋର ଭାରି ଦୟା ହୁଏ ଡାଡିଙ୍କ ପ୍ରତି । ରାଗି ବି ରାଗିପାରେ ନାହିଁ । ମୁଁ ତମ ଫୋନ୍ ପାଇଥିଲେ ଜମା ଡାଡ଼ିଙ୍କ ପ୍ରସ୍ତାବରେ ରାଜି ହୋଇ ନ ଥାନ୍ତି । ତା' ହେଲେ ?...ହଁ ହଁ ।... ଓଃ ! କ'ଣ ଆଜି ଚାଲିଯାଉଛ ?...ଦେଖା ହେବ ତ ?....ପ୍ଲେନରେ ? ଏରୋଡ୍ରମରୁ କହୁଛ ? ପ୍ରକୃତରେ ମୁଁ ଗୋଟାଏ ଗୋଲ୍‌ଡେନ୍ ଅପର୍‌ଚ୍ୟୁନିଟି ମିସ୍ କଲି । ରିଅଲି, ଆଇ ଯାମ୍ ଭେର୍‌ରି, ଭେର୍‌ରି ସରି । କେବେ ଫେରିବ ବମ୍ବେରୁ ?... ମାତ୍ର !... ହି ହି ହି ହି, ପୁଣି ଯେପରି ସେଇ ଏରୋଡ୍ରମରୁ ଖବର ପାଏ । ରହିଲି, ଏଁ ?

ମଧୁମିତା ହାତରୁ ନାଜ୍‌ନିନ୍ ରିସିଭରଟା କାଢ଼ିନେଲା । ଫଟୋ ଆଲବମ୍‌ଟା ଏକ ଅସତର୍କ ମୁହୂର୍ତ୍ତରେ ତଳକୁ ଖସି ପଡ଼ିଥିଲା ।

ନାଜନିନ୍ ପଚାରିଲା : ଫୋନ୍‌ଟା ଡାଡିଙ୍କ ଘରକୁ ନେଇଯିବି ?

ମଧୁମିତା ଦାନ୍ତରେ ଆଙ୍ଗୁଠି କାମୁଡ଼ି ଟିକିଏ ଚିନ୍ତା କଲା । ତା'ପରେ ଉଠିପଡ଼ି, ତକିଆ ତଳୁ ଗୋଟାଏ ନୋଟବୁକ୍ ବାହାର କରି, ନିର୍ଦ୍ଦିଷ୍ଟ ଏକ ନମ୍ବର ଦେଖାଇ ଦେଇ ନାଜ୍‌ନିନ୍‌କୁ ଡାଏଲ୍ କରିବାକୁ କହିଲା ।

ନାଜ୍‌ନିନ୍ ଡାଏଲ୍ କରି ରିସିଭର୍‌ଟା କାନରେ ଦେଇ ବସିଥିଲା । ଅପର ପାର୍ଶ୍ୱରୁ କେବଳ କ୍ରିଂ କ୍ରିଂ ଶବ୍ଦ ଶୁଣା ଯାଉଥିଲା, କିନ୍ତୁ କେହି ଫୋନ୍ ରିସିଭ କରୁ ନ ଥିଲେ ।

: କ'ଣ ହେଲା ? ମଧୁମିତା ପଚାରିଲା ।

: ରିଙ୍ଗ୍ ହେଉଛି, କିନ୍ତୁ କେହି ଧରୁ ନାହାନ୍ତି । ନାଜ୍‌ନିନ୍ ରିସିଭରଟା ମଧୁମିତା ହାତକୁ ବଢ଼ାଇ ଦେଲା ।

ସେହିପରି ରିଙ୍ଗ୍ ହୋଇ ଚାଲିଥିଲା ।

ମଧୁମିତା ବିରକ୍ତ ହୋଇ ରିସିଭରଟା ରଖି ଦେବାକୁ ଯାଉଛି, ହଠାତ୍ ଶୁଣିଲା ଅପରପାର୍ଶ୍ୱରୁ କିଏ କହୁଛି: ହାଲୋ !

: ଚନ୍ଦ୍ରକାନ୍ତବାବୁ ଅଛନ୍ତି ? କୁଆଡ଼େ ଯାଇଛନ୍ତି ? ଆଚ୍ଛା, ତାଙ୍କର ପୁଣି ଦଣ୍ଡ ବୈଠକର ବେମାର ଅଛି ନା କ'ଣ ? ନା ନା, କିଛି କହିବାକୁ ହେବ ନାହିଁ ।

ନାଜ୍‌ନିନ୍ ପୁଣି ରିସିଭରଟା ମଧୁମିତା ହାତରୁ କାଢ଼ିନେଲା ।

: ଆଚ୍ଛା ନାଜ୍, ଡାଡି ଉଠିଲେଣି ? ମଧୁମିତା ପଚାରିଲା ।

: ନା ଉଠି ନାହାନ୍ତି ।

: ହୁଁ, ତା'ହେଲେ ଆଉ କିଛି ନୂଆ ଖବର ଅଛି ?

ନାଜ୍‌ନିନ୍ ମଧୁମିତା ପାଖକୁ ଆଗେଇ ଯାଇ, ଫ୍ଲୋର ଉପରର କାର୍ପେଟ ଉପରେ ଆଣ୍ଠେଇ ପଡ଼ି, ଖୁବ୍ ଧୀର ସ୍ୱରରେ କହିଲା : ଡାଡ଼ିଙ୍କର କାଲି ପ୍ରେସିଡ଼େଣ୍ଟଙ୍କ ସହିତ ଭୀଷଣ କଳି ହୋଇଯାଇଛି ।

ମଧୁମିତା ନାଜନିନର କଥା ଉପରେ କୌଣସି ଗୁରୁତ୍ୱ ନ ଦେଇ କହିଲା : ସେଇଟା ପୁରୁଣା ଖବର । ଆଉ କିଛି ?

ନାଜନିନ୍ ଅବାକ୍ ଆଖିରେ ମଧୁମିତା ମୁହଁକୁ ଅନାଇ କହିଲା : ତମେ ଶୋଇବା ପରେ ତ ପ୍ରେସିଡ଼େଣ୍ଟ ଡାଡ଼ିଙ୍କ ପାଖକୁ ଆସିଥିଲେ । ତମେ କଳି ହୋଇଥିବା ଖବର ପାଇଲ କିପରି ?

: ଆରେ ମୁଁ ଜାଣିଥିଲି । ସିମିତି ଗୋଟାଏ କିଛି ହେବ ବୋଲି ମୁଁ ଅନୁମାନ କରିଥିଲି । ତା'ଛଡ଼ା ଆଉ କିଛି ?

: ନା, ତମକୁ ଗୋଟାଏ କଥା ଆଜି ମନେ ପକାଇ ଦେବା ପାଇଁ କହିଥିଲି । କ୍ଲବରେ ଆଜି ମିଟିଂ, ସକାଳ ନଅରୁ ଆରମ୍ଭ ହେବ । ମନେ ରୁହେ ଯେପରି !

ମଧୁମିତା ମନଟା କେଜାଣି କାହିଁକି ଫିକା ପଡ଼ିଗଲା ।

ଫଟୋ ଆଲ୍‌ବମ୍‌ଟାକୁ ତଳୁ ଗୋଟେଇ ନେଉ ନେଉ ଖଣ୍ଡିଏ ଫଟୋ ତଳେ ଗଳି ପଡ଼ିଲା ।

ନାଜ୍‌ନିନ୍ ଫଟୋଟି ତଳୁ ଗୋଟେଇ ନେଇ ଦେଖିଲା । ଏ ତ ସୁପୁରୁଷ । ଆଖିର ଚାହାଣିରେ ଅଶେଷ ଆଶା । ମୁହଁରେ ସ୍ମିତହସ ।

: ଦିଦି, ୟାଙ୍କୁ ତ କେବେ ଏଠାକୁ ଆସିବାର ଦେଖିନାହିଁ ?

ମଧୁମିତା ଫଟୋଟି ନାଜ୍‌ନିନ୍ ହାତରୁ ନେଇ ଥରେ ଦେଖିଲା । ତା'ପରେ ସ୍ମିତ ହସ ହସି କହିଲା : ଇଏ ତୋ ବର ପରା ! ଚିହ୍ନି ନାହୁଁ ?

: ଧେତ୍ ! ନାଜନିନ୍ ଛଳ କୋପ କରି ସେଠାରୁ ଚାଲି ଯାଉଥିଲା ।

ଫୋନ୍‌ଟା ପୁଣି ବାଜି ଉଠିଲା । ଅଟକିଗଲା ନାଜନିନର ପାଦ ଯୋଡ଼ିକ । ରିସିଭରଟା ବଢ଼ାଇ ଦେଲା ମଧୁମିତା ହାତକୁ ।

: ହ୍ୟାଲୋ ? ହଁ ହଁ । ମୁଁ ମିତା । ବୁଝିଲି । ନା ଡାଡି ଉଠି ନାହାନ୍ତି । ଗତି ଅନୁକୂଳ । ଆପଣ ଏତେ ବ୍ୟସ୍ତ ହେଲେ ଚଳିବ କେମିତି ? ହଁ, ମନେ ଅଛି । ଡାଡିଙ୍କି ନେଇ ଠିକ୍ ସମୟରେ ପହଞ୍ଚିବି । କିନ୍ତୁ ଗୋଟାଏ କଥା ସାର୍ । କିଛିଦିନ ପାଇଁ ମୋର ଟିକିଏ ରେଷ୍ଟ ଦରକାର । ଦେହଟା ଖୁବ୍ ଭଲ ନାହିଁ । ନା ନା ଏଇଠି ରହିବି । କିନ୍ତୁ ଟିକିଏ ନିରୋଳାରେ । ବିଚାର କରିବେ । ହଁ ହଁ, ଆପଣ ସେଥିପାଇଁ ନିଶ୍ଚିନ୍ତ ରହିପାରନ୍ତି । କ'ଣ କହିଲେ ? ନା କ୍ଲବର ମେମ୍ବରସିପ୍ ନେବା କଥା କହି ନାହିଁ । ସବୁ ଠିକ୍ ହୋଇଯିବ । ରହିଲି ।

ନାଜନିନ୍ ସିରିଭରଟା ନେଉ ନେଉ କହିଲା : ଏଥର ଫୋନ୍‌ଟା ତଳକୁ ନେଇଯିବି ଦିଦି ?

ମଧୁମିତା ନାଜନିନ୍‌ର ପ୍ରଶ୍ନର କିଛି ଉତ୍ତର ନ ଦେଇ, ଆଲବମ୍‌ଟାକୁ ଖେଳାଇବାରେ ଲାଗିଲା । ବହୁ ପରିଚିତ, ଅର୍ଦ୍ଧପରିଚିତ ଲୋକମାନଙ୍କର ପ୍ରତିଛବି । ଗୋଟିକ ପରେ ଗୋଟିଏ ଖେଳେଇ ଦେଖୁ ଦେଖୁ ଏକ ସମୟରେ ଆଲବମ୍‌ଟା ବନ୍ଦ କରି ଦୂରକୁ ଫିଙ୍ଗିଦେଲା ମଧୁମିତା ।

ଆଖି ବୁଜି ଚିନ୍ତା କଲା କିଛି ସମୟ ।

ତା'ପରେ ବିଛଣାରୁ ଉଠିପଡ଼ି, ନାଜ୍‌ନିନ୍‌କୁ ଦୁଇ ବାହୁରେ ଜାବୁଡ଼ି ଧରି କହିଲା : ମୋର ଗୋଟିଏ କାମ କରିପାରିବୁ ନାଜ୍ ?

ନାଇନ୍‌ନିନ୍ ଅବାକ୍ ହୋଇ ମଧୁମିତା ମୁହଁକୁ ଅନେଇଲା ।

: ଆଚ୍ଛା, ତୁ ଏଇନେ ଯା, ପରେ ମୁଁ ତତେ କହିବି । ଆଠଟା ବାଜିଲାଣି । ନଅଟାରେ ମିଟିଂ ନା ? ମୋତେ ରେଡ଼ି ହେବାକୁ ହେବ ।

ମଧୁମିତା ଚଞ୍ଚଳ ହୋଇପଡ଼ିଲା । ତା'ର ସମସ୍ତ ଆଳସ୍ୟ, ସମସ୍ତ ଦୁଶ୍ଚିନ୍ତା ଯେପରି ମୁହୂର୍ତ୍ତରେ କୁଆଡ଼େ ଦୂରେଇ ଗଲା ।

କିନ୍ତୁ ସେ କ'ଣ ପ୍ରକୃତରେ ଏତେ ନିଶ୍ଚିତ, ଏତେ ସହଜ, ଏତେ ସୁଖୀ ?

ସେ ସବୁ ଭାବିବାର ଅବସର ବର୍ତ୍ତମାନ ନାହିଁ । ଦୁଇହାତ ଉପରକୁ ଟେକି ଅଳସ ଭାଙ୍ଗି, ମଧୁମିତା ଆଜିର ପ୍ରସ୍ତୁତି ପାଇଁ ବାଥ୍‌ରୁମ୍ ଆଡ଼େ ଆଗେଇଗଲା । ପାଣିର ଝରଝର ତାନ ସହିତ ମଧୁମିତା କଣ୍ଠର ଗୁଣୁଗୁଣୁ ସ୍ୱନ ଶୁଣାଯାଉଥିଲା । ଜୀବନର ସମସ୍ତ କ୍ଳେଶ ଯେପରି ତା'ର ଘୁଞ୍ଚି ଯାଉଥିଲା । ଦୁନିଆରେ ତାକୁ ବଞ୍ଚିବା ପାଇଁ ହେଲେ ନିଜକୁ ଭୁଲିବାକୁ ହେବ, ଭୁଲିବାକୁ ହେବ ସେ ଗୋଟିଏ ନାରୀ । ଭୁଲିବାକୁ ହେବ ତା'ର କାମନା ବାସନା ।

ମଧୁମିତା କେଜାଣି କାହିଁକି ବାଥ୍‌ରୁମ୍ ଭିତରେ ହୋ ହୋ ହୋଇ ହସି ଉଠିଲା ।

କ୍ଲବ୍‌ରେ ଆଜି ମିଟିଂ । ତା'ପରେ ବହୁ ତରୁଣ ତରୁଣୀ ସେହି କ୍ଲବ୍‌ର ମେମ୍ବର । କିନ୍ତୁ ପରିଚାଳନା ବୋର୍ଡ଼ରେ ମଧୁମିତାକୁ ନିଆହୋଇଛି । ପରିଚାଳନା ମଣ୍ଡଳୀର ଶପଥ ହେଉଛି କ୍ଲବ୍‌କୁ ସୁଦୃଢ଼ କରିବା, ଶକ୍ତିଶାଳୀ କରିବା । ସେଥିପାଇଁ ନୀତି ଅନୀତିର ପ୍ରଶ୍ନ ନାହିଁ ।

ମଧୁମିତା ପରିଚାଳନା ମଣ୍ଡଳୀର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ । କ୍ଲବର ବହୁ ଆଶା ଭରସା ତା' ଉପରେ । ସେ ନ ଥିଲେ କ୍ଲବ ହୁଏତ ଆଜି ସହରରେ ଏତେ ଖ୍ୟାତି ଅର୍ଜନ କରି ପାରି ନ ଥାନ୍ତା ! ଅଭିଜାତ ଘରର ଏତେ ତରୁଣ ତରୁଣୀ କ୍ଲବର ମେମ୍ବର ହୋଇ ସହରର ଏକ ଉଚ୍ଚଶ୍ରେଣୀର କ୍ଲବରେ ହୁଏତ ପରିଣତ କରି ପାରି ନ ଥାନ୍ତେ । କିନ୍ତୁ ଏଥିରେ ମଧୁମିତାର ଲାଭ କ'ଣ ହେଉଛି ।

ଖାଲି ମନସ୍ତାପ, ଖାଲି ଦୁର୍ଭାବନା, ଖାଲି ଅଭିନୟ ।

ଜୀବନଟା କ'ଣ ଗୋଟାଏ ଦୁଃସ୍ୱପ୍ନ ।

ମଧୁମିତା ପାଣି ପାଇପ୍‌ର ଚାବି ବନ୍ଦ କଲା ।

ହାତରେ ସମୟ ଆଉ ଅଳ୍ପ । ପ୍ରସ୍ତୁତ ହେବାକୁ ହେବ । ଡାଡ଼ିଙ୍କୁ ପ୍ରସ୍ତୁତ କରେଇବାକୁ ହେବ । ଡାଡ଼ି ତାଙ୍କ କ୍ଲବର ଭାଇସ୍ ପ୍ରେସିଡ଼େଣ୍ଟ ।

ନାଇନ୍‌ନିନ୍ ବାହାରେ ଅପେକ୍ଷା କରିଥିଲା ।

ମଧୁମିତାର ଓଦା ସରସର ଦେହରେ ବାହାରି ଆସିବାର ଦେଖି ନାଜ୍‌ନିନ୍ ଟାଓ୍ୱେଲ ଆଣି ପୋଛିପୋଛି ଦେଲା । ଲୁଗା ବଦଳେଇ ଦେଲା ନିଜ ହାତରେ । କେଜାଣି କାହିଁକି ନାଜ୍‌ନିନ୍ ମଧୁମିତାକୁ ଅତି ଆପଣାର ପରି ଦେଖେ । ତା'ର ମନେହୁଏ, ମଧୁମିତା ଯେପରି ତା' ମା' ପେଟର ଭଉଣୀ । ସେଥିପାଇଁ ମଧୁମିତା ମୁହଁରେ ଚିନ୍ତାର ରେଖା ଦେଖିଲେ ସେ ମୋଟେ ପାଖ ଛାଡ଼େ ନାହିଁ ।

ମଧୁମିତା ବି କେବେ ନାଜନିନ୍ ସହିତ ଚାକର ପରି ବ୍ୟବହାର କରେ ନାହିଁ । ବେଳେବେଳେ ନାଜ୍‌ନିନ୍‌କୁ ପାଖରେ ବସାଇ ଜୀବନର ସୁଖଦୁଃଖର କଥା ଶୁଣେ । ନାଜ୍‌ନିନ୍ ବାହା ହୋଇଛି । ତା'ର ଘର ଅଛି, ସଂସାର ଅଛି । ସ୍ୱାମୀ ଦୂର ବିଦେଶରେ ଚାକିରିଆ । ତାଙ୍କର ପରିବାର ଖୁବ୍ ବଡ଼ । ସେଇଥିପାଇଁ ନାଜ୍‌ନିନ୍ ବାଧ୍ୟ ହୋଇ ଚାକିରି କରିଛି । ପ୍ରତି ସପ୍ତାହରେ ଥରେ ସେ ତା' ସ୍ୱାମୀ ପାଖରୁ ଚିଠି ପାଏ । ଉତ୍ତର ଦିଏ । ସ୍ୱାମୀ ତା'ର ନାଜନିନ୍‌କୁ ଖୁବ୍ ଭଲ ପାଏ । ଆଉ ବର୍ଷେ ଦି ବର୍ଷ ପରେ ତା' ଚାକିରିର ଉନ୍ନତି ହେଲେ ନାଜ୍‌ନିନ୍‌କୁ ସେ ପାଖକୁ ନେଇଯିବ । ସେମାନେ ସୁଖରେ ରହିବେ ।

ମଧୁମିତା ନାଜ୍‌ନିନ୍ ମୁହଁରୁ ଏହିପରି ଅନ୍ତରଙ୍ଗ କଥା ଶୁଣିଲା ବେଳେ ତା' ମୁହଁଟା କିପରି ଫିକା ପଡ଼ିଯାଏ । ମନ ତା'ର ଛନ୍ଦ ହରାଏ । କିନ୍ତୁ କାହିଁକି ?

ନାଜନିନ୍ ହୁଏତ ମଧୁମିତାର ମନ କଥା ବୁଝେ । ସାନ୍ତ୍ୱନା ଦେଇ କହେ : ତମେ ଦୁଃଖ କରୁଛ ଦିଦି ? ଛି, ତମେ ଯେତେବେଳେ ଘର ସଂସାର କରିବ, ସେତେବେଳେ ଆମ ଭଳି ଗରିବଗୁରୁବାଙ୍କ କଥା ତମର ଆଉ ମନେ ରହିବ ? ଜାଣ ଦିଦି, ସ୍ୱାମୀଠାରୁ ଦୂରରେ ରହି ଆମର କେତେ କଷ୍ଟ ହୁଏ ? ଭଗବାନ ତମ ପାଇଁ ସେ ବିରହ ବେଦନା ରଖି ନାହାନ୍ତି ।

ମଧୁମିତା ନାଜନିନ୍‌ର ସରଳ ମୁହଁଟି ଆଡ଼େ ଚାହିଁ ହସିଉଠେ । ତା'ର ଅନ୍ତର ଆଉ ମନରେ କେଉଁଠି ଟିକିଏ ହେଲେ କାଳିମା ନାହିଁ । ଅତି ସରଳ, ଅତି ନିର୍ବୋଧ ଏଇ ଝିଅଟା । ସେ କିପରି ବୁଝିବ ମଧୁମିତାକୁ !

: କେଉଁ ଶାଢ଼ିଟା ବାହାର କରିବି ଦିଦି ? ନାଜନିନ୍‌ର କଥାରେ ମଧୁମିତା ପ୍ରକୃତିସ୍ଥ ହେଲା ।

: ଆଜି ତୋ ଇଚ୍ଛାରେ ତୁ ମୋତେ ସଜେଇ ଦିଏ ନାଜ୍ । ଅନେକ ଥର ମୁଁ ତୋତେ ବାଧା ଦେଇଛି । ଆଜି କିନ୍ତୁ ସାଧୀନତା ଦେଉଛି ସେଥିପାଇଁ ।

ନାଜ୍‌ନିନ୍‌ର ଉତ୍ସାହ ଯେପରି ଦୁଇଗୁଣ ବଢ଼ିଗଲା । ସେ ବାଛି ବାଛି ଶାଢ଼ି ବ୍ଲାଉଜ ବାହାର କରି ମଧୁମିତାକୁ ପିନ୍ଧାଇ ଦେଇ ସଜେଇ ଦେଲା ଏକ ନୂତନ ପରିପାଟୀରେ ।

ଅଚ୍ଛ ହସି କହିଲା : ଦିଦି, ଅଇନା ସାମ୍‌ନାରେ ଯାଇ ଦେଖ ତ ! ନିଜକୁ ଚିହ୍ନି ପାରୁଛ କି ନାହିଁ ?

ମଧୁମିତା ଆଇନା ସାମନାରେ ବସି ଯେପରି ବାଉଳା ହୋଇଗଲା । କାହାର ପ୍ରତିବିମ୍ବ ମଧୁମିତା ଦେହରେ ? ତା'ର ବୟସ ଯେପରି ଆହୁରି ପାଞ୍ଚବର୍ଷ କମିଯାଇଛି ।

ପଛକୁ ଚାହିଁ ଦେଖିଲା, ନାଜନିନ୍ ଆଉ ସେ ଘରେ ନାହିଁ । ଚାଲିଯାଇଛି ।

ମଧୁମିତା ଉଠିଲା । ବସି ବସି ଆଜି ଆଉ ରୂପଚର୍ଯ୍ୟା କରିବାର ବେଳ ତା'ର ନାହିଁ । ସମୟ ପାଖେଇ ଆସିଲାଣି । କର୍ତ୍ତବ୍ୟର ଅବହେଳା କେବେ ସେ କରେ ନାହିଁ । ଲିଲିପୁଟ କୁକୁରଗୁଡ଼ାକ ଆସି ବେଢ଼ି ଯାଇଥିଲେ । ମଧୁମିତା ସବୁଗୁଡ଼ିକୁ ଗୋଡ଼ରେ ଆଡ଼େଇ ଦେଇ ତଳକୁ ଓହ୍ଲେଇ ଗଲା । ଡାଡିଙ୍କ ଘରେ ଖିଆପିଆ ଶେଷ କରି, ଡାଡିଙ୍କୁ ସଙ୍ଗରେ ନେଇ କ୍ଲବରେ ହାଜିର ହେବାକୁ ହେବ ।

କିନ୍ତୁ ଡାଡିଙ୍କ ଘରେ ଯେପରି କାହାର ପରିଚିତ କଣ୍ଠସ୍ୱର !

ମଧୁମିତା କିନ୍ତୁ ଏତେଟା ଆଶା କରି ନ ଥିଲା । ସେ ବିଶ୍ୱାସ କରିପାରିଲା ନାହିଁ ।

ଚନ୍ଦ୍ରକାନ୍ତ ଏକ ଲୟରେ ଚାହିଁଥିଲା ମଧୁମିତାକୁ । ବସିବାକୁ ଅନୁରୋଧ କରିବାକୁ ବି ଭୁଲି ଯାଇଥିଲା ଚନ୍ଦ୍ରକାନ୍ତ ।

କାଲି ମଧୁମିତା ଆଉ ଶଶୀଶେଖର ଚଉଧୁରୀ ଚନ୍ଦ୍ରକାନ୍ତ ଘରୁ ଫେରିଆସିବା ପରଠାରୁ ଚନ୍ଦ୍ରକାନ୍ତ ମନରେ ଏକ ଭାବାନ୍ତର ସୃଷ୍ଟି ହୋଇଥିଲା । ଚନ୍ଦ୍ରକାନ୍ତ ନିଜ ମନକୁ ଯେତେ ବୁଝାଇବାକୁ ଚାହିଁଥିଲା, ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କର ନାରୀବିଦ୍ୱେଷ ଉକ୍ତିଗୁଡ଼ାକୁ ଯେତେଥର ମନେ ପକେଇବାକୁ ଚେଷ୍ଟା କରିଥିଲା, କିନ୍ତୁ ସବୁ ଯେପରି ମଧୁମିତା ପାଖରେ ମ୍ଳାନ ହୋଇ ଯାଇଥିଲା । ଏତେ ଦିନର ସାଧନା ତା'ର ସତେ ଯେପରି ବ୍ୟର୍ଥ ହୋଇ ଯାଇଥିଲା ।

ସମଗ୍ର ନାରୀ ଜାତି ବିରୁଦ୍ଧରେ ତା' ମନରେ ଘୃଣା, ବିଦ୍ୱେଷ ଭରି ରହିପାରେ; କିନ୍ତୁ ମଧୁମିତା ! ସେ ଏକ ନିଷ୍କଳଙ୍କ, ମଧୁର ସ୍ୱପ୍ନ । ହୁଏତ ମୃତ୍ୟୁଞ୍ଜୟ ମଙ୍ଗରାଜ ନିଜେ ଯଦି ମଧୁମିତା ସଂସର୍ଗରେ ଆସିଥାଆନ୍ତେ, ତା'ହେଲେ ସେ ତାଙ୍କ ମତ ପରିବର୍ତ୍ତନ କରିବାକୁ ବାଧ ହୋଇଥାଆନ୍ତେ । ଏତେ ସ୍ନେହ, ଏତେ ଯତ୍ନ, ଏତେ ଆନ୍ତରିକତା, ହୁଏତ ଏକମାତ୍ର ମଧୁମିତା ପକ୍ଷରେ ସମ୍ଭବ ।

ଶେଷରେ ଶଶୀଶେଖର ବାଧ ହୋଇ ସେମାନଙ୍କ ଧ୍ୟାନଭଗ୍ନ କଲେ ।

ଚନ୍ଦ୍ରକାନ୍ତ ଲଜ୍ଜିତ ହେଲା ପରି କହିଲା : କ୍ଷମା କରିବେ ମିତା ଦେବୀ । ସକାଳୁ

ସକାଳୁ ଡାକ୍ତରଙ୍କ ପାଖକୁ ଛୁଟି ଆସିବାକୁ ହେଲା । କାଲି ଆପଣମାନେ ଚାଲିଆସିବା ପରେ, ମୁଁ ଯେପରି ଏକ ଆତ୍ମୀୟତାର ସନ୍ଧାନ ପାଇଲି ।

ମଧୁମିତା ଚନ୍ଦ୍ରକାନ୍ତ ସାମ୍ନାରେ ଗୋଟିଏ ସୋଫା ଉପରେ ବସିଲା ।

ଶଶୀଶେଖର କହିଲେ : ତୁମେ ଦୁହେଁ ବସି ଗଳ୍ପ କରୁଥାଅ, ମୁଁ ନିତ୍ୟକର୍ମ ଶେଷ କରିନିଏ ।

ମଧୁମିତା ମୁହଁରେ ଟିକିଏ ହସ ଫୁଟାଇବାକୁ ଚେଷ୍ଟା କରି କହିଲା : ମୁଁ ଜାଣିଥିଲି, ଆପଣ ଆସିବେ ।

: ମିଛକଥା, ଚନ୍ଦ୍ରକାନ୍ତ ଗଳାରେ ଦୃଢ଼ତା ଫୁଟି ଉଠିଲା । ଆପଣଙ୍କ ଫୋନ୍ ପାଇ ନ ଥିଲେ ମୁଁ ମୋଟେ ଆସି ନ ଥାନ୍ତି ।

: ମୋ ଫୋନ୍ ? ମଧୁମିତା କଣ୍ଠରେ ବିସ୍ମୟ ଫୁଟି ଉଠିଥିଲା ।

: ହଁ, ଆପଣଙ୍କର । ଗଣେଶ କହିଲା, ଆପଣ ଫୋନ୍ କରି ମୋତେ ଖୋଜୁଥିଲେ ।

ମଧୁମିତା ହସିଲା : ଗଣେଶ ତା' ହେଲେ ମୋ କଣ୍ଠସ୍ୱର ଚିହ୍ନି ପାରିଥିଲା । କିନ୍ତୁ ମୁଁ ଦେଖୁଛି, ଆପଣ ମୋଟେ ଭଲ ଲୋକ ନୁହଁନ୍ତି । ଆପଣଙ୍କ ସହିତ ମୋର ସମସ୍ତ ସମ୍ପର୍କ ତୁଟେଇ ଦେବାକୁ ହେବ ।

ହଠାତ୍ ଚନ୍ଦ୍ରକାନ୍ତର ମୁହଁ ମଉଳି ପଡ଼ିଲା । ସେ ଯେପରି ଅଶେଷ ଅପରାଧରେ ଅପରାଧୀ । କିନ୍ତୁ ଦୋଷଟା ଯେ କେଉଁଠି, ଠିକ୍ ତ ସେ ବୁଝିପାରିଲା ନାହିଁ ।

ମଧୁମିତା ହସି ହସି କହିଲା : ମୁଁ କାଲି କହିଥିଲି ନା, ଆପଣ ମୋତେ ମିତା ଡାକିବେ, ଆପଣ କହିବେ ନାହିଁ ।

: ଓଃ... ଚନ୍ଦ୍ରକାନ୍ତ ଖୁବ୍ ଜୋର୍‌ରେ ହସି ଉଠିଲା । ଆଖି ଦୁଇଟା ତା'ର ମଧୁମିତାର ଦେହମୁହଁରେ ଲୁଚକାଳି ଖେଳୁଥିଲେ ।

ଚନ୍ଦ୍ରକାନ୍ତର ହସ ଥମିବାରୁ ମଧୁମିତା କହିଲା : ଆପଣ କିଛି ଶିଖି ନାହାନ୍ତି ଚନ୍ଦ୍ରବାବୁ । ଝିଅମାନଙ୍କ ସଂସର୍ଗରେ ଯେ କେବେ ଆସି ନାହାନ୍ତି, ଆପଣଙ୍କ ଆଚରଣରୁ ମୁଁ ବୁଝିପାରୁଛି ।

: କାହିଁକି ? ଆପଣଙ୍କର ଏପରି ମନେ ହେବାର କାରଣ ?

ମଧୁମିତା ହସି ହସି କହିଲା : ଝିଅମାନଙ୍କୁ ଲୁଚେଇ ଲୁଚେଇ ପୁଅମାନେ ଦେଖନ୍ତି । କିନ୍ତୁ ଆପଣ ମୋତେ ଯେପରି ଚାହୁଁଛନ୍ତି, ଅନ୍ୟ କୌଣସି ଝିଅକୁ ସେହିପରି ଚାହିଁଲେ ସେ ହୁଏତ...

ଚନ୍ଦ୍ରକାନ୍ତ ପୁଣି ଥରେ ଲଜ୍ଜିତ ହୋଇ ଆଖି ଦୁଇଟା ନୁଆଁଇ ନେଲା ।

ଏଥର ମଧୁମିତାର ହସିବାର ପାଳି । ସେ ହସି ହସି ବେଦମ ହୋଇ କହିଲା : ନା ଚନ୍ଦ୍ରବାବୁ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ; ଧୀରେ ଧୀରେ ମୁଁ ଆପଣଙ୍କୁ ସବୁ ଶିଖାଇ ଦେବି । ଏବେ କହିଲେ ଚା' ନା କଫି ? ମୁଁ ଜାଣେ ଆପଣ କିଛି ଖାଇ ନ ଥିବେ ।

: କିପରି ଜାଣିଲେ ?

: ଝିଅମାନେ ପୁଅମାନଙ୍କ ମନର ଅନେକ କଥା ଜାଣନ୍ତି ଚନ୍ଦ୍ରବାବୁ । ଆପଣ ଦଣ୍ଡବୈଠକ ଶେଷ କରି ଯେତେବେଳେ ଘରକୁ ଫେରିଥିବେ, ଗଣେଶ ଆପଣଙ୍କୁ ମୋ ଖବରଟା ଦେଇଥିବ; ତା'ପରେ ଆଉ ଖାଇବାକୁ ବେଳ କେତେବେଳେ ?

ଚନ୍ଦ୍ରକାନ୍ତ ଏକ ନୀରବ ଚାହାଣିରେ ମଧୁମିତା ମୁହଁକୁ ଚାହିଁଥିଲା । ସତରେ ମଧୁମିତା ପରି ଝିଅ ହୁଏତ ପୃଥିବୀରେ ବହୁତ କମ୍ ଅଛନ୍ତି । ଆଉ ସେପରି ଝିଅର ସନ୍ଧାନ କେବ୍‌ଳ ପରମ ଭାଗ୍ୟବାନମାନେ ହିଁ ପାଇଥାଆନ୍ତି ।

ମୃତ୍ୟୁଞ୍ଜୟ ମଙ୍ଗରାଜ ଯେତେବେଳେ ଜାଣିପାରିବେ ଯେ ଚନ୍ଦ୍ରକାନ୍ତ କଲିକତାରେ ଗୋଟିଏ ଝିଅ ସଂସର୍ଗରେ ଆସିଛି ଏବଂ ସେ ଝିଅଟି ତାକୁ ଭଲ ଲାଗିଛି, ସେ ନିଶ୍ଚୟ ଛୁଟି ଆସିବେ ସେଇଦିନ । କାରଣ ନାରୀ ତାଙ୍କ ଜୀବନରେ ପରମ ଶତ୍ରୁ । ଏପରିକି ମୃତ୍ୟୁଞ୍ଜୟ ମଙ୍ଗରାଜ ତାଙ୍କ ମା'ଙ୍କ ସମ୍ବନ୍ଧରେ ଚନ୍ଦ୍ରକାନ୍ତ ଆଗରେ ଯେଉଁ କାହାଣୀ କହିଲେ, ମଣିଷ କେତେ ନାରୀବିଦ୍ୱେଷୀ ହେଲେ ଏପରି କଥା କହିପାରେ; ଚନ୍ଦ୍ରକାନ୍ତ ଭାବି ବି ଭାବି ପାରି ନାହିଁ । କାଲି ସମଗ୍ର ରାତିଟା ତା'ର ଅନିଦ୍ରାରେ କଟିଛି । ଗୋଟିଏ ପାଖରେ ମଧୁମିତା, ଆଉ ଗୋଟିଏ ପାଖରେ ମୃତ୍ୟୁଞ୍ଜୟ ମଙ୍ଗରାଜ ।

କିନ୍ତୁ ମଧୁମିତା ସହିତ ଚନ୍ଦ୍ରକାନ୍ତର ସମ୍ବନ୍ଧ ସେପରି ତ କିଛି ଗୂଢ଼ ନୁହେଁ, ମଧୁମିତା ଯଦି ତାଙ୍କ କମ୍ପାନୀର ଜଣେ ପାର୍ଟି ହୋଇ ଥାଆନ୍ତା, ତେବେ ଚନ୍ଦ୍ରକାନ୍ତ କ'ଣ ତା' ସହିତ କଥା ହୁଅନ୍ତା ନାହିଁ ? ମୃତ୍ୟୁଞ୍ଜୟ ମଙ୍ଗରାଜ କ'ଣ ତାକୁ ଦେଖା ନ ଦେଇ ତଡ଼େଇ ଦେଇଥାଆନ୍ତେ ?

: ଆରେ, କ'ଣ ଏତେ ଚିନ୍ତା କରୁଛ ୟଙ୍ଗମ୍ୟାନ୍ ! ମିତା ଗଲା କୁଆଡ଼େ ? ଶଶୀଶେଖର ଆସି ଚନ୍ଦ୍ରକାନ୍ତର ଧ୍ୟାନ ଭଙ୍ଗ କଲେ ।

: ସତେ ତ ! ମିତା ଗଲା କୁଆଡ଼େ ? ଏଇକ୍ଷିଣା ତ ସାମନାରେ ବସି ପଚାରୁଥିଲା ଖାଇବା କଥା ।

ମଧୁମିତା ସହିତ ନାଜନିନ୍ ଘରେ ପ୍ରବେଶ କଲା । ହାତରେ ଜଳଖିଆ ଟ୍ରେ ।

ପ୍ଲେଟ ପରେ ପ୍ଲେଟ କାଢ଼ି ରଖିଲା ଟେବୁଲ ଉପରେ । ଚନ୍ଦ୍ରକାନ୍ତ ଚାହିଁଥିଲା ମିତାର ଚଞ୍ଚଳ ହାତ ଦୁଇଟି ଆଡ଼େ ।

ଶଶୀଶେଖର ଚଉଧୁରୀ ଲୁଗାପଟା ବଦଳେଇ ଆସି ବସିଲେ ଚନ୍ଦ୍ରକାନ୍ତ ପାଖରେ । ଚନ୍ଦ୍ରକାନ୍ତ ଖାଇବା ପାଇଁ ଆପତ୍ତି କଲା ନାହିଁ । ଶଶୀଶେଖର ନୀରବରେ ଖାଇବା ଶେଷ କଲେ ।

ମଧୁମିତା କହିଲା : ଆପଣ ରେନ୍‌ବୋ କ୍ଲବ୍ ନାଁ ଶୁଣିଛନ୍ତି ? ବୋଧହୁଏ ଶୁଣିଥିବେ । କଲିକତା ସହରର ଏକ ଅଭିଜାତ କ୍ଲବ୍ । କେବଳ ଅଭିଜାତ ସମ୍ପ୍ରଦାୟମାନଙ୍କୁ ସେ କ୍ଲବର ମେମ୍ବରସିପ୍ ଦିଆହୋଇଥାଏ । ଡାଡ଼ି ତା'ର ଭାଇସ୍ ପ୍ରେସିଡ଼େଣ୍ଟ । ଆପଣଙ୍କୁ ଦିନେ ମୁଁ ନେଇଯିବି ସେ କ୍ଲବ୍‌କୁ ।

ଚନ୍ଦ୍ରକାନ୍ତ କଫି ପିଉଥିଲା ଆଉ ରହି ରହି ମଧୁମିତା ମୁହଁକୁ ଚାହୁଁଥିଲା । କ୍ଲବ ସମ୍ବନ୍ଧରେ ନିନ୍ଦା ପ୍ରଶଂସା ମନ୍ତବ୍ୟ କରିବା ପାଇଁ ସେ ଏଠାକୁ ଆସି ନ ଥିଲା ।

ଶଶୀଶେଖର ଉଠି ଠିଆ ହେଲେ । କହିଲେ : ରେନ୍‌ବୋ କ୍ଲବରେ ଆଜି ଗୋଟାଏ ମିଟିଂ ଅଛି ନଅଟାବେଳେ । ସେଥିପାଇଁ ମୁଁ ଟିକିଏ ଚିନ୍ତିତ ୟଙ୍ଗମ୍ୟାନ୍ । ଆଶା କରୁଛି କିଛି ଭାବିବ ନାହିଁ ।

ଚନ୍ଦ୍ରକାନ୍ତ ଉଠି ଠିଆ ହୋଇ ପଡ଼ିଲା । ମଧୁମିତାର ଅଳସ ଚାହାଣି ସହିତ ଆଖି ମିଳେଇ କହିଲା : ଆପଣ ବୋଧହୁଏ ଡାଡିଙ୍କ ସହିତ ଯିବେ ମିତା ଦେବୀ !

ମିତା ଟିକିଏ ଆଖି ନଚାଇ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ି ଉଠି ଛିଡ଼ା ହେଉ ହେଉ କହିଲା : ନ ଯାଇ ଉପାୟ ନାହିଁ ମିଷ୍ଟର ପଟ୍ଟନାୟକ । ଡାଡ଼ି ମୋତେ ଯେଉଁପରି ଭାବରେ ଜଡ଼େଇ ଧରିଛନ୍ତି, ଜାଣେନି କେଉଁଦିନ ମୋତେ ଅଣନିଃଶ୍ୱାସୀ କରି ଛାଡ଼ିବେ ।

ଶଶୀଶେଖର ଟିକିଏ ମ୍ଳାନ ହସ ହସି କହିଲେ : ଜାଣ ୟଙ୍ଗମ୍ୟାନ୍, ମୋର ଯଦି ତମ ଭଳିଆ ଗୋଟାଏ ପୁଅ ଥାଆନ୍ତା, ମିତା ମୁହଁରୁ ମୁଁ ବାରମ୍ବାର ଏପରି ଅପମାନ ସୂଚକକଥା ଶୁଣନ୍ତି ନାହିଁ । ସେ ବି କହିବାକୁ ଭରସି ପାରନ୍ତା ନାହିଁ ।

ସେଇ ମୁହୂର୍ତ୍ତରେ ମଧୁମିତାର ମୁହଁ ରକ୍ତାଭ ହୋଇଉଠିଲା । ମୁହଁରେ ତା'ର ଫୁଟିଉଠିଲା ଅଭିମାନର ଭାଷା ।

ସେ ପୁଣି ସୋଫା ଉପରେ ବସିପଡ଼ି କହିଲା : ଆପଣ ଜାଣନ୍ତି ଚନ୍ଦ୍ରବାବୁ ! ଡାଡିଙ୍କ ପାଇଁ ଯେତେ ଯାହା କଲେ ବି ମୋ ଉପରେ ମୋଟେ ସନ୍ତୁଷ୍ଟ ନୁହଁନ୍ତି । ଖାଲି କଥା କଥାକେ କହୁଛନ୍ତି, ମୋର ଯଦି ତୋ' ବୟସର ପୁଅଟିଏ ଥାଆନ୍ତା, ତେବେ

କ'ଣ ସବୁବେଳେ ତାଙ୍କରି ପଛେପଛେ ଛାଇ ପରି ଲାଗି ରହିଥାଆନ୍ତେ ! ମୋର ତ ପୁଣି ମନ ବୋଲି ଗୋଟିଏ ବସ୍ତୁ ଅଛି । ଆଜି ମୋର କ'ଣ ଇଚ୍ଛା ହେଉ ନାହିଁ, ଏଇ ମୁହୂର୍ତ୍ତରେ ତମ ସହିତ ଯାଇ ଟିକିଏ ବୁଲି ଆସିବା ପାଇଁ । ଡାଡ଼ି କିନ୍ତୁ ମୋ ମନକୁ ମୋଟେ ବୁଝୁ ନାହାନ୍ତି । ମୋର ଯେ ଗୋଟିଏ ସତନ୍ତ୍ର ସତ୍ତା ଅଛି, ସେ କଥା ସେ ଟିକିଏ ହେଲେ ଅନୁଭବ କରୁ ନାହାନ୍ତି ।

ମଧୁମିତାର କଣ୍ଠ ଓଦା ହୋଇ ଆସିଲା । ଚନ୍ଦ୍ରକାନ୍ତ ଭୀଷଣ ଭାବରେ ଦୁଃଖ ପାଇଲା ମନେ ମନେ । କିନ୍ତୁ ବାପ ଝିଅଙ୍କର କଳିରେ ତା'ର କରିବାର କ'ଣ ଅଛି ?

ଶଶୀଶେଖର ମଧୁମିତା ପାଖକୁ ଆଗେଇ ଆସି ତା' ହାତ ଧରି ଉଠାଇଲେ ! କହିଲେ : ଡେରି ହେଉଛି ମିତା । ଆଜିଟା ତୁ ମୋ ସହିତ ଆ । ଏହାପରେ ମୁଁ ଆଉ ତୋତେ ବିରକ୍ତ କରିବି ନାହିଁ । ଚନ୍ଦ୍ରକାନ୍ତ ଆଡ଼େ ବୁଲି ଚାହିଁ କହିଲେ, ତୁମେ ଆଜି ଚାରିଟା ବେଳକୁ ଆସିବ ୟଙ୍ଗମ୍ୟାନ୍ । ତମର ଯେତେ କାମ ଥିଲେ ବି ମୋର ଏହି ବିଶେଷ ଅନୁରୋଧଟି ତମକୁ ରକ୍ଷା କରିବାକୁ ହେବ । କ'ଣ ଆସିବ ତ ? ମୋତେ କଥା ଦିଅ ୟଙ୍ଗମ୍ୟାନ୍ ।

ଚନ୍ଦ୍ରକାନ୍ତ ଏପରି ଏକ କରୁଣ ପରିବେଶର ସମ୍ମୁଖୀନ କେବେ ହୁଏତ ହୋଇ ନ ଥିଲା । ସେ ଜଡ଼ ପାଲଟି ଯାଇଥିଲା । ଶଶୀଶେଖରଙ୍କ କଥାରେ ଚମକି ଉଠିଲା ସ୍ୱରରେ କହିଲା : ହଁ, ମୁଁ ଆସିବି ସାର୍ । ଆପଣ କହୁଛନ୍ତି ଯେତେବେଳେ...

: ଖାଲି ଆସିଲେ ହେବ ନାହିଁ ୟଙ୍ଗମ୍ୟାନ୍ । ତିନି ଚାରିଘଣ୍ଟା ସମୟ ନଷ୍ଟ କରିବା ପାଇଁ ପ୍ରସ୍ତୁତ ହୋଇ ଆସିଥିବ । ଏଇଠି ଖିଆପିଆ ପର୍ବ ଶେଷ କରି ଫେରିଯିବ ରାତି ଆଠଟା ନଅଟା ବେଳକୁ । ସତରେ ମିତା ପ୍ରତି ମୁଁ ଯଥେଷ୍ଟ ଅନ୍ୟାୟ କଲିଣି । ତା'ର ଯେ ଏକ ସତନ୍ତ୍ର ମନ ଅଛି, ମୋର ସେକଥା ବହୁ ଆଗରୁ ବୁଝିବା ଉଚିତ ଥିଲା ।

: ଡାଡି ! ମଧୁମିତା ଚିତ୍କାର କରି ଉଠିଲା ।

ଶଶୀଶେଖର ଚୁପ୍ ହୋଇଗଲେ ।

ଚନ୍ଦ୍ରକାନ୍ତ ମୁହଁକୁ ମଧୁମିତା ଚାହିଁ ପାରୁ ନ ଥିଲା । ବୋଧହୁଏ ତା' ଆଗରେ ତାଙ୍କ ପାରିବାରିକ ଜୀବନର ଏପରି ଏକ ଅଧ୍ୟାୟ ଉଦ୍‌ଘାଟନ ହୋଇଯିବାରୁ ମଧୁମିତା ଲଜ୍ଜିତ ହେଉଥିଲା ।

ଶଶୀଶେଖର ଆଗେଇ ଯାଉଥିଲେ ।

ଚନ୍ଦ୍ରକାନ୍ତ ମଧୁମିତା ପାଖକୁ ଯାଇ ଧୀର ଗଳାରେ କହିଲା : ଉଠ ମିତା ! ଡାଡିଙ୍କର ବୟସ ହୋଇଛି । ତମେ ତାଙ୍କର ଏକମାତ୍ର ଆଶାଭରସା । ତାଙ୍କ ମନରେ

ଏପରି ଦୁଃଖ ଦେବାଟା କ'ଣ ତମର ଉଚିତ ହୋଇଚି ? ବିଶେଷ କରି ମୋ ପରି ଏକ ଅନ୍ୟ ଲୋକ ସାମନାରେ ?

ମଧୁମିତା ଉଠି ଠିଆ ହେଲା । ସେ ଝାଉଁଳି ପଡ଼ିଛି । ଆଖି କୋଣରେ ଲୁହ ଢଳ ଢଳ ହେଉଛି । କେଜାଣି କାହିଁକି ଚନ୍ଦ୍ରକାନ୍ତ ମନେ ମନେ ଭୀଷଣ ଆଘାତ ପାଇଲା ।

ସମସ୍ତେ ନୀରବରେ ଆଗେଇ ଯାଉଥିଲେ ।

ଲନ୍ ଭିତରେ ଦୁଇଟି ଗାଡ଼ି ଅପେକ୍ଷା କରିଥିଲା । ଗୋଟିଏ ଶଶୀଶେଖର ଚଉଧୁରୀଙ୍କର, ଅନ୍ୟଟି ଚନ୍ଦ୍ରକାନ୍ତର । ମଧୁମିତା ଗାଡ଼ିରେ ଉଠିବା ପୂର୍ବରୁ ଚନ୍ଦ୍ରକାନ୍ତ ଆଡ଼େ ଛଳ ଛଳ ଆଖିରେ ଚାହିଁ ପଚାରିଲା : ଆସିବେ ତ ? ମୁଁ କିନ୍ତୁ ଚାରିଟା ବେଳକୁ ଅପେକ୍ଷା କରିଥିବି ।

ଗାଡ଼ି ଚାଲିଗଲା ।

ଚନ୍ଦ୍ରକାନ୍ତ ବି ନିଜ ଗାଡ଼ିରେ ଉଠି ବସିଲା । ତା'ର ଅଫିସ୍ ଯିବାକୁ ଆହୁରି ଘଣ୍ଟାଏ ସମୟ ଅଛି । କିନ୍ତୁ ଏଇକ୍ଷିଣା ସିଧା ଅଫିସକୁ ଚାଲିଗଲେ କ୍ଷତି କ'ଣ ! ମଧୁମିତା ଯାହା ଖୋଇଛି, ସେଥିରେ ତା'ର ଚାରିଟା ବେଳ ଯାଏ ଚଳିଯିବ । ଆଗରୁ ଟିକିଏ ଫେରିବାକୁ ହେବ ଅଫିସ୍‌ରୁ । ତେଣୁ କାମଗୁଡ଼ାକ ଶେଷ କରି ନେଇ ପାରିଲେ ଭଲ ହେବ ।

ଚନ୍ଦ୍ରକାନ୍ତ ଗାଡ଼ିରେ ବସି ଆନମନା ହୋଇ ପଡ଼ିଥିଲା ।

ଅଭିମାନିନୀ ମିତା ! ଆଖିକୋଣରେ ତା'ର ଲୁହ ଦେଖି ଚନ୍ଦ୍ରକାନ୍ତ ଆଖିରେ ଲୁହ ଜକେଇ ଆସିଥିଲା । କିନ୍ତୁ କାହିଁକି ? ମିତା ସହିତ ତା'ର ସମ୍ପର୍କଟା ତ ନିବିଡ଼ ନୁହେଁ ! ବରଂ ସେ ଆକର୍ଷିତ ହୋଇଛି ଶଶୀଶେଖରଙ୍କ ଆନ୍ତରିକତାରେ । କିନ୍ତୁ ମିତା ପାଇଁ ତା' ପ୍ରାଣରେ ଏପରି ଏକ ଆଲୋଡ଼ନ ସୃଷ୍ଟି ହେଲା କାହିଁକି ?

ଚନ୍ଦ୍ରକାନ୍ତ ଅଫିସ୍‌ରେ ପହଞ୍ଚିଲା । କାମ ଜମିଛି ଅନେକ । ଆପଏଣ୍ଟମେଣ୍ଟ୍ ଅଛି ଦୁଇ ଚାରିଜଣଙ୍କର । କମ୍ପାନୀର ପ୍ରୋଡ଼ାକ୍‌ସନର ସୋଲ ଏଜେନ୍‌ସୀ ପାଇଁ ବିଭିନ୍ନ ପ୍ରଦେଶରୁ ସେମାନେ ଆସିଛନ୍ତି । ଚାରିଟା ପୂର୍ବରୁ ଚନ୍ଦ୍ରକାନ୍ତକୁ ସବୁ ଶେଷ କରିବାକୁ ହେବ ।

ଟେବୁଲ ଉପରେ ଜମା ହୋଇଛି ବହୁତ ଚିଠି । ଆଜି ଚନ୍ଦ୍ରକାନ୍ତର ସେଗୁଡ଼ିକୁ ଖୋଲି ପଢ଼ିବାର ବିଶେଷ ଆଗ୍ରହ ନାହିଁ । ତଥାପି ଅଭ୍ୟାସ ଅନୁସାରେ ସବୁ ଚିଠିଗୁଡ଼ିକ ଉପରେ ସେ ଆଖି ବୁଲାଇଗଲା ।

ହଁ, ଏଇଟି ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କର । ଚନ୍ଦ୍ରକାନ୍ତ ନାଁରେ ଆସିଛି ଚିଠିଟା ।

କେଜାଣି କାହିଁକି ଚନ୍ଦ୍ରକାନ୍ତଙ୍କର ଆଜି ଚିଠିଟି ଖୋଲିବା ପାଇଁ ମନ ଭିତରେ କିପରି ଏକ କମ୍ପନ ସୃଷ୍ଟି ହେଲା । ହାତଟା ଥରି ଉଠିଲା ।

ଖାଲି ଆଦେଶ ଆଉ ଉପଦେଶ । ଶୁଣି ଶୁଣି ଚନ୍ଦ୍ରକାନ୍ତ ଏତେ ବଡ଼ ହୋଇଛି । ଦିନେ ତ ତାକୁ ଅସହ୍ୟ ବୋଧ ହୋଇନାହିଁ । ବରଂ ଜୀବନରେ ସେ ବଡ଼ ହେବାର ସୁଯୋଗ ପାଇଛି । ତା' ଚଲାପଥରେ ଯଦି ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ସହିତ ଭେଟ ହୋଇ ନ ଥାନ୍ତା, ତା'ହେଲେ ଗତିପଥ ତା'ର କୁଆଡ଼େ ମୁହାଇଁଥାନ୍ତା କିଏ ଜାଣେ ?

ଅଭ୍ୟାସ ଅନୁସାରେ ଚନ୍ଦ୍ରକାନ୍ତ ଚିଠିଟି ଖୋଲି ପକାଇଥିଲା । ମୃତ୍ୟୁଞ୍ଜୟ ମଙ୍ଗରାଜ ଲେଖିଛନ୍ତି :

କଲ୍ୟାଣୀୟେଷୁ,

କମ୍ପାନୀର ପ୍ରୋଗ୍ରେସ୍ ରିପୋର୍ଟ ପାଇ ବିଶେଷ ଖୁସି ହେଲି । ମୁଁ ଜାଣିଥିଲି, ତୁମେ ପାରିବ । ମୁଁ ଜାଣିଥିଲି ବୋଲି ଶିକ୍ଷା ଦେଇଥିଲି ତୁମକୁ । ମୋ ଦୀକ୍ଷାରେ ଦୀକ୍ଷିତ କରିବା ପାଇଁ ତମ ପ୍ରତି ମୋତେ ଯେତେ ଶ୍ରମ କରିବାକୁ ହୋଇଛି, ଆଜି ମନେ ହେଉଛି ତାହା ଯେପରି ସାର୍ଥକ ହେଲା ।

କିନ୍ତୁ ତୁମକୁ ପାଖରୁ ଅନ୍ତର କରି ମୋ ମନରେ ଏ ପର୍ଯ୍ୟନ୍ତ ଦୃଢ଼ତା ଆସିନାହିଁ । କଲିକତା ଭଳି ଏକ ବିରାଟ କସ୍‌ମୋପଲିଟାନ୍ ସିଟିରେ ତୁମେ ଯେ ମୋ ଦୀକ୍ଷାର ମାନ ବଜାୟ ରଖି ଚଳିପାରିବ, ସେଥିପ୍ରତି ବେଳେ ବେଳେ ମୋର ସନ୍ଦେହ ହୁଏ । ମୋ 'ମଟୋ' ସେଇ ଗୋଟିଏ । ନାରୀ । ନାରୀର ସଂସର୍ଗ ତ୍ୟାଗ କରି ଚଳିପାରିଲେ ଜୀବନରେ କେବେ ଦୁର୍ଦ୍ଦିନ ଆସିବ ନାହିଁ । ଚରିତ୍ରରେ କେବେ କଳଙ୍କ ଲାଗିବ ନାହିଁ । କେବଳ ନାରୀ ଜାତିଟା ପାଇଁ ଆଜି ପୃଥିବୀର ଏ ଦୁରବସ୍ଥା ।

କଲିକତାରେ ସେଥିପାଇଁ ସବୁବେଳେ ତୁମକୁ ମାପିଚୁପି ଚଳିବାକୁ ହେବ । ସେଠାରେ ପ୍ରଲୋଭନ ଅନେକ । ସବୁଗୁଡ଼ିକ ଏଡ଼େଇ ନ ପାରିଲେ ତୁମେ ଦିନେ ନା ଦିନେ ଫାନ୍ଦରେ ପଡ଼ିଯିବ । କିନ୍ତୁ ତୁମ ପ୍ରତି ମୋର ଯଥେଷ୍ଟ ଆସ୍ଥା ଅଛି, ବିଶ୍ୱାସ ଅଛି । ମୁଁ ଜାଣେ ତୁମେ ପଥହରା ହେବ ନାହିଁ ।

ଚନ୍ଦ୍ରକାନ୍ତର କେଜାଣି କାହିଁକି ସେ ଦୀର୍ଘ ଚିଠିଟିକୁ ପଢ଼ିବାକୁ ଆଗ୍ରହ ମରି ଯାଇଥିଲା । ଅନ୍ୟ ଦିନମାନଙ୍କ ପରି ଏକା ନିଃଶ୍ୱାସରେ ଚିଠିଟିକୁ ପଢ଼ିପାରିଲା ନାହିଁ । ପୁଣି ମୋଡ଼ିମାଡ଼ି ଖାମ୍‌ରେ ଭର୍ତ୍ତିକରି ରଖିଦେଲା । ପରବର୍ତ୍ତୀ ଅଂଶ ପରେ କେତେବେଳେ ପଢ଼ିଲେ ଚଳିବ । ଟେବୁଲ ଉପରେ ଫାଇଲ୍‌ଗୁଡ଼ାକ ଗଦା ହୋଇଛି । ତାକୁ ଯେପରି ସେଗୁଡ଼ା ଗୋଟିଏ ଗୋଟିଏ ଛୋଟ ଛୋଟ ପାହାଡ଼ ପରି ମନେ ହେଲା ।

ଚନ୍ଦ୍ରକାନ୍ତ ବୁଝିପାରିଲା ନାହିଁ କିଛି । କେବେ ତ ସେ କାମକୁ ଡରୁ ନ ଥିଲା ! ଆଜି କ'ଣ ତା' ମନରେ ପ୍ରକୃତରେ କିଛି ପରିବର୍ତ୍ତନ ଆସିଛି ?

ଟେବୁଲ ଉପରର ଘଣ୍ଟିଟାକୁ ଚନ୍ଦ୍ରକାନ୍ତ ଜୋର୍‌ରେ ପିଟିବାକୁ ଲାଗିଲା ।

ବେହେରା ଛୁଟି ଆସିଲା ଭିତରକୁ ।

ବେହେରାଟି ବିନୀତ ସ୍ୱରରେ ଜଣାଇଲା : ଶ୍ରୀନିବାସନ ସାହେବ ଆସି ନାହାନ୍ତି ।

ଚନ୍ଦ୍ରକାନ୍ତ ଲଜ୍ଜିତ ହୋଇ ହାତଘଡ଼ିକୁ ଚାହିଁଲା । ମାତ୍ର ସାଢ଼େ ନଅଟା ବାଜିଛି । ବେହେରାକୁ କଫି ଆଣିବା ପାଇଁ ନିର୍ଦ୍ଦେଶ ଦେଇ ଗୋଟାଏ ଫାଇଲ୍ ଟାଣିନେଇ ଚିଠି ପଢ଼ିବାରେ ମନ ଦେଲା ।

ସେହି ଚିଠି ଭିତରେ ବି ଭାସି ଉଠିଲା ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ମୁହଁଟା ।

ଯେଉଁଦିନ ଚନ୍ଦ୍ରକାନ୍ତର ସ୍କୁଲ ଫାଇନାଲ୍ ରେଜଲଟ ବାହାରିଥାଏ । କାହାକୁ ଆଗ ଶୁଭ ସମ୍ବାଦଟା ଜଣାଇବ ! ମେସ୍‌ରେ ବନ୍ଧୁମାନେ କେହି ନ ଥାନ୍ତି । ମ୍ୟାନେଜର ବି ସେଦିନ ଘରକୁ ଯାଇଥାଆନ୍ତି । ଚାକର ପୁଝାରୀଙ୍କ ଆଗରେ ସେ ଏତେ ବଡ଼ ଶୁଭ ଖବରଟା ପ୍ରଥମେ ଦେବାକୁ ଇଚ୍ଛା କଲା ନାହିଁ ।

ତା'ହେଲେ ? ଏ ଦୁନିଆରେ ତା'ର ଆତ୍ମୀୟସ୍ୱଜନ କେହି କ'ଣ ଜଣେ ବି ହୋଇ ନାହାନ୍ତି ? ଶେଷରେ ଠିକ୍ କଲା, ସେ ଯେଉଁଠି ଟିଉସନ୍ କରେ, ସେଇଠି ଯାଇ ତା' ଛାତ୍ରକୁ ଅନ୍ତତଃ ପ୍ରଥମେ ଖବରଟା ଶୁଣାଇବ ।

ଚନ୍ଦ୍ରକାନ୍ତ ଅନ୍ୟମନସ୍କ ହୋଇ ବାଟ ଚାଲିଥିଲା ।

କିନ୍ତୁ କେଉଁ ଏକ ମୁହୂର୍ତ୍ତରେ କିପରି ଯେ କ'ଣ ଘଟିଗଲା, କିଛି ସେ ବୁଝିପାରିଲା ନାହିଁ । ଯେତେବେଳେ ସେ ନିଜ କଥା ଚିନ୍ତା କଲା ଭଳି ସଚେତନ ହେଲା, ଦେଖିଲା କେଉଁଠି, କାହାଘରେ, ଏକ ନରମ ବିଛଣା ଉପରେ ଶୋଇଛି । ମୁଣ୍ଡରେ କିପରି କଷ୍ଟ ଅନୁଭବ କରି ହାତ ବୁଲାଇ ଦେଖିଲା, ବ୍ୟାଣ୍ଡେଜ୍ ବନ୍ଧା ହୋଇଛି । ଆଖି ଖୋଲି ଚାହିଁଲା । ସାମ୍ନାରେ ଜଣେ ବୟସ୍କ ଭଦ୍ରଲୋକ ବସି ଚୁରୁଟ୍ ଟାଣୁଛନ୍ତି ।

ଚନ୍ଦ୍ରକାନ୍ତ କିଛି ବୁଝିପାରିଲା ନାହିଁ । କ'ଣ ହେଲା ତା'ର ? ମୁଣ୍ଡରେ ଆଘାତ ପାଇଲା କିପରି ?

ବୟସ୍କ ଭଦ୍ରଲୋକ ଜଣକ ଚନ୍ଦ୍ରକାନ୍ତ ପାଖକୁ ଉଠି ଆସି କହିଲେ : ତୁମେ ରାସ୍ତାରେ ଚାଲିଲାବେଳେ ଗୋଟିଏ ରିକ୍‌ସା ସହିତ ଧକ୍‌କା ଖାଇ ଆସି ମୋ ମଟର ସାମ୍ନାରେ ପଡ଼ିଥିଲ, ବର୍ତ୍ତମାନ ମୋ ଘରେ । ଭଲ । କିଛି ଚିନ୍ତା କର ନାହିଁ । ଭଲ ହୋଇଗଲେ ମୁଁ ତୁମକୁ ଘରକୁ ପଠାଇ ଦେବି ।

ମୃତ୍ୟୁଞ୍ଜୟ ମଙ୍ଗରାଜ ଚନ୍ଦ୍ରକାନ୍ତ ଆଖିରେ ସେଦିନ ଦେବଦୂତ ପରି ମନେ ହୋଇଥିଲେ । ଭବିଷ୍ୟତରେ ସେଇ ମଙ୍ଗରାଜ ଯେ ତା'ର ଭାଗ୍ୟନିୟନ୍ତା ହେବେ, ସେ କଥା ଅବଶ୍ୟ ସେଦିନ ଚନ୍ଦ୍ରକାନ୍ତ ଚିନ୍ତା କରି ପାରି ନ ଥିଲା ।

ଟେବୁଲ ଉପରେ ଫୋନ୍‌ଟା କ୍ରିଁ କ୍ରିଁ ବାଜି ଉଠିଲା ।

ହ୍ୟାଲୋ ! ଚନ୍ଦ୍ରକାନ୍ତ କ୍ଷିପ୍ର ହସ୍ତରେ ରିସିଭରଟା ଉଠାଇ ନେଲା ।

ଅପରପାର୍ଶ୍ୱରୁ ଶଶୀଶେଖରଙ୍କ କଣ୍ଠସ୍ୱର ଶୁଣାଗଲା । ସେ ପଚାରୁଥିଲେ, ଚନ୍ଦ୍ରକାନ୍ତ ତାଙ୍କ ପାଖରୁ ବିଦାୟ ନେଇ ନିରାପଦରେ ଯାଇ ଅଫିସ୍‌ରେ ପହଞ୍ଚି ସାରିଛି କି ନାହିଁ, ଏବଂ ଚନ୍ଦ୍ରକାନ୍ତ ଆଗରେ ମଧୁମିତା ତାଙ୍କର ପାରିବାରିକ ଜୀବନର ଯେଉଁ ନଗ୍ନ ସତ୍ୟଟିକୁ ଉଦ୍‌ଘାଟନ କରି ବସିଥିଲା, ସେଥିପାଇଁ ଯେପରି ସେ କିଛି ନ ଭାବେ । ଅବଶ୍ୟ ଚନ୍ଦ୍ରକାନ୍ତଙ୍କୁ ନିଜର ସନ୍ତାନ ରୂପେ ପାଇବାର ସୌଭାଗ୍ୟ ଶଶୀଶେଖରଙ୍କ ନାହିଁ, ତଥାପି ସେ ସେଇଆ ମନେ କରି ଯଦି ଟିକିଏ ଶାନ୍ତି ପାଆନ୍ତି, ସେଥିପାଇଁ ଚନ୍ଦ୍ରକାନ୍ତ ଯେପରି କିଛି ମନେ ନ କରେ ।

ଶଶୀଶେଖର ଶେଷ କଥା ପଦିକ କହିଲାବେଳକୁ କଣ୍ଠଟା ତାଙ୍କର ଥରି ଉଠିଲା ପରି ଚନ୍ଦ୍ରକାନ୍ତର ମନେ ହୁଏ । ସେ କିଛି ଉତ୍ତର ଦେବାକୁ ବୋଧହୁଏ ସେଇ ମୁହୂର୍ତ୍ତରେ ଭାଷା ଖୋଜି ପାଏ ନାହିଁ । କିନ୍ତୁ ପର ମୁହୂର୍ତ୍ତରେ ଅପର ପ୍ରାନ୍ତରୁ ଯାହାର କଣ୍ଠସ୍ୱର ଭାସି ଆସେ, ସେ ନିଶ୍ଚୟ ମଧୁମିତାର ।

ଚନ୍ଦ୍ରକାନ୍ତ ଟିକିଏ ଚଞ୍ଚଳ ହୋଇପଡ଼େ ।

ମଧୁମିତା ପ୍ରଶ୍ନ କରେ : ଘରକୁ ଯାଇ ଗାଧୁଆ ପାଧୁଆ ଶେଷ କରି ଆସିଲ କି ନାହିଁ? ଗଣେଶ କ'ଣ ଖାଇବାକୁ ଦେଲା । ଡାଡିଙ୍କୁ ମୁଁ ଆଜି ଖୁବ୍ ଜବଦ କରିଛି । କ୍ଲବକୁ ଆସି ମୋତେ ମନ ଲାଗୁ ନାହିଁ । ମୋର ଆଜି ଇଚ୍ଛା ଥିଲା ତମ ସହିତ ଘୂରି ବୁଲିବା ପାଇଁ । କ'ଣ କରୁଛ ବସି ବସି । ଚାଲି ଆସନା ଆମ କ୍ଲବକୁ । କ୍ଲବକୁ ଲାଗି ଗୋଟିଏ ସୁନ୍ଦର ବଗିଚା ଅଛି । ଭାରି ନିରୋଳା । ବସି ବସି ଗପ କରିବା । ଧେତ୍ ! ଡାଡ଼ିଙ୍କ ପାଇଁ ଜୀବନଟା ମୋର ନଷ୍ଟ ହୋଇଗଲା । ହେଇ ଡାକ ଛାଡ଼ିଲେଣି । ଆଚ୍ଛା ସତ କହିଲ, ମୋ ପରି ଗୋଟିଏ ତରୁଣୀ, ବିଶେଷତଃ ଯିଏ ଟିକିଏ ଆଲୋକ ପାଇଛି, ସେ ଏହିପରି ସୁନାପିଞ୍ଜରାରେ ବନ୍ଦୀ ହୋଇ ରହିଲେ ତାକୁ ଭଲ ଲାଗିବ ।

ଯାଃ...ତମେ ବି ଡାଡ଼ିଙ୍କ ଆଡ଼ିଆ ହୋଇଛି ଦେଖୁଛି । ମୋର କୌଣସି ପ୍ରଶ୍ନର ଗୋଟିଏ ବି ଉତ୍ତର ଦେଉ ନାହଁ । ଡାଡ଼ିଙ୍କ ସାମ୍ନାରେ ମୋତେ ଥରଟିଏ ସପୋର୍ଟ କରୁ

ନାହଁ । କହିଲ - ଏକେତ ମୁଁ ନାରୀ, ତା'ପରେ ତମମାନଙ୍କ ମେଳରେ ରହି ବି ମୁଁ ଯଦି ଏତେ ନିଃସହାୟ ହୁଏ, ତା' ହେଲେ ଜୀବନର ମହକ ଯେ ସବୁ ନଷ୍ଟ ହୋଇଯିବ ।

ମୁଁ ଜାଣେ ତମଠାରୁ ବି ମୁଁ ମୋ ପାଇଁ କିଛି ସମର୍ଥନ ପାଇବି ନାହିଁ । ଆଃ... ଆସୁଛି ଡାଡ଼ି । ହଁ ଶୁଣନ୍ତୁ ଚନ୍ଦ୍ରବାବୁ, ଡାଡ଼ି ବ୍ୟସ୍ତ ହୋଇ ପଡ଼ିଲେଣି । ତେଣେ ମିଟିଂ ଆରମ୍ଭ ହେଉଛି । କ'ଣ ଆସୁଛ ତ ଚାରିଟା ବେଳକୁ ? ନ ଆସିଲେ ମୁଁ ନିଜେ ଯାଇ ପହଞ୍ଚିଯିବି ।

ଚାରିଟା ବାଜିବାର ବହୁ ପୂର୍ବରୁ ଯାଇ ପହଞ୍ଚି ଯାଇଥିଲା ମଧୁମିତା ।

ଚନ୍ଦ୍ରକାନ୍ତ ଯେତେବେଳେ ବେହେରା ହାତରୁ ମଧୁମିତା ନାମାଙ୍କିତ କାଗଜ ଖଣ୍ଡିକ ଦେଖିଲା, କେଜାଣି କାହିଁକି ସମଗ୍ର ଶରୀରରେ ତା'ର କିପରି ବିଦ୍ୟୁତ୍ ପ୍ରବାହ ଖେଳିଗଲା । ମୁହଁରେ ଫୁଟି ଉଠିଲା ଆଶଙ୍କାର ଚିହ୍ନ ।

ମଧୁମିତା ! ମଧୁମିତା ନିଜେ ଆସିଛି ତା' ଅଫିସ୍‌କୁ ! ଅଥଚ ଚନ୍ଦ୍ରକାନ୍ତ କ'ଣ କରିବ ? ଯାହା କଥା ଆଜି ଦିନଯାକ ଭାବି ଭାବି ସେ ହାଲିଆ ହୋଇ ପଡ଼ିଛି, ଯାହା ସହିତ ମିଶି ସେ ଆଜି ବହୁ ମଧୁର ସ୍ୱପ୍ନ ଦେଖିଛି । ଅଥଚ, ଅଥଚ....

ବେହେରା ଠିଆ ହୋଇଛି ଚନ୍ଦ୍ରକାନ୍ତର ଆଦେଶ ପ୍ରତୀକ୍ଷାରେ ।

ଚନ୍ଦ୍ରକାନ୍ତ ଉଠି ଠିଆ ହୋଇ ପୁଣି ବସିଲା । ଟେବୁଲ ଉପରକୁ ଚିଠିଗୁଡ଼ାକ ଖେଳେଇ ପକେଇଲା । ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ଚିଠି ଖଣ୍ଡକ ବାହାରି ଆସିଲା ସେହି ସ୍ତୂପ ଭିତରୁ । ସେଇଟିକୁ ସେ ପଢ଼ି ଶେଷ କରି ପାରିନାହିଁ ଆଜି ।

ମଙ୍ଗରାଜଙ୍କ ମୁହଁ ଭାସି ଉଠିଲା ଆଖି ଆଗରେ । ନାରୀ ହେଲା ପୁରୁଷର ପରମ ଶତ୍ରୁ । ବାଘ ଭାଲୁ ପରି ହିଂସ୍ର ଜନ୍ତୁମାନଙ୍କଠାରୁ ନାରୀ ଆହୁରି ଭୟଙ୍କର । ଜୀବନରେ ବଡ଼ ହେବାକୁ ହେଲେ....

: ସାହେବ....

ବେହେରାର ବିନୀତ କଣ୍ଠସ୍ୱର ଶୁଣି ଚନ୍ଦ୍ରକାନ୍ତ କ୍ଷିପ୍ତ ହୋଇ ଉଠିଲା । ଚିତ୍କାର କରି କହିଲା : ଆରେ ତୁ ମୋ ମୁହଁକୁ ଚାହିଁଚୁ କ'ଣ ? ତାଙ୍କୁ ଡାକିବାକୁ ଯାଇ ନାହୁଁ ଏ ଯାଏ ?

ବେହେରାଟି ବାହାରି ଚାଲିଗଲା ।

କିନ୍ତୁ ଚନ୍ଦ୍ରକାନ୍ତ ସ୍ଥିର ହୋଇ ବସିପାରିଲା ନାହିଁ । ନା ନା, ତା' ଜୀବନର ମହାନ ବ୍ରତକୁ ସେ ଏତେ ସହଜରେ ନଷ୍ଟ କରିଦେଇ ପାରିବ ନାହିଁ । ନାରୀ ତା' ଜୀବନର ଚରମ ଶତ୍ରୁ ବା ପରମ ମିତ୍ର ହେଉ ନ ହେଉ; ତା' ଅଫିସ୍ ଘର ଭିତରକୁ, ନା ନା...

ଚନ୍ଦ୍ରକାନ୍ତ ଝଡ଼ବେଗରେ ଅଫିସ୍ ରୁମ୍‌ରୁ ପଦାକୁ ବାହାରି ଗଲା ।

ମଧୁମିତା ବେହେରା ସହିତ ଆଗେଇ ଆସୁଥିଲା ହଲ୍ ଭିତରେ ଚନ୍ଦ୍ରକାନ୍ତର ଅଫିସ୍ ଆଡ଼କୁ । ହଲ୍‌ଭର୍ତ୍ତି କର୍ମଚାରୀମାନେ ଚାହିଁଥିଲେ ମଧୁମିତା ଆଡ଼କୁ । ଏକ ଅସ୍ପଷ୍ଟ ଗୁଞ୍ଜନ ବି ସୃଷ୍ଟି ହୋଇ ଯାଇଥିଲା ।

ହଠାତ୍ ଚନ୍ଦ୍ରକାନ୍ତର ଆବିର୍ଭାବରେ ସବୁ ନୀରବ ହୋଇଗଲା । ମଝି ବାଟରେ ମଧୁମିତା ବି ଅଟକି ଗଲା ।

ଅଥଚ ଚନ୍ଦ୍ରକାନ୍ତ... ମଧୁମିତାକୁ କ'ଣ ପଚାରିବାକୁ ଯାଇ କିଛି ନ ପଚାରି ପାରି ମୂକଙ୍କ ଭଳି ଠିଆ ହୋଇପଡ଼ିଲା ହଲ୍‌ଟା ମଝିରେ ।

ମଧୁମିତା ଚନ୍ଦ୍ରକାନ୍ତର ଆଚରଣରେ ବିବ୍ରତ ନ ହୋଇ ସ୍ମିତ ହସି କହିଲା : ଅସମୟରେ ଆସି ବୋଧହୁଏ ଅସୁବିଧାରେ ପକାଇଲି । ଚନ୍ଦ୍ରକାନ୍ତ ହଲ୍‌ର ଚାରିଆଡ଼କୁ ଥରେ ଚାହିଁଲା । କେହି ତାଙ୍କ ଆଡ଼କୁ ଲକ୍ଷ୍ୟ କରିଛନ୍ତି କି ନାହିଁ । ତା'ପରେ ମଧୁମିତାକୁ କହିଲା : ଡାଡ଼ି ବୋଧେ ତଳେ ଅପେକ୍ଷା କରିଛନ୍ତି ?

ମଧୁମିତା ମୁହଁରୁ କୌଣସି ଉତ୍ତରର ପ୍ରତ୍ୟାଶା ନ କରି ଚନ୍ଦ୍ରକାନ୍ତ ଦ୍ରୁତପଦରେ ଲିଫ୍‌ଟ ଆଡ଼କୁ ଆଗେଇ ଗଲା ।

ଏଥର ମଧୁମିତା ଚନ୍ଦ୍ରକାନ୍ତର ଆଚରଣରେ ନ ହସି ରହି ପାରିଲା ନାହିଁ । ସେ ଯାଇ ଚନ୍ଦ୍ରକାନ୍ତର କାନ ପାଖରେ ବଡ଼ ପାଟି କରି କହିଲା : ନା ନା ନା, ଡାଡ଼ି ତଳେ ନାହାନ୍ତି । ତାଙ୍କୁ ମୁଁ ଘରେ ଛାଡ଼ି ଦେଇ ଆସିଛି ।

ଏଥର ଚନ୍ଦ୍ରକାନ୍ତ ଯେପରି ପ୍ରକୃତିସ୍ଥ ହେଲା । ଲିଫ୍‌ଟର ବୋତାମ ଗୋଟାଏ ହାତରେ ଟିପି ଧରି କହିଲା : ମୁଁ ଜାଣେ ଡାଡ଼ି ତମ ସହିତ ଆସି ନ ଥିବେ । ତଥାପି ମୋତେ ବାହାନା କରି ଏ ଯାଏ ଛୁଟି ଆସିବାକୁ ହେଲା । ହଲ୍ ଭିତରର କର୍ମଚାରୀଙ୍କ ଆଗରେ ଠିଆ ହୋଇ ତମ ସହିତ କ'ଣ କଥାବାର୍ତ୍ତା କରି ଥାଆନ୍ତି ?

ଓଃ, ମଧୁମିତା ହୋ ହୋ ହୋଇ ହସି ଉଠି ଥାଆନ୍ତା ହୁଏତ । କିନ୍ତୁ ଲିଫ୍‌ଟ ଆସି ପହଞ୍ଚି ଯିବାରୁ ସେ ନିଜକୁ ସମ୍ଭରଣ କରିନେଲା ।

ନୀରବରେ ଦୁଇଜଣ ତଳକୁ ଓହ୍ଲାଇ ଗଲେ ।

ଚନ୍ଦ୍ରକାନ୍ତ ତଳେ ଯାଇ ଗାଡ଼ିର ଦରଜା ଖୋଲୁ ଖୋଲୁ କହିଲା : ତମେ ଶୀଘ୍ର ଆସି ଭଲ କରିଛ । ଟେବୁଲ ଉପରେ ଏତେ କାମ ଜମିଥିଲା ଯେ, କାମ ଭିତରେ ହଜିଯାଇ ମୁଁ ତମ କଥା ଏକଦମ୍ ଭୁଲିଯାଇ ଥାଆନ୍ତି ।

ମଧୁମିତା ଚନ୍ଦ୍ରକାନ୍ତର ପାଖକୁ ଲାଗି ବସିଲା ।

ଚନ୍ଦ୍ରକାନ୍ତ ପଚାରିଲା : ଗ୍ରାଣ୍ଡ ନା ଗ୍ରେଟ୍ ଇଷ୍ଟର୍ଣ୍ଣ ? କେଉଁଠିକି ଯିବା ?

: ହଠାତ୍ ଗ୍ରାଣ୍ଡ, ଗ୍ରେଟ୍ ଇଷ୍ଟର୍ଣ୍ଣ କାହିଁକି ?

: ମୋତେ କିନ୍ତୁ ଭୀଷଣ ଭୋକ କଲାଣି । ଆଗ ପେଟ ନ ଭରିବା ଯାଏ ଆଉ କୁଆଡ଼େ ପାଦେ ବଢ଼ି ହେବ ନାହିଁ ।

ମଧୁମିତା କହିଲା : ଘରକୁ ଚାଲ ।

: ଘରକୁ ଯାଇ ଲାଭ ?

ମଧୁମିତା ସ୍ମିତ ହସି କହିଲା : ହୋଟେଲ ରେଷ୍ଟୁରାଣ୍ଟ ସେଇମାନଙ୍କୁ ପୋଷାଏ, ଯେଉଁମାନଙ୍କର ଘରଦ୍ୱାର ନାହିଁ, ଆତ୍ମୀୟସ୍ୱଜନ ନାହାନ୍ତି ।

ଚନ୍ଦ୍ରକାନ୍ତ ମଧୁମିତାର ସ୍ୱରରୁ ଯେପରି ଆଉ ଏକ ମଧୁସଙ୍ଗୀତର ଧ୍ୱନି ଶୁଣିଲା । ବିଶ୍ୱାସ କରିପାରିଲା ନାହିଁ ହୁଏତ । ବୁଲି ଚାହିଁଲା ମଧୁମିତା ମୁହଁକୁ ।

: କିନ୍ତୁ....

: ସେ କିନ୍ତୁ ଫିନ୍ତୁ ମୁଁ କିଛି ଶୁଣିବି ନାହିଁ । ମୁଁ ଯାହା ଆଦେଶ କରୁଛି, ସେଇଆ ତମକୁ ପାଳନ କରିବାକୁ ହେବ ।

ଚନ୍ଦ୍ରକାନ୍ତ କେଜାଣି କାହିଁକି ଆଉ କିଛି କହିବାକୁ ଭରସା କରିପାରିଲା ନାହିଁ । ନୀରବରେ ଗାଡ଼ି ଚଳେଇଲା ।

ମଧୁମିତା ଏଥର ଅତି ସହଜ ସ୍ୱରରେ କହିଲା : ମତେ ଅଫିସ୍‌ରେ ଦେଖି ତମେ ଖୁବ୍ ଡରି ଯାଇଥିଲ, ନା ?

: ଏଁ,... ମୁଁ ଡରି ଯାଇଥିଲି । କିଏ କହିଲା ତୁମକୁ ? ନା ତ, ମୁଁ ତୁମକୁ ଦେଖି ଡରି ଯାଆନ୍ତି କାହିଁକି ?

ମଧୁମିତା ହସିଲା । ସେ ଚନ୍ଦ୍ରକାନ୍ତ ପାଖକୁ ଆଉ ଟିକିଏ ଲାଗି କରି ବସି କହିଲା : ତମର ହୁଏତ ଗୁଡ଼ାଏ ବୟସ ହୋଇଛି ଚନ୍ଦ୍ରବାବୁ, କିନ୍ତୁ ତୁମେ ଆଜିର ଦୁନିଆରେ ଏବେ ବି ଶିଶୁ ହୋଇ ରହିଯାଇଛ । ମୋ ଆଖିକୁ ଫାଙ୍କି ଦେବା ଭଳି ଶକ୍ତି ତମର ହୋଇନାହିଁ ।

: ଆରେ ନା ମିତା । କଥା କ'ଣ କି, ତମେ କେବେ ଆମ ଅଫିସ୍‌କୁ ଯାଇ ନାହଁ ତ । ଅଫିସର କର୍ମଚାରୀମାନଙ୍କ ଦୃଷ୍ଟିଭଙ୍ଗୀ ଅତି ସଂକୀର୍ଣ୍ଣ । ସେମାନେ ହୁଏତ ତମ ମୋ ସମ୍ବନ୍ଧରେ ନାନା ପ୍ରକାର ମୁଖରୋଚକ କଥାମାନ ସୃଷ୍ଟି କରି ଆନନ୍ଦ ଅନୁଭବ କରିବେ । ସେଇଥିପାଇଁ ଅଫିସ୍ ଭିତରେ ତମ ସହିତ କିଛି କଥାବାର୍ତ୍ତା କରିବା ପାଇଁ ମୁଁ ଇଚ୍ଛା କଲି ନାହିଁ ।

: ମୁଁ ବୁଝିଛି ସବୁ, ମତେ ଆଉ ବୁଝେଇବାକୁ ହେବ ନାହିଁ କିଛି । ଆଚ୍ଛା କହିଲ, ନିରୋଳାରେ ତମେ ଆଜି ମୋ ସହିତ କେତେବେଳ ଯାଏ ରହିପାରିବ ?

ମଧୁମିତା ପ୍ରଶ୍ନରେ ଚନ୍ଦ୍ରକାନ୍ତ ଯେପରି ଆଉ ଏକ ନୂତନ ଦିଗର ସନ୍ଧାନ ପାଇଲା !

: ନିରୋଳାରେ, ତମ ସହିତ...ମାନେ ?

ଆଖିରେ କେବଳ ପ୍ରଶ୍ନବାଚୀ ?

ମଧୁମିତା ହସି ହସି କହିଲା : ସତରେ ତମକୁ ଦେଖିଲେ ଆଜି ମୋର ଦୟା ହେଉଛି । ତମେ ଯେ ଏକଦମ୍ ଶିଶୁ, ସେକଥା ମୋତେ ୟା ଆଗରୁ ଜଣା ନ ଥିଲା ।

କଥାର ପ୍ରସଙ୍ଗ ବଦଳାଇବାକୁ କି କ'ଣ କେଜାଣି, ସାମ୍ନା ପେଟ୍ରୋଲ ପମ୍ପ ପାଖରେ ଗାଡ଼ିଟା ଅଟକେଇ ଚନ୍ଦ୍ରକାନ୍ତ କହିଲା : କିଛି ପେଟ୍ରୋଲ ନେବାକୁ ହେବ । ବୋଧହୁଏ ଶେଷ ହୋଇ ଆସିଲାଣି ।

ମଧୁମିତା କିଛି ଉତ୍ତର ନ ଦେଇ ବସି ରହିଲା । ଚନ୍ଦ୍ରକାନ୍ତ ପାଞ୍ଚଲିଟର ପେଟ୍ରୋଲର ବିଲ୍ ମେଣ୍ଟେଇ ପୁଣି ଯେତେବେଳେ ଗାଡ଼ିରେ ଷ୍ଟାର୍ଟ ଦେଲା, ମଧୁମିତା କହିଲା : ଟିକିଏ ଶୀଘ୍ର ଚାଲ । ଘରେ ପହଞ୍ଚି ପୁଣି ବାହାରିବାକୁ ହେବଟି !

: କିନ୍ତୁ ଅଯଥାରେ ଘରକୁ ଯିବାକୁ ତମର କାହିଁକି ଯେ ଜିଦ୍ ମୁଁ କିଛି ବୁଝିପାରୁ ନାହିଁ । ଘରେ ତ ଖାଇବାକୁ କିଛି ନ ଥିବ । ତା'ଛଡ଼ା ତମ ଭଳି ଜଣେ ବିଶେଷ ଅତିଥିଙ୍କୁ ସଙ୍ଗରେ ନେଇ, କପେ କଫି, ଦି'ଖଣ୍ଡ ବିସ୍କୁଟ ଦେଇ ବିଦା କରିବାକୁ ଆଜି ମୋର ପ୍ରାଣ ଚାହୁଁନାହିଁ ।

ମଧୁମିତା ଚନ୍ଦ୍ରକାନ୍ତ ଆଡ଼େ କଣେଇ କଣେଇ ଚାହିଁ ଅଳ୍ପ ଅଳ୍ପ ହସୁଥିଲା ।

ଲୋକଟା ସତରେ ନିରୀହ !

ସେଦିନ ନିତାନ୍ତ ଅସମୟରେ ଘରେ ପହଞ୍ଚି ମଧ୍ୟ ଗଣେଶ ମୁହଁରେ କୌଣସି ଭାବାନ୍ତର ଲକ୍ଷ୍ୟ ନ କରି ଚନ୍ଦ୍ରକାନ୍ତ ବିସ୍ମିତ ହୋଇଥିଲା ।

ମଧୁମିତା ଚନ୍ଦ୍ରକାନ୍ତକୁ ଡ୍ରଇଂରୁମ୍‌ରେ ଛାଡ଼ି, ଗଣେଶକୁ ସଙ୍ଗରେ ନେଇ ଘର ଭିତରକୁ ପଶିଗଲା । ସେ ଯେପରି ଏ ଘରର ବହୁ ପରିଚିତା ।

ଚନ୍ଦ୍ରକାନ୍ତ ମଧୁମିତାର ଯିବାପଥକୁ ନୀରବରେ ଚାହିଁ ରହିଥିଲା । ସେ ଭୁଲି ଯାଇଥିଲା ନିଜକୁ । ଭୁଲି ଯାଇଥିଲା ମଧୁମିତାର ଆବିର୍ଭାବକୁ ।

କିନ୍ତୁ ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ଆଖି ଦୁଇଟା ?

ସଜାଗ ପ୍ରହରୀଙ୍କ ପରି ସଦାବେଳେ ଚନ୍ଦ୍ରକାନ୍ତର ଚାରିପାଖରେ ବୁଲୁଛି । ମଧୁମିତା ନାରୀଚରିତ୍ର । ଯେତେ ବଡ଼ ବ୍ୟତିକ୍ରମ ହେଲେ ବି ସେ ନାରୀ ।

କିନ୍ତୁ ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ମନରେ ତୀବ୍ର ନାରୀବିଦ୍ୱେଷ କାହିଁକି ?

ଯାହା ଆଜି ପର୍ଯ୍ୟନ୍ତ ଚିନ୍ତା କରିବାର ଅବକାଶ ପାଇ ନ ଥିଲା ଚନ୍ଦ୍ରକାନ୍ତ, ଆଜି କାହିଁକି ହଠାତ୍ ତା' ମନ ଭିତରେ ସେହି ପ୍ରଶ୍ନଟି ବାରମ୍ବାର ପ୍ରତିଧ୍ୱନିତ ହୋଇ ଉଠିଲା ! ଏ ସମ୍ବନ୍ଧରେ ଅବଶ୍ୟ କେବେ କୌଣସି ପ୍ରଶ୍ନ କରି ନ ଥିଲା ଚନ୍ଦ୍ରକାନ୍ତ । ଚିନ୍ତା କରି ନ ଥିଲା ବି ଦିନେ । କାରଣ ନାରୀ ସମ୍ବନ୍ଧରେ ତା'ର କୌଣସି କୌତୂହଳ ନ ଥିଲା କେବେ । ସକାଳୁ ବିଛଣାରୁ ଉଠି ପୁଣି ଅଧିକ ରାତିରେ ଶୋଇବା ଯାଏ ସେ କେବଳ କାମର କଥା ଚିନ୍ତା କରି ଶିଖିଥିଲା ।

କିନ୍ତୁ....ମଧୁମିତା ଲୁଗାପଟା ଅଣ୍ଟାରେ ଭିଡ଼ି ଦେଇ ହାତରେ ଗୋଟାଏ ଟ୍ରେ ଧରି ଆଗେଇ ଆସୁଛି ।

: ଆରେ, ଏସବୁ ଆସିଲା କେଉଁଠୁ ? ଗଣେଶକୁ ଏତେ ପ୍ରକାର ରାନ୍ଧି ଆସେ ?

ମଧୁମିତା କହିଲା : ତମର ଖାଇବା କଥା, କାହାକୁ କ'ଣ ଆସେ ନ ଆସେ ଏତେ ସବୁ ଚିନ୍ତା କରିବାକୁ ହେବ ନାହିଁ ।

ଗଣେଶ ହସି ହସି କହିଲା : ସବୁ ଦିଦି ରାନ୍ଧିଛନ୍ତି । ଗୋଟାଏ ବେଳୁ ଆସି ରୋଷେଇ ଘରେ ପଶିଥିଲେ ।

ଚନ୍ଦ୍ରକାନ୍ତ ଆଖିରେ ଏକ ଶୀତଳ ଚାହାଣି ଫୁଟି ଉଠିଲା । ସେ ନିଜେ ନ ହେଲେ ବି ତା' କଥା ଚିନ୍ତା କରିବା ପାଇଁ ଯେ ଜଣେ ଲୋକ ଅଛି, ଏ କଥା ଯେତେବେଳେ ସେ ଭାବିଲା, କୃତଜ୍ଞତାରେ ତା' ମନଟା ଭରିଗଲା ।

ସେଇ ମୁହୂର୍ତ୍ତରେ ମଧୁମିତା ତାକୁ କ'ଣ ଖାଇବାକୁ ଦେଲା, ସେ କେତେ ଖାଇଲା, ତା'ର କିଛି ମନେ ରହିଲା ନାହିଁ । ସେ କେବଳ ଅନୁଭବ କରୁଥିଲା, ଏକ ସ୍ନେହମୟୀ ନାରୀର ତା' ପ୍ରତି ଗଭୀର ଆନ୍ତରିକତାର କଥା ।

ଅଥଚ ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ନିର୍ଦ୍ଦେଶ ଅନୁସାରେ ଏହିପରି ଏକ ଅନ୍ତରଙ୍ଗଙ୍କୁ ସେ ବାଘ ଭାଲୁଠାରୁ ଆହୁରି ଭୟଙ୍କର ମନେ କରିବ । କିନ୍ତୁ ମଧୁମିତା ଯଦି ତା' ଭଉଣୀ ହୋଇଥାଆନ୍ତା, ତା' ହେଲେ ମୃତ୍ୟୁଞ୍ଜୟ ମଙ୍ଗରାଜ...

ମଧୁମିତା ଓ ଗଣେଶ ଏକା ସଙ୍ଗରେ ହୋ ହୋ ହୋଇ ହସିଉଠିବାରୁ ଚନ୍ଦ୍ରକାନ୍ତ ଏକ ଅସହାୟ ଚାହାଣିରେ ଦୁହିଁଙ୍କ ମୁହଁକୁ ଅନାଇଲା ।

ସେ ଲଜ୍ଜିତ ହେଲା, ଯେତେବେଳେ ସେ ବୁଝିପାରିଲା ଗ୍ଲାସଯାକ ପାଣି ସେ କଫି ପଟ୍‌ରେ ଭରି ଦେଇଛି ।

ମଧୁମିତା ହସି ହସି କହିଲା : କିଛି ପରବାଏ ନାହିଁ, ମୁଁ ସଙ୍ଗେ ସଙ୍ଗେ ଆଉ ଗୋଟାଏ ପଟ୍ କଫି କରି ଆଣୁଛି, କିନ୍ତୁ ତମର ଏତେ ଆନମନା ଭାବ ଭଲ ନୁହେଁ ତ !

: ଠିକ୍ କହିଛ ମିତା । ଚନ୍ଦ୍ରକାନ୍ତ ଉଠି ଠିଆ ହେଲା ।

ମଧୁମିତା ଟାଓ୍ୱେଲଟା ବଢ଼େଇ ଦେଇ ପଚାରିଲା : ଉଠିଲ ଯେ ?

ଚନ୍ଦ୍ରକାନ୍ତ ହାତ ପୋଛୁ ପୋଛୁ କହିଲା : ନା, ମୁଁ କ'ଣ କହୁଥିଲି କି, ତମେ ମୋ ପାଇଁ ଏତେ ପରିଶ୍ରମ କରି ନ ଥିଲେ·ଚଳିଥାଆନ୍ତା ।

ମଧୁମିତା କହିଲା : ଏଇଗୁଡ଼ା ବଡ଼ ବାଜେ କଥା । ମୋତେ ଏପରି କଥା ମୋଟେ ଭଲ ଲାଗେ ନାହିଁ ।

: କାହିଁକି, ମୋ ପାଇଁ ତମର ଏତେ କରିବାର କି ଯୁକ୍ତି ଅଛି ?

: ଯୁକ୍ତିତର୍କର ମୁଁ ଧାରେ ଧାରେ ନାହିଁ ଚନ୍ଦ୍ରବାବୁ । ମୋତେ଼ ଯାହା ଭଲ ଲାଗେ ମୁଁ କରେ । ଅବଶ୍ୟ ତମେ ଯଦି ମୋତେ ଅଧିକାର ନ ଦିଅ, ସେଇଟା ଅଲଗା କଥା ।

: ଅଧିକାର ମାନେ ? ଚନ୍ଦ୍ରକାନ୍ତର ମୁହଁରେ ବିସ୍ମୟ ଫୁଟି ଉଠିଲା ।

ମଧୁମିତା ହସୁ ହସୁ କହିଲା : ଅଧିକାର ମାନେ ଅଧିକାର । ତମେ ପରେ ସେ ସବୁ କଥା ବୁଝିପାରିବ । ଏଇନେ ଚାଲିବଟି, ଅନେକ କାମ ଅଛି ।

ଚନ୍ଦ୍ରକାନ୍ତ ମଧୁମିତାର ମୁହଁକୁ ଚାହିଁ ନୀରବ ହେଲା । ତା'ର ସମସ୍ତ ପ୍ରଶ୍ନର ଉତ୍ତର ଯେପରି ହଜି ଯାଇଥିଲା ସେଇଠି । ଆଉ ସେ ନିଜେ ଯେପରି ଏକ ଅବୋଧ ଶିଶୁ ।

ଚନ୍ଦ୍ରକାନ୍ତ ମଧୁମିତାର ହାତ ଧରି ବାହାରି ପଡ଼ିଲା ।

କୁଆଡ଼େ ଯିବେ ସେମାନେ ?

ମଧୁମିତା କହିଲା : ଗୋଟିଏ ଖୁବ୍ ନିରୋଳା ଜାଗାକୁ ଚାଲ । ଏ କୋଳାହଳ ଆଉ ମୋତେ ଭଲ ଲାଗୁନାହିଁ ।

କୋଳାହଳ ଜଗତରୁ ମୁକ୍ତ କରି ମଧୁମିତାକୁ ଯେ କେଉଁଠିକି ନେବ, ଚନ୍ଦ୍ରକାନ୍ତ ହୁଏତ ଚିନ୍ତା କରିପାରୁ ନ ଥିଲା । ଗାଡ଼ି ଚାଲିଥିଲା ରାସ୍ତା ଉପରେ । ମଧୁମିତା ବସିଥିଲା ଚନ୍ଦ୍ରକାନ୍ତ ପାଖରେ । ଭାଷା ହଜି ଯାଇଥିଲା ଦୁହିଁଙ୍କ ମୁହଁରୁ ।

: ଆଚ୍ଛା, ତମେ ଯେ ମୋ ସାଙ୍ଗରେ ଏପରି ଘୂରି ବୁଲୁଛ ଏବଂ ସୁଯୋଗ ପାଇଲେ ଭବିଷ୍ୟତରେ ଆହୁରି ବୁଲିବ, ଏ କଥା ତମ ଆତ୍ମୀୟସ୍ୱଜନମାନେ ନିଶ୍ଚୟ ଭଲ ଆଖିରେ ଦେଖିବେ ନାହିଁ । ମଧୁମିତା ଶାନ୍ତ କଣ୍ଠରେ ପଚାରିଲା ।

: ଆତ୍ମୀୟ-ସ୍ୱଜନ ? ଚନ୍ଦ୍ରକାନ୍ତ ଚମକି ଉଠି ଥରେ ଅବଜ୍ଞାର ହସ ହସି ନୀରବ ହୋଇଗଲା ।

ମଧୁମିତା ଅଳ୍ପ ନୀରବତା ପରେ ପୁଣି କହିଲା : ଡାଡି କହୁଥିଲେ ତମେ କୁଆଡ଼େ ତାଙ୍କୁ ଖୁବ୍ ଭଲ ଲାଗିଛ । ତମ ସ୍ୱଭାବ କୁଆଡ଼େ ତାଙ୍କ ସହିତ ମିଶି ଯାଉଛି ।

: ହେଇଥିବ । ମୋତେ ବି ଡାଡିଙ୍କୁ ଖୁବ୍ ଭଲ ଲାଗିଛି ।

ପୁଣି ନୀରବତା ।

କିଛି ସମୟ ପରେ ଚନ୍ଦ୍ରକାନ୍ତ କହିଲା : ପୃଥିବୀରେ ଏତେ ଲୋକ ଥାଉ ଥାଉ ତମେ କାହିଁକି ମୋ ପାଖକୁ ଛୁଟି ଆସିଛ କହିପାରିବ ?

ମଧୁମିତା ଚନ୍ଦ୍ରକାନ୍ତ ମୁହଁକୁ ଏକ ଶାନ୍ତ ଚାହାଣିରେ ଚାହିଁ ହସି ହସି ଗଡ଼ିଗଲା : ସତରେ, ତମକୁ ଦେଖିଲେ, ତମ କଥା ଶୁଣିଲେ ମୋର ଗୌତମ କଥା ମନେ ପଡ଼ିଯାଏ । ଦିନେ ଦିନେ ସେ ଆମ ଘରକୁ ଆସି ମୋତେ ନାନା ପ୍ରଶ୍ନରେ ବିବ୍ରତ କରିପକାଏ । ଯେପରି, 'ଏ ଫୁଲ କାହିଁକି ମୁଣ୍ଡରେ ଖୋସିଛ ଦିଦି ? କୁକୁରଟା କଳା ନ ହୋଇ ଧଳା କାହିଁକି ହେଲା ?' ଟିକିଏ ନୀରବ ରହି ପୁଣି କହିଲା, ଗୌତମର ବୟସ କେତେ ଜାଣ ? ଖୁବ୍ ବେଶି ହେଲେ ଛଅ ହେବ ।

ଚନ୍ଦ୍ରକାନ୍ତ କହିଲା : ମୋ ଆଉ ଗୌତମ ଭିତରେ ତମେ ଯଦି ତଫାତ୍ ଖୋଜି ନ ପାଉଛ, ତମର କ'ଣ କ୍ଷତି ହେଉଛି ? ଯଦି ହେଉଥାଏ, ତା' ହେଲେ ମୁଁ ଆଉ ତମ ଘରକୁ ଯିବି ନାହିଁ ।

ମଧୁମିତା କହିଲା : ଜୀବନରେ ସବୁବେଳେ ଲାଭକ୍ଷତିର ହିସାବ କରି ଚଳି ହୁଏ ନାହିଁ । ଜୀବନ ଏପରି ଏକ ସ୍ୱପ୍ନ, ଯାହାର କୌଣସି ଆକାର ନାହିଁ । ସେଥିପାଇଁ କେତେବେଳେ ଗୌତମ ପ୍ରଶ୍ନର ଉତ୍ତର ଦେଇ ନ ପାରି ଆନନ୍ଦ ମିଳେ ଆଉ କେତେବେଳେ ଚନ୍ଦ୍ରକାନ୍ତ ପଛରେ ଧାଇଁବାକୁ ବି ଇଚ୍ଛା ହୁଏ । ତେଣୁ ଜୀବନପଟରେ ଯେତେବେଳେ ଯେଉଁ ଚିତ୍ର ପ୍ରତିଫଳିତ ହୁଏ, ତା' ଭିତରୁ କିଏ ସ୍ଥାୟୀ କିଏ ଯେ ଅସ୍ଥାୟୀ କହି ହୁଏ ନାହିଁ ।

ଚନ୍ଦ୍ରକାନ୍ତ ଷ୍ଟିଅରିଂ ଉପରେ ହାତ ରଖି ମଧୁମିତା ଜୀବନର ଏକାନ୍ତ ଗୋପନ କଥା ଶୁଣୁଥିଲା । ମନେ ହେଉଥିଲା, ମଧୁମିତା ନିହାତି ସତ କଥା କହୁଛି । କାରଣ ଚନ୍ଦ୍ରକାନ୍ତର ଜୀବନପଟରେ ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ବ୍ୟତୀତ ଆଉ ଯେ କାହାର ଚିତ୍ର ୱାଟର କଲରରେ ହେଲେ ବି ଅଙ୍କନ କରାଯାଇପାରେ, ଚନ୍ଦ୍ରକାନ୍ତର ମଧୁମିତା ସହିତ ଦେଖା ହୋଇ ନ ଥିଲେ ହୁଏତ ଅନୁଭବ କରିପାରି ନଥାନ୍ତା ।

ମଣିଷ ମଣିଷର ବନ୍ଧୁ, ମଣିଷ ମଣିଷର ଆତ୍ମୀୟ । ଠିକ୍ ଏଇ ରୀତିରେ ତ ସଂସାର ଚକ ଗଡ଼ି ଆସୁଚି ଆବହମାନ କାଳରୁ । ତା' ନ ହୋଇଥିଲେ ଘର, ସଂସାର,

ବସତି, ଏଗୁଡ଼ାକର ଆବଶ୍ୟକତା ନ ଥିଲା ମୋଟେ । ମଣିଷ ଜଙ୍ଗଲରେ ରହୁଥାନ୍ତା । ଝରଣାର ପାଣି ଆଉ ଜଙ୍ଗଲର ଫଳ ଖାଇ ଆଖି ବୁଜି ଶୋଇ ରହୁଥାନ୍ତା ଆରାମରେ । ଦିନ ପରେ ଦିନ, ରାତି ପରେ ରାତି କଟି ଯାଆନ୍ତା; ତା'ହେଲେ ଏତେ ବଡ଼ ବଡ଼ ସହର, ବଜାର ଗଢ଼ି ଉଠି ଥାଆନ୍ତା କାହିଁକି ?

ମଧୁମିତା କହିଲା : ଏଇଠି ଗାଡ଼ି ଅଟକାଅ ।

ଚନ୍ଦ୍ରକାନ୍ତ ଦେଖିଲା, ସେମାନେ ଆସି ଗଙ୍ଗାକୂଳେ ପହଞ୍ଚି ଯାଇଛନ୍ତି । ବହୁଥର ଏଇବାଟେ ସେ ଗାଡ଼ି ଛୁଟାଇ ଯିବା ଆସିବା କରିଛି, କିନ୍ତୁ କେବେ ତ ତାକୁ ଏଠାକାର କୌଣସି ବସ୍ତୁ ଆକର୍ଷଣ କରିପାରି ନାହିଁ ! !

ଆଜି କିନ୍ତୁ ସେ ମଧୁମିତା ସହିତ ଗାଡ଼ିରୁ ଓହ୍ଲାଇ ପାଦେ ପାଦେ କରି ଆଗେଇଲା ବେଳେ ତା'ର ମନେ ହେଉଛି ଏ ଏକ ନୂତନ ରାଜ୍ୟ, ଏ ଏକ ଅପୂର୍ବ ଅନୁଭୂତି । ଗଙ୍ଗା ବକ୍ଷରେ ବଡ଼ ବଡ଼ ଜାହାଜ ଆଉ ସାନ ସାନ ନୌକା, ସେମାନଙ୍କର ସମସ୍ତଙ୍କର ସତନ୍ତ୍ର ଗତିବିଧି । ତରଙ୍ଗର ତାଳରେ ସାନ ସାନ ନୌକାମାନେ ଯେପରି ପଡ଼ି ଉଠି ଧାଇଁଛନ୍ତି, ବଡ଼ ବଡ଼ ଜାହାଜଗୁଡ଼ାକ ସେହିପରି ଛାତି ଦମ୍ଭ କରି ଠିଆ ହୋଇଛନ୍ତି ।

ମଧୁମିତା ଘାସ ଉପରେ ବସିପଡ଼ିଲା । ଚନ୍ଦ୍ରକାନ୍ତ ବି ବସିଲା ତା' ପାଖରେ ।

ଆଜି ଯେପରି ଆକାଶର ତାରାମାନଙ୍କର ଗିତିବିଧି ଏକ ସତନ୍ତ୍ର ରୂପ ଧାରଣ କରିଛି । ଆକାଶକୁ ଚାହିଁ ଚନ୍ଦ୍ରକାନ୍ତ ଦେଖିଲା, କେହି ଯେମିତି ଗୋଟିଏ ଜାଗାରେ ସ୍ଥିର ହୋଇ ବସିପାରୁ ନାହାନ୍ତି । ସମସ୍ତଙ୍କର ସ୍ଥିତି ଅଛି, ତା' ସଙ୍ଗେସଙ୍ଗେ ଗତି ବି ଅଛି ।

କିନ୍ତୁ ଏ ପୃଥିବୀରେ ଏକା କ'ଣ ଚନ୍ଦ୍ରକାନ୍ତ ବେଗତିକ ହୋଇ ରହିଯିବ ? ତା'ର ସ୍ଥିତ ସମ୍ବନ୍ଧରେ ଯେପରି ସେ ଅଚେତନ, ଗତି ସମ୍ବନ୍ଧରେ ବି ସେହିପରି...

: ଦେଖୁଚ ? ମଧୁମିତା ଚନ୍ଦ୍ରକାନ୍ତକୁ ହଲେଇ ଦେଇ ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ଆଙ୍ଗୁଳି ଦେଖାଇଲା ।

: କ'ଣ ?

: ଏଇ ଯେଉଁ ସ୍ରୋତ ବହି ଚାଲିଛି ।

: ଏଥିରେ ବିଶେଷତ୍ୱ କ'ଣ ଅଛି ?

ମଧୁମିତା ଅଳ୍ପ ହସି କହିଲା : ଅଛି ଚନ୍ଦ୍ରବାବୁ, ଏହା ପୁଣି ବିପରୀତମୁଖୀ ହେବ ।

: ସେଇଆ ତ ନିୟମ । ସୃଷ୍ଟି ଆରମ୍ଭଠାରୁ ଆଜିଯାଏ ଚଳି ଆସୁଛି । ଚନ୍ଦ୍ରକାନ୍ତ ଗମ୍ଭୀର କଣ୍ଠରେ କହିଲା ।

ମଧୁମିତା ହସି ହସି ଚନ୍ଦ୍ରକାନ୍ତ ପିଠିରେ ଆଉଜି ପଡ଼ି ଆକାଶକୁ ଚାହିଁ କହିଲା : ସେତିକି ମୁଁ ତମ ମୁହଁରୁ ଶୁଣିବାକୁ ଚାହେ ଚନ୍ଦ୍ରବାବୁ । ସୃଷ୍ଟିର ଯେ ଗୋଟାଏ ଧର୍ମ ଅଛି, ଆଉ ସେଇ ଧର୍ମକୁ ପାଳନ କରିବା ପାଇଁ ଆମେ ଜନ୍ମ ହେଇଛେ, ଏତିକି ଯଦି ତମେ ଅନୁଭବ କରିପାର, ତା' ହେଲେ ସବୁ ସମସ୍ୟାର ସମାଧାନ ହୋଇଯିବ ।

ଯଦିଓ ମଧୁମିତାର ଏହି ସୃଷ୍ଟିତତ୍ତ୍ୱ ଚନ୍ଦ୍ରକାନ୍ତକୁ ରହସ୍ୟମୟ ମନେ ହେଲା, କିନ୍ତୁ ମଧୁମିତାର ସ୍ପର୍ଶ ଚନ୍ଦ୍ରକାନ୍ତ ଦେହରେ କିପରି ଏକ ଅନୁରଣିତ ଅନୁଭୂତି ସୃଷ୍ଟି କରିଦେଲା ।

ଚନ୍ଦ୍ରକାନ୍ତ ବୁଲି ପଡ଼ିଲା ମଧୁମିତା ଆଡ଼କୁ । ଚାହାଣିରେ ଫୁଟି ଉଠିଲା କିପରି ଏକ ଆକୁଳ କାକୁତି । ତା'ର ଯେପରି ବିଶେଷ ଗୋଟାଏ କିଛି ପରିବର୍ତ୍ତନ ହୋଇଛି । ଚନ୍ଦ୍ରକାନ୍ତ ବୁଝିପାରିଲା ନାହିଁ କିଛି ।

ମଧୁମିତା କହିଲା : ଏପରି ଏକ ମଧୁର ଲଗ୍ନରେ, ଏତେ ନିରୋଳାରେ ତମେ ମୋତେ ଏତେ ନିକଟରେ ପାଇ ତମର କିଛି ମନେହୁଏ ନାହିଁ ?

ଚନ୍ଦ୍ରକାନ୍ତ ମଧୁମିତା ମୁହଁକୁ ଅନେକ ସମୟ ନୀରବରେ ଅନେଇ ରହିଲା । ନା, ଏ'ତ ସେଦିନର ବା ଘଣ୍ଟାକ ଆଗର ସେହି ମିତା ନୁହେଁ । ଆଖି, ମୁହଁ, ଦେହ ସବୁଠି ଏକ ବିଶେଷ ପରିବର୍ତ୍ତନର ଚିହ୍ନ । ସ୍ୱରଟା ବି କିପରି ଓଦା ଓଦା ।

ଚନ୍ଦ୍ରକାନ୍ତ ମଧୁମିତା ପ୍ରଶ୍ନର ଉତ୍ତର ଦେଇ କହିଲା : ହଁ ମନେହୁଏ ମିତା, କିନ୍ତୁ ଏହି ଅସୁସ୍ଥତା ଭିତରେ ତମେ ଆସି ନ ଥିଲେ ମଧ ଚଳିଥାଆନ୍ତା । ଘରେ ବସି ବସି ତ ଗପ କରି ପାରି ଥାଆନ୍ତେ ।

ମଧୁମିତା ଚନ୍ଦ୍ରକାନ୍ତ ମୁହଁକୁ ସ୍ଥିର ହୋଇ କିଛି ସମୟ ଅନାଇ ରହିଲା । ଚନ୍ଦ୍ରକାନ୍ତକୁ ସେ ଗୌତମ ସଙ୍ଗରେ ତୁଳନା କରିଥିଲା କିଛି ସମୟ ପୂର୍ବରୁ । କିନ୍ତୁ ବର୍ତ୍ତମାନ ତା'ର ମନେ ହେଉଛି, ଚନ୍ଦ୍ରକାନ୍ତ ଗୌତମଠାରୁ ବି ଅଧମ ।

ଏପରି ଲୋକ କ'ଣ ଆଜିର ଏହି ପୃଥିବୀରେ ଅଛନ୍ତି ?

ମଧୁମିତା ଚନ୍ଦ୍ରକାନ୍ତକୁ ନିଜ ଆଖି ଆଗରେ ଦେଖି ନ ଥିଲେ ବୋଧହୁଏ ବିଶ୍ୱାସ କରିପାରି ନ ଥାନ୍ତା !

ଚନ୍ଦ୍ରକାନ୍ତ ବୋଧହୁଏ ମଧୁମିତାର ଅପଲକ ଚାହାଣି ଆଡ଼େ କିଛି ସମୟ ଅନାଇ ରହି, ଧୀରେ ଧୀରେ କହିଲା : ଫେରିଯିବା ଚାଲ । ରାତି ହେଲାଣି । ଗଙ୍ଗାକୂଳେ ଆହୁରି ଥଣ୍ଡା ଲାଗିପାରେ ।

ମଧୁମିତାର ମନେ ହେଉଥିଲା ସେ ଚିତ୍କାର କରି କହିବ, ଚନ୍ଦ୍ରକାନ୍ତ ତୁମେ ଏଇ ମୁହୂର୍ତ୍ତରେ ଗଙ୍ଗାରେ ଝାସ ଦିଅ । ତମ ଭଳି ଅନାଡ଼ି ଲୋକ ସହିତ ଛକାପଞ୍ଝାର ଖେଳ

ଖେଳିବାକୁ ସୁଯୋଗ ଆସିବ କୁଆଡୁ ? କିନ୍ତୁ ବହୁ କଷ୍ଟରେ ନିଜକୁ ସେ ସମ୍ଭରଣ କରିନେଲା ।

ଚନ୍ଦ୍ରକାନ୍ତ ଉଠି ଠିଆ ହୋଇଥିଲା । ମଧୁମିତାର ହାତ ଧରି ତଳୁ ଉଠାଉ ଉଠାଉ କହିଲା : ଡାଡ଼ି ହୁଏତ ତେଣେ ବିରକ୍ତ ହେଉଥିବେ । ଚାଲ ଫେରିଯିବା ।

ମଧୁମିତା କୌଣସି ଉତ୍ତର ଦେଲା ନାହିଁ ।

ଚନ୍ଦ୍ରକାନ୍ତ ପଛେ ପଛେ ମୋହାବିଷ୍ଟଙ୍କ ପରି ଟଳି ଟଳି ଯାଇ ଗାଡ଼ିରେ ଉଠିଲା ।

ସେଦିନ ରାତିରେ ମଧୁମିତା ଶୋଇ ପାରିଲା ନାହିଁ । ଯେତେ ଚେଷ୍ଟା କଲେ ବି ଆଖିକୁ ତା'ର ନିଦ ଆସିଲା ନାହିଁ ।

ଚନ୍ଦ୍ରକାନ୍ତ ବୁଝିଲା ନାହିଁ ମଧୁମିତାର ମନ, ଜାଣିଲା ନାହିଁ ମଧୁମିତାର କାମନା । ସେ ଭାବିଲା, ମଧୁମିତାର ଦେହ ଖରାପ ହୋଇଛି, ଅସୁସ୍ଥ ମନ ନେଇ ସେ ଆସିଛି ଚନ୍ଦ୍ରକାନ୍ତ ସହିତ । ପୁରୁଷ ହୋଇ, ତରୁଣ ହୋଇ, ଚନ୍ଦ୍ରକାନ୍ତ ଏଡ଼େ ନିର୍ବୋଧ ? ମନଟା କରୁଣାରେ ଭରିଗଲା ମଧୁମିତାର ।

ଅଥଚ ସେଇ ଚନ୍ଦ୍ରକାନ୍ତକୁ.....

ନା ନା ନା । ବିଛଣା ଉପରେ ଛଟପଟ ହେଉଥିଲା ମଧୁମିତା । ଯେପରି ସମଗ୍ର ଶରୀରଟା ତା'ର ଭରି ଯାଇଥିଲା ଏକ ଜ୍ୱାଳାରେ । ଦେହସାରା ଝାଳ ଜମି ଯାଇଥିଲା । ତଣ୍ଟିଟା ଶୁଖିଗଲା ପରି ମନେ ହେଉଥିଲା ।

ଉଠି ବସିଲା ମଧୁମିତା ।

ଲାଇଟ୍ ଜଳେଇଲା ଘରର ।

କିନ୍ତୁ ଗ୍ଲାସଟା ଯେ ଖାଲି ! କେତେବେଳେ ଏହା ଭିତରେ ପିଇ ଦେଇଛି ପାଣିତକ । କେତେଟା ବାଜୁଛି ?

ନା, ଏତେ ରାତିରେ ସେ ଆଉ ନାଜନିନ୍‌କୁ ବିରକ୍ତ କରିବ ନାହିଁ । ହୁଏତ ସେ ତା'ର ସ୍ୱାମୀ କଥା ଭାବି ଭାବି, ସ୍ୱାମୀର ସ୍ପର୍ଶ ଅନୁଭୂତିରେ ବିହ୍ୱଳ ହୋଇ ଅଳ୍ପ ସମୟ ପୂର୍ବରୁ ଆଖି ବୁଜିଥିବ ।

ସତେ କେତେ ସୁଖୀ ନାଜନିନ୍ । କେତେ ସଂକ୍ଷିପ୍ତ ତା'ର ଜୀବନ । କେତେ ଅଳ୍ପରେ ସେ ସନ୍ତୁଷ୍ଟ । ସ୍ୱାମୀର ପଦୋନ୍ନତି ହେଲେ ସେ ନାଜନିନ୍‌କୁ ପାଖକୁ ନେଇଯିବ । ସେମାନେ ଆନନ୍ଦରେ ଜୀବନ କଟାଇବେ । ଛୋଟ ସଂସାର, ଦୁଇଟି ଜୀବନ । ସୁଖର, ଆନନ୍ଦର । ଆଃ...ନାଜ୍‌ନିନ୍ ପରି ସଂକ୍ଷିପ୍ତ ଜୀବନ ଯଦି ହୋଇଥାଆନ୍ତା ମଧୁମିତାର...

ଆଉ ବସିପାରିଲା ନାହିଁ ମଧୁମିତା ।

ସମସ୍ତ ଦେହଟା ତା'ର ଝାଳରେ ବୁଡ଼ିଗଲାଣି । ରାତ୍ରିର ସଂକ୍ଷିପ୍ତ ବାସତକ ବି ଆଉ ସେ ସହିପାରୁ ନାହିଁ । ଆଜି ତା'ର କ'ଣ ହେଲା ?

ଗୀର୍ଜା ଘଡ଼ିରେ ଦୁଇଟା ବାଜିଲା ।

ଝରକା ଫାଙ୍କରେ ଚାହିଁଲା ରାତ୍ରିର ନଗରୀକୁ । ମାୟାବିନୀ କଲିକତାର ଆଖିକୁ ଯେପରି ନିଦ ନାହିଁ । ଏତେ ରାତିରେ ବି ଗାଡ଼ିଘୋଡ଼ାର ଶବ୍ଦ ରହିରହି ଭାସି ଆସୁଛି ରାଜପଥରୁ ।

କିଏ, କେଉଁମାନେ ଏଇ ରାତ୍ରିର ଅଭିଯାତ୍ରୀ ?

ମଧୁମିତା ! ମଧୁମିତା ! ଆଜି ସତରେ ହେଲା କ'ଣ ମଧୁମିତାର !

ରାତ୍ରିର ଗମ୍ଭୀରତା ଭେଦ କରି ଯେତେବେଳେ ଗୋଟାଏ ଅଧେ ଗାଡ଼ି ଧାଇଁ ଯିବାର ଶବ୍ଦ ହେଉଥିଲା, ମଧୁମିତାର ମନେ ହେଉଥିଲା ଗାଡ଼ିଟା ଯେପରି ତା'ର ପଞ୍ଜରା ଉପର ଦେଇ ମାଡ଼ି ଯାଉଛି ।

କିନ୍ତୁ ସେଦିନ, ଯେଉଁଦିନ ମଧୁମିତା ନିଜେ ଅଭିସାରିକା ସାଜିଥିଲା !

ଆଃ, ରଙ୍ଗୀନ ସେ ଦିନଗୁଡ଼ାକ । ମଧୁମିତା ମନରେ କୌଣସି ଗ୍ଳାନି ନ ଥିଲା, ଅନୁଶୋଚନା ନ ଥିଲା ।

ଅଶୋକ ସହିତ ତା'ର ପ୍ରଥମ ପରିଚୟ ହୋଇଥିଲା ରେସ-କୋର୍ସରେ । ସେ ଏକ ପ୍ରବଳ ଉତ୍ତେଜନା ପୂର୍ଣ୍ଣ ମୁହୂର୍ତ୍ତରେ ।

ଡାଡିଙ୍କ ସହିତ ମଧୁମିତା ସେଇଦିନ ପ୍ରଥମ ଯାଇଥିଲା ରେସ୍-କୋର୍ସକୁ ।

ଘୋଡ଼ା ଦଉଡ଼ିଲା ବେଳେ ଲୋକମାନେ ଯେ ଏପରି ଉତ୍ତେଜିତ ହୋଇ ପଡ଼ନ୍ତି, ସେ କଥା ଜାଣି ନ ଥିଲା ମଧୁମିତା । ସେହି ଉତ୍ତେଜନା ଆଉ ଚିତ୍କାର ଭିତରେ କିଏ ଜଣେ ଉପର ଗ୍ୟାଲେରୀରୁ ମଧୁମିତା ପିଠିରେ ଦୁଇବିଧା କଷି ଦେଇଥିଲା ।

ମଧୁମିତା ଆଖିରେ ଆତଙ୍କ ଫୁଟାଇ ବୁଲି ଚାହିଁ ଯାହାକୁ ଦେଖୁଥିଲା, ସେ ଜଣେ ତରୁଣ । ଆଖିରେ ତା'ର ଗୋଟିଏ କଳା ଚଷମା । ସେ ଉତ୍ତେଜିତ । ଘୋଡ଼ା ପାଖେଇ ଆସୁଛି । ହୁଏତ ଆଉ ମୁହୂର୍ତ୍ତକରେ ବାଜି ମାତ କରିବ । ହିତାହିତ ଜ୍ଞାନ ସେ ହରାଇ ବସିଛି । ମଧୁମିତା ଆଡ଼କୁ ଚାହିଁବାର ଅବକାଶ ତା'ର ଆସିଲା କେଉଁଠୁ ?

କିନ୍ତୁ.... ମଧୁମିତା ଚିତ୍କାର କରି ଉଠିଲା ।

ତରୁଣଟି ଏଥର ଖୁବ୍ ଜୋର୍‌ରେ ମଧୁମିତା ପିଠିରେ ବିଧାବୃଷ୍ଟି କରି ଚାଲିଥିଲା । ଅସହାୟ ଆଖିରେ ଡାଡ଼ିଙ୍କ ଆଡ଼େ ଚାହିଁଲା ମଧୁମିତା । ଡାଡ଼ି ବି ଗ୍ୟାଲେରି ଉପରେ ଠିଆ ହୋଇ ଚିତ୍କାର କରି ଦୁଇ ହାତରେ ତାଳି ବଜାଇ ଚାଲିଛନ୍ତି ।

ଶେଷରେ ମଧୁମିତା ଠିଆହୋଇ ପଡ଼ିଲା ।

ଏଥର ଉପର ଗ୍ୟାଲେରିର ସେହି ତରୁଣଟି ମଧୁମିତାକୁ ଦୁଇ ହାତରେ ଉଠାଇ ନେଇ ନାଚିବାକୁ ଆରମ୍ଭ କରିଦେଲା ।

ସେ ଜିତିଛି । ଘୋଡ଼ା ତା'ର ଉଇନ୍ କରିଛି ।

ଡାଡ଼ି ବି ନାଚୁଛନ୍ତି ।

ମଧୁମିତା ଏଥର ଜୋର୍‌ରେ ଚିତ୍କାର କରି ଉଠିଲା ।

ହୁଏତ ହୋସ୍ ହେଲା ତରୁଣଟିର । ସେ ମଧୁମିତାକୁ ଛାଡ଼ି ଦେଇ ଯେତେବେଳେ ଆଖିରୁ ଗ୍ଲାସଟା କାଢ଼ି ଚାହିଁଲା, ଦେଖିଲା ମଧୁମିତା ଆଖିରେ ଲୁହ ।

ଅତ୍ୟନ୍ତ ବିନୟ ସହକାରେ ହାତ ଯୋଡ଼ି କ୍ଷମା ଚାହିଁଲା ମଧୁମିତାଠାରୁ ।

କିନ୍ତୁ ଡାଡ଼ି ଗଲେ କୁଆଡ଼େ ?

ମଧୁମିତାର କାତର ଚାହାଣି ଆଡ଼େ ଚାହିଁ ତରୁଣଟି ବୋଧହୁଏ ବୁଝି ପାରିଥିଲା, ତା'ର ମନର କଥା । ସେ ପଚାରିଲା : କାହା ସାଙ୍ଗରେ ଆସିଛନ୍ତି ଆପଣ ?

: ଡାଡ଼ି....

: ଓଃ.... ଯୁବକଟି ହସି ଉଠିଲା ଜୋର୍‌ରେ । କହିଲା, ସେ ବୋଧହୁଏ କ୍ୟାସ କାଉଣ୍ଟରକୁ ଟଙ୍କା ଆଣିବା ପାଇଁ ଯାଇଛନ୍ତି । ମୁଁ ଯାଉଛି । ଆପଣ ମୋ ସହିତ ଆସନ୍ତୁ । ମୁଁ ଆପଣଙ୍କୁ ଡାଡ଼ିଙ୍କ ପାଖରେ ପହଞ୍ଚାଇ ଦେବି ।

ମଧୁମିତାର ମନଟା ସେଦିନ ବିକଳ ହୋଇ ପଡ଼ିଥିଲା । ଲୋକଙ୍କ ଆଚରଣରୁ ତା'ର ମନେ ହୋଇଥିଲା, ଜାଗାଟା ଯେପରି ଗୋଟାଏ ପାଗଳଖାନା । କିଏ ହସୁଛି, କିଏ ନାଚୁଛି; କିଏ ତାଳି ମାରୁଛି, ପୁଣି କିଏ କାନ୍ଦୁଛି ।

ମଧୁମିତା ବିବ୍ରତ ହୋଇ ପଡ଼ିଥିଲା । ଡାଡ଼ିଙ୍କୁ ସାମନାରେ ନ ଦେଖି ଆହୁରି ଭାଙ୍ଗି ପଡ଼ିଥିଲା ସେ । ହୁଏତ ତରୁଣଟି ମୁହଁରୁ ସେ ଯଥେଷ୍ଟ ପ୍ରତିଶ୍ରୁତି ପାଉ ନ ଥିଲା ଯିବା ପାଇଁ । ଯିବ ନା ନାହିଁ ?

ଶେଷରେ ସେ ପାଦ ବଢ଼ାଇଲା ତରୁଣଟିର ପଛେ ପଛେ ।

କ୍ୟାସ କାଉଣ୍ଟର ପାଖରେ ଶଶୀଶେଖର ଛିଡ଼ା ହୋଇ ବିଡ଼ାଏ ନୋଟୁ ଗଣୁଥିଲେ । ମଧୁମିତା ସାମନାରେ ତାଙ୍କୁ ଦେଖି ଚିତ୍କାର କରି ଉଠିଥିଲା: ଡାଡ଼ି !

ଶଶୀଶେଖର ସେଦିନ ନୋଟ ବଡ଼ି ଉପରୁ ଆଖି ଉଠାଇ ମଧୁମିତା ଆଡ଼େ ଚାହିଁ ନ ଥିଲେ ।

ତରୁଣଟି ଲକ୍ଷ୍ୟ କରିଥିଲା ଶଶୀଶେଖରଙ୍କ ଆଚରଣ ।

ଧୀରେ ଧୀରେ ମଧୁମିତାକୁ କହିଥିଲା : ସବୁ ଡାଡ଼ିମାନେ ସମାନ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେମାନଙ୍କର ବାତ୍ସଲ୍ୟ ପ୍ରେମଟା କାଂଚନପ୍ରେମରେ ପରିଣତ ହୋଇଯାଏ ।

ମଧୁମିତା ଆଖି ଟେକି ଚାହିଁଥିଲା ତରୁଣଟି ଆଡ଼େ ।

ଚାରି ଆଖିର ମିଳନ ହୋଇଥିଲା । ତରୁଣଟି ଆଉ ଥରେ କ୍ଷମା ମାଗିଥିଲା ମଧୁମିତାଠାରୁ । ସେତେବେଳକୁ ଶଶୀଶେଖର ଆଗେଇ ଆସିଥିଲେ । ମଧୁମିତାକୁ ସେ ହୁଏତ ଆଶା କରି ନ ଥିଲେ ସେଠାରେ ।

ମଧୁମିତା ଆଖିରେ ଲୁହ ଦେଖି ଶଶୀଶେଖର ବିସ୍ମୟ ପ୍ରକାଶ କରିଥିଲେ ।

ତରୁଣଟି କିନ୍ତୁ ଅପେକ୍ଷା କରିଥିଲା ।

ସେ କହିଥିଲା, ମଧୁମିତା ଆଖିର ଲୁହ ପାଇଁ ସେ ଦାୟୀ ।

ଶଶୀଶେଖର ତରୁଣଟି ମୁହଁରୁ ସବୁ କଥାଶୁଣି ହସି ଉଠିଥିଲେ ହୋ ହୋ ହୋଇ । ତା'ପରେ କହିଥିଲେ : ଜାଣ ୟଙ୍ଗମ୍ୟାନ୍, ଏହିପରି ମୋ ଜୀବନରେ ବି ଗୋଟାଏ ଘଟଣା ଘଟିଥିଲା, ସେ ଆହୁରି ଇଣ୍ଟରେଷ୍ଟିଙ୍ଗ । ଆମ ରେଷ୍ଟୁରାଣ୍ଟରେ ବସି ମୁଁ ତୁମକୁ ମୋ କାହାଣୀ ଶୁଣାଇବି ।

ଶଶୀଶେଖର ମଧୁମିତାର ହାତ ଧରି ରେଷ୍ଟୁରାଣ୍ଟ ଆଡ଼କୁ ଆଗେଇଲା ବେଳେ ତରୁଣଟି କହିଲା :ଆପଣ ଚାଲନ୍ତୁ । ମୁଁ ପେମେଣ୍ଟ ନେଇ ସଙ୍ଗେ ସଙ୍ଗେ ଆସୁଚି ।

ଶଶୀଶେଖର ପେମେଣ୍ଟ କଥା ଶୁଣି ବୁଲି ଚାହିଁଲା ବେଳକୁ ତରୁଣଟି ଅଦୃଶ୍ୟ ହୋଇ ଯାଇଥିଲା ।

କିନ୍ତୁ ରେଷ୍ଟୁରାଣ୍ଟରେ ଯାଇ ପହଞ୍ଚିଲା ଠିକ୍ ସମୟରେ । ଶଶୀଶେଖର ଖଣ୍ଡେ ଖାଲି ଚେୟାର ଆଡ଼େ ଆଙ୍ଗୁଳି ଦେଖାଇ କହିଥିଲେ : ବସ ୟଙ୍ଗମ୍ୟାନ୍ । ତୁମେ କ'ଣ 'ନନ୍ଦନ' ଉପରେ ବାଜି ଧରିଥିଲ ?

ତରୁଣଟି ବିନୟ ଭଙ୍ଗୀରେ କହିଥିଲା : ଖାଲି ବାଜି ଧରି ନ ଥିଲି, 'ନନ୍ଦନ'ଟା ଆମ ଘୋଡ଼ା ।

ଶଶୀଶେଖରଙ୍କ ଆଖି ଦୁଇଟା ବିସ୍ତାରିତ ହୋଇ ଉଠିଥିଲା । ସେ ସଙ୍ଗେସଙ୍ଗେ ପ୍ରଶ୍ନ କରିଥିଲେ : ଆପଣଙ୍କ ନାଁ କ'ଣ ଅଜୟ ମେହେଟା ?

ତରୁଣଟି ଅଳ୍ପ ହସି ସେହିପରି ବିନୟ ସହକାରେ କହିଥିଲା : ଅଜୟ ମେହେଟା ମୋ ବାପାଙ୍କ ନାମ । ମୋ ନାଁ ଅଶୋକ ମେହେଟା ।

ଶଶୀଶେଖର ଯେପରି ଆନନ୍ଦରେ ଗଦଗଦ ହୋଇ ଅଶୋକ ସହିତ ହାତ

ମିଳେଇ କହିଥିଲେ : ତମ ସହିତ ମୋର ପରିଚୟ ହୋଇ ନିଜକୁ ମୁଁ ଆଜି ଧନ୍ୟ ମନେ କରୁଛି । ତୁମେ ଯେ ପିତାଙ୍କର ଉପଯୁକ୍ତ ସନ୍ତାନ ହୋଇପାରିବ, ଆଜି ତମର ପ୍ରଥମ ପରିଚୟରେ ମୁଁ ତାହା ଜାଣିପାରିଛି ।

ଶଶୀଶେଖର ଆହୁରି କ'ଣ କହିବାକୁ ଯାଉଥିଲେ । କିନ୍ତୁ ଅଶୋକ ବାଧା ଦେଇ କହିଲା : ଆପଣ ବରଂ ସେହି ଇଣ୍ଟରେଷ୍ଟିଂ କାହାଣୀଟି କୁହନ୍ତୁ ।

ବୟ ଅର୍ଡ଼ର ନେଇ ଚାଲିଗଲା ।

ଶଶୀଶେଖର ଅଶୋକ ମୁହଁକୁ ଅପଲକ ନୟନରେ କିଛି ସମୟ ଅନାଇ ରହି କହିଲେ : ଘଟଣାଟା ଘଟିଥିଲା ମାଡ୍ରାସରେ । ମୁଁ ସେତେବେଳକୁ ତିନି ବାଜି ହାରି ସାରିଥାଏ । ଚତୁର୍ଥ ବାଜି ଯେଉଁ ଘୋଡ଼ା ଉପରେ ଲଗେଇଥାଏ, ତା' ନାଁ ଚନ୍ଦ୍ରଭାନୁ । ସେ ବାଜିରେ ସାତଟା ନା ଆଠଟା ଘୋଡ଼ା ଦଉଡୁଥାନ୍ତି ।

ରେସ୍ ଆରମ୍ଭ ହୋଇଗଲା । ଚନ୍ଦ୍ରଭାନୁ ସମସ୍ତଙ୍କ ଆଗେ ଆଗେ ଥାଏ । ହଠାତ୍ ମୁଁ ଦେଖିଲି, ସେଇ ବାଜିର ଚାରି ନମ୍ବର ଘୋଡ଼ାଟା ଚନ୍ଦ୍ରଭାନୁକୁ ଟପି ଯିବା ପାଇଁ ଅହରହ ଚେଷ୍ଟା କରୁଛି । ସେତେବେଳେ ମୁଁ ଅସ୍ଥିର ହୋଇ ଉଠିଥିଲି । ସେତିକିବେଳେ ମୋ ହାତରେ କ'ଣ ଗୋଟାଏ ପଡ଼ିଲା କେଜାଣି, ମୋର ଯେପରି ମନେ ହେଲା, ସେଇଟା ଚାରିନମ୍ବର ଘୋଡ଼ାର ଲାଙ୍ଗୁଳ । ମୁଁ ପ୍ରାଣପଣେ ସେଇଟାକୁ ଟାଣିବାକୁ ଲାଗିଲି, ଯେପରି ଚାରିନମ୍ବର ଘୋଡ଼ାଟା ଚନ୍ଦ୍ରଭାନୁକୁ ଟପି ନ ଯାଇପାରେ ।

ରେସ୍‌କୋର୍ସର କୋଳାହଳ ଆଉ ଚିତ୍କାର ଭିତରେ ଚନ୍ଦ୍ରଭାନୁ ଯେତେବେଳେ ଉଇନ୍ କରିବ କରିବ ହେଉଛି, ମୁଁ ସେତେବେଳେ ଚାରିନମ୍ବର ଘୋଡ଼ାର ଲାଙ୍ଗୁଳ ଆହୁରି ଜୋର୍‌ରେ ଟାଣିବାକୁ ଯାଇ ଏପରି ଏକ ବ୍ରହ୍ମଚାପୁଡ଼ା ଖାଇଲି ଯେ ସଙ୍ଗେ ସଙ୍ଗେ ସେଠାରେ ରକ୍ତବାନ୍ତି କରିପକାଇଥିଲି ।

ଶଶୀଶେଖର କଥାଟା ସେଇଠି ଛିଣ୍ଡେଇ ଦେଇ ଅଶୋକ ଓ ମଧୁମିତା ଆଡ଼େ ଗମ୍ଭୀର ଭାବେ ଚାହିଁ ତା'ପରେ ସ୍ମିତ ହସି କହିଥିଲେ : ଚାପୁଡ଼ା କିଏ ମାରିଥିଲା ଜାଣ ? ଯେଉଁ ଭଦ୍ରମହିଳାଙ୍କ ବେଣୀକୁ ମୁଁ ଚାରିନମ୍ବର ଘୋଡ଼ାର ଲାଙ୍ଗୁଳ ରୂପେ ବ୍ୟବହାର କରିଥିଲି, ତାଙ୍କରି ସ୍ୱାମୀ !

ସେଦିନ ଅଶୋକ ଆଉ ମଧୁମିତା ଏକା ସାଙ୍ଗରେ ହୋ ହୋ ହୋଇ ହସି ଉଠିଥିଲେ ।

ମଧୁମିତା ସେହିପରି ହସୁ ହସୁ କହିଲା : ଜଣେ ଭଦ୍ରମହିଳାଙ୍କ ବେଣୀ ଆଉ ଘୋଡ଼ା ଲାଙ୍ଗୁଳ ଭିତରେ ତମେ କୌଣସି ତଫାତ୍ ଖୋଜି ପାଇଲ ନାହିଁ ଡାଡ଼ି ?

: ଉତ୍ତେଜନା ମୁହୂର୍ତ୍ତରେ ମଣିଷର ମୋଟେ ଥାନ ଜ୍ଞାନ ରୁହେ ନାହିଁ । ଆପଣ କେବେ ସେପରି ଅବସ୍ଥାର ସମ୍ମୁଖୀନ ହେଲେ ବୁଝିପାରିବେ । ଅଶୋକ କହିଲା ।

ମଧୁମିତା ପ୍ରତିବାଦ କରିବାକୁ ଯାଉଥିଲା, କିନ୍ତୁ ବୟ ଖାଦ୍ୟସାମଗ୍ରୀ ଧରି ପହଞ୍ଚି ଯିବାରୁ ସେ ନୀରବ ହୋଇଗଲା ।

ସେଦିନ ଖିଆପିଆ ଶେଷ କରି ସେମାନେ ଫେରି ଆସୁଥିଲେ । ଅଶୋକ ସେମାନଙ୍କୁ ବିଦାୟ ଦେବାକୁ ଯାଇ ଦେଖିଲା, ସେମାନେ ଟ୍ୟାକ୍‌ସି ପାଇଁ ପ୍ରତୀକ୍ଷା କରୁଛନ୍ତି । ସେ ତା' ଡ୍ରାଇଭରକୁ କହିଥିଲା, ଶଶୀଶେଖର ଆଉ ମଧୁମିତାକୁ ଛାଡ଼ି ଦେଇ ଆସିବା ପାଇଁ ।

ଶଶୀଶେଖର ପ୍ରଶ୍ନ କରିଥିଲେ : ତୁମେ ଯିବ ନାହିଁ ୟଙ୍ଗମ୍ୟାନ ?

ଅଶୋକ ହସି ହସି କହିଥିଲା : ଧନ୍ୟବାଦ । ମୋର ଏଣେ ଆହୁରି କାମ ଅଛି । ଆପଣମାନେ ମୋର ମନେ ରହିବେ । ବିଶେଷ କରି ମିସ୍ ଚଉଧୁରୀଙ୍କ କଥା ମୁଁ ଭୁଲିପାରିବି ନାହିଁ । ସେ ଯଦି ମିସ୍ ଚଉଧୁରୀ ନ ହୋଇ ଅନ୍ୟ କେହି ହୋଇଥାଆନ୍ତେ, ତା'ହେଲେ ମୋ ଗାଲଟା ଆଜି ଚଟି ପାହାରରେ ଲାଲ୍ ହୋଇ ଯାଇଥାଆନ୍ତା ।

କିନ୍ତୁ ଅଶୋକର କଥା ଶୁଣି ମଧୁମିତାର ମୁହଁ ଲାଲ ହୋଇ ଯାଇଥିଲା ।

ଶଶୀଶେଖର ହସି ହସି କହିଲେ : ତମକୁ ନିମନ୍ତ୍ରଣ କରିବା ଭଳି ସାମର୍ଥ୍ୟ ତ ମୋର ନାହିଁ । ତଥାପି....

ଅଶୋକ କଥା କାଟି କହିଥିଲା : ଆପଣ ମୋର ପିତୃ ସ୍ଥାନୀୟ । ଦେଖିବେ କେଉଁ ଏକ ଅତର୍କିତ ମୁହୂର୍ତ୍ତରେ ମୁଁ ଯାଇ ଆପଣଙ୍କ ପାଦଧୂଳି ନେଇ ଆସିବି ।

ଶଶୀଶେଖର ସେଦିନ ବ୍ୟଥିତ କଣ୍ଠରେ କହିଥିଲେ: ସେପରି କୁହ ନାହିଁ ୟଙ୍ଗମ୍ୟାନ୍ । ତୁମକୁ ମୋ ଘରେ ଦେଖିଲେ ସାମୟିକ ଭାବରେ ମୁଁ ହୁଏତ ପୁତ୍ରଶୋକ ଭୁଲିଯାଇପାରିବି ।

ଶଶୀଶେଖର ପକେଟରୁ ରୁମାଲ କାଢ଼ି ଆଖି ପୋଛିଥିଲେ ।

ଗାଡ଼ି ଛାଡ଼ି ଦେଇଥିଲା ।

ଶଶୀଶେଖର ଆରାମରେ ଆଉଜି ବସି, ମଧୁମିତାର ଚିନ୍ତିତ ମୁଖମଣ୍ଡଳ ଆଡ଼େ ଚାହିଁ କହିଥିଲେ : ଅଶୋକ ହେଉଛି ଅଜୟ ମେହେଟାଙ୍କ ପୁଅ । ଅଜୟ ମେହେଟାଙ୍କ ନାଁ ଶୁଣିଛୁ ? ଜଣେ ମିଲିଅନର ।

ମଧୁମିତା କିଛି ଉତ୍ତର ଦେଇ ନ ଥିଲା । ଶଶୀଶେଖରଙ୍କ ଆଡୁ ମୁହଁ ବୁଲାଇ ବାହାରକୁ ଚାହିଁଥିଲା ।

ଏଗୁଡ଼ାକ ସବୁ ତା'ର ପରିଚିତ ପଥ । କେତେଥର ସେ ଯାଇଚି ଆସିଚି ଏଇବାଟେ । କିଛି ନୂତନତ୍ୱ ନାହିଁ । କିନ୍ତୁ ଡାଡ଼ିଙ୍କ ଆଖିର ଚାହାଣିରେ ଆଜି ଏପରି ପରିବର୍ତ୍ତନ କାହିଁକି ?

ଅଶୋକ ତା' କଥା ରଖି ଏକ ଅତର୍କିତ ମୁହୂର୍ତ୍ତରେ ଛୁଟି ଆସିଥିଲା ତାଙ୍କ ଘରକୁ ।

ସତରେ କ'ଣ ଡାଡ଼ିଙ୍କ ପଦଧୂଳି ନେବା ପାଇଁ ?

ମଧୁମିତା ଛୁଟି ଆସିଥିଲା ଗାଡ଼ିର ହର୍ଣ୍ଣ ଶୁଣି । ଅଶୋକକୁ ଦେଖି ଥଟ୍ଟା କରି କହିଥିଲା : ପଦ ତ ନାହିଁ, ଧୂଳି ଅଛି । ଚଳିଯିବ ସେଥିରେ ।

ଅଶୋକ ବୋଧହୁଏ ପରିହାସର ମର୍ମ ବୁଝି ପାରିଥିଲା । ସେ ବି ହସି ହସି କହିଥିଲା : ଚଳିଯିବ, ଯଦି ଆପଣ ଟୋଳି ଆଣି ନିଜ ହାତରେ ବୋଳି ଦେଇ ପାରିବେ ମୋ କପାଳରେ ।

ମଧୁମିତା ଆଉ କିଛି ଉତ୍ତର ଦେଇ ନ ପାରି ହି-ହି ହେଇ ହସି ଉଠିଥିଲା ଖାଲି ।

ଅଶୋକ ଆଶା କରିଥିଲା, ମଧୁମିତା ଏହାପରେ ଡାକିବ ତାକୁ ବସିବା ପାଇଁ । ଅନ୍ତତଃ ସେତକ ଶିକ୍ଷା ପାଇଥିବ ସେ ବାରିଷ୍ଟର ଶଶୀଶେଖର ଚଉଧୁରୀଙ୍କଠାରୁ ।

କିନ୍ତୁ....

ନା, ନିଜେ ସେ ଆଗେଇଲା ।

ମଧୁମିତା କହିଲା : ନ ଡାକିଲେ ବି ଆପଣମାନେ ଅନ୍ୟର ଘରେ ପଶିବା ପାଇଁ ସଙ୍କୋଚ ବୋଧ କରନ୍ତି ନାହିଁ ?

ପ୍ରକୃତରେ ମଧୁମିତାର କଥା ପଦକରେ ଅଶୋକ ଆଘାତ ପାଇଲା ଖୁବ୍ । କିନ୍ତୁ ପାଦ ଯେତେବେଳେ ଆଗକୁ ବଢ଼ାଇଛି, ଆଉ ପଛକୁ ଫେରାଇ ପରାଜୟ ସ୍ୱୀକାର ସେ କରିବ ନାହିଁ ।

କହିଲା : ଫୁଲ କେବେ ଭଅଁରକୁ ଡାକେ ନାହିଁ । ଭଅଁରର ଫୁଲ ପାଖରେ କିଛି ସଙ୍କୋଚ ନ ଥାଏ ।

ମଧୁମିତା ଅଶୋକ ପାଖରୁ ଏପରି ଏକ ଖୋଲାଖୋଲି ଉତ୍ତର ମୋଟେ ଆଶା କରି ନ ଥିଲା । ଲାଜରେ ଝାଳେଇ ଉଠିଲା ତା ମୁହଁ । ଛୁଟି ପଳେଇଯିବାକୁ ଇଚ୍ଛା ହେଉଥିଲା ତା'ର । କିନ୍ତୁ କେଜାଣି କାହିଁକି ଗୋଡ଼ ଦୁଇଟା ତା'ର ଯେମିତି ପୋତି ହୋଇ ଯାଇଥିଲା ମାଟି ଭିତରେ ।

ତଥାପି ମଧୁମିତା ଉତ୍ତର ଦେବାକୁ ଚେଷ୍ଟା କରିଥିଲା । ସେ କହିଥିଲା : ଓଃ,

ଭାରି ତ ଆସିଲେ ଭଅଁର, ଇମିତି ଡେଣାକଟା ଭଅଁର କେତେ ଆସି ଘୂର୍ ଘୂର୍ କରୁଛନ୍ତି ମୋ ଚାରିପାଖରେ ।

ଅଶୋକ ଆଉ କ'ଣ କହିଥାଆନ୍ତା ହୁଏତ । କିନ୍ତୁ ସେଇ ମୁହୂର୍ତ୍ତରେ ଗୋଟାଏ ଗାଡ଼ି ଆସି ହତା ଭିତରେ ପ୍ରବେଶ କରିଥିବାରୁ ଅଶୋକ ବୁଲି ଅନାଇଲା ।

ଶଶୀଶେଖର ଓହ୍ଲାଉଛନ୍ତି ଗାଡ଼ିରୁ ।

ଅଶୋକ ଛୁଟିଗଲା ସେଇଆଡ଼େ । ନଇଁପଡ଼ି ପାଦ ଛୁଇଁଲା ଶଶୀଶେଖରଙ୍କର । ମଧୁମିତା ସେତେବେଳେ ଲାଜରେ କି ଭୟରେ କେଜାଣି କାହିଁକି ଛୁଟି ପଳେଇଥିଲା ତା' ଘର ଭିତରକୁ ।

ଯେତେବେଳେ ଡାଡ଼ିଙ୍କଠାରୁ ଡାକରା ପାଇ ମଧୁମିତା ପୁଣି ଆସିଥିଲା ଅଶୋକ ସାମନାକୁ, ସେତେବେଳେ ମଧୁମିତାର ଅନ୍ୟ ଏକ ରୂପ ।

ଛାତି ତା'ର ଦୂରୁ ଦୂରୁ କମ୍ପୁଥିଲା ।

ଅଶୋକ କ'ଣ ସବୁ କଥା କହି ଦେଇଛି ଡାଡ଼ିଙ୍କ ଆଗରେ କିଏ ଜାଣେ !ଯଦି ସେ ପରିହାସକୁ ସିରିଅସ୍ ଭାବିଥିବ ।

କିନ୍ତୁ ଡାଡ଼ିଙ୍କ ମୁହଁରେ ସେପରି କୌଣସି ଲକ୍ଷଣ ନ ଦେଖି ମଧୁମିତା ଆଶ୍ୱସ୍ତ ହୋଇଥିଲା । ସେ ନୀରବରେ ଯାଇ ବସିଥିଲା ଅଶୋକ ଆଡ଼କୁ ପଛ କରି ।

ଡାଡ଼ି ଥଟ୍ଟା କରି କହିଲେ : ଆସୁ ନ ଆସୁଣୁ କଳି ଆରମ୍ଭ ହୋଇ ଯାଇଥିଲା ବୋଧହୁଏ ! ବୁଝିଲ ୟଙ୍ଗମ୍ୟାନ୍, ମିତାଟା ମୋର ଏବେ ବି ପିଲା ହୋଇ ରହିଗଲା । କହିଲ ଭଲା, ୟା ବୟସର ଝିଅ ବାଡ଼ିବଗିଚାରେ ପ୍ରଜାପତି ପଛରେ କେଉଁଠି ପାଗଳଙ୍କ ପରି ଧାଇଁଛନ୍ତି ?

ଅଶୋକ କହିଲା : ଝିଅମାନଙ୍କ ସାଇକୋଲୋଜି ସମ୍ବନ୍ଧରେ ମୋତେ କିଛି ଜଣାନାହିଁ ! ତେବେ ମିସ୍ ଚଉଧୁରୀ ବୋଧହୁଏ ଟିକିଏ ବ୍ୟତିକ୍ରମ ।

ମଧୁମିତା ବୁଲି ଅନେଇଲା ଅଶୋକ ଆଡ଼େ । ଆଖି ଦୁଇଟି ତା'ର ଜଳୁଥିଲା, କିନ୍ତୁ ନୀରବରେ ପୁଣି ମୁହଁ ଫେରାଇ ନେଲା ।

ଶଶୀଶେଖର କହିଲେ : ଯା ମା, ଅଶୋକ ପାଇଁ ତୁ ନିଜ ହାତରେ କଫି ତିଆରି କରି ଆଣିବୁ ।

ମଧୁମିତା ଯେପରି ଅପେକ୍ଷା କରିଥିଲା ଆଦେଶକୁ ! ସେ ସେଠାରୁ ପଳାଇ ଯାଇପାରିଲେ ରକ୍ଷା ।

ପୁଣି ଯେତେବେଳେ ଡାକି ପଠାଇଲେ ଶଶୀଶେଖର, ସେ ଚାକରାଣୀ ହାତରେ କଫି ପଠାଇ ଦେଇ ଖବର ଦେଲା, ତା' ମୁଣ୍ଡଟା ବିନ୍ଧୁଛି, ଏଇକ୍ଷିଣା ଆସିପାରିବ ନାହିଁ ।

ଅଶୋକ ବିଦାୟ ନେବା ପୂର୍ବରୁ ଶଶୀଶେଖରଙ୍କଠାରୁ ଅନୁମତି ନେଇ ଯାଇଥିଲା ମଧୁମିତାକୁ ଦେଖି ଆସିବା ପାଇଁ ।

ମଧୁମିତା ଅଶୋକକୁ ଦୁଆର ମୁହଁରେ ଦେଖି ଭିତରକୁ ବି ଡାକିଲା ନାହିଁ ।

ଅଶୋକ କହିଲା : ଏଠାରେ ମୋର ପ୍ରବେଶ ଅଧିକାର ଅଛି ତ ?

ମଧୁମିତା କିଛି କହିଲା ନାହିଁ । ପୂର୍ବପରି ବହିଟାର ପୃଷ୍ଠା ଓଲଟାଇବାରେ ଲାଗିଥିଲା ।

ଅଶୋକ ଆହୁରି ମୁହୂର୍ତ୍ତେ ଠିଆ ହେଲା ନୀରବରେ । ତା'ପରେ ଧୀରେ ଧୀରେ ପାଦ ଫେରାଇଲା ପଛକୁ । ଏଥର ସେ ନିଶ୍ଚୟ ଫେରିଯିବ ।

ମଧୁମିତା ଆଉ ବୋଧେ ସ୍ଥିର ହୋଇ ବସିପାରିଲା ନାହିଁ ।

ହାତ ପାଖରେ କ'ଣ କାହିଁ ? ପାଉଡ଼ର ଡବାଟାକୁ ଉଠାଇ ସଙ୍ଗେସଙ୍ଗେ ଫୋପାଡ଼ିଲା ଅଶୋକ ଉପରକୁ ।

ଅଶୋକ କାନ୍ଧରେ ଖୁବ୍ ଜୋର୍‌ରେ ଲାଗିଲା ଡବାଟା । ଖୋଲି ଯାଇ ବୁଣି ହୋଇଗଲା ତା'ର ସମସ୍ତ ଦେହରେ ।

ଅଶୋକ ଅଟକିଗଲା । ବୁଲି ଚାହିଁଲା ଘର ଭିତରକୁ । ଦେଖିଲା ମଧୁମିତା ବହି ତଳେ ମୁହଁ ଘୋଡ଼େଇ ବୋଧହୁଏ ପ୍ରାଣ ଖୋଲି ହସୁଛି ।

ନା, ଆଉ ଅନୁମତିର ଲୋଡ଼ା ନାହିଁ ତା'ର ।

ସେ ଛୁଟି ଆସି, ମଧୁମିତା ହାତରୁ ବହିଟା ଟାଣି ନେଇ କହିଲା : ଡବାଟା ଯଦି ମୋ ମୁଣ୍ଡରେ ବାଜିଥାଆନ୍ତା ?

ତା'ହେଲେ ବ୍ୟତିକ୍ରମ ଘଟିଥାଆନ୍ତା ଗୋଟାଏ । ମଧୁମିତାର ସହଜ କଣ୍ଠସ୍ୱର ।

: ମାନେ ?

: ବ୍ୟତିକ୍ରମର ମାନେ ଜାଣିନାହାନ୍ତି ଆପଣ ? ଟିକକ ଆଗରୁ କହୁଥିଲେ ନା ମୁଁ କୁଆଡ଼େ ନାରୀଚରିତ୍ରର ଗୋଟାଏ ବ୍ୟତିକ୍ରମ ? ଲାଜ ଲାଗେନା ଗୁରୁଜନମାନଙ୍କ ଆଗରେ ଏପରି କହିବାକୁ ?

: ଓଃ....ଏ କଥା ! ବୁଝିଲି । ଆପଣଙ୍କର ସାଇକୋଲୋଜି ଏଥର ମୁଁ ଫଲୋ କରିପାରିଛି । ଅ-ଭି-ମା-ନି-ନୀ !

ସେଇଦିନଠାରୁ ମାନ ଅଭିମାନର ପାଲା ଜମି ଉଠିଥିଲା ଦୁହିଁଙ୍କ ଭିତରେ । ମଧୁମିତାର ପ୍ରଗଲ୍‌ଭତାରେ ବନ୍ଦୀ ହୋଇ ପଡ଼ିଥିଲା ଅଶୋକ ।

ମଧୁମିତାକୁ ବି ଭାରି ଭଲ ଲାଗିଥିଲା ଅଶୋକକୁ ।

ଡାଡ଼ି କିଛି ଆପତ୍ତି କରି ନ ଥିଲେ । ବରଂ ଉତ୍ସାହ ଦେଉଥିଲେ ଦୁହିଁଙ୍କୁ । ଏକାନ୍ତରେ ଉପଦେଶ ଦେଉଥିଲେ ଅଶୋକକୁ, ଜୀବନଟା ଉପଭୋଗ ପାଇଁ ।

: ଜଟିଳ ଜୀବନଯାତ୍ରାର ତତ୍ତ୍ୱ ଅନ୍ୱେଷଣ କରିବାକୁ ଗଲେ, ମଣିଷ ମନର ସମସ୍ତ ସମ୍ଭାବନା ମରିଯାଏ । ଜୀବନ କ୍ଲିଷ୍ଟ ହୋଇପଡ଼େ । ତେଣୁ ୟଙ୍ଗମ୍ୟାନ୍, ଅତି ହାଲ୍‌କା ଭାବରେ ସହଜ ପଥରେ ଜୀବନକୁ ଉପଭୋଗ କରି ଶିଖ । ନ ହେଲେ ମୋ ପରି ବ୍ୟଥା ପାଇବ । ଜୀବନ ଭରି ଅନୁତାପ କରିବ ।

ଅଶୋକ ଶଶୀଶେଖରଙ୍କ ପାଖରେ ଯେତେବେଳ ଯାଏ ବସେ, ମନ ଦେଇ ଶୁଣେ ତାଙ୍କ କଥା । ଏତେ ଆଗ୍ରହ, ଏତେ ଧୈର୍ଯ୍ୟ ଯେ ସେ କେଉଁଠୁ ପାଏ, ବେଳେବେଳେ ମଧୁମିତା ଚିନ୍ତା କରିପାରେ ନାହିଁ । କାରଣ ସେ କ୍ଷେତ୍ରରେ ସେ ପରୀକ୍ଷା କରିଛି ଅଶୋକକୁ । ସବୁବେଳେ ସେ ଚଞ୍ଚଳ । କେଉଁଠି ଗୋଟାଏ ଜାଗାରେ ସେ ସ୍ଥିର ହୋଇ ରହିପାରେ ନାହିଁ । ଏପରିକି ସିନେମା ହାଉସ୍‌ରେ ସେ ବସି ପାରେ ନାହିଁ ଛବି ଶେଷ ହେବା ଯାଏ । କିନ୍ତୁ ଡାଡ଼ିଙ୍କ ସାମନାରେ ରାମଭକ୍ତ ହନୁମାନ ପରି କିପରି ଯେ ଘଣ୍ଟା ଘଣ୍ଟା କଟାଇପାରେ... ଆଶ୍ଚର୍ଯ୍ୟ !

ପ୍ରଥମେ ମଧୁମିତା ଯେଉଁଦିନ ଅଶୋକର ବହୁ ମୂଲ୍ୟବାନ ମଟର ଗାଡ଼ିରେ ବସି ଏକା ଏକା ତା' ସହିତ ବାହାରି ଯାଇଥିଲା, ସେଦିନର କଥା ଆଜି ବି ମନେ ଅଛି ମଧୁମିତାର । ଆଶା, ଆଶଙ୍କା, ସଙ୍କୋଚ ସବୁ ମିଶି କିପରି ମୂକ କରି ଦେଇଥିଲେ ତାକୁ । ନାକରୁ ତା'ର ଖରନିଃଶ୍ୱାସ ବୋହୁଥିଲା । ଆଖି ଯୋଡ଼ାକରେ କେବଳ ଜଳଜଳ କରି ଚାହିଁଥିଲା ବାହାରକୁ । ନ ହେଲେ ଅଶୋକର ପଦେ କଥା ବି ସେ ଶୁଣିପାରୁ ନ ଥିଲା ଏତେ ପାଖରେ ଥାଇ ସୁଦ୍ଧା ।

ସେଦିନ ଅଶୋକ ନିଜେ ଗାଡ଼ି ଡ୍ରାଇଭ୍ କରୁଥିଲା ।

ତା'ର ପାଖକୁ ଲାଗି ବସିଥିଲା ମଧୁମିତା ।

କିନ୍ତୁ ଅଶୋକର ହାସ-ପରିହାସ କିଛି ତା' କାନରେ ବାଜୁ ନ ଥିଲା । ଆଶ୍ଚର୍ଯ୍ୟ ! !

ସେମାନେ ସେଦିନ କେଉଁ ହୋଟେଲରେ ଯାଇ ଉଠିଥିଲେ ତା'ର ମନେ ନାହିଁ । ରାତି ସେତେବେଳକୁ କେତେ ହେବ ସେ ଜାଣି ପାରି ନ ଥିଲା । ତା' କୁମାରୀ ଜୀବନର ସେ ଥିଲା ପ୍ରଥମ ରୋମାଞ୍ଚ ।

ଅଶୋକ ସହିତ ହୋଟେଲରେ ସେଦିନ ସେ ବହୁତ ବେଳଯାଏ ଥିଲା । ତାଙ୍କ ପରି ପଞ୍ଝା ପଞ୍ଝା ତରୁଣ ତରୁଣୀଙ୍କର ଭିଡ଼ ଜମିଥିଲା ସେଠାରେ । ସମସ୍ତେ ଯେପରି କି ଉନ୍ମାଦନାର ନିଶାରେ ଟଳୁ ଟଳୁ ହେଉଥିଲେ ।

ଅଶୋକ ସହିତ ମଧୁମିତା ସେମାନଙ୍କୁ ଦେଖିଲା ।

ଏ ଏକ ଅନ୍ୟ ରାଜ୍ୟ ।

କିନ୍ତୁ ମଧୁମିତାର ମନରେ ଏକ ଭାବାନ୍ତର ସୃଷ୍ଟି ହୋଇଥିଲା କାହିଁକି ? ସମଗ୍ର ଦେହଟାରେ ତା'ର ହଠାତ୍ କିପରି ଏକ ପରିବର୍ତ୍ତନ ଅନୁଭବ କଲା ମଧୁମିତା । ମୁଣ୍ଡଟା କିପରି ଝାଇଁ ଝାଇଁ କରି ଉଠିଲା । ଆଖି ଆଗରେ ଯେପରି ନୃତ୍ୟ ଆରମ୍ଭ କରିଦେଲେ ଅଶୋକର ସହସ୍ର ମୁଖ ।

କିନ୍ତୁ ଅଶୋକ ନୀରବରେ ବସି, ମଧୁମିତା ମୁହଁକୁ ଚାହିଁ ଗ୍ଲାସରେ ତରଳ ପାନୀୟ ଢାଳି ନିଃଶେଷ କରିବାରେ ଲାଗିଥିଲା, ଗ୍ଲାସ ପରେ ଗ୍ଲାସ ।

କିନ୍ତୁ ମଧୁମିତାର ହଠାତ୍ ହେଲା କ'ଣ ? ସେ ତ ଗୋଟିଏ ଗ୍ଲାସ ସରବତ ଛଡ଼ା ଅନ୍ୟ କିଛି ପିଇ ନାହିଁ ।

ଅଶୋକ ବୋଧହୁଏ ମଧୁମିତାର ପରିବର୍ତ୍ତନ ଲକ୍ଷ୍ୟ କରୁଥିଲା ଆଉ ହସୁଥିଲା ମନେ ମନେ ।

ଆଉ କେତୋଟି ମୁହୂର୍ତ୍ତ ମାତ୍ର । ତା'ପରେ ମଧୁମିତା ଆତ୍ମସମର୍ପଣ ନ କରି ରହିପାରିବ ନାହିଁ ।

ସତରେ ମଧୁମିତା ଆଉ ସ୍ଥିର ହୋଇ ରହିପାରି ନ ଥିଲା ।

ଟେବୁଲ ଉପରେ ମୁଣ୍ଡ ରଖି ଶୋଇ ପଡ଼ିବାର ଉପକ୍ରମ କରୁଥିଲା ।

ଅଶୋକ ମଧୁମିତାର ମୁଣ୍ଡରେ ହାତ ଥାପି କହିଥିଲା : ଦେହ କ'ଣ ଖରାପ ଲାଗୁଛି ?

ମଧୁମିତା ସେଦିନ ଅନୁଭବ କରିଥିଲା, କଥା କହିବାର ଶକ୍ତି ତା'ର ଲୋପ ପାଇଛି । ସେ କେବଳ ମୁଣ୍ଡ ହଲାଇ ସମ୍ମତି ଜଣାଇଥିଲା ।

ଅଶୋକ ମଧୁମିତାର ହାତ ଧରି ସଙ୍ଗେ ସଙ୍ଗେ ଉଠାଇ ନେଇଥିଲା ଅନ୍ୟ ଏକ ରୁମ୍‌କୁ । ଯେଉଁଠି ଆରାମରେ ଶୋଇ ଶୋଇ କ୍ଳାନ୍ତି ଦୂର କରିବାର ସବୁପ୍ରକାର ବ୍ୟବସ୍ଥା ଅଛି ।

ଡାନ୍‌ଲୋପିଲୋ ଗଦି ଉପରେ ନିଜର ଅବଶ ଦେହଟାକୁ ନଦି ଦେଇ ମଧୁମିତା ଯେପରି ନିଶ୍ଚିନ୍ତ ହୋଇଥିଲା ।

କିନ୍ତୁ ହଠାତ୍ ତା'ର ହେଲା କ'ଣ ? ସେ ରହି ରହି ମନେ ପକାଇବାକୁ ଚେଷ୍ଟା କଲା, କିନ୍ତୁ ସବୁ ଯେପରି ତରଙ୍ଗାୟିତ ହୋଇ ନାଚି ଉଠିଲା ତା' ଆଖି ଆଗରେ ।

ସେ ଅନୁଭବ କଲା, କାହାର ସ୍ପର୍ଶ । କିଏ ଯେପରି ତା' କପୋଳ ଦେଶରେ ପ୍ରଲେପ ବୋଳି ଦେଉଛି ।

କିଏ ? ଭାରି ଭାରି ଆଖି ଯୋଡ଼ିକ ବହୁ କଷ୍ଟରେ ଖୋଲି ଚାହିଁଲା ମଧୁମିତା । ସାମ୍ନାରେ ଅଶୋକ ନା ? ତା'ରି ହାତର କୋମଳ ସ୍ପର୍ଶ ତା' କପାଳରେ ? ଆଃ... କେତେ ଭଲ ଅଶୋକ ।

ଅଶୋକ ହାତଟାକୁ ଦୁଇ ହାତରେ ଚାପି ଧରିଲା ମଧୁମିତା ।

ଅଶୋକ ବୁଝିପାରିଲା, ମଧୁମିତା ଦେହରେ ପୂର୍ଣ୍ଣ ମାତ୍ରାରେ ପାନୀୟର ପ୍ରତିକ୍ରିୟା ସୃଷ୍ଟି ହୋଇଛି । ସରବତ୍ ମନେ କରି ମଧୁମିତା ଯାହା ପାନ କରିଛି, ତା'ର ଜ୍ୱାଳା ଯେ କେଡ଼େ ତୀବ୍ର, ମଧୁମିତା ବୁଝିବାକୁ ଆଉ ଅବକାଶ ପାଇବନି । ଏକା ମଧୁମିତା କାହିଁକି ଅଶୋକ ସଙ୍ଗରେ ଯେଉଁମାନେ ଆସିଛନ୍ତି ଏଠାକୁ, ସମସ୍ତେ ଆତ୍ମସତ୍ତା ହରାଇଛନ୍ତି, ସମସ୍ତେ ପରାଜୟ ସ୍ୱୀକାର କରିଛନ୍ତି ଅଶୋକ ପାଖରେ ।

ଅଶୋକର ଆନନ୍ଦ ସେତିକିରେ । ତରୁଣୀର ଗର୍ବୋନ୍ନତ ମୁଣ୍ଡକୁ ନୁଆଇଁ ପାରିଲେ ସେ ଭାରି ଖୁସି ହୁଏ ।

କିନ୍ତୁ ମଧୁମିତା ! କ'ଣ ହେଲା ତା'ର ? ଆଖି ବୁଜି ଶୋଇ ପଡ଼ିଲା ବୋଧହୁଏ । ପାନୀୟ ତେବେ କ'ଣ ମାତ୍ରାଧିକ ହୋଇଗଲା ?

ଅଶୋକ ଚେଷ୍ଟା କଲା ଉଠାଇବାକୁ । ଡାକିଲା ଥରେ ଦି'ଥର ।

ନା, ମଧୁମିତା ଶୋଇ ପଡ଼ିଛି । ଶୋଇ ପଡ଼ିଛି ସେ ଆରାମରେ । ଯେପରି ନିର୍ଭୟ ଆଶ୍ରୟ ମିଳିଛି ତାକୁ । କିନ୍ତୁ...ଘଡ଼ିରେ ଯେ ନଅଟା ବାଜିଲାଣି ! ତେଣେ ଶଶୀଶେଖର ଚଉଧୁରୀ ଅପେକ୍ଷା କରିଥିବେ । କ'ଣ ଭାବିବେ ସେ ଅଧିକ ରାତ୍ରିଯାଏ ସେମାନେ ନ ଫେରିଲେ ?

ବିବେକର ଦଂଶନରେ ଛଟପଟ ହେଲା ଅଶୋକ ।

ତା'ଛଡ଼ା ମଧୁମିତା ଯେ ଏପରି ନିଶ୍ଚିନ୍ତରେ ଶୋଇପଡ଼ିବ, ଅଶୋକ ମୋଟେ ଚିନ୍ତା କରି ପାରି ନଥିଲା । କାରଣ ମଧୁମିତାକୁ ପରାଜୟ ସ୍ୱୀକାର କରାଇବା ପାଇଁ ସେ ଟାଣି ଆଣିଥିଲା ଏଠାକୁ । ତା'ର ଉଦ୍ଧତ ମୁଣ୍ଡକୁ ସବୁଦିନ ପାଇଁ ତଳକୁ ନୁଆଁଇ ଦେବା ପାଇଁ ଅଶୋକ ଏହି ପଥ ବାଛି ନେଇଥିଲା । କିନ୍ତୁ ଏ କ'ଣ ହେଲା ! ବର୍ତ୍ତମାନ ଅଶୋକ ଯେ ନିଜେ ପରାଜିତ ।

ମଧୁମିତା କଡ଼ ଲେଉଟାଇ ଶୋଇଲା ।

ରାତ୍ରି କ୍ରମଶଃ ବଢ଼ୁଥିଲା ।

ଅଶୋକ ବିବ୍ରତ ହୋଇ ପଡ଼ିଥିଲା । କି କୈଫୟତ୍ ସେ ଦେବ ଶଶୀଶେଖର ଚଉଧୁରୀଙ୍କୁ ?

ଏକ ସମୟରେ ମଧୁମିତା ଆଖି ଖୋଲିଲା ।

ସାମ୍‌ନାରେ ଅଶୋକ ଖଣ୍ଡିଏ ଚେଆର ଉପରେ ବସି ରହିଛି । ବୋଧହୁଏ ଆଖିରେ ତା'ର ତନ୍ଦ୍ରା ଘୋଟି ଆସିଛି ।

ମଧୁମିତା ଧୀରେ ଧୀରେ ଉଠିଲା । ବସିଲା ଶେଯ ଉପରେ ।

ଦେହସାରା କିପରି ଏକ ନୂତନ ଅନୁଭୂତି ।

କ'ଣ ହେଲା ତା'ର ? ଏତେ ଫୂର୍ତ୍ତି ! ଏତେ ହାଲ୍‌କା ତା'ର ଦେହମନ ! କିନ୍ତୁ ଅଶୋକ, ଦେହ ଖରାପ ହେଲା କି ତା'ର !

ଉଠି ଠିଆ ହେଲା ମଧୁମିତା । କିନ୍ତୁ ପାଦ ଉଠାଇ ଆଗକୁ ପକାଇବାର ଶକ୍ତି ଯେ ତା'ର ନାହିଁ । କ'ଣ ହେଲା ଆଜି ତା'ର ?

ସେଇଠି ବସି ମଧୁମିତା ଡାକିଲା ଅଶୋକକୁ ।

ଅଶୋକର ତନ୍ଦ୍ରା ତୁଟିଗଲା ନିମିଷକେ । ଛୁଟି ଆସିଲା ସେ ମଧୁମିତା ଶେଯ ପାଖକୁ ।

ତା'ର କପାଳର କୁଞ୍ଚିତ ରେଖା ଆଡ଼େ ଚାହିଁ ମଧୁମିତା ହସିଲା । କହିଲା : ମୋତେ ସଙ୍ଗରେ ଆଣି ଖୁବ୍ ଦୁଷ୍ଚିନ୍ତାରେ ପଡ଼ି ଯାଇଛ, ନା ?

ଏଥର ଅଶୋକ କଣ୍ଠରେ ମିନତି ।

: ତମେ ଉଠ ମିତା । ରାତି ଅନେକ ହେଲାଣି । ଡାଡ଼ି ତେଣେ ଅପେକ୍ଷା କରିଥିବେ । କ'ଣ ଭାବିବେ ସେ ମୋତେ ?

ମଧୁମିତା ପୁଣି ହସିଲା । କହିଲା : ସେ କୈଫୟତ ଦେବ ତମେ । ମୋର ସେଥିପାଇଁ କିଛି ଦାୟିତ୍ୱ ନାହିଁ ।

: କିନ୍ତୁ ତମେ ଏବେ ଉଠ !

ମଧୁମିତାଠାରେ ଉଠିବାର କୌଣସି ଲକ୍ଷଣ ତ ଦେଖାଗଲା ନାହିଁ, ବରଂ ସେ ପୁଣି ଥରେ ଶୋଇବାର ଉପକ୍ରମ କଲା ।

ଅଶୋକ ମଧୁମିତାରେ ହାତ ଧରି କହିଲା : ପ୍ଲିଜ, ଉଠ ମିତା । ଡାଡ଼ିଙ୍କ ପାଖରେ ମୋତେ ଆଉ ଛୋଟ କର ନାହିଁ ।

ମଧୁମିତା ଅଶୋକ ହାତରୁ ହାତ ଝିଙ୍କି ନେଇ ମୁହଁ ବୁଲେଇ ଶୋଇ ପଡ଼ିଲା । ଯେପରି ସେ ଏଠାରେ ଖୁବ୍ ନିଶ୍ଚିନ୍ତ ।

କିନ୍ତୁ ଅଶୋକ ପ୍ରକୃତରେ ପରାଜିତ ହୋଇଥିଲା । ସେ ଏତେଟା ଆଶା କରି ନ ଥିଲା । ମଧୁମିତାକୁ ଜବତ କରିବା ପାଇଁ ଆଣି ନିଜେ ସେ ଜବତ୍ ହୋଇ ଯାଇଥିଲା ।

ହୋଟେଲର କେଉଁ ଗୋଟାଏ ଘଡ଼ିରେ ବାରଟା ବାଜିବାର ଶବ୍ଦ ହେଲା ।

ଅଶୋକ ଆଉ ସ୍ଥିର କରିପାରିଲା ନାହିଁ ।

ଖଟ ଉପରେ, ମଧୁମିତା ପାଖକୁ ଲାଗି ବସି, କପାଳରେ ତା'ର ହାତ ଥାପି ଧୀରେ ଧୀରେ ଡାକିଲା : ଉଠ ମିତା ! ଘଡ଼ିରେ ଯେ ବାରଟା ବାଜିଲାଣି ।

: ବାଜୁ, ଆଜି ମୁଁ ଗୋଟାଏ ସମାଧାନ ଚାହେ । ମଧୁମିତାର କଣ୍ଠସ୍ୱର ଗମ୍ଭୀର ।

: ସମାଧାନ, କି ସମାଧାନ ଚାହ ତୁମେ ମିତା ?

ମଧୁମିତା ଉଠି ବସିଲା । କହିଲା : କେଉଁ ସାହସରେ, କ'ଣ ଭାବି ମୋତେ ଆଣି ହୋଟେଲର ଏକ ନିର୍ଜନ ପ୍ରକୋଷ୍ଠରେ ବନ୍ଦୀ କରିଛ ? ଘର ଭିତରେ ତମେ ଆଉ ମୁଁ ।

ଏଥର ଅଶୋକର ସ୍ୱର କରୁଣ ହୋଇ ଉଠିଲା ।

ସେ କହିଲା : ତମେ ମତେ ଭୁଲ ବୁଝ ନାହିଁ ମିତା ! ମୁଁ ତୁମକୁ ବନ୍ଦୀ କରି ନାହିଁ । ତମେ ହାଠାତ୍ ଅସୁସ୍ଥ ଅନୁଭବ କଲ । ସେଇଥିପାଇଁ...

: ଚାଲ । ଆଜି ଡାଡିଙ୍କ ଆଗରେ ସବୁକଥା କହିବି । ସେ କିପରି ତମ ସମ୍ବନ୍ଧରେ କିଛି ନ ବୁଝି, କିଛି ନ ଜାଣି ମୋତେ ତମ ସହିତ ଆସିବାକୁ ନିଶ୍ଚିନ୍ତରେ ଛାଡ଼ିଦେଲେ । ଆଉ ତମେ କିପରି ଡାଡ଼ିଙ୍କର ବିଶ୍ୱାସର ମୂଲ୍ୟ ଦେଲ । ଚାଲ, ଉଠ ।

ମଧୁମିତା ଏକ ରୁଦ୍ରମୂର୍ତ୍ତି ଧରି ଉଠି ଠିଆ ହୋଇ ପଡ଼ିଲା ।

ଏଥର କିନ୍ତୁ ଅଶୋକ ମଧୁମିତାର ହାତ ଧରି ଟାଣି ବସାଇଲା । ସେ ସାନ୍ତ୍ୱନା ଦେବା ସ୍ୱରରେ କହିଲା : କିନ୍ତୁ ମିତା ! ତମେ ମୋ ଭିତରେ କ୍ରମଶଃ ଯେଉଁ ସମ୍ପର୍କ ଗଢ଼ି ଉଠୁଛି, ତା'ର ଭବିଷ୍ୟତ ସମ୍ବନ୍ଧରେ ତମ ମନରେ କ'ଣ କୌଣସି ସ୍ୱପ୍ନ ଜାଗି ନାହିଁ ?

: ସ୍ୱପ୍ନ ତ ଆଉ ବାସ୍ତବ ନୁହେଁ ଅଶୋକ । ମୁଁ ଭାରି ବାସ୍ତବବାଦୀ । ଡାଡ଼ି ମୋତେ ସେହିପରି ଗଢ଼ିଛନ୍ତି । ସେ କୁହନ୍ତି, ସ୍ୱପ୍ନ ଆଉ ବାସ୍ତବ ଭିତରେ ଆକାଶ ପାତାଳ ତଫାତ୍ । ମଧୁମିତାର ସ୍ୱର ସେହିପରି ଗମ୍ଭୀର ।

: ତୁମେ ମୋତେ ବିଶ୍ୱାସ କରିପାରୁ ନାହଁ ମିତା ? ଅଶୋକର କଣ୍ଠରେ ଆକୁଳ କାକୁତି ।

ମଧୁମିତା କିଛି ଉତ୍ତର ଦେଲା ନାହିଁ । ମୁହଁ ବୁଲେଇ ଠିଆ ହେଲା ଯାଇ ଝରକା ପାଖରେ ।

କିଛି ସମୟ ପରେ ଅଶୋକର ସ୍ପର୍ଶ ସେ ଅନୁଭବ କଲା । ବୁଲି ଅନେଇଲା ପଛକୁ ।

ଅଶୋକ ହାତରୁ ଅଙ୍ଗୁରୀୟଟି କାଢ଼ି ପିନ୍ଧାଇ ଦେଉଛି ମଧୁମିତା ଆଙ୍ଗୁଳିରେ । କହିଲା : ଏଇ ମୁହୂର୍ତ୍ତରେ ମୁଁ ତମ ମନର ସମସ୍ତ ଅବିଶ୍ୱାସର ଅବସାନ ଚାହେଁ ମିତା !

ମଧୁମିତା ଥରେ ଚାହିଁଲା ତା' ହାତର ଅଙ୍ଗୁରୀୟଟି ଆଡ଼େ, ଆଉ ଥରେ ଚାହିଁଲା ଅଶୋକର ମୁହଁକୁ ।

ତା'ପରେ ଅଶୋକର ଗଳାରେ ଦୁଇ ହାତ ଛନ୍ଦି ଆନନ୍ଦ ଗଦଗଦ ସ୍ୱରରେ କ'ଣ ଯେ କହିଲା, ଅଶୋକ କିଛି ବୁଝିପାରିଲା ନାହିଁ । ସେ କେବଳ ମଧୁମିତାର ଭାରସାମ୍ୟ ରକ୍ଷା କରିବା ପାଇଁ ମଧୁମିତାକୁ ଜାବୁଡ଼ି ଧରିଥିଲା ଦୁଇ ହାତରେ ।

ଆହୁରି ଅନେକ ସମୟ ଯାଏ ସେଦିନ ଦୁହେଁ ଥିଲେ ହୋଟେଲରେ ସେହି ନିର୍ଜନ ପ୍ରକୋଷ୍ଠରେ ।

ଅଶୋକ ଯେତେଥର ଡାଡ଼ିଙ୍କ କଥା କହି ମଧୁମିତାକୁ ଘରକୁ ଫେରିବା ପାଇଁ କହିଥିଲା, ମଧୁମିତା କେବଳ ହସି ଉଠିଥିଲା ଥରକୁ ଥର । କହିଥିଲା : ଡାଡ଼ି ଶୋଇ ପଡ଼ିଥିବେ ଅଶୋକ । ତାଙ୍କ ପାଇଁ ତମେ ଚିନ୍ତା କର ନାହିଁ । କିନ୍ତୁ ଆଜିର ଏହି ପବିତ୍ର ରାତ୍ରିଟି ଆମ ଜୀବନରେ ଆଉ ହୁଏତ କେବେ ଆସିବ ନାହିଁ ।

ସେଦିନ ମଧୁମିତା ଯେତେବେଳେ ଘରକୁ ଫେରିଥିଲା, ଦୂରର ଗୀର୍ଜା ଘଡ଼ିରେ ରାତି ଦୁଇଟା ବାଜୁଥିଲା ।

ସେଦିନ ଆଉ ଆଜି ?

କେତେ ତଫାତ୍ ମଧୁମିତାର ଜୀବନରେ !

କିନ୍ତୁ ସେଦିନର ସେହି ରାତି ଆଜି ବି ନଇଁଆସେ କଲିକତା ବକ୍ଷରେ, ଗୀର୍ଜା ଘଡ଼ିରେ ଆଜି ବି ଦୁଇଟା ବାଜେ । ଆଉ ମଧୁମିତାର ଜୀବନ... ?

ନା, ଅସହ୍ୟ । ଆଉ ସହି ହେଉ ନାହିଁ । ଶେଷରେ ତଣ୍ଟି ଶୁଖିଗଲା ପରି ଲାଗୁଛି । ପାଣି ନ ପିଇଲେ ଚଳିବ ନାହିଁ ।

ମଧୁମିତା ଫେରି ଆସିଲା ଝରକା ପାଖରୁ ।

ପାଖ ଘରେ ଶୋଇଛି ନାଜ୍‌ନିନ୍ । ତାକୁ ନ ଉଠାଇ ଆଉ ଉପାୟ ନାହିଁ ।

ମଧୁମିତା ଯାଇ ନାଜ୍‌ନିନ୍‌ର କବାଟ ଧକ୍କା ମାରିଲା ।

ଏଇ ମୁହୂର୍ତ୍ତରେ ପାଣି ନ ପିଇଲେ, ମଧୁମିତାର ହୁଏତ ଛାତି ଫାଟିଯିବ । ସେ ପାଗଳୀ ହୋଇଯିବ ।

ନାଜନିନ୍ ଆସି ମଧୁମିତାକୁ ଉଠାଇଲା ।

ରାତି ପାହି ଯାଇଛି ଅନେକବେଳୁ । ଘଡ଼ିରେ ଆଠଟା ବାଜିଲାଣି । ତଥାପି ମଧୁମିତାର ନିଦ ଭାଙ୍ଗି ନାହିଁ ଆଜି ।

ଫୋନ୍ ଆସିଛି ମଧୁମିତାର ।

ନିଦ ମଳମଳ ଆଖିରେ ରିସିଭରଟା କାନରେ ଦେଇ ଅପର ପାର୍ଶ୍ୱରୁ କାହାର କଣ୍ଠସ୍ୱର ଶୁଣି ଉଠିବସିଲା ।

ଚନ୍ଦ୍ରକାନ୍ତ ଫୋନ୍ କରିଥିଲା ।

ଏତେ ସକାଳୁ ସେ ଫୋନ୍ କରିଥିଲା, ମଧୁମିତାର ଦେହର ଅବସ୍ଥା ଜାଣିବା ପାଇଁ । କାଲି ରାତିରେ ଅସୁସ୍ଥ ଶରୀର ନେଇ ଫେରିଥିଲା ମିତା । ସେଥିପାଇଁ ରାତିରେ ଭଲ କରି ନିଦ ହୋଇ ନ ଥିଲା ଚନ୍ଦ୍ରକାନ୍ତକୁ ।

ମଧୁମିତା ଅପର ପାର୍ଶ୍ୱରୁ ଏହି କଥା ଶୁଣି ହସି ହସି ଭାଙ୍ଗି ପଡ଼ିଥିଲା । ନିର୍ବୋଧ ଚନ୍ଦ୍ରକାନ୍ତ ! କେବେ ବୁଝିବ ନାରୀର ମନ ?

ମଧୁମିତା ଉତ୍ତର ଦେଇଥିଲା, ସେ ଭଲ ଅଛି ଏବଂ ଅନ୍ୟାନ୍ୟ ଦିନ ଅପେକ୍ଷା ଆଜି ସେ ଅଧିକ ଖୁସି ଅଛି ।

ଚନ୍ଦ୍ରକାନ୍ତ କାରଣ ପଚାରିଲା ।

ମଧୁମିତା ହସି ହସି କହିଥିଲା : କାଲି ତମର ସାନ୍ନିଧ୍ୟ ହିଁ ମୋତେ ପ୍ରେରଣା ଦେଇଛି, ଖୁସି କରିଛି, ସମ୍ମୋହିତ କରିଛି ।

ଚନ୍ଦ୍ରକାନ୍ତର ମନଟା ପୂରି ଉଠିଥିଲା ମଧୁମିତାର ଉତ୍ତରରେ । ଜୀବନରେ ହୁଏତ ଏଇ ପ୍ରଥମ ଅନ୍ତରଙ୍ଗତାର ସ୍ୱର । ସେ ଉତ୍ତର ଦେଇ ପାରି ନ ଥିଲା କିଛି ।

ମଧୁମିତା କହିଥିଲା : ଆଜି କିନ୍ତୁ ତମେ ଆସିବ ଆମ ଘରକୁ । ଚାରିଟା ବେଳେ ମୁଁ ତମର ଅପେକ୍ଷା କରିଥିବି । ମିନିଟିଏ ଡେରି ହେଲେ ତମ ସହିତ ଆଉ ପାଟି ଫିଟେଇବି ନାହିଁ ଜାଣିଥାଅ ।

ଚନ୍ଦ୍ରକାନ୍ତ ହୁଏତ ଆଶା କରୁଥିଲା ସେହିପରି କିଛି ଗୋଟାଏ ଅନୁରୋଧ । ଉତ୍ତରରେ କହିଲା : ଯଦି ଆଗରୁ ପହଞ୍ଚେ, ତା' ହେଲେ ?

ମଧୁମିତା କହିଲା : ତା' ହେଲେ ? ତା'ହେଲେ କ'ଣ କରିବାକୁ ହେବ, ଏଇଆ ତ ? ରୁହ ରୁହ ମୁଁ ଟିକିଏ ଡାଡ଼ିଙ୍କୁ ପଚାରି ଆସେ ।

ସେପାଖରୁ ଚନ୍ଦ୍ରକାନ୍ତ ହସି ହସି ରିସିଭରଟା ରଖିଲା ।

ମଧୁମିତା ବି ହସି ହସି ରିସିଭରଟା ନାଇନିନ ହାତକୁ ବଢ଼ାଇ ଦେଲା ।

ନାଇନିନ କହିଲା : ଆଜି ଦିନଟା ତମର ଭଲରେ କଟିବ ଦିଦି ।

: ତୁ କେମିତି ଜାଣିଲୁ ?

: ସକାଳୁ ହସଖୁସିରେ ଆରମ୍ଭ ହେଲାଣି ତ ! ସେଥିପାଇଁ କହୁଚି ।

ମଧୁମିତା ନାଜନିନ୍‌ର ହସିଲା ମୁହଁ ଆଡ଼େ ଚାହିଁ ହଠାତ୍ ଗମ୍ଭୀର ହୋଇଗଲା ।

ନାଜନିନ୍ କହିଲା : ଦିଦି, ତମର ଏଇ ଘଡ଼ିକେ ଘୋଡ଼ା ଛୁଟା ଭାବ ମୋତେ ମୋଟେ ଭଲ ଲାଗେ ନାହିଁ । ଏଇକ୍ଷିଣା ହସି ହସି ଭାସି ଯାଉଥିଲ, ଆଉ ଏଇକ୍ଷିଣା ଏଡ଼େ ମୁହଁ...

ମଧୁମିତା ସେହିପରି ଗମ୍ଭୀର ହୋଇ କହିଲା : ତୋ ଦୁନିଆଟା ଭାରି ଛୋଟ ନାଜ୍, ସେଇଥିପାଇଁ ତୋ ମନଟି ବି ଫରୁଆ ପରି । ସେତିକି ଭିତରେ ତୋ'ର ହସ, କାନ୍ଦ, ସୁଖ ଦୁଃଖ । ସେଇଥିପାଇଁ କିଛି ତୋତେ ବାଧେ ନାହିଁ । କିଛି ତୁ ଜାଣିପାରୁ ନାହିଁ । ତୋ'ର ସ୍ୱାମୀ, ତୋ'ର ଦେବତା । ତା'ଠାରୁ ଦୂରକୁ ଆଉ ତୁ ଉଡ଼ି ପାରୁ ନାହିଁ । କିନ୍ତୁ ତୋ ଦିଦିର ମନ....

ମଧୁମିତା ଆଉ କଥା ଶେଷ କରିପାରିଲା ନାହିଁ । ଗୋଟାଏ ଦୀର୍ଘଶ୍ୱାସ ତା' ପଞ୍ଜରା ଦୋହଲାଇ ବାହାରି ଆସିଲା ।

ନାଜନିନ୍ କହିଲା : ତମେ ତ ସ୍ୱାମୀ ସଂସାର ଧରି ମନ ଆନନ୍ଦରେ ରହିପାରନ୍ତ ଦିଦି ! ତମେ ବଡ଼ଲୋକ । ବାପାଙ୍କର ଅଗାଧ ସମ୍ପତ୍ତି । ଆମ ଠାରୁ ଲକ୍ଷ ଲକ୍ଷ ଗୁଣରେ ତମେ ସୁଖୀ ହୋଇପାରନ୍ତ ! ମୋ ଦିହ ଛୁଇଁ କହିଲ ? ମୁଁ ମିଛ କହୁଛି ?

ନଜନିନ୍ ଦେଖିଲା ମଧୁମିତା ତା' ଅଲକ୍ଷ୍ୟରେ ଆଖିରୁ ଲୁହ ପୋଛି ପକାଉଛି । ସେ ବୁଝିପାରିଲା ନାହିଁ କିଛି, ତା'ର ସାହସ ହେଲା ନାହିଁ ବି ଆଉ କିଛି ପଚାରିବାକୁ । ମଧୁମିତା ମନରେ କେଉଁଠି ଯେ ଦୁଃଖ, କେଉଁଥିପାଇଁ ଯେ ତା' ଆଖିରେ ଲୁହ, ସେକଥା ହୁଏତ ତା'ପରି ଏକ ମୂର୍ଖ ଝିଅ ବୁଝିପାରିବ ନାହିଁ । ସେ ମଧୁମିତାର କପାଳରେ ହାତ ବୁଲେଇବାକୁ ଲାଗିଲା ।

ମଧୁମିତା ଶାନ୍ତ ସ୍ୱରରେ ପଚାରିଲା : ତୁ ମୋତେ କାହିଁକି ଏତେ ଭଲପାଉ ନାଜ୍ !

: ତୁମେ ଯେ ମୋର ଦିଦି । ନାଜନିନ୍ ସରଳ ସ୍ୱରରେ କହିଲା ।

ମଧୁମିତା ତା' ହାତକୁ ଚାପିଧରି କହିଲା : ମୁଁ ଯଦି ତୋ ମା' ପେଟର ଭଉଣୀ ହୋଇ ପାରିଥାନ୍ତି ନାଜ୍, ତା' ହେଲେ ଆଜି ମୋର ଏତେ ଦୁଃଖ ନ ଥାଆନ୍ତା । ଛାଡ଼, ଯେଉଁଟା ସମ୍ଭବ ନୁହେଁ, ସେଇଟା ପାଇଁ ଚିନ୍ତା କରିବା ମଧ୍ୟ ଉଚିତ ନୁହେଁ । ଆଚ୍ଛା, ତାଡ଼ି କ'ଣ କରୁଛନ୍ତି ।

: ସେ ଚା’ ପିଇସାରି କୁଆଡ଼େ ବାହାରି ଗଲେଣି ।

: ମୋ କଥା କିଛି ପଚାରୁଥିଲେ କି ?

: ନା । ଖାଲି କହିଗଲେ, ମିତା ଉଠିଲେ କହିଦେବୁ, ମୋର ଫେରିବାକୁ ଟିକିଏ ଡେରି ହେବ ।

ମଧୁମିତା ଉଠୁ ଉଠୁ ପୁଣି ବିଛଣାରେ ଗଡ଼ି ପଡ଼ିଲା । କୋଳରେ ଗୋଟାଏ ତକିଆ ଚାକି, ଆଉଥରେ ମୁହଁ ମାଡ଼ି ଶୋଇବାକୁ ଚେଷ୍ଟା କରି ବୋଧହୁଏ ଶୋଇପାରିଲା ନାହିଁ । ନାଜନିନ୍ ଆଡ଼େ ଚାହିଁ କହିଲା : ତୋ ସ୍ୱାମୀ ତତେ ଖୁବ୍ ଆଦର କରେ, ନାରେ ନାଜ୍ ?

ନାଜନିନ୍ ସ୍ୱାମୀ କଥା ଶୁଣି ଲାଜରେ ଝାଉଁଳି ପଡ଼ିଲା । ମୁହଁ ଖୋଲି କହିପାରିଲା ନାହିଁ କିଛି ।

ମଧୁମିତା ନାଜନିନ୍‌ର ଗୋଟାଏ ହାତ ଧରି, ଶେଯ ଉପରକୁ ଟାଣି ନେଇ କହିଲା : ଆଚ୍ଛା ସତ କହିଲୁ ନାଜ୍, ଯେଉଁଦିନ ତୋ ବର ସହିତ, ପ୍ରଥମ ରାତିରେ ତୋର ଭେଟ ହେଲା, ଆଉ ତୋ ବର ଯେତେବେଳେ ଓଢଣା ଟେକି ତୋ ମୁହଁକୁ ହାତରେ ଧରି ସୋହାଗରେ ଡାକିଲା - ନା ଆ ଜ୍, ସେତେବେଳେ ତୁ ମୁଦା ଆଖିକୁ ଧୀରେ ଧୀରେ ଖୋଲି ଲୁଚେଇ ଲୁଚେଇ ବରର ମୁହଁ ଦେଖୁଦେଖୁ ନିଶ୍ଚୟ ତା’ ଉପରକୁ ଢଳି ପଡ଼ିଥିଲୁ ! !

: ଧେତ୍ ! ତମେ ଭାରି ଇୟେ ଦିଦି । ନିଜେ ବଳେ ଦେଖିବ ଯେ ! କେମିତି ଭିଣେଇ ତମକୁ ଆଦର କରୁଛନ୍ତି, ମୁଁ ଲୁଚି ଲୁଚି କବାଟ ଫାଙ୍କରେ ସବୁ ଦେଖିବି ।

ମଧୁମିତା ନାକରୁ ପୁଣି ଏକ ଦୀର୍ଘଶ୍ୱାସ ବାହାରି ଆସିଲା ।

ଏଥର ସେ ବିଛଣା ଉପରେ ଉଠି ବସି କହିଲା : ଅନେକ ବେଳ ହେଲାଣି ନାଜ୍ । ବାଥରୁମ୍ ସଜାଡ଼ି ଦେ’ । ଆଜି ଅନେକ କାମ ଅଛି ।

ନାଜନିନ୍ କିନ୍ତୁ ଉଠିଲା ନାହିଁ । ଆଳ କରି କହିଲା : ଆଚ୍ଛା ସତ କହିଲ ଦିଦି, ତମର କ’ଣ ବାହା ହେବାକୁ ଇଚ୍ଛା ହୁଏ ନାହିଁ ?

ମଧୁମିତା ରହସ୍ୟ କରିବା ପାଇଁ କହିଲା : ଆମମାନଙ୍କ ପରି ବଡ଼ଲୋକ ଘରେ ପାତ୍ରର ବଡ଼ ଅଭାବ ନାଜ୍ । ତୁ ଗୋଟିଏ ମୋ ପାଇଁ ଠିକ୍ କରିଦେଇ ପାରିବୁ ?

ନାଜନିନ୍ ମଧୁମିତାର କାନ ପାଖକୁ ମୁହଁ ନେଇ କହିଲା : ଚନ୍ଦ୍ରକାନ୍ତବାବୁଙ୍କ ସାଙ୍ଗରେ ତୁମକୁ ଏକା ଖୁବ୍ ମାନନ୍ତା ଦିଦି ।

ହଠାତ୍ ମଧୁମିତାର ସର୍ବାଙ୍ଗରେ କିପରି ଏକ ଶିହରଣ ଖେଳିଗଲା । ସେ ତୀକ୍ଷ୍ଣ

ଦୃଷ୍ଟିରେ ନାଜନିନ୍ ମୁହଁକୁ ଚାହିଁ କହିଲା : ଏତେ ବାବୁ ଥାଉ ଚନ୍ଦ୍ରକାନ୍ତବାବୁଙ୍କ ସହିତ ମୋତେ ହଠାତ୍ ମାନିଲା କାହିଁକି ?

ନାଜନିନ୍ କହିଲା : ସେ କଥା ମୁଁ କହିପାରିବି ନାହିଁ ଦିଦି । ମୋତେ ଯାହା ଭଲ ଦିଶିଲା, ମୁଁ ସେଇଆ କହିଲି । ତମେ କହିଲ ଦିଦି, ତମ ପାଖକୁ ଯେତେ ବାବୁ ଆସନ୍ତି; ସେମାନଙ୍କ ଭିତରୁ ଚନ୍ଦ୍ରକାନ୍ତବାବୁଙ୍କୁ ତମକୁ ନିଶ୍ଚେ ଭଲ ଲାଗିଥିବ ।

ମଧୁମିତା ଆଉ କିଛି ଉତ୍ତର ଦେଲା ନାହିଁ ।

ଏଥର ସେ ଉଠି ଠିଆ ହେଲା । ନାଜନିନ୍‌ର ଚିବୁକ ହଲାଇ ଦେଇ ହସି ହସି କହିଲା : ଚନ୍ଦ୍ରକାନ୍ତ ବାବୁ ଆସିଲେ, ମୁଁ ତୋ କଥା ତାଙ୍କୁ କହିବି; ଦେଖେଁ ସେ କ'ଣ କହୁଛନ୍ତି ! !

ସତରେ ମଧୁମିତା ସେଦିନ ଏତେଟା ଆଶା କରି ପାରି ନ ଥିଲା ।

ଠିକ୍ କଣ୍ଟାଏ କଣ୍ଟାଏ ସାଢ଼େ ତିନିଟାରେ ଚନ୍ଦ୍ରକାନ୍ତ ଆସି ହାଜିର ହୋଇଥିଲା ମଧୁମିତାର ଶୋଇବା ଘରେ ।

ମଧୁମିତା ପାଦଶବ୍ଦ ଶୁଣି ବି ଉଠି ନ ଥିଲା । ସେ ମୋଟେ ଭାବି ପାରି ନ ଥିଲା ଚନ୍ଦ୍ରକାନ୍ତ କଥା ! ସେଇଥିପାଇଁ ଦେହର ଲୁଗାପଟା କିଛି ଠିକ୍ ନ ଥିଲା ମଧୁମିତାର ।

ଚନ୍ଦ୍ରକାନ୍ତ ଅଟକି ଯାଇଥିଲା ଦୁଆର ମୁହଁରେ ।

ଆଗକୁ କି ପଛକୁ ପାଦ ପକାଇ ପାରୁ ନ ଥିଲା ।

ମଧୁମିତାର ଅସଂଯତ ବେଶବାସ । ପଛରେ ନାଜନିନ୍ ଠିଆ ହୋଇଛି ଖଣ୍ଡେ ଦୂରରେ । ଏକ ଲୟରେ ଚାହିଁଛି ସେ ଚନ୍ଦ୍ରକାନ୍ତକୁ ।

ଭାରି ଅଡୁଆରେ ପଡ଼ି ଯାଇଥିଲା ଚନ୍ଦ୍ରକାନ୍ତ ।

ଶେଷରେ ସେ ଘର ଭିତରେ ପ୍ରବେଶ କରିଥିଲା । ଦୁଆର ମୁହଁରୁ ଡାକ ଛାଡ଼ିଥିଲା : ମିତା ! ମିତା ! ମୁଁ ଆସି ଯାଇଛି ମିତା !

ମଧୁମିତା ସ୍ୱପ୍ନ ଦେଖୁନାହିଁ ତ ଆଉ । ଚନ୍ଦ୍ରକାନ୍ତର ଡାକ ଶୁଣି ସେ ଉଠି ବସିଥିଲା । ଇସ୍, ଲାଜରେ ମୁହଁ ଲାଲ ପଡ଼ି ଯାଇଥିଲା ମିତାର । ଦେହରେ ଜାମା ନାହିଁ, ଲୁଗାର ଠିକ୍ ନାହିଁ । ଶାଢ଼ିଟାକୁ ଦିହରେ ଗୁଡ଼େଇ ପକେଇ ସେ ଛୁଟି ପଳାଇଥିଲା ବାଥ୍‌ରୁମ୍‌କୁ ।

ଚନ୍ଦ୍ରକାନ୍ତ ମୁହଁଟା ବି ନଇଁ ପଡ଼ିଥିଲା ଲାଜରେ ।

ସେ କ'ଣ ଏତେଟା ଆଶା କରିଥିଲା ?

ଚନ୍ଦ୍ରକାନ୍ତ ବାଟଯାକ ଭାବି ଭାବି ଆସୁଥିଲା, ଆଜି ଯାଇ ଚମକାଇ ଦେବ

ମିତାକୁ । ସମସ୍ତଙ୍କ ଅଲକ୍ଷ୍ୟରେ, ନିର୍ଦ୍ଧାରିତ ସମୟର ବହୁ ପୂର୍ବରୁ ପହଞ୍ଚି, ପାଦ ଚିପି ଚିପି ସେ ଯାଇ ପହଞ୍ଚିବ ମିତା ରୁମ୍‌ରେ, ଆଖି ଦୁଇଟା ତା'ର ଚାପି ଧରିବ ଦୁଇ ହାତରେ, ମିତା ଯେତେବେଳେ ବହୁ କଷ୍ଟରେ ଚନ୍ଦ୍ରକାନ୍ତର ହାତ ଦୁଇଟାରୁ ନିଜକୁ ମୁକ୍ତ କରିବ, ଆଖି ଆଗରେ ତାକୁ ଦେଖି ନିଶ୍ଚୟ ଆଶ୍ଚର୍ଯ୍ୟ ହେବ ।

କିନ୍ତୁ, ଘଟଣାଟା ଯେ ଭିନ୍ନ ଆକାର ଧାରଣ କଲା ।

ମିତା ଫେରି ଆସିଲେ ତା' ଆଗରେ ସେ ମୁହଁ ଦେଖାଇବ କେମିତି ? ବରଂ ସେ ଆସିବା ପୂର୍ବରୁ ଚନ୍ଦ୍ରକାନ୍ତ ଏଠାରୁ ଚାଲିଯିବା ଭଲ ।

ହଁ, ତାହା ହିଁ ଉଚିତ ।

ଚନ୍ଦ୍ରକାନ୍ତ ଧୀରେ ଧୀରେ ପାଦ ଲେଉଟାଇଲା ପଛକୁ ।

କିନ୍ତୁ ଆଖି ଆଗରେ ତା'ର ଭାସି ଉଠିଲା ମିତାର ସେହି ଶଙ୍ଖଧବଳ ଦେହ । ଉନ୍ନତ ବକ୍ଷୋଜ ।

ନାରୀକୁ ଏତେ ନିକଟରେ କେବେ ଦେଖି ନ ଥିଲା ଚନ୍ଦ୍ରକାନ୍ତ ।

ଲଜ୍ଜା ଆଉ ଉତ୍ତେଜନାରେ ଗୋଡ଼ ଦୁଇଟା ତା'ର ଏଣେତେଣେ ପଡୁଥିଲା ।

ତଳେ ହଠାତ୍ ଦେଖା ହୋଇଗଲା ଶଶୀଶେଖରଙ୍କ ସହିତ ।

ସେ ଚନ୍ଦ୍ରକାନ୍ତର ବିହ୍ୱଳ ଗତିପଥ ଆଡ଼େ ଲକ୍ଷ୍ୟ କରି କହି ଉଠିଲେ : ଆସ ଆସ ୟଙ୍ଗମ୍ୟାନ । ମୁଁ ତୁମରି ପ୍ରତୀକ୍ଷା କରିଥିଲି । ମିତା କହୁଥିଲା, ତମେ ଆଜି ଆସିବ ।

ଚନ୍ଦ୍ରକାନ୍ତ ସର୍ବାଙ୍ଗରୁ ଯେପରି ଏଇ ମୁହୂର୍ତ୍ତରେ ଗମ ଗମ ହୋଇ ଝାଳ ବୋହି ପଡ଼ିବ ବୋଧହୁଏ । ସେ ଶଶୀଶେଖରଙ୍କ ପାଖରେ ଏପରି ଅତର୍କିତ ଧରା ପଡ଼ିଯାଇ ଆହୁରି ଲଜ୍ଜିତ ହୋଇ ପଡ଼ିଥିଲା ।

ବାଧ୍ୟ ଶିଶୁଟି ପରି ଚନ୍ଦ୍ରକାନ୍ତ ଶଶୀଶେଖରଙ୍କ ଲାଇବ୍ରେରୀରେ ପ୍ରବେଶ କଲା ।

ଶଶୀଶେଖର ଗୋଟିଏ ଚେଆର ଉପରେ ବସୁ ବସୁ ପଚାରିଲେ : ମିତା କ'ଣ ନାହିଁ କି ଉପରେ ?

କି ଉତ୍ତର ଦେବ ଚନ୍ଦ୍ରକାନ୍ତ ! କହିଲା : ସେ ବାଥରୁମ୍‌ରେ ଅଛନ୍ତି । ସେଇଥିପାଇଁ...

ଶଶୀଶେଖର କହିଲେ : ସେ ଆସିଯିବ ଏଇକ୍ଷିଣା । ଆଜି ଖରାବେଳଟାଯାକ ସେ ଖାଲି ଉତ୍ପାତ କରି କଟାଇଛି । ଚାକର ପୂଝାରୀ କାହାରିକୁ ଟିକିଏ ଶୁଆଇ ଦେଇ ନାହିଁ । ତମେ ଆସିବ ବୋଲି ତା'ର ଯେ କି ଆନନ୍ଦ, ସେ କଥା ତୁମେ ନିଜ ଆଖିରେ ନ ଦେଖିଲେ ବୁଝିପାରିବ ନାହିଁ, ୟଙ୍ଗମ୍ୟାନ ।

ଶଶୀଶେଖରଙ୍କ ମୁହଁରୁ ମଧୁମିତା ସମ୍ବନ୍ଧରେ ଏପରି କଥା ଶୁଣିବା ପାଇଁ ମୋଟେ ଭଲ ଲାଗୁ ନ ଥିଲା ଚନ୍ଦ୍ରକାନ୍ତଙ୍କୁ ।

ସେ କିନ୍ତୁ କହି ଚାଲିଥିଲେ : କାଲି ମିତା ଆସି ତମର ବହୁତ ପ୍ରଶଂସା କରୁଥିଲା ୟଙ୍ଗମ୍ୟାନ୍ ! ସେ କହୁଥିଲା ତମ ଭଳି ଶାନ୍ତ ସଂଯତ ୟଙ୍ଗମ୍ୟାନ୍ ସେ କ୍ୱଚିତ ଦେଖିଛି ।

ହଠାତ୍ ନାଇନିନ୍ ଭିତରକୁ ପଶି ଆସିବାରୁ ଶଶୀଶେଖର ନୀରବ ହେଲେ । ନାଇନିନ୍ ଚନ୍ଦ୍ରକାନ୍ତ ଆଡ଼କୁ ଚାହିଁ କହିଲା : ଦିଦି ଡାକୁଛନ୍ତି ଆପଣଙ୍କୁ ।

ଚନ୍ଦ୍ରକାନ୍ତ ଶଶୀଶେଖରଙ୍କ ମୁହଁକୁ ଚାହିଁଲା ।

ସେ ଉତ୍ସାହିତ ହେଲା ପରି କହିଲେ : ତୁମେ ଯାଅ ୟଙ୍ଗମ୍ୟାନ୍, ମିତା ତମ ପାଇଁ ଅପେକ୍ଷା କରିଛି । ମୁଁ ବି ଟିକିଏ ବାହାରକୁ ବାହାରିବି । ଫେରିଲେ ତମ ସହିତ ଅନେକ କଥା ଅଛି । ଏକ ନୂତନ ବ୍ୟବସାୟର ପରିକଳ୍ପନା କରିଛି ମୁଁ । ସେ ସମ୍ବନ୍ଧରେ ତମ ସହିତ ଟିକିଏ ଆଲୋଚନା କରିବାର ଅଛି ।

ଚନ୍ଦ୍ରକାନ୍ତ ଏକା ଏକା ମଧୁମିତାର ସମ୍ମୁଖୀନ ହେବା ପାଇଁ ବୋଧହୁଏ ସାହସ କରିପାରୁ ନ ଥିଲା । ସେଇଥିପାଇଁ ସେ ଗୋଟାଏ ସୁଯୋଗ ପାଇ କହିଲା : ଆପଣ ବ୍ୟବସାୟ କଥା ଆଗ କୁହନ୍ତୁ, ମିତା ଦେବୀଙ୍କ ପାଖକୁ ପରେ ଗଲେ ଚଳିବ ।

ଶଶୀଶେଖର ଚଉଧୁରୀ ହସି ଉଠିଲେ । କହିଲେ : ଆଗ ତମେ ମିତା ପାଖକୁ ଯାଅ । ସେ ବହୁତ ବେଳୁ ଅପେକ୍ଷା କରିଛି ତମକୁ ।

ଚନ୍ଦ୍ରକାନ୍ତ ବାଧ ହୋଇ ଏଥର ଉପରକୁ ଉଠିଲା । ପାଦ ଯୋଡ଼ାକ ବାଗ ମାନୁ ନ ଥିଲେ । ମନ ଭିତରେ ଝଡ଼ ଉଠିଥିଲା । ମଧୁମିତା ଯଦି ଅପମାନିତ କରେ ? ଅଥବା ତା'ର ସେଇ ଅସଂଯତ ମୁହୂର୍ତ୍ତ ସମ୍ବନ୍ଧରେ କୌଣସି ପ୍ରଶ୍ନ କରେ ?

କିନ୍ତୁ ମଧୁମିତାକୁ ଦେଖି ମନେ ହେଲା, ଯେପରି କିଛି ହୋଇ ନାହିଁ, କିଛି ଘଟି ନାହିଁ । ସବୁଦିନ ପରି ହସି ହସି ସ୍ୱାଗତ କଲା ଚନ୍ଦ୍ରକାନ୍ତଙ୍କୁ ।

ଚନ୍ଦ୍ରକାନ୍ତ ତଥାପି ସଙ୍କୋଚ କଟେଇ ପାରୁ ନ ଥିଲା । ଚାହିଁ ପାରୁ ନ ଥିଲା ସିଧାସଳଖ ଭାବରେ ।

ମଧୁମିତା ପଚାରିଲା : ସିଧା ଅଫିସରୁ ନିଶ୍ଚୟ ।

: ହଁ । ସଂକ୍ଷିପ୍ତ ଉତ୍ତର ।

: ସେଇ ସକାଳ ନଅଟାରେ ଗଣେଶ ହାତରୁ ଯାହା ଖାଇ କରି ଯାଇଥିଲ, ଅଫିସ୍‌ରେ କପେ ଦି କପ୍ କଫି ଛଡ଼ା ଆଉ କିଛି ପେଟକୁ ଯାଇ ନ ଥିବ ।

ଚନ୍ଦ୍ରକାନ୍ତ ଏଥର ଟିକିଏ ହସିବାକୁ ଚେଷ୍ଟା କରି କହିଲା : ଜୀବନର ଧାରା ଯାହା, ତାକୁ ତ ଆଉ ବଦଳେଇ ହେବ ନାହିଁ ।

: ଭୁଲ କଥା । ମଧୁମିତା ପ୍ରତିବାଦ କଲା । ଯେଉଁମାନଙ୍କ ଜୀବନରେ କେହି ପ୍ରତିବନ୍ଧକ ନ ଥାନ୍ତି, ସେଇମାନଙ୍କ ଜୀବନର ଗୋଟିଏ 'ଧାରା' ଥାଏ । ତମ ଜୀବନରେ କିନ୍ତୁ...

ମଧୁମିତା କଥା ଶେଷ କରି ନ ପାରି ଚନ୍ଦ୍ରକାନ୍ତ ମୁହଁକୁ ଚାହିଁଲା ।

ସେଠାରେ ଆଶା ଭରସା, ଉତ୍ସାହ, ଉଦ୍ଦୀପନା କିଛି ନାହିଁ ।

ମଧୁମିତା କହିଲା : ମୁଁ କ'ଣ ମିଛ କହିଲି ?

ଚନ୍ଦ୍ରକାନ୍ତ କହିଲା : ସେ ସବୁ ତତ୍ତ୍ୱ କଥା କିଛି କୁହନାହିଁ ମିତା । ମୁଁ କିଛି ବୁଝିପାରିବି ନାହିଁ । ତା'ଛଡ଼ା ମନଟାକୁ ଭାରାକ୍ରାନ୍ତ କରିବାକୁ ମୁଁ ଏଠାକୁ ଆସିନାହିଁ ।

ମଧୁମିତା ଆଉ କୌଣସି ଉତ୍ତର ନ ଦେଇ ଉଠି ଠିଆ ହେଲା । ନାଇନିନ୍‌କୁ ଡାକିଲା ସଙ୍ଗରେ । ଦୁହେଁ ବାହାରିଗଲେ ଘର ଭିତରୁ ।

ଚନ୍ଦ୍ରକାନ୍ତ ବୁଝିପାରିଲା ମଧୁମିତା କେଉଁଠିକି ଯାଉଛି ଏବଂ କାହିଁକି ଯାଉଛି । ତା' ମନର କଥା, ପେଟର ଭୋକ ଆଜିଯାଏ ତ କେହି ବୁଝୁ ନ ଥିଲେ !

କିନ୍ତୁ ମୃତ୍ୟୁଞ୍ଜୟ ମଙ୍ଗରାଜ ? ସେ ଯେତେବେଳେ ଜାଣିପାରିବେ ଚନ୍ଦ୍ରକାନ୍ତ ମଧୁମିତା ସହିତ ମିଳାମିଶା କରୁଛି, ଖାଲି ମିଳାମିଶା ନୁହେଁ, ମଧୁମିତାର ପ୍ରେମରେ ପଡ଼ିଛି, ସେତେବେଳେ ସେ କ'ଣ ତାକୁ କ୍ଷମା କରିପାରିବେ ?

କିନ୍ତୁ ମଧୁମିତାର ବା ଦୋଷ କ'ଣ ! ସେ ତ ଚିହ୍ନି ନାହିଁ ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କୁ । ସେ ତ ଜାଣେ ନାହିଁ ଚନ୍ଦ୍ରକାନ୍ତ ମନରେ କାହାର ଆଧିପତ୍ୟ ଅଧିକ ?

ଆଜି ବି ଚିଠି ପାଇଚି ଚନ୍ଦ୍ରକାନ୍ତ । ମୃତ୍ୟୁଞ୍ଜୟ ମଙ୍ଗରାଜ ଲେଖିଛନ୍ତି ସେଇ ପୁରୁଣା କଥା । କଲିକତା ସହର ବଡ଼ ବିଚିତ୍ର । କେତେବେଳେ କେଉଁ ଅତର୍କିତ ମୁହୂର୍ତ୍ତରେ ମଣିଷ ଯେ ପଥହରା ହୁଏ, କେହି କହି ପାରିବନି । ବିଶେଷ କରି ନାରୀମାନେ ହେଉଛନ୍ତି ସେଠାକାର ରାହୁ । ଥରେ ଯଦି ଦୃଷ୍ଟି ପଡ଼ିଚି, କଳେ ବଳେ, କଉଶଳେ ଗ୍ରାସ ନ କରି ଛାଡ଼ିବେ ନାହିଁ ।

ତେଣୁ ଆହୁରି ସାବଧାନରେ ଚଳିବା ପାଇଁ ଲେଖିଛନ୍ତି ମୃତ୍ୟୁଞ୍ଜୟ ମଙ୍ଗରାଜ ।

ମଧୁମିତା ବହୁ ଖାଦ୍ୟସାମଗ୍ରୀ ଗୋଟିଏ ଟ୍ରେ'ରେ ଧରି ଆସୁଥିଲା । ପଛେ ପଛେ ନାଇନିନ୍ ।

ଚନ୍ଦ୍ରକାନ୍ତର ଆଖିର ଚାହାଣି ଆଉ ମନର ଭାବନା ଭିତରେ ଏକ ଦ୍ୱନ୍ଦ୍ୱ ଯୁଦ୍ଧ

ଆରମ୍ଭ କରିଦେଇଥିଲା ମଧୁମିତା । ସେ କିପରି ବିଶ୍ୱାସ କରିବ ନାରୀ ଏକ ରାହୁ, ଆଉ ଚନ୍ଦ୍ରକାନ୍ତ ଆଜି ରାହୁଗ୍ରସ୍ତ !

ଚନ୍ଦ୍ରକାନ୍ତ ବିଶ୍ୱାସ କରିପାରୁ ନ ଥିଲା ଆଖିକୁ । ଅନ୍ୟ ପାଇଁ ଜଣେ ଏତେ କରିପାରେ ! ଏତେ ଖଟିପାରେ ! ! କ'ଣ ବା ମଧୁମିତାର ସ୍ୱାର୍ଥ ! କେବଳ ଆନ୍ତରିକତାକୁ ବାଦ୍ ଦେଲେ ଆଉ ତ କିଛି ଦେଖୁନାହିଁ ସେ ।

ମଧୁମିତା କହିଲା : ମୋ ମୁହଁକୁ ଏପରି ଚାହିଁ ରହିଚ କାହିଁକି ? ପେଟରେ ଭୋକ, ଅଥଚ ମୁହଁରେ ଲାଜ । ଆଜିକାଲିର ଏ ଯେ କେଉଁ ସଭ୍ୟତା ମୁଁ କିଛି ବୁଝିପାରୁ ନାହିଁ ।

ଚନ୍ଦ୍ରକାନ୍ତ ଚଞ୍ଚଳ ହୋଇଉଠିଲା । ସତେ ତ ! ତାକୁ ଯେ ଭୋକ କରୁଛି, ମଧୁମିତା ସେକଥା ମଧ ବୁଝି ସାରିଲାଣି !

ସେ ତରତର ହୋଇ ଉଠି ଠିଆ ହେଲା ।

ମଧୁମିତା ହାତ ଠାରି କହିଦେଲା : ସେଇଟା ମୋ ବାଥ୍‌ରୁମ୍ । ହାତ ମୁହଁ ଧୋଇଆସ । ଆଉ ଡେରି କର ନାହିଁ ।

ଯୁଗ ଯୁଗର କେତେ ଇତିହାସର ଛିନ୍ନ ପୃଷ୍ଠା ପରି, ମଧୁମିତାକୁ ମନେ ହେଉଥିଲା ଚନ୍ଦ୍ରକାନ୍ତର । ହୁଏତ ଜୀବନର ଅତୀତ ପୃଷ୍ଠାରେ କେବେ କେଉଁ ଅତର୍କିତ ମୁହୂର୍ତ୍ତରେ, ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ଅନୁପସ୍ଥିତିରେ, ଚନ୍ଦ୍ରକାନ୍ତର ମାନସପଟରେ ଫୁଟିଥିଲା କେଉଁ ଏକ ଅପରିଚିତାର ଛବି । ସେ ଯେ ମଧୁମିତାର ନୁହେଁ, ଭିକ୍ଟୋରିଆ ଉଦ୍ୟାନର କଅଁଳ ଘାସ ଉପରେ ବସି ଅସ୍ୱୀକାର କରିପାରୁ ନ ଥିଲା ଚନ୍ଦ୍ରକାନ୍ତ ।

ସଞ୍ଜ ନଇଁ ଆସୁଥିଲା । ମଧୁମିତା ଶୋଇଥିଲା ଚନ୍ଦ୍ରକାନ୍ତର କୋଳ ଉପରେ ମୁଣ୍ଡ ରଖି କଅଁଳ ଘାସ ଉପରେ । ଏକ ଲୟରେ ଚନ୍ଦ୍ରକାନ୍ତ ଚାହିଁଥିଲା ମଧୁମିତାର ମୁହଁକୁ ।

ନାରୀ କ'ଣ ପୁରୁଷ ଜୀବନରେ ଏକାନ୍ତ ଅପରିହାର୍ଯ୍ୟ ବସ୍ତୁ ! !

ମଧୁମିତାର ମଧୁର ମୁଖଦର୍ପଣରୁ ଖୋଜୁଥିଲା ସେ ଉତ୍ତର ।

ବେଳେବେଳେ ଆଖି ମେଲି ଚାହୁଁଥିଲା ମଧୁମିତା । ଚନ୍ଦ୍ରକାନ୍ତର ଚାହାଣି ସ୍ଥିର । ହସୁଥିଲା ଅଳ୍ପ ଅଳ୍ପ । ଭଉଁରୀ ଖେଳି ଯାଉଥିଲା ଗାଲରେ । ଚନ୍ଦ୍ରକାନ୍ତ ଧୀରେ ଧୀରେ ହାତ ବୁଲାଇ ଆଣୁଥିଲା । ମିତା ପୁଣି ଆଖି ବୁଜି ଖାଲି ଅନୁଭବ କରୁଥିଲା ଚନ୍ଦ୍ରକାନ୍ତ ଦେହର ଉତ୍ତାପ ।

: ମିତା !

: ଉଁ ।

: ତମେ, ତମେ ଭାରି ସୁନ୍ଦର ମିତା ।

ମଧୁମିତା ପୁଣି ଆଖି ଖୋଲି ଚାହିଁଲା । ସ୍ମିତହସର ଭଉଁରୀ ଖେଳାଇ ବାହୁ ଯୋଡ଼ିକ ଛନ୍ଦି ଦେଲା ଚନ୍ଦ୍ରକାନ୍ତ ବେକରେ ।

: ଏଃ, କଣ କରୁଛ ! ଲୋକେ କ'ଣ ଭାବିବେ ?

: ଲୋକେ ଯାହା ଭାବିବେ ତମେ କ'ଣ ତାହା ଭାବୁ ନାହିଁ ?

: ଛାଡ଼ ମିତା, ହାତ କାଢ଼, ଦେଖିଲଣି କେତୋଟି ଆଖି ଆମରି ଆଡ଼େ ଚାହିଁ ରହିଛି ?

: ରହୁ, ଆଉ ଟିକକ ପରେ ଅନ୍ଧାର ନଇଁ ଆସିବ । କେହି କିଛି ଦେଖିପାରିବେ ନାହିଁ ।

ପୁଣି ନୀରବତା ।

ସେଇ ନୀରବତା ଭିତରେ ଚନ୍ଦ୍ରକାନ୍ତ ନିଜ ଦେହରେ କିପରି ଏକ ଅସ୍ୱାଭାବିକ ଉତ୍ତେଜନା ଅନୁଭବ କରୁଥିଲା । ସେଇଟା ଯେ କାହିଁକି ଓ କେଉଁଥିପାଇଁ, ତାହା ବୁଝି ପାରୁ ନ ଥିଲା ସେ ।

ମଧୁମିତା କହିଲା : ଶୁଣୁଛ ?

: କ'ଣ ?

: ଏଇ ମୁହୂର୍ତ୍ତରେ ମୋର କ'ଣ ମନେ ହେଉଛି ଜାଣ ?

: ଜାଣେ ।

: କ'ଣ କହିଲ ?

: ତମେ ଭାବୁଚ ଡାଡ଼ି ଯଦି ଏଇ ମୁହୂର୍ତ୍ତରେ ଏଠାରେ ଆସି ପହଞ୍ଚି ଯାଆନ୍ତି, ତେବେ ତମେ ଲାଜରେ ମୁହଁ ଦେଖାଇ ପାରିବ ନାହିଁ ।

ମଧୁମିତା ହଠାତ୍ ଉଠି ବସିଲା ଏବଂ ଚନ୍ଦ୍ରକାନ୍ତକୁ ଏପରି ଆଖିରେ ଚାହିଁଲା ଯେ, ଚନ୍ଦ୍ରକାନ୍ତ ତା'ର ଆକସ୍ମିକ ପରିବର୍ତ୍ତନର କାରଣ କିଛି ଖୋଜି ପାଇଲା ନାହିଁ ।

ମଧୁମିତା କହିଲା : ଭଗବାନ ତୁମକୁ କାହିଁକି ପୁରୁଷ କରି ଗଢ଼ିଥିଲେ ?

ଚନ୍ଦ୍ରକାନ୍ତ ଆହୁରି ନରମି ଗଲା । ସେ ଯେ ଏଇ ମୁହୂର୍ତ୍ତରେ କିଛି ଅନ୍ୟାୟ ଆଚରଣ କରି ବସିଛି, ଆଉ ତା'ର ଆଚରଣ ପାଇଁ ମଧୁମିତା ଆଘାତ ପାଇଛି; କିନ୍ତୁ ଅନ୍ୟାୟଟା କେଉଁଠି, କିପରି ହେଲା, ଚନ୍ଦ୍ରକାନ୍ତ ବୁଝିପାରୁ ନ ଥିଲା । ମୁହଁରେ ତା'ର କିପରି ଏକ ଅସ୍ୱାଭାବିକ ଆତଙ୍କ ଫୁଟି ଉଠିଥିଲା ।

ସେ ଦୁର୍ବଳ ସ୍ୱରରେ କହିଲା, : ଯିବା ଚାଲ ମିତା, ରାତି ଅନେକ ହେଲାଣି । ଡାଡ଼ି ତେଣେ ଅପେକ୍ଷା କରିଥିବେ ।

ମଧୁମିତା ଏଥର ନ ହସି ରହିପାରିଲା ନାହିଁ । ଏତେ ବଡ଼ ଗୋଟାଏ କମ୍ପାନୀର ମ୍ୟାନେଜର, ଆଜି ସାମାନ୍ୟ ଜଣେ ଝିଅ ପାଖରେ ପରାଜୟ ସ୍ୱୀକାର କରିଛି । ସନ୍ଧ୍ୟା ସାତଟାରେ ସେ ଅନେକ ରାତିର ଦୁଃସପ୍ନ ଦେଖୁଛି । ତାକୁ ଦୟା ନ କରି ମଧୁମିତା ଆଉ କ'ଣ କରନ୍ତା ! !

ସେ ପୁଣି ପୂର୍ବପରି ଚନ୍ଦ୍ରକାନ୍ତ କୋଳରେ ମୁଣ୍ଡ ରଖି ଶୋଇବାକୁ ଯାଉଥିଲା, କିନ୍ତୁ ଚନ୍ଦ୍ରକାନ୍ତ ଆପତ୍ତି କଲା । କହିଲା : ଫେରିଯିବା ଚାଲ ମିତା । ମୋତେ ଆଜି କାହିଁକି ଭଲ ଲାଗୁ ନାହିଁ । ଦେହଟା କିପରି ଏକ ଉତ୍ତେଜନାରେ ପୂରି ଉଠୁଛି, ମୁଁ କିଛି ବୁଝି ପାରୁ ନାହିଁ ।

: କ'ଣ ଯେ ତମେ ସତେ, ତମକୁ ଚିହ୍ନି ପାରିଲି ନାହିଁ । ସୁନ୍ଦର ସନ୍ଧ୍ୟା, ଏଇ ମନୋରମ ଆକାଶ, ସେପାଖରେ ଫୁଟନ୍ତା ଫୁଲର ମଉଛବ, ଇସ୍ ତମ ଉପରେ ଇମିତି ରାଗ ହେଉଛି ନା...

ଚନ୍ଦ୍ରକାନ୍ତ ମଧୁମିତାର ମୁହଁରେ ହାତ ବୁଲାଇ କହିଲା : ତମକୁ କଷ୍ଟ ହେଉନି ତ ମିତା ! ମୁଁ ଭାବୁଛି...

: ତମେ କିଛିଁ ଭାବନି, ମୋ ପାଇଁ ମୋଟେ ଭାବନି । ନିଜ କଥା ଭାବ; ନିଜ ମନକୁ ପ୍ରସ୍ତୁତ କର । ତମଠାରେ ମୋର କେତେ ଆଶା ଭରସା ଜାଣ ? ତମ ଭଳି ଜଣେ ମଣିଷର ଆଶ୍ରା ପାଇଲେ ମୁଁ ବଞ୍ଚିଯାଆନ୍ତି, ହଁ ବଞ୍ଚି ଯାଆନ୍ତି । ତମେ କ'ଣ ମୋ ପାଇଁ ଏତିକି ତ୍ୟାଗ କରିପାରିବ ନାହିଁ ?

ମଧୁମିତା ଆବେଗରେ ପୁଣି ଚନ୍ଦ୍ରକାନ୍ତ ଗଳାରେ ହାତ ଛନ୍ଦିଲା ।

: ମିତା !

: ଉଁ ।

: ତମେ ମୋତେ ବିଶ୍ୱାସ କରିପାରୁ ନାହଁ ?

: ବିଶ୍ୱାସ ! ନା ବିଶ୍ୱାସ ମୁଁ କରି ପାରୁ ନାହିଁ । କାରଣ ମୋ ସମ୍ବନ୍ଧରେ ସବୁକଥା ଶୁଣିଲେ ତମେ ମୋତେ ଦୂରକୁ ଠେଲି ଦେବ ।

: ସେପରି କାହିଁକି ଭାବୁଛ ମିତା ? ତମେ ମୋଠାରୁ କ'ଣ ଚାହ, ସବୁ ଖୋଲି କରି କୁହ । ମୋ ଜୀବନରେ ଯେଉଁ ରୁଦ୍ଧଦ୍ୱାରଟିରେ କରାଘାତ କରି ତମେ ନୂତନ ଏକ ପଥର ସନ୍ଧାନ ଦେଇଛ, ସେ ପଥ ଯେ ମଣିଷ ଜୀବନର ଏକାନ୍ତ ଅପରିହାର୍ଯ୍ୟ, ତାହା ମୁଁ ଅନୁଭବ କରିଛି । କିନ୍ତୁ ସେଇ ନୂତନ ପଥର ସହଯାତ୍ରୀ ହେବା ପାଇଁ ଆଗେଇ ଆସିପାରିବ ?

ମଧୁମିତା ପ୍ରାଣଟା ଯେପରି ନୂତନ ଏକ ଆଲୋକରେ ଝଲସି ଉଠିଲା । ସେ ଦୁଇ ହାତରେ ଚନ୍ଦ୍ରକାନ୍ତର ଗଳାଟାକୁ ଆହୁରି ଜୋର୍‌ରେ ଭିଡ଼ି ଧରି, ମନେ ହେଉଥିଲା ଯେପରି ଚନ୍ଦ୍ରକାନ୍ତ ସଙ୍ଗରେ ମିଶି ଯାଇପାରିଲେ ବଞ୍ଚି ଯାଆନ୍ତା ।

ଚନ୍ଦ୍ରକାନ୍ତ କିନ୍ତୁ ମଧୁମିତା ପରି ଆତ୍ମହରା ହୋଇ ପାରି ନ ଥିଲା । ସେ ମଧୁମିତାକୁ ସଚେତନ କରେଇ କହିଲା : ଏଥର ଫେରିଯିବା ଚାଲ । ଆସିଲା ବେଳେ ଡାଡ଼ି କହିଥିଲେ ନା, ଆଜି ଆଠଟାବେଳକୁ ତୁମେ ତାଙ୍କ ସହିତ କ୍ଲବକୁ ଯିବ । ଆଗାମୀ ସପ୍ତାହରେ ଇଲେକ୍‌ସନ୍ । ଡାଡ଼ିଙ୍କର ଏଥର ପ୍ରେସିଡେଣ୍ଟ ହେବାର ଚାନ୍‌ସ ଅଛି । ସେଥିପାଇଁ ଟିକିଏ ଖଟିବାକୁ ହେବ ତମକୁ ! କର୍ତ୍ତବ୍ୟରେ ଅବହେଳା କର ନାହିଁ ମିତା ! ଡାଡ଼ି ବିରକ୍ତ ହେବେ ।

ବହୁ ଅନିଚ୍ଛା ସତ୍ତ୍ୱେ ମଧୁମିତା ଉଠି ଠିଆ ହେଲା । ସେ ଯେପରି ଆଜି ଅନ୍ୟ ଏକ ମଣିଷ । ଡାଡ଼ି, କ୍ଲବ, ବନ୍ଧୁ ପରିଜନ, କେହି ଆଜି ତା' ପାଖରେ କୌଣସି ଆକର୍ଷଣ ନୁହଁନ୍ତି । ସେ ତା' ନିଜ ଭିତରେ ନିଜକୁ ଲୀନ କରି ଫରୁଆ ପରି ଛୋଟ ଏକ ପରିବେଶ ଭିତରେ ବଞ୍ଚି ରହିବାକୁ ଚାହେ ଆଉ ସେହି ବଞ୍ଚି ରହିବାର ସାଥୀଟିକୁ ସେ ଯଦି ତା' ଭିତରେ ବଞ୍ଚେଇ ରଖିପାରେ, ସେଇଠି ସେ ସ୍ୱର୍ଗ ରଚନା କରିପାରିବ ।

କିନ୍ତୁ...

ମଧୁମିତା ଆଖିରେ ଲୁହ ଦେଖି ଚନ୍ଦ୍ରକାନ୍ତ ଚଞ୍ଚଳ ହୋଇ ପଡ଼ିଲା । ତେବେ କ'ଣ ମଧୁମିତା ବ୍ୟଥା ପାଇଲା ତା' ପ୍ରସ୍ତାବରେ ? କିଛି ନ ଜାଣି, ନ ଶୁଣି, ମଧୁମିତାର ମନ ନ ବୁଝି ଏପରି ଏକ ପ୍ରସ୍ତାବ କରିବା ଠିକ୍ ହୋଇଛି ଚନ୍ଦ୍ରକାନ୍ତଙ୍କର । ବର୍ତ୍ତମାନ ତା'ର କର୍ତ୍ତବ୍ୟ କ'ଣ ? ସେ ମଧୁମିତା ପାଖରୁ କ୍ଷମା ମାଗିନେବ । ନା ନା, ମଧୁମିତା ତା' ଜୀବନର ରୁଦ୍ଧଦ୍ୱାର ଉନ୍ମୋଚନ କରିଚି ବୋଲି ସେଇ ଯେ ତା'ର ସହଯାତ୍ରୀ ହେବ, ଏହା କିପରି କଥା !

ସତକୁସତ ଚନ୍ଦ୍ରକାନ୍ତ କ୍ଷମା ମାଗିଲା ମଧୁମିତା ପାଖରେ । ସେ ଅନ୍ୟାୟ କରିଛି, ଅବିଚାର କରିଚି । ପକେଟରୁ ରୁମାଲ କାଢ଼ି ଲୁହ ପୋଛିଦେଲା ମଧୁମିତା ଆଖିରୁ । ଆଉ କେବେ କୌଣସିଦିନ ଏପରି ଅନ୍ୟାୟ ପ୍ରସ୍ତାବ କରିବ ନାହିଁ ସେ ମଧୁମିତା ପାଖରେ ।

ଚନ୍ଦ୍ରକାନ୍ତ ମୁହଁରୁ ଏପରି କଥା ଶୁଣି ଆହୁରି ଜୋର୍‌ରେ କାନ୍ଦିବାକୁ ଇଚ୍ଛା ହେଉଥିଲା ମଧୁମିତାର । କିନ୍ତୁ ନିଜକୁ ସେ ସମ୍ବରଣ କରିନେଲା । ଏଡ଼େ ସରଳ, ଏଡ଼େ ନିର୍ବୋଧ ଏଇ ଲୋକଟା । କିପରି ବଞ୍ଚି ରହିବ ଏ ଦୁନିଆରେ ?

ନା ନା, ମଧୁମିତା ପାରିବ ନାହିଁ, ପାରିବ ନାହିଁ ଏପରି ଗୋଟିଏ ଲୋକ ସହିତ ଲୁଚକାଳି ଖେଳି । ବରଂ ସେ ଚନ୍ଦ୍ରକାନ୍ତକୁ ନେଇ ଘର ତୋଳି ପାରିଲେ ଖୁସି ହୁଅନ୍ତା । ବଞ୍ଚି ଯାଇପାରନ୍ତା ବହୁ ଦୁଷ୍ଚିନ୍ତା ଦୁର୍ଭାବନା ଭିତରୁ ।

କିନ୍ତୁ ଡାଡ଼୍. କ୍ଲବ୍ ! ଏମାନେ କ'ଣ ତାକୁ ଏତେ ସହଜରେ ମୁକ୍ତି ଦେବେ ? ତା' ସପ୍ନର ସଂସାର ରଚନା କରିବାକୁ ଅନୁମତି ଦେବେ ?

ମଧୁମିତା ଆଖି ମଳି ଚାହିଁଲା ଚନ୍ଦ୍ରକାନ୍ତ ମୁହଁକୁ ।

ବହୁ ଦୁଷ୍ଚିନ୍ତାର ସମାରୋହ ସେଠାରେ ।

ହସି ଉଠିଲା ମଧୁମିତା । ହାତ ଧରି ଉଠାଇଲା ଚନ୍ଦ୍ରକାନ୍ତକୁ । ଏତେ ଦିନକେ ପାଇଛି ସେ ଗୋଟିଏ ମନର ମଣିଷ । ଚେଷ୍ଟା କରିବ ସେ ଥରେ । ଦେଖାଯିବ ତେଣିକି ଭାଗ୍ୟରେ ଯାହା ଥିବ ।

ଚନ୍ଦ୍ରକାନ୍ତ ଗାଡ଼ି ଚଳାଉ ଚଳାଉ କହିଲା : ମୁଁ ଆଜି ତମ ମନରେ ଖୁବ୍ କଷ୍ଟ ଦେଇଚି ମିତା । ତମେ କାନ୍ଦିବ, ମୁଁ ଜାଣି ନ ଥିଲି ।

ମଧୁମିତା ନୀରବରେ ବାହାରକୁ ଚାହିଁ ବସିଥିଲା ।

ଚନ୍ଦ୍ରକାନ୍ତ ପୁଣି କହିଲା : ଡାଡ଼ି ଜାଣିଲେ ମୋତେ କ'ଣ ଯେ ଭାବିବେ ? ତମ ମୁହଁ ଏବେ ବି ଫୁଲି ଫୁଲି ରହିଚି । ମୋର ଖୁବ୍ ଅନ୍ୟାୟ ହୋଇଛି ମିତା, ମୋତେ କ୍ଷମା କର ।

ମଧୁମିତା ହସିଲା ଟିକିଏ । ସ୍ୱରଟାକୁ ସ୍ୱାଭାବିକ କରିବାକୁ ଚେଷ୍ଟା କରି କହିଲା : ତମେ ଅଯଥାରେ ଗୁଡ଼ାଏ ଏଣୁ ତେଣୁ ଚିନ୍ତା କରୁଚ । ବରଂ ମୋତେ କ୍ଷମା କର । ମୁଁ ତମ ମନରେ ବହୁ ସମ୍ଭାବନା ଜଗେଇ, ଶେଷରେ ବାଟ ଭାଙ୍ଗି ଚାଲିଯାଇଛି ।

: ନା ମିତା, ତମର ଏଇଟା ଅଭିମାନର କଥା ।

ମଧୁମିତା ଏଥର କଣ୍ଠରେ ଦୃଢ଼ତା ଫୁଟାଇ କହିଲା : ସତ କହିଲ କ'ଣ ଚାହ ତୁମେ ? ମୋ ଠାରୁ ତୁମେ କ'ଣ ଆଶା କରୁଛ ?

: ମୁଁ ? ଚନ୍ଦ୍ରକାନ୍ତ ଟିକିଏ ନୀରବ ରହି ଧୀରେ ଧୀରେ କହିଲା, ସତ କହିବାକୁ ଗଲେ ତମଠାରୁ ମୁଁ କ'ଣ ଆଶା କରୁଛି ମୁଁ ଜାଣେ ନାହିଁ, ତମ ପାଇଁ ମୋ ମନରେ ଏତେ ସପ୍ନ କାହିଁକି ତା'ବି ମୁଁ ବୁଝିପାରୁ ନାହିଁ । କିନ୍ତୁ ଯେଉଁଟା ନିଷ୍ଠୁର ସତ୍ୟ, ସେଇଟା ହେଉଛି ତମକୁ ମୋତେ କାହିଁକି ନିହାତି ଭଲ ଲାଗିଛି, ତମ ପାଖେ ପାଖେ ସବୁବେଳେ ରହିବାକୁ ଇଚ୍ଛା ହେଉଛି ।

: ତା' ହେଲେ ବାଧା କେଉଁଠି ? ମଧୁମିତା ପଚାରିଲା ।

: ମୁଁ ତ ବାଧା ବନ୍ଧନ କଥା ଚିନ୍ତା କରୁନାହିଁ ମିତା, ମୁଁ ଚିନ୍ତା କରୁଚି ତମ କଥା । ମୋତେ ତମକୁ ଭଲ ଲାଗୁଚି ବୋଲି ତମକୁ ଯେ ମୋତେ ଭଲ ଲାଗିବ ସେପରି ତ କୌଣସି ନିୟମ ନାହିଁ!

: ତା' ସତ ଯେ, ମୁଁ ମାନିଲି । କିନ୍ତୁ ମୁଁ ଯଦି କହେ ମୋତେ ବି ତମକୁ ଭଲ ଲାଗୁଚି !

: ସତ କହୁଚ ମିତା !

ଚନ୍ଦ୍ରକାନ୍ତ ଆନନ୍ଦରେ ଚିତ୍କାର କରି ଉଠିଲା । ସେ ପ୍ରଥମ ଥର ପାଇଁ ମିତାକୁ ବାଁ ହାତରେ ଟାଣିନେଲା ନିଜ ଆଡ଼କୁ । ଚନ୍ଦ୍ରକାନ୍ତ ଜୀବନରେ ଏପରି ଦୁଃସାହସିକ ରୋମାଞ୍ଚ ଏହି ପ୍ରଥମ ।

ମଧୁମିତା ବୁଝିଲା ଚନ୍ଦ୍ରକାନ୍ତର ମନ । ତା' କାନ ପାଖରେ ମୁହଁ ରଖି ଧୀରେ ଧୀରେ କହିଲା: ଏତେ ଚଞ୍ଚଳ ଘରକୁ ନ ଫେରିଲେ ଚଳନ୍ତା ନାହିଁ ?

: ତା' ହେଲେ କୁଆଡ଼େ ଯିବା ?

: ବିଶାଳ ଏଇ ମୁକ୍ତ ଆକାଶ ତଳେ ତମେ ଆଉ ମୁଁ! ଏମିତି ଘୂରି ବୁଲନ୍ତେ ଜୀବନସାରା । କିଛି ପ୍ରତିବନ୍ଧକ ନ ଥାଆନ୍ତା, କୌଣସି ଦ୍ୱନ୍ଦ୍ୱ ନ ଥାଆନ୍ତା, ଆମେ ଚାଲିଥାଆନ୍ତେ ଆଉ ଚାଲି ଚାଲି ଲୀନ ହୋଇଯାଆନ୍ତେ ଅନନ୍ତ କାଳ ସହିତ । ତମେ ଆଉ ମୁଁ, ଏମିତି ପାଖାପାଖି ବସି ରହି ।

ଚନ୍ଦ୍ରକାନ୍ତର ସମଗ୍ର ଦେହରେ ଏକ ଶିହରଣ ସୃଷ୍ଟି ହୋଇ ଯାଇଥିଲା । ସେ ଆହୁରି ପାଖକୁ ଟାଣିନେଲା ମିତାକୁ । ହାତ ତା'ର ଥରୁଥିଲା, ଗୋଡ଼ ତା'ର କମ୍ପୁଥିଲା । ଶେଷରେ ସେ ଗାଡ଼ିଟାକୁ ଠିଆ କରାଇଦେଲା ରାଜପଥ ଉପରେ । ମଧୁମିତା କାନ ପାଖରେ ମୁହଁ ନେଇ କହିଲା : ସତ କହୁଚ ମିତା ! ସବୁ ଛାଡ଼ି ମୋ ହାତ ଧରି ଅନନ୍ତ ପଥରେ ଆଗେଇ ଯାଇପାରିବ ?

ମଧୁମିତା ଉତ୍ତରରେ ଚନ୍ଦ୍ରକାନ୍ତର କୋଳ ଉପରେ ମୁଣ୍ଡ ରଖି ଶୋଇପଡ଼ିଲା ।

: କେତେ ରାତି ହେବ ଏଇକ୍ଷିଣା ।

: ମୋତେ ନଅଟା, ମଧୁମିତା କହିଲା । ତମେ ଯେ ଏତେ ବ୍ୟସ୍ତ କାହିଁକି ହୁଅ ସବୁବେଳେ, ମୁଁ ବୁଝିପାରେ ନାହିଁ । ନାଚ ଆରମ୍ଭ ହେବାକୁ ଆହୁରି ଅଧଘଣ୍ଟା ବାକି ଅଛି, ଅଥଚ ତମେ ଯିବା ପାଇଁ ବୋଧହୁଏ ପ୍ରସ୍ତୁତ ହେଲଣି ।

: ଅନେକ କାମ ବାକି ପଡ଼ିଛି ମିତା । ବସ୍ ଲେଖିଛନ୍ତି ଏହା ଭିତରେ ସେ ଥରେ କଲିକତା ଅଫିସ୍ ପରିଦର୍ଶନରେ ଆସିପାରନ୍ତି । କେତେବେଳେ ଯେ ସେ ହଠାତ୍ ଆସି ପହଞ୍ଚିଯିବେ କହି ହେବନି ।

: ଆସନ୍ତୁ ! ତମେ ଏତେ ଡରୁଚ କାହିଁକି ? ଅସୁବିଧା ହେଲେ ମୋତେ କହିବ । ମୁଁ ତାଙ୍କୁ କୈଫିୟତ ଦେବି ।

: ତମେ ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କୁ କୈଫୟତ୍ ଦେବ ?

ଚନ୍ଦ୍ରକାନ୍ତ ଏତେ ଜୋର୍‌ରେ ଚିତ୍କାର କରି ଉଠିଲା ଯେ, ପାଖ ଲୋକେ ଗୋଟାଏ କିଛି ବିସ୍ଫୋରଣ ହେଲା ଭାବି ଚମକି ଉଠିଲେ । କିନ୍ତୁ ଚନ୍ଦ୍ରକାନ୍ତ ମୁହଁରେ ମଧୁମିତା କିପରି ଏକ ଆତଙ୍କର ଛାୟା ଦେଖିଲା । ଚନ୍ଦ୍ରକାନ୍ତ ଉଠି ଠିଆ ହେଲା । ମଧୁମିତା ଯେତେଥର ଟାଣି ବସାଇବାକୁ ଚେଷ୍ଟା କଲା, ଚନ୍ଦ୍ରକାନ୍ତ କିନ୍ତୁ ଆଉ ସ୍ଥିର ହୋଇ ବସି ପାରିଲା ନାହିଁ ।

: ଆରେ, ହଠାତ୍ ତମର ହେଲା କ'ଣ ? ଏପରି ଚଞ୍ଚଳ ହୋଇ ଉଠିଲ କାହିଁକି ?

ଚନ୍ଦ୍ରକାନ୍ତ କେଜାଣି କାହିଁକି ଆଉ ସେଠାରେ ବସି ରହି ନାଚ ଦେଖିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପ୍ରସ୍ତୁତ ନ ଥିଲା । ମଧୁମିତା ଉଠି ଠିଆ ହେଲା । ସେଦିନର ସେହି ଭିକ୍ଟୋରିଆ ମଧୁର ସଂଧ୍ୟାଟିଠାରୁ ଚନ୍ଦ୍ରକାନ୍ତକୁ କେବେ ସେ ଏତେ ଉଦ୍‌ବିଗ୍ନ ହେବାର ଦେଖି ନ ଥିଲା । ସେଇଦିନଠାରୁ ପ୍ରତିଦିନ ଅଫିସ ପରେ ସେ ଛୁଟି ଆସୁଥିଲା ମଧୁମିତା ପାଖକୁ । ଆଜିକାଲି ମଧୁମିତାର ହାତ ତିଆରି ଖାଦ୍ୟ ଛଡ଼ା ବଜାରର କିଛି ଖାଦ୍ୟ ପଦାର୍ଥ ଭଲ ଲାଗୁ ନ ଥିଲା ତାକୁ ।

ଆଜି ମଧୁମିତାର ବିଶେଷ ଆଗ୍ରହ ଭାଙ୍ଗି ନ ପାରି ସେମାନେ ଆସିଥିଲେ ଏଇ ହୋଟେଲକୁ । କିନ୍ତୁ ହଠାତ୍ ଚନ୍ଦ୍ରକାନ୍ତର ଏପରି ପରିବର୍ତ୍ତନରେ ବିଚଳିତ ହୋଇ ପଡ଼ିଥିଲା ମଧୁମିତା ।

ଯେଉଁଥିପାଇଁ ସେମାନେ ଆସିଥିଲେ, ଯେଉଁ ନର୍ତ୍ତକୀର ସୁନାମ ଶୁଣି ମଧୁମିତା ଛୁଟି ଆସିଥିଲା ଏଠାକୁ, ତା'ର ନୃତ୍ୟ ପ୍ରଦର୍ଶନର ବହୁ ପୂର୍ବରୁ, ସେମାନେ ଯଦି ଫେରି ଯାଆନ୍ତି, ତା'ହେଲେ ଏତେ ପଇସା ଖର୍ଚ୍ଚ କରି ଏଠାକୁ ଆସିଥିଲେ କାହିଁକି ?

ଚନ୍ଦ୍ରକାନ୍ତ ମଧୁମିତାର ନୃତ୍ୟ ଦେଖିବା ଆଗ୍ରହ ଭାଙ୍ଗି ନ ପାରି କହିଲା : ବରଂ ତୁମେ ଥାଅ ମିତା, ନୃତ୍ୟ ଶେଷରେ ମୁଁ ଆସି ପୁଣି ତମକୁ ସାଙ୍ଗରେ ନେଇଯିବି । ଛାଡ଼ି ଦେଇ ଆସିବି ଘରେ । ମୋର କିନ୍ତୁ ଗୋଟାଏ ଜରୁରୀ କାମ କଥା ମନେ ପଡ଼ିଗଲା । ମୋତେ ସେଇଟା କରିବାକୁ ହିଁ ହେବ ।

ଶେଷରେ ମଧୁମିତା ଚନ୍ଦ୍ରକାନ୍ତ କଥାରେ ରାଜି ହୋଇଗଲା ।

ମଧୁମିତା ହୋଟେଲରେ ରହିଗଲା ନାଚ ଦେଖିବା ପାଇଁ । ଚନ୍ଦ୍ରକାନ୍ତ ଚାଲିଗଲା ଜରୁରୀ କାମ ଶେଷ କରି ଆସିବା ପାଇଁ ।

କିନ୍ତୁ ଯେତେବେଳେ ନୃତ୍ୟ ଆରମ୍ଭ ହୋଇଗଲା, ନର୍ତ୍ତକୀ ସହିତ ଯେଉଁ ଜଣକ ଗୋଟାଏ ଜୋକରର ପୋଷାକ ପିନ୍ଧି ରଙ୍ଗମଞ୍ଚରେ ଅବିର୍ଭାବ ହେଲା, ସେ ଜଣକ କିଏ ? ମନେହେଲା ଯେପରି ମଧୁମିତାର ସେ ଖୁବ୍ ପରିଚିତ ।

ହଁ, ଦେବନାଥ ତ ! ହୋଟେଲର ମ୍ୟାନେଜର ଆନାଉନ୍‌ସ କଲେ ନର୍ତ୍ତକୀ ସହିତ ଦେବନାଥର ନାମ ।

ମଧୁମିତା କିନ୍ତୁ ବିଶ୍ୱାସ କରିପାରୁ ନ ଥିଲା ।

ଦେବନାଥ କ'ଣ ଦୁଇଟା ବର୍ଷ ଭିତରେ ଏତେ ତଳକୁ ଓହ୍ଲେଇ ଆସିଛି ? ଗରିଆହଟାର ଦୁଇ ଦୁଇଟା କୋଠା ମାଲିକ, ବଡ଼ ବଜାରର ଏକ ବଡ଼ ଲୁଗା ବ୍ୟବସାୟୀ, ଶେଷରେ ସେ ଆସି ଜୀବିକା ନିର୍ବାହ କରିବା ପାଇଁ ଗାଲରେ କାଳି ବୋଲି ରଙ୍ଗମଞ୍ଚରେ ଜୋକର ସାଜିଲା ?

ନା, ମଧୁମିତା ଚନ୍ଦ୍ରକାନ୍ତ ସଙ୍ଗରେ ଫେରି ଯାଇଥିଲେ ଭଲ ହୋଇଥାଆନ୍ତା । ସେ ଏକବାରେ ଭୁଲି ଯାଇଥିଲା ଦେବନାଥର କଥା । ସପ୍ନରେ ବି କେବେ ଭାସି ଉଠି ନ ଥିଲା ଦେବନାଥର ମୁହଁ, କିନ୍ତୁ ଆଜି ଦୁଇ ଅଢ଼େଇ ବର୍ଷ ପରେ, ହଠାତ୍...

ମଧୁମିତାର ମନେହେଲା, ଦେବନାଥ ଯେପରି ରଙ୍ଗମଞ୍ଚ ଉପରୁ ତା'ରି ଆଡ଼କୁ ଏକ ଦୃଷ୍ଟିରେ ଅନାଇ ରହିଛି । ତା'ପରେ ମନେ ହେଲା, ଧୀରେ ଦେବନାଥର ଆଖି ଦୁଇଟା ଯେପରି ବିସ୍ଫାରିତ ହୋଇ ଉଠୁଚି ।

ମଧୁମିତା ଚଞ୍ଚଳ ହୋଇ ଉଠିଲା । ରଙ୍ଗମଞ୍ଚର ନୃତ୍ୟରତା ନର୍ତ୍ତକୀ ଆଡ଼େ ସେ ଚାହିଁ ପାରୁ ନ ଥିଲା । ଦେବନାଥ ଆଉ ଦେବନାଥ !

ଦେବନାଥ ତା' ଜୀବନର ଆଉ ଏକ ଅଧ୍ୟାୟ ।

ମଧୁମିତା ସ୍ଥିର ହୋଇ ବସି ରହିପାରିଲା ନାହିଁ । ଛୁଟି ପଳାଇଲା ସେଠାରୁ । ସିଧା ବାର୍‌କୁ ଯାଇ ଗୋଟିଏ କୋଣରେ ବସିଲା ଚୁପ୍‌ଚାପ୍ ।

ବୟକୁ କହିଲା ଗ୍ଲାସ ଭରି ପାଣି ଆଣିବା ପାଇଁ ।

ଦେବନାଥ ! ଦେବନାଥ ! !

ଦେବନାଥ ସହିତ ତା'ର ପ୍ରଥମ ପରିଚୟ ହୋଇଥିଲା ପ୍ରବଳ ଏକ ଉତ୍ତେଜନା ଭିତରେ ।

ବେଳ ସେତେବେଳକୁ କେତେଟା ହେବ ? ଏଇ ତିନିଟା କି ଚାରିଟା । ମଧୁମିତା ଡାଡ଼ିଙ୍କ ସହିତ ବୁଲି ଯାଇଥିଲା ଇଡ଼େନ ଗାର୍ଡେନ୍‌କୁ । ସେଦ୍ଦିନ ଭାରି ଇଚ୍ଛା ହେଲା

ତା'ର ନୌକା ବିହାର କରିବା ପାଇଁ । ଡାଡ଼ି ବି ରାଜି ହୋଇଗଲେ । ସେମାନେ ଗୋଟାଏ ନୌକା ଭଡ଼ା ନେଲେ ଘଣ୍ଟାକ ପାଇଁ ।

ମଧୁମିତା ଆଉ ଡାଡ଼ି ।

ଦୁଇଜଣ ଯାକ ଉଠିବସିଲେ ନୌକାରେ । କିନ୍ତୁ ନୌକା ଚଳେଇବ କିଏ ? ମଧୁମିତା ନୌକାର ଆହୁଲା ପକାଇବାକୁ ଚେଷ୍ଟା କରି ବ୍ୟର୍ଥ ହେଲା । ଡାଡ଼ି ତ କୌଣସି ଉତ୍ସାହ ପ୍ରକାଶ କଲେ ନାହିଁ । କ'ଣ ଆଉ କରନ୍ତେ ସେମାନେ ? ଶେଷରେ ନୌକାରୁ ଓହ୍ଲେଇ ଆସିବା ଛଡ଼ା ଉପାୟ ନ ଥିଲା ।

ସେମାନଙ୍କର ଏଇ ବିକଳ ଅବସ୍ଥା କୂଳରେ ଠିଆ ହୋଇ ଲକ୍ଷ୍ୟ କରୁଥିଲା ଜଣେ ତରୁଣ । ମଧୁମିତାର ଆକୁଳ ଆଖି ଦୁଇଟା ତା' ପ୍ରାଣରେ କିପରି ଏକ କରୁଣା ସଞ୍ଚାର କରିଥିଲା । ନୌକା କୂଳରେ ଲଗାଇ ସେମାନେ ଓହ୍ଲାଇ ଆସିବାବେଳେ ତରୁଣଟି ଶଶୀଶେଖର ଚଉଧୁରୀଙ୍କ ପାଖକୁ ଆଗେଇ ଯାଇ କହିଲା : ଆପଣ ଯଦି ଅନୁମତି ଦିଅନ୍ତେ, ତା'ହେଲେ ମୁଁ ନୌକା ଚାଳନାର ଦାୟିତ୍ୱ ନିଅନ୍ତି । ଲେକ୍ ନୌକା ଚାଳନା ପ୍ରତିଯୋଗିତାରେ ମୁଁ ଏ ବର୍ଷ ପ୍ରଥମ ସ୍ଥାନ ଅଧିକାର କରିଛି ।

ଶଶୀଶେଖର କୂଳକୁ ଓହ୍ଲାଇ ଆସିଲେ ବି ମଧୁମିତା ସେତେବେଳ ଯାଏ ନୌକାରେ ବସି ବୋଧହୁଏ ଆଉଥରେ ଶେଷ ଚେଷ୍ଟା କରିବା ପାଇଁ ପ୍ରସ୍ତୁତ ହେଉଥିଲା । ସେ ଅପରିଚିତ ଏହି ତରୁଣଟି କଥା ଶୁଣି ମୁହଁ ଟେକି ଚାହିଁଲା ଥରେ, ଡାଡ଼ି ବି ଚାହିଁଥିଲେ ମଧୁମିତା ମୁହଁକୁ ।

ତା'ପରେ ତରୁଣଟିକୁ କହିଲେ : ତମର ଏହି ଅଯାଚିତ ଦୟାର କଥା ଆମର ବହୁ ଦିନଯାଏ ମନେ ରହିବ ୟଙ୍ଗମ୍ୟାନ ।

ଶଶୀଶେଖର ସେହି ତରୁଣଟିର ହାତ ଧରି ପୁଣି ନୌକା ଉପରକୁ ଉଠିପଡ଼ିଲେ ।

ମଧୁମିତା ମୁହଁରେ ଆଶାର ଆଲୋକ ଜଳି ଉଠିଲା ।

ତରୁଣଟିର ଶକ୍ତ ମୁଠାର ଆହୁଲାରେ ନୌକା ଛୁଟିଲା ତୀର ବେଗରେ । ସେଦିନ ଅନ୍ୟ ଯେଉଁମାନେ ନୌକା ବିହାର କରୁଥିଲେ ଇଡ଼େନ୍‌ରେ, ସମସ୍ତଙ୍କଠାରୁ ଦ୍ରୁତତର ଭାବରେ ଛୁଟି ଚାଲିଥିଲା ମଧୁମିତାଙ୍କ ନୌକା । କି ଆନନ୍ଦ, କି ଉତ୍ତେଜନା ସେଦିନ ମଧୁମିତା ପ୍ରାଣରେ !

ଶଶୀଶେଖର ସେହି ଫାଙ୍କରେ ତରୁଣଟିର ପରିଚୟ ପଚାରିଥିଲେ ।

ତରୁଣଟି ଉତ୍ତର ଦେଇଥିଲା : ମୋ ନାଁ ଦେବନାଥ ରାୟ । ତାଙ୍କର ଗରିଆହଟାରେ ଦୁଇଟା ବିରାଟ କୋଠା ଅଛି । ବଡ଼ ବଜାରରେ ବାପାଙ୍କର ଲୁଗା

ବ୍ୟବସାୟ ଅଛି । ଦେବନାଥ ବି.କମ୍. ପଢ଼େ ସିଟିରେ । ବାପା ବର୍ତ୍ତମାନ ଅବସର ନେବାକୁ ଚାହାନ୍ତି । ଦେବନାଥ ପରୀକ୍ଷାଟା ଦେଇ ସାରି ବ୍ୟବସାୟକୁ ଓହ୍ଲେଇ ପଡ଼ିବ ସ୍ଥିର କରିଛି ।

ସେଦିନ ବହୁ ଆନନ୍ଦ ଓ ଉତ୍ତେଜନା ଭିତର ଦେଇ ନୌକାବିହାର ଶେଷ ହୋଇଥିଲା । ମଧୁମିତାକୁ ଭାରି ଭଲ ଲାଗିଥିଲା ଦେବନାଥର ସ୍ପୋର୍ଟସମ୍ୟାନ ସ୍ପିରିଟ୍ ।

ବିଦାୟ ବେଳେ ଦେବନାଥ କହିଥିଲା ଇଡ଼େନ୍‌ରେ ନୌକା ବିହାରର ପରିସର ଅତି ସଂକୀର୍ଣ୍ଣ । ସେଇଥିପାଇଁ ମୋଟେ ଉତ୍ସାହ ମିଳେ ନାହିଁ । ପ୍ରକୃତରେ ଉତ୍ତେଜନା ଥାଏ ଲେକ୍‌ରେ । ଆପଣ ଯଦି କେବେ ଇଚ୍ଛା କରନ୍ତି ମୋତେ ଖବର ଦେବେ । ମୁଁ ଲେକ୍ କ୍ଲବର ମେମ୍ବର । ଦେଖିବେ ସେଠାରେ ନୌକା ପ୍ରତିଯୋଗିତାରେ କେତେ ଉତ୍ତେଜନା !

ମଧୁମିତା କିଛି କହିବା ଆଗରୁ ଶଶୀଶେଖରଙ୍କ ଉତ୍ସାହ ଦୁଇଗୁଣ ବଢ଼ି ଯାଇଥିଲା । ସେ କହିଲେ : ମିତା ନିଶ୍ଚୟ ଯିବ ୟଙ୍ଗମ୍ୟାନ୍ । ତମେ ଆସି ତାକୁ ଦିନେ ନେଇଯିବ ସାଙ୍ଗରେ । ଧାଁ ଦଉଡ଼, ନାଚ କୁଦ କରିବା ପାଇଁ ତା'ର ଯେପରି ଜନ୍ମ ହୋଇଚି । ସେ ନିଶ୍ଚିନ୍ତରେ ମୋଟେ ବସିପାରେ ନାହିଁ ମୁହୂର୍ତ୍ତଟାଏ ବି ।

ଦେବନାଥ ଚାହିଁଲା ମଧୁମିତାର ମୁହଁକୁ ।

କୃତଜ୍ଞତାରେ ଯେପରି ନଇଁ ପଡ଼ିଥିଲା ମଧୁମିତାର ଚାହାଣି ।

ଦେବନାଥ ପଚାରିଲା : ଆଗାମୀ ରବିବାର ଆପଣଙ୍କର ସମୟ ହବ ମିତା ଦେବୀ ?

ଏଥର ବି ଉତ୍ତର ଦେଲେ ଶଶୀଶେଖର : ହଁ ହଁ ୟଙ୍ଗମ୍ୟାନ୍ । ତା'ର ସମୟ ନ ହେଲେ ବି ମୁଁ ସମୟ କରିଦେବି । ତମେ ରବିବାର ଦିନ ଆସ ଆମ ଘରକୁ । ସେଦିନ ନିମନ୍ତ୍ରଣ ରହିଲା ଆମ ଏଠାରେ । ତମେ ଜାଣିନ ୟଙ୍ଗମ୍ୟାନ୍, ମିତାକୁ କିନ୍ତୁ ସୁନ୍ଦର ରାନ୍ଧି ଆସେ । ତା' ହାତର ରନ୍ଧା ଦିନେ ଖାଇଲେ, ତମୁକୁ ବାରମ୍ବାର ଛୁଟିଆସିବାକୁ ହେବ ଆମ ଘରକୁ ।

ଡାଡ଼ିଙ୍କ ପ୍ରଶଂସାରେ ମଧୁମିତାର ମୁଣ୍ଡ ନଇଁ ପଡ଼ିଥିଲା ଆହୁରି । ତଳେଇ ତଳେଇ ସେ ଚାହିଁଥିଲା ଦେବନାଥ ମୁହଁକୁ । ଦେବନାଥ ମୁହଁରେ ପ୍ରସନ୍ନ ହାସ୍ୟରେଖା ମଧୁମିତା ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରିଥିଲା ।

ଦେବନାଥ ଶଶୀଶେଖରଙ୍କ ସହିତ କରମର୍ଦ୍ଦନ କରିଥିଲା ଆସି । କହିଥିଲା : ତା'ହେଲେ ଏଇ କଥା ରହିଲା । ଆପଣ ରବିବାର ଦିନ ପ୍ରସ୍ତୁତ ହୋଇଥିବେ ମିତା ଦେବୀ ।

ମଧୁମିତା ଆଡ଼କୁ ହାତ ବଢ଼ାଇଲା ଦେବନାଥ । ବୋଧହୁଏ କରମର୍ଦ୍ଦନ ଆଶାରେ ।

କିନ୍ତୁ ମଧୁମିତାର ବିନମ୍ର ନମସ୍କାର ଦେବନାଥକୁ ଲଜ୍ଜାରେ ପକାଇ ଦେଲା ।

ରବିବାର ଦିନ ଠିକ୍ ବାରଟା ବେଳକୁ ଦେବନାଥର ଗାଡ଼ି ଆସି ଶଶୀଶେଖରଙ୍କ ଦୁଆରେ ଭିଡ଼ିଥିଲା ।

ଶଶୀଶେଖର ଦେବନାଥ ସହିତ କରମର୍ଦ୍ଦନ କରି କହିଥିଲେ : ମୁଁ ତୁମକୁ ଅପେକ୍ଷା କରି ବସି ରହିଛି ୟଙ୍ଗମ୍ୟାନ୍ । ତୁମକୁ ଆହୁରି ଆଗରୁ ଆଶା କରୁଥିଲି । କାରଣ ବୟସ ବଢ଼ିବା ସଙ୍ଗେ ଅଭ୍ୟାସଟା ବଡ଼ ଖରାପ ହୋଇଯାଇଛି । ନୀରବରେ ପାଟି ବୁଜି ବସି ରହିଲେ, ଅତୀତର ଦିନଗୁଡ଼ାକ ଭିଡ଼ ଜମଉଛନ୍ତି ଆସି ଆଖି ଆଗରେ । ସେଇଥିପାଇଁ ସବୁବେଳେ ବ୍ୟସ୍ତ ରହିବାକୁ ମୋର ଇଚ୍ଛା ।

ଦେବନାଥ କହିଲା : ସେ କଥା ଜାଣିଥିଲେ ମୁଁ ଦଶଟାରୁ ଆସି ଆପଣଙ୍କୁ ବିରକ୍ତ କରିପାରିଥାଆନ୍ତି । ମନେ ରହିଲା । ଏଣିକି ସମୟ ପାଇଲେ ଧାଇଁ ଆସିବି ।

ଶଶୀଶେଖର ଦେବନାଥ ଚାହାଣିର ଅର୍ଥ ବୁଝିପାରି କହିଲେ : ମିତା ଆଜି ଭାରି ବ୍ୟସ୍ତ । ସକାଳ ଛଅଟାରୁ ଉଠି ସେ କାମ ଆରମ୍ଭ କରିଦେଇଛି । କେହି ଜଣେ ଅତିଥି ଘରକୁ ଆସିଲେ, ସେ ଆଉ ସ୍ଥିର ହୋଇ ବସିପାରେ ନାହିଁ । ତେବେ ମୁଁ ତାକୁ ଡାକି ପଠାଉଚି ।

ଦେବନାଥ ଶଶୀଶେଖରଙ୍କୁ କହିଲା : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମିତା ଦେବୀଙ୍କ ପାଇଁ ମୁଁ ମୋଟେ ଚିନ୍ତିତ ନୁହେଁ । ତାଙ୍କ କାମ ଶେଷ ହେଲେ ସେ ବଳେ ଆସିବେ ।

: ତଥାପି... ଆରେ ତମେ ବସ ୟଙ୍ଗମ୍ୟାନ୍ । ଠିଆ ହୋଇ ରହିଲ ଯେ !

: ହଁ, ମୁଁ ବସୁଛି । କିନ୍ତୁ ଆପଣଙ୍କର ଏଇ ଲାଇବ୍ରେରୀ ରୁମ୍‌ଟି ଭିତରେ ପଶିଲେ କାହାର ଚୁପ୍‌ଚାପ୍ ବସିବାକୁ ଇଚ୍ଛା ହେବ କହିଲେ ? ଏତେ ଲୋଭନୀୟ ପୁସ୍ତକ । ଏତେ ଅମୂଲ୍ୟ ତୈଳଚିତ୍ର । ଚାରିଆଡ଼କୁ ଯେ ଆପେ ଆପେ ଆଖି ଛୁଟିଯାଏ ।

ଶଶୀଶେଖର ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗ କଲେ । ଯେପରି ସେ ଖୁବ୍ ମର୍ମାହତ । ଦେବନାଥର କଥା ତାଙ୍କ ପ୍ରାଣରେ ସଂଘାତ ସୃଷ୍ଟି କରିଛି !

ଦେବନାଥ ଆଗେଇ ଗଲା । ସଦାହାସ୍ୟମୟ ମୁଖ ଉପରେ ହଠାତ୍ କଳାମେଘର ଆବିର୍ଭାବ ଦେଖି ଦେବନାଥ କାରଣ ପଚାରିଲା ।

: ସେ କିଛି ନୁହେଁ ୟଙ୍ଗମ୍ୟାନ୍ । ଓଲ୍ଡ୍ ଏଜ୍‌ରେ ମଣିଷକୁ ବହୁ ଦୁର୍ଭାବନା ଆଘାତ ଦିଏ । ଅପରାଧଟା ତମର ନୁହେଁ । ଏଥର ତମ ଜୀବନର ଦୁଇଟି ଗୋଟିଏ ଇଣ୍ଟରେଷ୍ଟିଂ ଘଟଣା କୁହ ୟଙ୍ଗମ୍ୟାନ୍, ମୁଁ ଟିକିଏ ସାନ୍ତ୍ୱନା ପାଏ । ମୁହୂର୍ତ୍ତକ ପାଇଁ ମୋର ୟଙ୍ଗଏଜ୍‌କୁ ଛୁଟିଯାଏ ।

ଦେବନାଥ କିନ୍ତୁ ଶଶୀଶେଖରଙ୍କ ମନର ଆଘାତକୁ ଆବିଷ୍କାର କରିବା ପାଇଁ ଚଞ୍ଚଳ ହୋଇ ଉଠିଥିଲା । ସେ ତ କହିଥିଲା ଏଇ ଲାଇବ୍ରେରୀର ପୁସ୍ତକ ଆଉ ତୈଳ ଚିତ୍ରର କଥା । ଏଥିରେ ଶଶୀଶେଖରଙ୍କର ଆଘାତ ପାଇବାର ଥିଲା କ'ଣ ?

ଶଶୀଶେଖର ଆର୍ଦ୍ର କଣ୍ଠରେ କହିଥିଲେ : ମୋର ବ୍ୟଥା ଏଇ ଲାଇବ୍ରେରୀ ପାଇଁ ନୁହେଁ କିମ୍ବା ତୈଳଚିତ୍ର ପାଇଁ ନୁହେଁ । ମୋର ବ୍ୟଥା ଯେଉଁଠି, ତମେ ବୁଝିପାରିବ ନାହିଁ ୟଙ୍ଗମ୍ୟାନ୍ । ତମର ବୟସ ବଢ଼ିଲେ ତମେ ବାପା ହେବାର ସୌଭାଗ୍ୟ ଅର୍ଜନ କଲେ ସେତେବେଳେ ଯାଇ ବୁଝିବ ମୋ କଥା । କିନ୍ତୁ ଭଗବାନଙ୍କ ପାଖରେ ମୁଁ ସତତ ପ୍ରାର୍ଥନା କରୁଚି, ସେ ଯେପରି ମୋ ଶତ୍ରୁକୁ ବି ମୋ ପରି ଦୁଃଖ ନ ଦିଅନ୍ତୁ ।

ଶଶୀଶେଖର ରୁମାଲରେ ଆଖି ପୋଛିଲେ ।

ଦେବନାଥର ଇଚ୍ଛା ନ ଥିଲା ଆଉ ଶଶୀଶେଖରଙ୍କ ଅତୀତକୁ ଘାଣ୍ଟି ଚକଟି ତାଙ୍କ ମନର ସ୍ମୃତିକୋଷରେ ଆଘାତ କରିବା ପାଇଁ । କିନ୍ତୁ ଶଶୀଶେଖର ନିଜେ ଆରମ୍ଭ କରିଦେଇଥିଲେ: ଜାଣ ୟଙ୍ଗମ୍ୟାନ୍ ! ଏଇ ଯେ ଏତେ ବଡ଼ ବିରାଟ ଲାଇବ୍ରେରୀ ଦେଖୁଛ, ମୋ ଆଇନ୍ ବ୍ୟବସାୟରେ ଏତେ ସବୁ ପୁସ୍ତକର କୌଣସି ଆବଶ୍ୟକତା ନ ଥିଲା । ଏଥିରେ ବହୁ ସଂଖ୍ୟକ ବହି ଆଜିଯାଏ କେହି ସ୍ପର୍ଶ ବି କରି ନାହାନ୍ତି । କିନ୍ତୁ ତଥାପି ଏହିପରି ଏକ ବିଶାଳ ଲାଇବ୍ରେରୀ କରିବା ପାଇଁ ମୁଁ ବାଧ୍ୟ ହୋଇଥିଲି । ଅବଶ୍ୟ ଏହା ପଛରେ ଜଣକର ପ୍ରେରଣା ଥିଲା । ଆଉ ଏଇ ଲାଇବ୍ରେରୀ ଗଠନ ମୂଳରେ ମଧ୍ୟ ଗୋଟାଏ ଉଦ୍ଦେଶ୍ୟ ଥିଲା ।

ମାନିନୀ, ମାନି, ମିସେସ୍ ଚଉଧୁରୀ ମାନେ ମୋର ସ୍ତ୍ରୀ । ଯାହାଙ୍କ ସମ୍ବନ୍ଧରେ ତମେ କିଛି ଜାଣ ନାହିଁ ୟଙ୍ଗମ୍ୟାନ୍ । ସେ ଆଜି ଏ ଇହଜଗତରେ ନାହାନ୍ତି । ତାଙ୍କ ଆତ୍ମାର ସଦ୍‌ଗତି ପାଇଁ ମୁଁ ଏବେ ମଧ୍ୟ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଚି । ତାଙ୍କ ପରି ମହିୟସୀମାନେ ଏହି ଜଗତକୁ ଯଦି ବହୁ ସଂଖ୍ୟାରେ ଆସନ୍ତେ, ତେବେ ପୃଥିବୀରୁ ଦୁଃଖ, ଶୋକ ସବୁ ଘୁଞ୍ଚି ଯାଆନ୍ତା ।

ଶଶୀଶେଖର ଟିକିଏ ନୀରବ ହେଲେ । ଆଖି ଦୁଇଟା ତାଙ୍କର ଛଳଛଳ ହୋଇ ଆସିଲା । ସେ ପୁଣି ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ : ଏହି ବିଶାଳ ଲାଇବ୍ରେରୀ ଗଠନ ମୂଳରେ ଥିଲା ତାଙ୍କରି ପ୍ରେରଣା । କିନ୍ତୁ ଯାହା ପାଇଁ ସେ ଏଇ ବିରାଟ ଲାଇବ୍ରେରୀର ପରିକଳ୍ପନା କରିଥିଲେ, ସେ ବି ଆଜି ନାହିଁ । ସେ ଥିଲେ ତା'ର ବୟସ ଆଜି ତମ ସହିତ ସମାନ ହୋଇଥାନ୍ତା ୟଙ୍ଗମ୍ୟାନ୍ । ସେ ଚାଲିଗଲା, ପଛେ ପଛେ ଡାକି ନେଇଗଲା ତା'ର ମା'କୁ । ଆଉ ମୁଁ ରହିଗଲି ମିତାକୁ ଧରି । ବୋଧହୁଏ ମିତାର ଦାୟିତ୍ୱ ବହନ କରିବା ପାଇଁ । ମା' ପୁଅ ଦୁହେଁ ମୋତେ ଦୟା କରି ଛାଡ଼ି ଦେଇଗଲେ ଏହି ସଂସାରରେ । ବହୁ ଦୁଃଖ, ଦୁର୍ଭାବନା ପରେ ବି ମୋତେ ବଞ୍ଚି ରହିବାକୁ ହେଲା, କେବଳ ଏଇ ମିତା ପାଇଁ ।

ଶଶୀଶେଖର ନୀରବ ହେଲେ ।

ଦେବନାଥ ବୁଝିପାରିଲା ଶଶୀଶେଖରଙ୍କ ବ୍ୟଥା । ସେ ଯେ ପୁତ୍ରଶୋକ ଆଜି ଯାଏ ଭୁଲି ପାରିନାହାନ୍ତି ଆଉ ଯଖ ପରି ଏଇ ଲାଇବ୍ରେରୀଟିକୁ ଆବୋରି ପଡ଼ି ରହିଛନ୍ତି, ବହୁ ଦୀର୍ଘଶ୍ୱାସ ଯେ ଶଶୀଶେଖରଙ୍କ ଅନ୍ତର ଆତ୍ମାକୁ ଆଘାତ ହାଣି ଚାଲିଚି, ଦେବନାଥ ତାହା ବୁଝିପାରିଲା ସିନା, କିନ୍ତୁ ସାନ୍ତ୍ୱନା ଦେବାକୁ ଭାଷା ଖୋଜି ପାଇ ନ ଥିଲା । ପୁତ୍ରଶୋକରେ ବିଭୋର ଏହି ବୟସ୍କ ପିତୃସ୍ଥାନୀୟ ଲୋକଟିକୁ ସାନ୍ତ୍ୱନା ଦେବାକୁ ତା'ର ଶକ୍ତି କାହିଁ ?

ତଥାପି ଦେବନାଥ କଥା ଛଳରେ କହିଲା : ମୁଁ ବି.କମ୍. ଦେଇସାରିଲେ ଲ' କଣ୍ଟିନିଉ କରିବି । ଆପଣଙ୍କର ଏଇ  ବିଶାଳ ଲାଇବ୍ରେରୀ ଯେଉଁ ଉଦ୍ଦେଶ୍ୟରେ ଗଠନ କରା ହୋଇଥିଲା, ଯେଉଁ ମହିୟସୀ ଏକ ମହାନ ଉଦ୍ଦେଶ୍ୟ ନେଇ ଆପଣଙ୍କୁ ପ୍ରେରଣା ଯୋଗାଇଥିଲେ, ଅନ୍ତତଃ ତାଙ୍କର ଆତ୍ମା ମୋତେ ବଡ଼ ହେବାକୁ ଆଶୀର୍ବାଦ କରିବ । ଆଉ ସହଜରେ ଆପଣ ତ ଅଛନ୍ତି ।

ଶଶୀଶେଖରଙ୍କ ଆଖି ଦୁଇଟି ଉଜ୍ଜ୍ୱଳ ହୋଇ ଉଠିଲା । ସେ ଚେୟାରରୁ ଉଠିପଡ଼ି ଦେବନାଥକୁ ନିଜ କୋଳକୁ ଟାଣି ଆଣି ଆନନ୍ଦ ଗଦ୍‌ଗଦ୍ ସ୍ୱରରେ କହିଲେ : ତୁମେ ପାରିବ, ପାରିବ ୟଙ୍ଗମ୍ୟାନ୍ ? ମୋ ମାନିର ଆଶା ପୂର୍ଣ୍ଣ କରିପାରିବ ?

ଦେବନାଥ ନଇଁ ପଡ଼ିଲା ଶଶୀଶେଖରଙ୍କ ପାଦଧୂଳି ନେବା ପାଇଁ ।

ହଠାତ୍ ପଛ ଆଡ଼ୁ ଏକ ହାସ୍ୟର କାକଳିରେ ବୁଲି ଅନେଇଲା ଦେବନାଥ, ମଧୁମିତା ଠିଆ ହୋଇ ହସୁଛି ।

କହିଲା : କ'ଣ ଏଇଖିଣା ଆସିବା ହେଲା ଆପଣଙ୍କର ? ବଡ଼ ଟାଇମ୍ ଜ୍ଞାନର ଅଭାବ ତ ମନେ ହେଉଛି ମହାଶୟଙ୍କର ।

ମଧୁମିତାର କହିବା ଭଙ୍ଗୀ ଆଉ କଣ୍ଠର ସ୍ୱରରେ ଏପରି ଏକ ବ୍ୟଙ୍ଗ ଲୁଚି ରହିଥିଲା ଯେ, ଏକା ସଙ୍ଗରେ ସମସ୍ତେ ହସି ପକାଇଲେ ।

ଶଶୀଶେଖର କହିଲେ : ଦେବନାଥ ଆସିଲାଣି ଅନେକ ବେଳୁ । ତୁ ବ୍ୟସ୍ତ ଥିବୁ ବୋଲି ମୁଁ ଖବର ଦେଇ ନ ଥିଲି । ନେଇ ଯା ଉପରକୁ । ମୁଁ ଆଜି ଗାଧୋଇ ନାହିଁ ଏତେବେଳ ଯାଏ । ଗାଧୋଇ ସାରି ତମକୁ ଖବର ଦେବି ।

ମଧୁମିତା ଦେବନାଥକୁ ସାକ୍ଷୀ କରି କହିଲା : ଶୁଣନ୍ତୁ ଆପଣ । ଡାଡ଼ି ମୋର କଥା ଶୁଣୁ ନାହାନ୍ତି । ମୁଁ ସକାଳ ଆଠଟାରୁ ତାଙ୍କ ବାଥ୍‌ରୁମ୍‌ରେ ଗରମ ପାଣି ଦେଇ ଯାଇଛି, ଆସି କେଇଟା ବାଜିଲାଣି କହିଲେ ? ଇମିତି ଅନିୟମ କଲେ ସ୍ୱାସ୍ଥ୍ୟ ଭଲ ରହିବ ?

ଦେବନାଥ ଶଶୀଶେଖରଙ୍କ ପକ୍ଷ ସମର୍ଥନ କରି କହିଲା : ବୟସ ହୋଇଗଲେ ବୋଧହୁଏ ଲୋକମାନେ ଟିକିଏ ଅନ୍ୟମନସ୍କ ହୋଇ ପଡ଼ନ୍ତି । ସମୟାସମୟ ଜ୍ଞାନ ଲାଭ ରୁହେ ନାହିଁ ।

ମଧୁମିତା ପ୍ରତ୍ୟୁତ୍ତରରେ ଦେବନାଥ ଆଡ଼େ ଏପରି ଏକ ଚାହାଣିରେ ଚାହିଁଲା, ଯାହାର ଅର୍ଥ ଶଶୀଶେଖର ବୁଝିପାରି ହୋ ହୋ ହୋଇ ହସିଉଠିଲେ । କହିଲେ : ତମର ମିତା ପକ୍ଷ ସମର୍ଥନ କରିବା ଉଚିତ ଥିଲା ୟଙ୍ଗମ୍ୟାନ୍ । ଏ ବୁଢ଼ା ଆଡ଼ିଆ ହୋଇ ତମେ କିନ୍ତୁ ଗୋଟିଏ କୋମଳ ଆନ୍ତରିକତା ହରାଉଛ ।

: ଡାଡ଼ି ! ମଧୁମିତା ଏତେ ଜୋର୍‌ରେ ଚିତ୍କାର କରି କହି ଉଠିଲା ଯେ, ଦେବନାଥ ହଠାତ୍ କ'ଣ ଘଟିଗଲା ଭାବି ଚମକି ଉଠିଲା ।

ଶଶୀଶେଖର କହିଲେ : ଆଚ୍ଛା ଆଚ୍ଛା, ମୁଁ ମୋ କଥା ଉଇଥ୍‌ଡ୍ର କରିନେଲି । ତୁ ଦେବନାଥକୁ ଉପରକୁ ନେଇ ଯା ।

: ଆଉ କ'ଣ ଗରମ ପାଣି ପଠାଇବି ତମ ପାଇଁ ?

: ନା, ଆବଶ୍ୟକ ନାହିଁ ।

ଶଶୀଶେଖର ଉଠି ଚାଲିଗଲେ ବାଥ୍‌ରୁମ୍ ଆଡ଼କୁ ।

ଦେବନାଥ ନୀରବରେ ବସିଥିଲା ଚେଆର ଉପରେ, ଧ୍ୟାନମଗ୍ନ ପରି ।

: କ'ଣ ଧ୍ୟାନଭଙ୍ଗ ହେବ ମୁନିବରଙ୍କର ? ମଧୁମିତାର ପରିହାସରେ ଦେବନାଥ ବୁଲି ଅନେଇଲା ମଧୁମିତା ଆଡ଼େ ।

: ସୁସ୍ୱାଗତମ୍ । ମଧୁମିତା ହାତର ଭଙ୍ଗୀରେ ଏପରି ଏକ ମାଦକୀୟ ମୁଦ୍ରା ସୃଷ୍ଟି କରି ଉପରକୁ ଯିବା ପାଇଁ ପଥ ଦେଖାଇଲା, ଯାହା ଏଡ଼ାଇବାର ନୁହେଁ ।

ଦେବନାଥ ଉଠି ଠିଆ ହେଲା । କହିଲା : ସତରେ ଆପଣଙ୍କୁ ଦେଖିଲେ ଯେ କୌଣସି ମୁନିବରଙ୍କର ଧ୍ୟାନଭଙ୍ଗ ହୋଇଯିବ ।

: ଏ କଥା ଆପଣଙ୍କ ଆଗରୁ ଅନେକେ କହିଛନ୍ତି । ତେଣୁ ନୂଆ କିଛି ଶୁଣେଇଥିଲେ ଖୁସି ହେଇ ଥାଆନ୍ତି । ମଧୁମିତା ହସି ହସି କହିଲା ।

: ହୁଁ, ତା' ହେଲେ ମୋ ଆଗରୁ ଅନେକଙ୍କର ପାଦଧୂଳି ପଡ଼ିଚି ଏଇ ଆଶ୍ରମରେ ?

ମଧୁମିତା ଦବିଲା ନାହିଁ ! ସେହିପରି ହସର ଢେଉ ଛୁଟାଇ କହିଲା : ପାଦଧୂଳି ପଡ଼ିଚି ଅନେକଙ୍କର, କିନ୍ତୁ ଉପରକୁ ଯିବାକୁ ଅନୁମତି ଆପଣ ପାଇଲେ ପ୍ରଥମ ।

: ସତେ ? ହଠାତ୍ ମୋ ଉପରେ ଏତେ ପ୍ରସନ୍ନ କାହିଁକି ?

: ସେ ଉତ୍ତର ଡାଡ଼ିଙ୍କଠାରୁ ପାଇପାରିବେ ।

: ଆଉ ଆପଣ ?

: ମୁଁ ତ ଆଗରୁ ସ୍ୱାଗତ ଜଣାଇଚି ।

: ବାଟରେ କଣ୍ଟାଝଣ୍ଟା କିଛି ନାହିଁ ତ ?

: ଝୁଣ୍ଟିବା ତ ମଣିଷର ଧର୍ମ । ଲହୁ-ଲୁହାଣ ନହେଲେ ଜୀବନର ପୂର୍ଣ୍ଣତା ଆସେ ନାହିଁ ଯେ ।

: ଆଚ୍ଛା ! ଅଳ୍ପ ବୟସରୁ ତ ଅନେକ କଥା ଶିଖିଗଲଣି ।

: ଆପଣ ବି ଶିଖିଯିବେ ମୋ ସାଙ୍ଗରେ ମିଶିଲେ ।

ଦେବନାଥ ଅବାକ୍ ହୋଇ ଯାଇଥିଲା ମଧୁମିତାର କଥା ଶୁଣି । ଏତେ ଅଳ୍ପ ବୟସରୁ ମଧୁମିତା ଏତେ କଥା ଶିଖିଲା କିପରି ? ଏତେ ଫ୍ରି ! ଏତେ ଚପଳ ! ! ସେ ତ ଚାହୁଁଥିଲା ଏହିପରି ଗୋଟିଏ ଗାର୍ଲ୍ ଫ୍ରେଣ୍ଡ । ତା' ସ୍ପୋର୍ଟସମ୍ୟାନ୍ ସ୍ପିରିଟ୍ ସହିତ ତାଳ ମିଳେଇ ଯିଏ ଚାଲିପାରିବ । ବର୍ତ୍ତମାନ ତା'ର ମନେ ହେଉଛି, ଏ ଏକମାତ୍ର ମଧୁମିତା ।

ଦେବନାଥ ହାତ ବଢ଼ାଇଲା ମଧୁମିତା ଆଡ଼କୁ । ଉଦ୍ଦେଶ୍ୟ କରମର୍ଦ୍ଦନ କରି ତା'ର ବନ୍ଧୁତା ସ୍ୱୀକାର କରିବ ।

ମଧୁମିତାର ଆଜି ଆଉ ସଙ୍କୋଚ ନାହିଁ । ସେ କରମର୍ଦ୍ଦନ କଲା ଦେବନାଥ ସହିତ ।

ସେଦିନ ଖିଆପିଆ ଶେଷ ହେଉହେଉ ପ୍ରାୟ ଦୁଇଟା ବାଜି ଯାଇଥିଲା । ଏହା ପୂର୍ବରୁ ଏତେ ସୁସ୍ୱାଦୁ ଖାଦ୍ୟ କେବେ କେଉଁଠି ଖାଇ ନ ଥିଲା ଦେବନାଥ । ଶଶୀଶେଖରଙ୍କ ଆଗରେ ମଧୁମିତାର ପ୍ରଶଂସା କଲା ବହୁତ ।

ଶଶୀଶେଖର କହିଲେ: ମିତାର ଏଇଟା ମାତୃଦତ୍ତ ଗୁଣ । ଘରକୁ କେହି ଅତିଥି ଆସିଲେ, ସେ ନିଜ ହାତରେ ସମସ୍ତ ଖାଦ୍ୟ ପ୍ରସ୍ତୁତ କରୁଥିଲେ । ଟିକିଏ ହେଲେ ବିରକ୍ତ ବା ଆଳସ୍ୟ ନ ଥିଲା ତାଙ୍କର । ମିତା ଠିକ୍ ଗୁଣଟି ଛଡ଼ାଇ ଆଣିଛି ମା'ଠାରୁ ।

ଅବଶ୍ୟ ଏ ସମସ୍ତ କଥା ହେଉଥିଲା ମିତାର ଅନୁପସ୍ଥିତିରେ । ସେ କେବେ ନିଜର ପ୍ରଶଂସା ସହ୍ୟ କରିପାରେ ନାହିଁ । ଶଶୀଶେଖର ସେକଥା ଜାଣନ୍ତି । ମିତାର ଆବିର୍ଭାବରେ ସେ ନୀରବ ହୋଇଗଲେ ।

ମଧୁମିତା କହିଲା : ଲେକ୍‌କୁ ତମେ ଆମ ସଙ୍ଗରେ ଯିବ ନାହିଁ ଡାଡ଼ି ?

: ନା, ମୋର ସେ ନୌକା ବିହାରରେ ଆନନ୍ଦ ନାହିଁ । ବରଂ ଦ୍ରୁତଗତିରେ ନୌକା ଛୁଟିଲେ ମୋର ମନେହୁଏ ଯେପରି ହୃତ୍‌ପିଣ୍ଡଟା ଧୀରେ ଧୀରେ ବନ୍ଦ ହୋଇ ଆସୁଚି ।

ଦେବନାଥ କହିଲା : କିନ୍ତୁ ଯେଉଁଦିନ ପ୍ରତିଯୋଗିତା ହେବ, ସେଦିନ ଆପଣ ନିଶ୍ଚୟ ଯିବେ । ମୁଁ ପ୍ରେରଣା ପାଇବି ।

ଶଶୀଶେଖର କଣ୍ଠରେ ଉତ୍ସାହ ଫୁଟାଇ କହିଲେ : ସେଦିନ ମୁଁ ନିଶ୍ଚୟ ଯିବି ୟଙ୍ଗମ୍ୟାନ୍ । ଆଜି କିନ୍ତୁ ମୋତେ ଛୁଟି ଦେବାକୁ ହେବ । ମୋର ଜଣେ ମହକିଲ ସହିତ ଆପଏଣ୍ଟମେଣ୍ଟ ଅଛି ପାଞ୍ଚଟାବେଳେ ।

: ତଥାସ୍ତୁ ।

ମଧୁମିତା ଏପରି ଏକ ଭଙ୍ଗୀ କରି କହିଲା ଯେ ସମସ୍ତେ ଏକା ସାଙ୍ଗରେ ହସି ଉଠିଲେ ।

ଦେବନାଥ ପାଖରେ ଗାଡ଼ିରେ ବସି ସେଦିନ ତା' ଦେହରେ କୌଣସି ଅନୁଭୂତି ଜାଗି ନ ଥିଲା । ବରଂ ଦେବନାଥ ରହି ରହି ମଧୁମିତା ଆଡ଼େ ଚାହୁଁଥିଲା । ଚାହାଣିରେ କିପରି ଏକ ବିହ୍ୱଳତା ଫୁଟି ଉଠୁଥିଲା ।

ସେଦିନ କିନ୍ତୁ ଲେକ୍‌ରେ ନୌକା ବିହାର କଲାବେଳେ ମଧୁମିତା ପ୍ରବଳ ଉତ୍ତେଜିତ ହୋଇ ଉଠିଥିଲା । ସେ ଏକ ଅସ୍ୱାଭାବିକ ଉତ୍ତେଜନା । ନୌକା ତ ନୁହେଁ, ତାକୁ ରେସିଂ ବୋଟ କୁହାଯାଇପାରେ । ଗଠନ ପ୍ରଣାଳୀ ଭିନ୍ନ ପ୍ରକାର । ଆହୁଲା ଭିଡ଼ିଲେ ତୀର ଭଳି ଉଡ଼ିଯାଏ ।

ମଧୁମିତା ଯେଉଁ ବୋଟ୍‌ରେ ଉଠିଥିଲା, ସେଥିରେ ଥିଲେ ଦେବନାଥ, ତା'ର ଏକ ବନ୍ଧୁ ଓ ବାନ୍ଧବୀ ଆଉ ମଧୁମିତା । ସେମାନେ ସମସ୍ତେ ଆହୁଲା ଧରିଥିଲେ । ମଧୁମିତା ବି ପ୍ରଥମେ ପ୍ରଥମେ ଆହୁଲା ଧରି ଟାଣି ପାରୁ ନ ଥିଲା । କିନ୍ତୁ ଯେତେବେଳେ ତାଙ୍କ ପାଖରେ ଆଉ ଗୋଟିଏ ପ୍ରତିଯୋଗୀ ବୋଟ୍ ଦେଖାଦେଲା, ସମସ୍ତଙ୍କର ଉତ୍ସାହ ବଢ଼ିଗଲା ଦୁଇଗୁଣ । କିନ୍ତୁ ମଧୁମିତାର ଉତ୍ସାହ ସେଦିନ ବଢ଼ି ଯାଇଥିଲା ଶହେଗୁଣକୁ ।

କେଉଁଠୁ ପାଇଲା ସେ ଏତେ ବଳ, ଏତେ ଉତ୍ସାହ ! ଦେବନାଥ ଆଉ ତା'ର ବନ୍ଧୁ ଅବାକ୍ ହୋଇଯାଇଥିଲେ । ପ୍ରତିଯୋଗୀଙ୍କୁ ବହୁ ପଛରେ ପକାଇ ଦେଇ ସେମାନେ ବାରମ୍ବାର ଆଗେଇ ଯାଉଥିଲେ । ସେଦିନ ସ୍ୱର୍ଗ ଜୟ କରିଥିଲା ମଧୁମିତା । ଏତେ ଆନନ୍ଦ ଆଉ କେବେ କେଉଁଠୁ ପାଇଥିଲା ବୋଲି ମନେ ପଡ଼େ ନାହିଁ ତା'ର ।

ନୌକା ବିହାର ଶେଷ ହୋଇଥିଲା ପ୍ରାୟ ସାଢ଼େ ଛଅଟାରେ । କିନ୍ତୁ ପ୍ରବଳ ଉତ୍ତେଜନା ପରେ ଯେ ଏତେ କ୍ଲାନ୍ତି ଆସି ଗ୍ରାସ କରିପାରେ, ମଧୁମିତା ମୋଟେ ଚିନ୍ତା କରିପାରି ନ ଥିଲା ।

ନୌକା ବିହାର ପରେ ସେମାନେ କ୍ଲବ୍‌କୁ ଯାଇଥିଲେ । ସାମାନ୍ୟ ଜଳଯୋଗ ପରେ ଦେବନାଥ ହାତ ଘଡ଼ିକୁ ଚାହିଁ, ଯେତେବେଳେ ଉଠିବାକୁ କହିଲା, ମଧୁମିତା ଉଠିବାକୁ ଚେଷ୍ଟା କରି ଉଠିପାରିଲା ନାହିଁ । ତା'ର ମନେହେଲା ଯେପରି ଗୋଡ଼ ଦୁଇଟା କିଏ ମାଟିରେ ପୋତି ପକାଇଛି ।

ସେ କିଛି ବୁଝିପାରିଲା ନାହିଁ । ଆକୁଳ ଆଖିରେ ଚାହିଁଲା ଦେବନାଥ ମୁହଁକୁ !

ଦେବନାଥ କହିଲା : ପ୍ରଥମେ ପ୍ରଥମେ ସେହିପରି ହୋଇଥାଏ । ଆପଣ ଖାଲି ଆଜି ନୁହେଁ, ଦୁଇ ତିନିଦିନ ବିଛଣାରୁ ଉଠିପାରିବେ ନାହିଁ । ତା'ପରେ ଧୀରେ ଧୀରେ ସବୁ ଠିକ୍ ହୋଇଯିବ । କିନ୍ତୁ ଅଭ୍ୟାସ ରଖିବାକୁ ହେବ ।

ଦେବନାଥ ମଧୁମିତାର ହାତ ଧରି ଚେୟାରରୁ ଉଠାଇଲା ।

ନା, ସେ ଚାଲିପାରୁ ନାହିଁ । ସମଗ୍ର ଦେହଟା କିପରି ଅବଶ ହୋଇ ଆସୁଛି ।

ଦେବନାଥ କହିଲା : ଭୟର କିଛି କାରଣ ନାହିଁ । ଉତ୍ତେଜନା ଭିତରେ ଦୁଇଘଣ୍ଟା ଆହୁଲା ଭିଡ଼ିବା କିଛି କମ୍ ପରିଶ୍ରମର କାମ ନୁହେଁ ।

ମଧୁମିତା ଦେବନାଥ କାନ୍ଧରେ ଭରା ଦେଇ ଛୋଟେଇ ଛୋଟେଇ ଆଗେଇ ଯାଉଥିଲା ।

ଭାରି ଲାଜ ମାଡୁଥିଲା ତାକୁ । କିନ୍ତୁ ଅନ୍ୟ ଉପାୟ ନ ଥିଲା ।

ସେଦିନ ଶଶୀଶେଖର ମଧୁମିତାର ଅବସ୍ଥା ଦେଖି ହସି ହସି ଗଡ଼ି ଯାଇଥିଲେ । କହିଥିଲେ : ଏତେ ଦିନକେ ଜବତ୍ ହୋଇଚି ମିତା । ତମେ ଠିକ୍ କରିଛ ୟଙ୍ଗମ୍ୟାନ୍ ।

ମଧୁମିତାର ମୁହଁର ଅବସ୍ଥା ସେଦିନ ଦେଖିଲା ଭଳି ହୋଇଥିଲା । ସେ ଲାଇବ୍ରେରୀର ଗୋଟିଏ ଆରାମ ଚେୟାର ଉପରେ ଶୋଇପଡ଼ି କହିଥିଲା : ଏକା ମାଘକେ ଶୀତ ଯାଏନି ଡାଡ଼ି । ମୁଁ ବି ତମ୍ଭକୁ ଦେଖିନେବି ।

ଶଶୀଶେଖର ବୋଧହୁଏ ଆନନ୍ଦରେ ନାଚି ଉଠିଥିଲେ । କହିଥିଲେ : ସେତେବେଳେ ଦେଖାଯିବ । କିନ୍ତୁ ଆଜି ତ ନିଜେ ଜବତ୍ ହେଇଛୁ ।

ଦେବନାଥ ବାପ ଝିଅଙ୍କର ଏହି ସର୍ଗୀୟ ଆନ୍ତରିକତାରେ ମୁଗ୍ଧ ହୋଇ ଯାଇଥିଲା । କିନ୍ତୁ ସେ ଅଧିକ ବ୍ୟଥିତ ହୋଇଥିଲା ମଧୁମିତାର ମୁହଁକୁ ଚାହିଁ । ପ୍ରକୃତରେ ଯନ୍ତ୍ରଣାରେ ହୁଏତ ତା'ର ସମସ୍ତ ଦେହ ଜର୍ଜରିତ ହୋଇ ଉଠିଚି ।

ବିଦାୟ ନେବା ପୂର୍ବରୁ ମଧୁମିତା ଦେବନାଥକୁ ପାଖକୁ ଡାକି କହିଲା : କାଲି କିନ୍ତୁ ଆସିବେ ଆପଣ । ମୁଁ ପୁଣି ଯିବି ଆପଣଙ୍କ ସହିତ ।

ଦେବନାଥ କହିଲା : କାଲି ହୁଏତ ଆପଣ ଆଉ ଆହୁଲା ଟାଣି ପାରିବେ ନାହିଁ । ଦୁଇ ତିନିଦିନ ନ ଯିବା ଯାଏ ଆପଣ ସୁସ୍ଥ ହୋଇ ଉଠିବା ସମ୍ଭବ ହେବ ନାହିଁ ।

ମଧୁମିତା ଜୋର୍ ଗଳାରେ କହିଥିଲା : ପାରିବା ନ ପାରିବା ମୁଁ ବୁଝିବି । କାଲି କିନ୍ତୁ ନିଶ୍ଚୟ ଆପଣ ଆସିବେ ।

ଦେବନାଥ ନିଶ୍ଚିତ ପ୍ରତିଶ୍ରୁତି ଦେଇ ସେଦିନ ବିଦାୟ ନେଇଥିଲା ମଧୁମିତା ପାଖରୁ । ପାଦଧୂଳି ନେଇଥିଲା ଶଶୀଶେଖରଙ୍କଠାରୁ ।

ଦେବନାଥ ବିଦାୟ ନେଇ ଚାଲିଯିବା ପରେ ଶଶୀଶେଖର ମଧୁମିତା ଆଡ଼େ ଚାହିଁ ହସିଥିଲେ ଥରେ, ଅର୍ଥପୂର୍ଣ୍ଣ ହସ ।

ଆରଦିନ ଚାରିଟାବେଳେ ଦେବନାଥ ଆସି ପହଞ୍ଚିଥିଲା । ଭାବିଥିଲା ମଧୁମିତା ସେଦିନ ତା' ସହିତ ଯାଇପାରିବ ନାହିଁ ଲେକ୍‌କୁ । କିନ୍ତୁ ବହୁ ପୂର୍ବରୁ ମଧୁମିତା ପ୍ରସ୍ତୁତ ହୋଇ ବସିଥିଲା ଦେବନାଥର ପଥ ଚାହିଁ ।

ଆଶ୍ଚର୍ଯ୍ୟ ହୋଇଥିଲା ଦେବନାଥ ।

ହସିଥିଲା ମଧୁମିତା ଖାଲି ।

ଶଶୀଶେଖର କହିଲେ : ମିତା ତୁମକୁ ପରାସ୍ତ କରିଛି ୟଙ୍ଗମ୍ୟାନ୍ । ତୁମେ କ'ଣ ଭାବି ପାରିଥିଲ, ସେ ଆଜି ସୁସ୍ଥ ହୋଇ ତମ ସହିତ ପୁଣି ଯୋଗ ଦେଇପାରିବ ?

: ଅଦ୍‌ଭୁତ ପ୍ରାଣ ଧାରଣର ଶକ୍ତି ମିତାର । ତମେ ହୁଏତ ଦିନେ ଆବିଷ୍କାର

କରିବ ମିତା ତମ ସମସ୍ତଙ୍କ ଭିତରେ ଏକ ସତନ୍ତ୍ର ଶକ୍ତି । ତମ ସମସ୍ତଙ୍କୁ ସେ ପରାସ୍ତ କରି ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରି ବସିଛି ।

କିନ୍ତୁ ବହୁ ଚେଷ୍ଟା କରି ବି ନୌକା ପ୍ରତିଯୋଗିତାରେ ପ୍ରଥମ ହୋଇପାରି ନ ଥିଲା ମଧୁମିତା । ଦେବନାଥ ପାଖରେ ତାକୁ ନତି ସ୍ୱୀକାର କରିବାକୁ ହୋଇଥିଲା । ଦେବନାଥ ପ୍ରଥମ ଆଉ ମଧୁମିତା ଦ୍ୱିତୀୟ ସ୍ଥାନ ଅଧିକାର କରି ଯେଉଁଦିନ ବିପୁଳ ଭାବରେ ସମ୍ବର୍ଦ୍ଧିତ ହୋଇଥିଲେ ଲେକ୍ କ୍ଲବରେ, ସେଦିନ ଭାରି ଦୁର୍ବଳ ହୋଇପଡ଼ିଥିଲା ମଧୁମିତା ।

ଏତେ ଆନନ୍ଦ ଉତ୍ତେଜନା ଭିତରେ ସେ ନିଜକୁ ହଜାଇ ଦେଇଥିଲା କେଉଁଠି ?

ଡାଡ଼ି ସେଦିନ ପ୍ରସ୍ତାବ କରିଥିଲେ, ମଧୁମିତା ଦେବନାଥକୁ ରେନ୍‌ବୋ କ୍ଲବକୁ ନେଇ ଯାଇ ମେମ୍ବର କରିଦେବ । ସେଦିନର ସେଇ ଶୁଭଦିନଟିରେ ଡାଡ଼ିଙ୍କର ଇଚ୍ଛା ପୂର୍ଣ୍ଣ କରିବା ପାଇଁ ଦେବନାଥ ସମ୍ମତ ହୋଇଥିଲା ।

କିନ୍ତୁ ମଧୁମିତାର ହଠାତ୍ ହେଲା କ'ଣ ? ମୁଣ୍ଡରେ ସେ ଯନ୍ତ୍ରଣା ଅନୁଭବ କରୁଥିଲା । ତା'ପରେ ଧୀରେ ଧୀରେ ଆଖି ବୁଜି ଟେବୁଲ ଉପରେ ମୁଣ୍ଡ ନଦି ଦେଇଥିଲା ।

ସେଦିନ କିନ୍ତୁ ରେନ୍‌ବୋ କ୍ଲବକୁ ଯାଇ ମେମ୍ବର ହେବାର ସୌଭାଗ୍ୟରୁ ବଞ୍ଚିତ ହୋଇଥିଲା ଦେବନାଥ । ଡାଡ଼ି ହୁଏତ ଟିକିଏ କଷ୍ଟ ପାଇଥିଲେ । କିନ୍ତୁ କେଜାଣି କାହିଁକି ମଧୁମିତା ମୁହଁରେ ତୃପ୍ତିର ହସ ଫୁଟି ଉଠିଥିଲା ।

ଆରଦିନ ଦେବନାଥ ଆଉ ଆସିପାରି ନ ଥିଲା କୌଣସି ଏକ ବିଶେଷ କାରଣରୁ । ମଧୁମିତା ଶୋଇ ପାରି ନ ଥିଲା ରାତିସାରା । କଣ୍ଟକଶଯ୍ୟାରେ ଶୋଇଲା ପରି ମନେ ହେଉଥିଲା ତାକୁ । ଦେବନାଥ ତେବେ କ'ଣ କଥା ରଖିବ ନାହିଁ ? ନିର୍ଭର ପ୍ରତିଶ୍ରୁତି ଦେଇଛି ସେ ମିତାକୁ । ଯେମିତି ହେଉ, ଯେତେ ତ୍ୟାଗ କରିବାକୁ ପଡୁ ପଛେ ମିତାକୁ ସେ ନିଜର କରିବ ।

କିନ୍ତୁ ତା' ପରଦିନ ଯେତେବେଳେ ଆସିଲା ଦେବନାଥ, ଶଶୀଶେଖର ତାକୁ ସହଜରେ ଆଉ ଉପରକୁ ଛାଡ଼ିଲେ ନାହିଁ । ମଝି ସିଡ଼ିରୁ ଡାକି ଆଣି ପାଖରେ ବସାଇଲେ । କହିଲେ : ଜାଣ ୟଙ୍ଗମ୍ୟାନ୍, ମିତା ତମ ଉପରେ ଭୀଷଣ ରାଗିଛି । ତମେ କାଲି ଆସିଲ ନାହିଁ । କ୍ଲବକୁ ନ ଯାଇ ସେ ତମ ପାଇଁ ଅପେକ୍ଷା କଲା । କିନ୍ତୁ ନାରୀ ଜାତିଟା ସବୁଦିନ ଅବୁଝା, କାହାରି ଭଲ ମନ୍ଦ, ସୁଖ ସୁବିଧା ବୁଝିବା ପାଇଁ ସେମାନେ ମୋଟେ ପ୍ରସ୍ତୁତ ନୁହନ୍ତି ।

ଦେବନାଥ ନୀରବରେ ଶଶୀଶେଖରଙ୍କ କଥା ଶୁଣି ଯାଉଥିଲା ।

ଶଶୀଶେଖର ପୁଣି କହିଲେ : ଆଜି ତମେ ଆସି ଭଲ କରିଛ ୟଙ୍ଗମ୍ୟାନ୍ । ଆଜି ଆମେ କ୍ଲବକୁ ଯିବା ପାଇଁ ପ୍ରସ୍ତୁତ ହୋଇ ରହିଛୁ । ମିତା ଆସିଲେ ଚାଲିଯିବା ସମସ୍ତେ । ତମେ ମେମ୍ବର ହୋଇ ନ ଥିବାରୁ ତା' ମନ ଭଲ ନାହିଁ । ରେନ୍‌ବୋ କ୍ଲବର ଆଭିଜାତ୍ୟ ପାଇଁ ମିତାର ଭାରି ଗର୍ବ । ତମେ ମେମ୍ବର ହେବାକୁ ପ୍ରସ୍ତୁତ ହୋଇ ଆସିଛ ତ ୟଙ୍ଗମ୍ୟାନ୍ ?

ଦେବନାଥ କହିଲା : ମୁଁ ତ ଅନେକ ଦିନରୁ ପ୍ରସ୍ତୁତ ହୋଇ ରହିଛି । ମାସକୁ ମାତ୍ର ଶହେ ଟଙ୍କା ଚାନ୍ଦା । ଆପଣ କ'ଣ ଭାବୁଛନ୍ତି...

: ନା ନା, ୟଙ୍ଗମ୍ୟାନ୍ । ତମେ ଦେଇପାରିବ ନାହିଁ, ସେ କଥା ମୁଁ ମୋଟେ ଭାବୁନାହିଁ । ମୁଁ କେବଳ ଭାବୁଛି ମିତା କଥା । ତମକୁ ସେ ସେଠାରେ ମେମ୍ବର କରିପାରିଲେ ସବୁଠାରୁ ବେଶି ଖୁସି ହେବ । ତା'ର ଗୋଟାଏ ଧାରଣା କଲିକତାର ଅଭିଜାତ ସମ୍ପ୍ରଦାୟ କେବଳ ସେଇମାନେ, ଯେଉଁମାନେ ରେନ୍‌ବୋ କ୍ଲବର ମେମ୍ବର ।

ଦେବନାଥ ହସି ଉଠିଲା ଏଥର । କହିଲା : ମୁଁ ମିତା ଦେବୀଙ୍କର ସେ ଇଚ୍ଛା ଅପୂର୍ଣ୍ଣ ରଖିବି ନାହିଁ । ତାଙ୍କ ଦେହ ଭଲ ଅଛି ତ ?

ଶଶୀଶେଖର କହିଲେ : ତମେ ଉପରକୁ ଯାଅ ୟଙ୍ଗମ୍ୟାନ୍ । ମଧୁମିତାକୁ ସାଙ୍ଗରେ ଡାକି ଆଣିବ । ସେ ହୁଏତ ଅଭିମାନ କରି ବସି ରହିଛି ।

ଦେବନାଥ ଯାଇ ଦେଖିଲା, ମଧୁମିତା ଶୋଇ ଶୋଇ କାହା ସହିତ ଫୋନ୍‌ରେ କଥା ହେଉଛି । ଦେବନାଥ ଘରେ ପଶିବାକ୍ଷଣି ରିସିଭରଟା ରଖିଦେଲା ସେ । ସାମ୍‌ନାରେ ଦେବନାଥକୁ ଦେଖି ତା' ମୁହଁରେ ଆନନ୍ଦ ବଦଳରେ ଆତଙ୍କ ଫୁଟି ଉଠିଥିଲା ।

ଦେବନାଥ ଯାଇ ବସିଥିଲା ମଧୁମିତାର ଶେଯ ଉପରେ । କପାଳରେ ହାତ ବୁଲେଇ ଦେଇ କହିଥିଲା : କାଲିଠାରୁ ମୁଣ୍ଡଟା କ'ଣ ଭଲ ହେଇନି ତମର ?

ମଧୁମିତା କିଛି ଉତ୍ତର ଦେଇ ନ ଥିଲା । ମୁହଁ ବୁଲେଇ ଶୋଇଥିଲା ଅନ୍ୟ ଆଡ଼େ ।

ଦେବନାଥ ଭିଡ଼ି ଆଣିଥିଲା ମିତାକୁ ନିଜ ଆଡ଼କୁ । କହିଥିଲା : ମୋ ପ୍ରଶ୍ନର କ'ଣ ଉତ୍ତର ଦେବନି ମିତା !

ମଧୁମିତା ଆଖିରୁ ଲୁହ ଝରି ପଡ଼ିଥିଲା । ଦେବନାଥ କୋଳ ଉପରେ ମୁଣ୍ଡ ପିଟି କହିଥିଲା : କାଲି କାହିଁକି ଆସିଲନି ତମେ ? ଆଜି ତମେ ଫେରିଯାଅ, ତମେ ଫେରିଯାଅ ଦେବନାଥ ।

ଦେବନାଥ ଆଶ୍ଚର୍ଯ୍ୟ ହୋଇଥିଲା । ସେ ମିତା ଆଖିରୁ ଲୁହ ପୋଛିଦେଇ କହିଥିଲା: ତମେ ଆଉ କାନ୍ଦନି ମିତା । ଉଠ । ଡାଡ଼ି ତଳେ ଅପେକ୍ଷା କରିଛନ୍ତି । ତମ କ୍ଲବକୁ ଯିବା । ଅଭିଜାତ ସମ୍ପ୍ରଦାୟରେ ନାମ ଲେଖାଇବାକୁ ମୁଁ ପ୍ରସ୍ତୁତ ହୋଇ ଆସିଛି ।

ଦେବନାଥ କହି ସାରି ହସି ପକାଇଲା ।

ମଧୁମିତା କିନ୍ତୁ ପ୍ରଚଣ୍ଡ ସକ୍ ପାଇଲା ପରି ଉଠି ବସିଲା ବିଛଣା ଉପରେ । ନୀରବରେ ଅନେକ ବେଳଯାଏ ଚାହିଁଲା ଦେବନାଥ ମୁହଁକୁ । ଆହୁରି କିଛି ସମୟ ପରେ ହସିଲା ଟିକିଏ । ଧୀରେ ଧୀରେ ଦେବନାଥର ହାତ ଦୁଇଟାକୁ ନେଇ ନିଜ ଛାତି ଉପରେ ଜାକି ଧରି କରୁଣ ସ୍ୱରରେ କହିଲା : ସତେ ତମେ ଆମ କ୍ଲବରେ ମେମ୍ବର ହେବାକୁ ପ୍ରସ୍ତୁତ ହୋଇ ଆସିଚ ଦେବନାଥ ! ସତ କହୁଚ ?

ଦେବନାଥ ସେଦିନ ମଧୁମିତାକୁ ନିଜକୁ ଛାତି ଉପରକୁ ଜାକି ଆଣି ଆଦର କରି ଆନ୍ତରିକତାର ସ୍ୱରରେ କହିଥିଲା : ତଥାପି ତମର ବିଶ୍ୱାସ ହେଉନି ମିତା ! ଡାଡ଼ିଙ୍କୁ ଯେ ତେଣେ କଥା ଦେଇ ଆସିଲି । ସେ ପ୍ରସ୍ତୁତ ହୋଇ ବସି ରହିଛନ୍ତି । ଆମେ ତଳେ ପହଞ୍ଚିବା ମାତ୍ରେ ବାହାରି ଯିବା ।

: ନା, ମଧୁମିତା ମୁହଁରେ ବ୍ୟର୍ଥତାର ଛାଇ ନଇଁ ଆସିଲା । ବହୁ କଷ୍ଟରେ ନିଜକୁ ସେ ସଂଯତ କରି କହିଲା, ତା' ହେଲେ ମୁଁ ପ୍ରସ୍ତୁତ ହୋଇ ଆସେ ଦେବନାଥ ! ତମେ ଟିକିଏ ଅପେକ୍ଷା କର ।

ମଧୁମିତା ମଦ୍ୟପଙ୍କ ପରି ଟଳି ଟଳି ଯାଇ ବାଥରୁମ୍‌ରେ ପଶିଥିଲା ।

କାହାର ଦୋଷ ? କିଏ ଦୋଷୀ ?

ମଧୁମିତା ତୃତୀୟ ରଙ୍ଗୀନ ଗ୍ଲାସଟା ଉପରକୁ ଟେକି ଧରି ତା' ଭିତରୁ କ'ଣ ଯେପରି ଦେଖିବାକୁ ଚେଷ୍ଟା କରୁଥିଲା ।

ହଁ ହଁ, ଇଏ ସେଇ ଦେବନାଥ । ଆଜି ରଙ୍ଗମଞ୍ଚରେ ଜୋକର ଭୂମିକାରେ ଅଭିନୟ କରି ଜୀବନ ନିର୍ବାହ କରୁଛି !

କିନ୍ତୁ ତା'ର ଏହି ଅବସ୍ଥା ପାଇଁ ପ୍ରକୃତରେ କିଏ ଦାୟୀ ? ମଧୁମିତା ! ଦେବନାଥ ! ଡାଡ଼ି ! ରେନ୍‌ବୋ କ୍ଲବ୍ ? ?

ହୋ ହୋ ହୋଇ ହସିଉଠିଲା ମଧୁମିତା । ବାର୍‌ର ଅନ୍ୟାନ୍ୟମାନେ ଚାହିଁଲେ ତା' ଆଡ଼େ ।

ମଧୁମିତା ହସୁଚି । ହସି ହସି ବେଦମ୍ ହୋଇପଡ଼ିବ ସତେ କି । ସେ ହୁଏତ ତା'ର ଆତ୍ମସତ୍ତା ହରାଇଛି । ସେ ହୁଏତ ଭୁଲି ଯାଇଛି ସ୍ଥାନ, କାଳ, ପାତ୍ର ।

ଭିଡ଼ ଜମି ଯାଇଥିଲା ମଧୁମିତାର ଟେବୁଲ ଚାରିପାଖରେ ।

କିନ୍ତୁ ହଠାତ୍ ସେଠାରେ ଉପସ୍ଥିତ ହେଲା ଚନ୍ଦ୍ରକାନ୍ତ । ସେ ମଧୁମିତାର ଏପରି ଅବସ୍ଥା ଦେଖି ଅବାକ୍ ହୋଇ ଯାଇଥିଲା । ସେ ଯେ ତା' ଅନୁପସ୍ଥିତିରେ ଏପରି ଏକ

ଅଘଟଣ ଘଟେଇ ବସିବ, ଚନ୍ଦ୍ରକାନ୍ତ ମୋଟେ ଚିନ୍ତା କରିପାରି ନ ଥିଲା । ସେ ମଧୁମିତାର ହାତ ଧରି ଓହ୍ଲେଇ ନେଇଗଲା ତଳକୁ । ଗାଡ଼ିରେ ବସାଇଲା ନେଇ । ତା'ପରେ ? ତା'ପରେ କୁଆଡ଼େ ତା'ର ଗତିପଥ ?

ମଧୁମିତାର ଅବସ୍ଥା ଯାହା ତାକୁ ଏଇକ୍ଷିଣା ଘଷର ପହଞ୍ଚାଇ ପାରିବ ନାହିଁ । ଶଶୀଶେଖର ନିଶ୍ଚୟ ଶୋଇ ନ ଥିବେ । ମଧୁମିତାକୁ ଏପରି ଉନ୍ମତ୍ତ ଅବସ୍ଥାରେ ଦେଖିଲେ ତା' ପ୍ରତି ତାଙ୍କର ଧାରଣା କ'ଣ ହେବ ?

ନିଜ ଘରକୁ ବି ନେବା ସମ୍ଭବ ନୁହେଁ । କାଲି ସକାଳୁ ଯଦି ମୃତ୍ୟୁଞ୍ଜୟ ମଙ୍ଗରାଜ ଆସି ପହଞ୍ଚନ୍ତି, ସେ ହୁଏତ ସିଧା ଆସିବେ ଚନ୍ଦ୍ରକାନ୍ତ ଘରକୁ । ମଧୁମିତାକୁ ଯଦି ଦେଖନ୍ତି ତା' ସହିତ ! !

ଆଉ ତେଣିକି ଭାବି ପାରୁ ନ ଥିଲା ଚନ୍ଦ୍ରକାନ୍ତ । ଗାଡ଼ି କିନ୍ତୁ ଆଗେଇ ଚାଲିଥିଲା । ମଧୁମିତା ଦୁଇ ହାତକୁ ଚନ୍ଦ୍ରକାନ୍ତର ଗଳାରେ ଛନ୍ଦି କହୁଥିଲା : ଦେବନାଥକୁ ଚିହ୍ନିଚ ଚନ୍ଦ୍ରକାନ୍ତ ? ତାକୁ ମୁଁ ଆଜି ରଙ୍ଗମଞ୍ଚରେ ଦେଖିଲି । ତମେ କିନ୍ତୁ ରଙ୍ଗମଞ୍ଚକୁ ଓହ୍ଲେଇବ ନାହିଁ ଚନ୍ଦ୍ରକାନ୍ତ । ଯଦି କେବେ ତମକୁ ରଙ୍ଗମଞ୍ଚରେ ଦେଖେ ତା'ହେଲେ ମୁଁ ଆତ୍ମହତ୍ୟା କରିବି ।

ଚନ୍ଦ୍ରକାନ୍ତ କିଛି ବୁଝୁ ନ ଥିଲା । ବୁଝିବା ଅବସ୍ଥାରେ ସେ ନ ଥିଲା । ସେ ଭାବୁଥିଲଣ ବର୍ତ୍ତମାନ ଅବସ୍ଥାରେ ତା'ର କର୍ତ୍ତବ୍ୟ କ'ଣ ?

ମଧୁମିତା କିନ୍ତୁ କହି ଚାଲିଥିଲା : ଜାଣ ଚନ୍ଦ୍ରକାନ୍ତ । ତମକୁ ନେଇ ମୋ ମନରେ କେତେ ସ୍ୱପ୍ନ ! ତମେ ଆଉ ମୁଁ, ଏକତ୍ର ବାସ କରିବା ଆମେ । ସଂସାର ଗଢ଼ିବା । ଛୋଟ ଗୋଟିଏ ସ୍ୱପ୍ନର ସଂସାର । ସେଠି ତମ ଆଉ ମୋ ଛଡ଼ା କାହାରି ଅସ୍ତିତ୍ୱ ନ ଥିବ । ବାଧା ଦେବାକୁ କେହି ନ ଥିବେ ଆମକୁ । ପାରିବନି ଚନ୍ଦ୍ରକାନ୍ତ ? ତମେ ପାରିବନି ମୋର କାମନା ପୂରଣ କରି ?

ଚନ୍ଦ୍ରକାନ୍ତ କିନ୍ତୁ ବଡ଼ ଭାବନା ଦୁର୍ଭାବନା ଭିତରେ ଗାଡ଼ି ଚଳେଇ ଚାଲିଥିଲା । ଏକ ସମୟରେ ଦେଖିଲା, ଗାଡ଼ିଟା ତା'ର ଆସି ଭବାନୀପୁରର ମଧୁମିତାଙ୍କ ଦୁଆରେ ଠିଆ ହୋଇଯାଇଛି ।

ଶଶୀଶେଖର କ'ଣ ଶୋଇସାରିଥିବେ ?

ମଧୁମିତା କିନ୍ତୁ ଚନ୍ଦ୍ରକାନ୍ତର ସବୁ ଦୁର୍ଭାବନା ଦୂରକୁ ଠେଲିଦେଇ ଗାଡ଼ିରୁ ଓହ୍ଲେଇ ପଡ଼ିଲା । ମଧୁମିତାକୁ ସେ ଯେତେଟା ଅସଂଯତ ଭାବିଥିଲା, ବର୍ତ୍ତମାନ ତା'ର ମନେ ହେଲା ସେତେଟା ନୁହେଁ । ଗାଡ଼ିରୁ ଓହ୍ଲାଇ ମଧୁମିତା କହିଲା : ତମେ ଘରକୁ ଫେରିଯାଅ ଚନ୍ଦ୍ରକାନ୍ତ । ରାତି ଅନେକ ହେଲାଣି । କାଲି ଠିକ୍ ସମୟରେ ଆସିବ ।

କିନ୍ତୁ ଚନ୍ଦ୍ରକାନ୍ତ ଦେଖିଲା, ମଧୁମିତା ଚାଲିବାବେଳେ ତା' ଗୋଡ଼ ଏଣେ ତେଣେ ଟଳୁଚି । ବାଧ ହୋଇ ଗାଡ଼ିରୁ ଓହ୍ଲେଇଲା ସେ ।

ମଧୁମିତା ହସି ହସି କହିଲା : ଏତେ ଦରଦ ତ ନ ଥିଲା ଆଗରୁ ।

ଚନ୍ଦ୍ରକାନ୍ତ କିଛି ଉତ୍ତର ଦେଲା ନାହିଁ । ତା'ର ଭୟ ଥିଲା ଶଶୀଶେଖର କାଳେ ଚେଇଁଥିବେ । ସେ ଯଦି ଉଠି ଆସନ୍ତି ବାହାରକୁ, ତେବେ ମୁହଁ ଦେଖେଇ ପାରିବ ନାହିଁ ସେ ।

କିନ୍ତୁ ଦୁର୍ଭାବନା କଟିଗଲା ତା'ର । ନିରାପଦରେ ଚନ୍ଦ୍ରକାନ୍ତ ମଧୁମିତାକୁ ପହୁଞ୍ଚାଇ ଦେଲା ତା' ଘରେ ।

ନାଜ୍‌ନିନ୍ ଅପେକ୍ଷା କରିଥିଲା । ଦୁହିଁଙ୍କୁ ଏକା ସଙ୍ଗରେ ଦେଖି ମନେ ମନେ ଖୁସି ହେଇଥିଲା ସେ ।

ମଧୁମିତା କିନ୍ତୁ ଛାଡ଼ିଲା ନାହିଁ । ହାତ ଧରି ଟାଣି ନେଇ ବିଛଣା ଉପରେ ବସାଇଲା । କହିଲା : ଏତେ ରାତିରେ ତମେ ଅଖିଆ ଯିବ ! କ'ଣ ଖାଇବ ଯାଇ ଘରେ ?

ଚନ୍ଦ୍ରକାନ୍ତ କହିଲା : ଗଣେଶ ରୋଷେଇ କରି ମୋତେ ଅପେକ୍ଷା କରିଥିବ । ତମେ ବ୍ୟସ୍ତ ହୁଅନି ମୋଟେ ।

କିନ୍ତୁ ମଧୁମିତାର ଏକା ଜିଦ୍ । ନାଜନିନ୍‌କୁ ଡାକି ଖାଇବା ପଦାର୍ଥ ଆଣିବାକୁ କହିଲା ସେ । ତା' ପାଇଁ ଯାହା ଥିବ ଦୁହେଁ ବାଣ୍ଟିକୁଣ୍ଟି ଖାଇବେ ।

ତାହା ହିଁ ହେଲା । ମଧୁମିତା ସେଦିନ ନିଜ ହାତରେ ଖୁଆଇ ଦେଲା ଚନ୍ଦ୍ରକାନ୍ତକୁ । ଅନିଚ୍ଛା ସତ୍ତ୍ୱେ ଚନ୍ଦ୍ରକାନ୍ତ ଖାଇଲା ମଧୁମିତା ହାତରୁ । ନାଜ୍‌ନିନ୍ ଦୂରରୁ ଠିଆ ହୋଇ ଦେଖୁଥିଲା ସବୁ । ହୁଏତ ମନେ ମନେ ଖୁସି ହେଉଥିଲା ସେ । ଏତେ ଦିନକେ ମଧୁମିତାର ଶୁଭବୁଦ୍ଧି ଉଦୟ ହୋଇଛି । ଚନ୍ଦ୍ରକାନ୍ତ ସହିତ ସଂସାର ଯୋଡ଼ି ପାରିଲେ ଦୁହେଁ ଖୁସି ହୁଅନ୍ତେ ।

ରାତି ବଢୁଥିଲା ।

ଚନ୍ଦ୍ରକାନ୍ତ ଯିବା ପାଇଁ ଚଞ୍ଚଳ ହୋଇ ଉଠୁଥିଲା । କିନ୍ତୁ ମଧୁମିତା ! ସେ ବୋଧହୁଏ ଛାଡ଼ିବାକୁ ଚାହୁଁ ନ ଥିଲା ଚନ୍ଦ୍ରକାନ୍ତକୁ ।

ନାଜନିନ୍ ଆସିଲା ବାସନ ଗୋଟେଇ ନେବାକୁ ।

ମଧୁମିତା ପଚାରିଲା : ଡାଡ଼ି କ'ଣ କରୁଛନ୍ତି ?

: ସେ ଶୋଇଲେଣି ଅନେକ ବେଳୁ । ଘଣ୍ଟାଏ ଖଣ୍ଡେ ଆଗରୁ ପଚାରୁଥିଲେ ତମ କଥା ।

: ଆଉ କିଛି ?

: ନା ।

ଚନ୍ଦ୍ରକାନ୍ତ ଏଥର ସ୍ୱସ୍ତିର ନିଃଶ୍ୱାସଟିଏ ପକାଇଲା ।

ଯା' ହେଉ ଏ ଯାତ୍ରାରୁ ସେ ବଞ୍ଚି ଯାଇଛି । ଡାଡ଼ି ଆଜି ବୁଝି ପାରିବେ ନାହିଁ କିଛି । କାଲି କଥା କାଲି ଦେଖାଯିବ ।

ଆଉ ସମୟ ନଷ୍ଟ କରି ଲାଭ ନାହିଁ ।

ଚନ୍ଦ୍ର ଉଠି ଠିଆ ହେଲା ।

ମଧୁମିତା କହିଲା : କାଲି କିନ୍ତୁ ଠିକ୍ ସମୟରେ ଆସିବ ତମେ । ମୁଁ ଅପେକ୍ଷା କରିଥିବି ।

ରେନ୍‌ବୋ କ୍ଲବର ଇଲେକ୍‌ସନରେ ଜିତିଗଲେ ଶଶୀଶେଖର । ପ୍ରେସିଡ଼େଣ୍ଟ ପାଇଁ ନିର୍ବାଚିତ ହେଲେ ସେ । ସେଥିପାଇଁ ମଧୁମିତାକୁ ଖଟିବାକୁ ହୋଇଥିଲା ବହୁତ । ଇଲେକ୍‌ସନର ଦୁଇ ତିନିଦିନ ପୂର୍ବରୁ ସେ ଭୀଷଣ ବ୍ୟସ୍ତ ରହି ଯାଇଥିଲା । ଯାହା ଫଳରେ ଚନ୍ଦ୍ରକାନ୍ତ ସହିତ ଦେଖା ହୋଇ ପାରି ନ ଥିଲା ମୋଟେ । ଫୋନ୍‌ରେ ଥରେ ଦୁଇଥର କଥାବାର୍ତ୍ତା ହୋଇଥିଲା ଯାହା ।

ଚନ୍ଦ୍ରକାନ୍ତ କିନ୍ତୁ ଭୀଷଣ ଭାବରେ ବ୍ୟସ୍ତ ହୋଇ ପଡ଼ିଥିଲା । କାମ ଦାମର ଫାଙ୍କରେ ରହି ରହି ମଧୁମିତାର ମୁହଁ ଭାସି ଉଠୁଥିଲା ତା' ଆଖି ଆଗରେ । ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କ ସମସ୍ତ ଶିକ୍ଷା, ସମସ୍ତ ଦୀକ୍ଷା ଚନ୍ଦ୍ରକାନ୍ତ ପାଖରେ ବ୍ୟର୍ଥ ମନେ ହେଉଥିଲା । ଏତେ ଦିନ ଯାଏ ଯାହା ଶିଖିଥିଲା, ଯାହା ବୁଝିଥିଲା ତାହା ନିରର୍ଥକ । ଖାଲି ଗୋଟାଏ ବନ୍ଧନର ଆବରଣରେ ମନଟାକୁ ତା'ର ଭରିରଖି ଦିଆ ହୋଇଥିଲା ଯାହା ।

ଶଶୀଶେଖରଙ୍କୁ ସ୍ୱାଗତ ଜଣାଇବା ପାଇଁ ଚନ୍ଦ୍ରକାନ୍ତ ଯେତେବେଳେ ଯାଇ ପହଞ୍ଚିଲା, ସେଦିନ ତାକୁ କୋଳକୁ ଟାଣି ନେଇ ତା' କପୋଳ ଚୁମ୍ବନ କରିଥିଲେ ସେ ।

ଏତେ ଆନନ୍ଦ କଳରୋଳ ଭିତରେ ଚନ୍ଦ୍ରକାନ୍ତ ସେଠାରେ ମଧୁମିତାକୁ ନ ଦେଖି ଆଶ୍ଚର୍ଯ୍ୟ ହୋଇଥିଲା ।

ଶଶୀଶେଖର କହିଥିଲେ : ଏ କେତେଦିନର ଅବିଶ୍ରାନ୍ତ ପରିଶ୍ରମ ପରେ ମିତା ଭୀଷଣ ଥକି ପଡ଼ିଚି । ସେଇଥିପାଇଁ ବିଶ୍ରାମ କରୁଛି ସେ । ମୁଁ ତାକୁ ତଳକୁ ଓହ୍ଲାଇବା ପାଇଁ ମନା କରି ଦେଇଚି ।

ଚନ୍ଦ୍ରକାନ୍ତ ଛୁଟି ଯାଇଥିଲା ଉପରକୁ । ଦେଖିଥିଲା ମଧୁମିତାକୁ । ବିଛଣାରେ ମୁହଁ ମାଡ଼ି ଶୋଇଛି ।

ଡାକିଥିଲା ତା' ଦେହରେ ହାତ ମାରି । ଉଠିଲା ମଧୁମିତା ।

କିନ୍ତୁ ଏ କି ପରିବର୍ତ୍ତନ ତା'ର ! ମୁହଁଟା ଫୁଲି ଉଠିଛି କାହିଁକି ? ଶୋଇ ଶୋଇ କାନ୍ଦୁଥିଲା ସେ ବୋଧହୁଏ !

ଚନ୍ଦ୍ରକାନ୍ତ କହିଲା : ଏତେ ଆନନ୍ଦ କଳରୋଳ ଭିତରେ ତମର ସବୁଠାରୁ ବେଶୀ ଖୁସି ହେବାର କଥା ମିତା ! ଅଥଚ ତମେ ଶୋଇଶୋଇ କାନ୍ଦୁଚ, ଆଶ୍ଚର୍ଯ୍ୟ ତ !

ମଧୁମିତା ଚନ୍ଦ୍ରକାନ୍ତର ଛାତି ଭିତରେ ମୁହଁ ଗୁଞ୍ଜି ଆହୁରି ଜୋର୍‌ରେ କାନ୍ଦିବାକୁ ଆରମ୍ଭ କରିଦେଲା । କାନ୍ଦୁ କାନ୍ଦୁ କହିଲା : ମୁଁ ପାରିଲି ନାହିଁ ଚନ୍ଦ୍ରକାନ୍ତ, ହୁଏତ ଜୀବନ ଯୁଦ୍ଧରେ ମୋତେ ପରାଜୟ ସ୍ୱୀକାର କରିବାକୁ ହେବ ।

ଚନ୍ଦ୍ରକାନ୍ତ ବୁଝି ପାରି ନ ଥିଲା ମଧୁମିତାର କଥା । ସେ ଅବାକ୍ ବିସ୍ମୟରେ ଚାହିଁଥିଲା ତା' ମୁହଁକୁ । କ'ଣ କହୁଚି ମିତା ! ଡାଡ଼ି ଜିତିଛନ୍ତି । ତାଙ୍କୁ ଜିତେଇବା ପାଇଁ ମଧୁମିତା ଅକ୍ଳାନ୍ତ ଉଦ୍ୟମ କରିଥିଲା । ଏ ଜୟ ମଧୁମିତାର ଜୟ । ତେଣୁ ତା'ର ସବୁଠାରୁ ବେଶି ଖୁସି ହେବାର କଥା । ଅଥଚ...

ମଧୁମିତା କହିଲା : ତମେ ଗୋଟାଏ କଥା କରିପାରିବ ଚନ୍ଦ୍ରକାନ୍ତ ?

: କ'ଣ କରିବି କୁହ !

ମଧୁମିତା ଅନେକ ସମୟ ଅନାଇ ରହିଲା ଚନ୍ଦ୍ରକାନ୍ତ ମୁହଁକୁ । ତା'ପରେ ଧୀରେ ଧୀରେ କହିଲା : ନା, ତମେ ପାରିବ ନାହିଁ ।

: କ'ଣ କୁହ ମିତା ! ମୋତେ କ'ଣ ବିଶ୍ୱାସ କରିପାରୁ ନାହଁ ତମେ !

: ନା, ଥାଉ । ଆଉ ଦିନେ କହିବି । ଆଜି ତମର ଏଇ ଆନନ୍ଦ ଦିନରେ ତୁମକୁ ଏପରି ଏକ ନିଷ୍ଠୁର କଥା ଶୁଣାଇବା ଉଚିତ ହେବ ନାହିଁ । ଡାଡ଼ିଙ୍କ ସହିତ ତୁମର ଦେଖାହୋଇ ନାହିଁ ?

: ହୋଇଥିଲା ।

: ସେ କିଛି କହି ନାହାନ୍ତି ?

: କୋଉ କଥା !

: ତମେ ବସ ଚନ୍ଦ୍ରକାନ୍ତ । ଅନେକ ଦିନ ହେବ ମୁଁ ତୁମ କଥା ବୁଝିବାକୁ ଅବସର ପାଇ ନାହିଁ । ମୁଁ ତୁମ ପାଇଁ ଟିକିଏ ଖାଇବାର ବ୍ୟବସ୍ଥା କରେ ।

: ନା ନା ମିତା । ତମେ ବସ । ମୁଁ ଆଜି କିଛି ଚାହେ ନାହିଁ । କେବଳ ଜାଣିବାକୁ ଚାହେ ତମ ମନରେ ଆଜି ଏପରି ଅଶାନ୍ତ ଝଡ଼ ଉଠିଛି କାହିଁକି ? ଅନେକ ସମୟରେ ତମର ଚାଲିଚଳନ, ଆଚାର ବ୍ୟବହାର ମୋତେ ଖୁବ୍ ଅବାକ୍ କରିଦିଏ । ମୁଁ ତୁମକୁ ବୁଝି ବି ବୁଝିପାରେ ନାହଁ ।

ମଧୁମିତା ହସିବାକୁ ଚେଷ୍ଟା କଲା ଟିକିଏ । କହିଲା : ସେ ସବୁ ତମର ନ ବୁଝିବା ହିଁ ଭଲ । ଯେଉଁଦିନ ତମେ ମତେ ବୁଝିବାକୁ ଚେଷ୍ଟା କରିବ, ମୋର ସ୍ୱରୂପ ତମେ ଦେଖିପାରିବ; ସେଦିନ ଆଉ ମୁହୂର୍ତ୍ତେ ମୋ ପାଖରେ ଠିଆ ହୋଇ ପାରିବ ନାହିଁ ।

: ଛି ମିତା । ଏସବୁ କ'ଣ କହୁଚ ତମେ ? ତମ ଭଳି ଝିଅମାନେ ଦେଶର ଗୌରବ । ଜାତିର ମେରୁଦଣ୍ଡ । କିନ୍ତୁ ହଠାତ୍ ତମର ହେଲା କ'ଣ ? ଡାଡ଼ି କ'ଣ ଅସନ୍ତୁଷ୍ଟ ହେଇଚନ୍ତି ! ତମେ ବୋଧହୁଏ ଡାଡ଼ିଙ୍କୁ ତମ ମୋ ସମ୍ବନ୍ଧଟା ଜଣାଇବାକୁ ଯାଇ ଅପଦସ୍ଥ ହୋଇଛ ?

ମଧୁମିତା କିପରି ଏକ ତୀବ୍ର ଚାହାଣିରେ ଅନାଇଲା ଚନ୍ଦ୍ରକାନ୍ତ ମୁହଁକୁ । ହାଇରେ ହତଭାଗା ଚନ୍ଦ୍ରକାନ୍ତ ! ଏବେ ବି ତୁ ମଣିଷ ହେଲୁ ନାହିଁ ! ବୁଝିପାରିଲୁ ନାହିଁ ମଧୁମିତା ଆଉ ଶଶୀଶେଖରଙ୍କୁ ! ବୁଝିପାରିଲୁ ନାହିଁ ଦିନୁଦିନ ଚୋରାବାଲି ଭିତରେ କିପରି ତୋ ପାଦ ଦବି ଦବି ଯାଉଛି ! ନିର୍ବୋଧ ଚନ୍ଦ୍ରକାନ୍ତ !

ମଧୁମିତାର ଅବାକ୍ ଚାହାଣିର ଅର୍ଥ ବୁଝି ପାରୁ ନ ଥିଲା ଚନ୍ଦ୍ରକାନ୍ତ ।

ମଧୁମିତା କହିଲା : ତମେ ତମ ଦେଶକୁ ଫେରିଯାଅ ଚନ୍ଦ୍ରକାନ୍ତ । ଏ ସହର ତମ ପାଇଁ ନୁହେଁ ।

ଚନ୍ଦ୍ରକାନ୍ତ ଆହୁରି ଅବାକ୍ ହେଲା । ସତରେ ଆଜି ବିଶେଷ ଧରଣର ଗୋଟାଏ କିଛି ଘଟିଯାଇଛି ମଧୁମିତା ଜୀବନରେ । ଯା' ଫଳରେ ସେ ହୁଏତ ତା'ର ଆତ୍ମସତ୍ତା ହରାଇଛି ।

ନାଜ୍‌ନିନ୍ ଆସି ବାଧା ଦେଲା କଥା ମଝିରେ । ମଧୁମିତାକୁ କହିଲା : ଡାଡ଼ି ଡାକୁଛନ୍ତି । ଟିକିଏ ଶୁଣି ଆସିବ ।

ମଧୁମିତାର ମୁହଁଟା ବିରକ୍ତିରେ ଭରି ଉଠିଲା । କିନ୍ତୁ କିଛି ପ୍ରତିବାଦ କଲା ନାହିଁ ସେ । ଉଠି ଠିଆ ହେଲା ଏବଂ ସଙ୍ଗେସଙ୍ଗେ ଚାଲିଗଲା ଡାଡ଼ିଙ୍କ ଘରକୁ । ନାଜ୍‌ନିନ୍ ଠିଆ ହୋଇ ରହିଲା ସେଇଠି, ଚନ୍ଦ୍ରକାନ୍ତ ମୁହଁ ଆଡ଼େ ଚାହିଁ ।

ଚନ୍ଦ୍ରକାନ୍ତ ପଚାରିଲା : କିଛି କହିବ ମୋତେ ?

ନାଜ୍‌ନିନ୍ ପାଦେ ପାଦେ କରି ଆଗେଇ ଗଲା ଚନ୍ଦ୍ରକାନ୍ତ ପାଖକୁ । କ'ଣ କହିବ ବା କଥାଟା କେଉଁଠୁ ଆରମ୍ଭ କରିବ, ଠିକ୍ କରି ପାରୁ ନ ଥିଲା କିଛି । କିନ୍ତୁ ଚନ୍ଦ୍ରକାନ୍ତ ସହିତ ହୁଏତ ଏହିପରି ଏକ ନିରୋଳା ମୁହୂର୍ତ୍ତ ପାଇବ ନାହିଁ ସେ । କହିଲା : ଦିଦିଙ୍କୁ ଆପଣ ବିବାହ କରନ୍ତୁ ଚନ୍ଦ୍ରବାବୁ । ଦିଦିଙ୍କର ବହୁତ ଦୁଃଖ ।

ଚନ୍ଦ୍ରକାନ୍ତ ନାଜ୍‌ନିନ୍ ମୁହଁରୁ ଏପରି ଏକ ପ୍ରସ୍ତାବ ଶୁଣିବା ପାଇଁ ହୁଏତ ପ୍ରସ୍ତୁତ

ହୋଇ ନ ଥିଲା । ସେ କହିଲା : ତମ ଦିଦିଙ୍କର ପୁଣି ଦୁଃଖ କ'ଣ ? ସେ ତ ମଜାରେ ଅଛନ୍ତି ।

ନାଜ୍‌ନିନ୍ ଆହୁରି ଟିକିଏ ପାଖକୁ ଲାଗିଯାଇ କହିଲା : ନା ଆପଣ ଜାଣି ନାହାନ୍ତି । ଆପଣ ଖାଲି ଦିଦିର ବାହାରଟା ଦେଖୁଚନ୍ତି । ଭିତରଟା କେବେ ଦେଖିବାକୁ ଚେଷ୍ଟା କରି ନାହାନ୍ତି । ଦିଦି ଆପଣଙ୍କୁ ବହୁତ ଭଲପାଏ । ଆପଣଙ୍କ ଫଟୋକୁ ଛାତିରେ ଚାପି ଧରି କାନ୍ଦି କାନ୍ଦି ରାତି କଟାଏ । ମୁଁ ସବୁ ଦେଖେ । ଦିଦିଙ୍କୁ ଦିନେ ପଚାରିଥିଲି ବି । ସେ କହିଲା, ଆପଣଙ୍କ ପରି ଦେବତା ତୁଲ୍ୟ ଲୋକଙ୍କ ପାଇଁ ସେ ଅଯୋଗ୍ୟ । ବାମନ ହୋଇ ଚାନ୍ଦକୁ ହାତ ବଢ଼ାଇବା ଉଚିତ ନୁହେଁ !

ଚନ୍ଦ୍ରକାନ୍ତ ମଧୁମିତାର ମନଗହନର ଗୋପନ କଥା ଶୁଣିବା ପରେ, ତା' ପ୍ରାଣର କିପରି ଏକ ସ୍ୱର୍ଗୀୟ ପୁଲକରେ ଭରିଗଲା । ତା'ର ଇଚ୍ଛା ହେଉଥିଲା, ସେ ମଧୁମିତା ମନର ଆହୁରି ଅନେକ କଥା ଶୁଣନ୍ତା, ଅନେକ କଥା ଜାଣନ୍ତା । ତା' ହେଲେ ମଧୁ ଚନ୍ଦ୍ରିକାର ରାତ୍ରିରେ ସେ ତାକୁ ଅବାକ୍ କରି ତା'ର କାନେ କାନେ କୁହନ୍ତା, ମୋତେ ତମ ମନ ବୁଝିବାକୁ ବାକି ନାହିଁ ମିତା । ତମେ ତ ବିବାହ ପୂର୍ବରୁ ମୋର ଫଟୋଟିକୁ ଛାତି ତଳେ ଜାକି ଧରି ରାତି ରାତି ଅଶ୍ରୁଜଳରେ ନୟନ ପଖାଳୁଥିଲ ?

ମଧୁମିତା ମୁହଁଟି ଲାଜରେ ରକ୍ତିମ ହୋଇଉଠିବ । ସେ ହାତ ଠେଲି ଦେଇ ନିଜକୁ ଚନ୍ଦ୍ରକାନ୍ତଠାରୁ ମୁକ୍ତି କରିବାକୁ ଚେଷ୍ଟା କରୁକରୁ ଛଳକୋପ କରି କହିବ : ଧେତ୍ ! ଭାରି ତ ତମେ ! ପୃଥିବୀରେ ଯେପରି ତମ ଛଡ଼ା ଆଉ କେହି ଲୋକ ନ ଥିଲେ ।

ନାଜ୍‌ନିନ୍ ଚନ୍ଦ୍ରକାନ୍ତର ଅନ୍ୟମନସ୍କତାର ସୁଯୋଗ ନେଇ କହିଲା : ଡାଡ଼ି ବୋଧହୁଏ ଚାହାନ୍ତି ନାହିଁ ଦିଦି ବାହା ହୋଇ ଅନ୍ୟ ଘରକୁ ଚାଲିଯାଆନ୍ତୁ । କିନ୍ତୁ ଦିଦିଙ୍କର ଇଚ୍ଛା ନାହିଁ ଡାଡ଼ିଙ୍କ ପାଖରେ ପଡ଼ି ରହିବା ପାଇଁ ।

ଚନ୍ଦ୍ରକାନ୍ତ ତା' ଭାବନାର ଖିଅ ହଜାଇ ନାଜ୍‌ନିନ୍ ମୁହଁକୁ ଚାହିଁଲା । କ'ଣ କହୁଛି ଏ ପାଗଳୀଙ୍କ ପରି ? ନିଜର ବାପା ପାଖରେ ରହିବାକୁ ଚାହେଁ ନାହିଁ ମିତା !

ନାଜ୍‌ନିନ୍‌କୁ କାରଣ ପଚାରିବା ପୂର୍ବରୁ ମଧୁମିତା ଆସି ଘରେ ପହଞ୍ଚିଥିଲା । ସେ ନାଜ୍‌ନିନ୍‌କୁ ସେଠାରେ ଦେଖି ତା' ଉପରେ ବିରକ୍ତ ହୋଇ କହିଲା : ଏତେବେଳ ଯାଏ ତୁ ଏଇଠି ଠିଆ ହୋଇଛୁ ନାଜ୍ । ଜାଣୁ ତ ବାବୁ କେତେଦିନ ହେବ ଆମ ଘରେ ଖାଇ ନାହାନ୍ତି ? ଚେହେରା ଦେଖି ବୁଝି ପାରୁ ନାହୁଁ କିଛି ?

ନାଜ୍‌ନିନ୍ ପ୍ରତିବାଦ କଲା ନାହିଁ ମୋଟେ । ଯେମିତି ଧୀରେ ଧୀରେ ପ୍ରବେଶ କରିଥିଲା ସେ, ସେହିପରି ପ୍ରସ୍ଥାନ କଲା ସେଠାରୁ ।

ଚନ୍ଦ୍ରକାନ୍ତ କିନ୍ତୁ ଲକ୍ଷ୍ୟ କଲା ମଧୁମିତାର ଦେହମନରେ ଗୋଟାଏ ପରିବର୍ତ୍ତନ । କ୍ଷଣକ ଆଗର ବିରହିଣୀ ରାଧା ସେ ଆଉ ନୁହେଁ । ହସି ହସି କହିଲା : ମୋ ମୁହଁକୁ କ'ଣ ଆଜି ପ୍ରଥମେ ଦେଖୁଛ ତମେ ?

ଚନ୍ଦ୍ରକାନ୍ତ କହିଲା : ପ୍ରଥମେ ନ ହେଲେ ବି ନିତି ନିତି ନୂତନ କେତେ ଛବି ଫୁଟେ ତମ ମୁହଁରେ ମିତା । ମୁଁ ଚେଷ୍ଟା କରେ ବୁଝିବାକୁ । କେତେବେଳେ ପାରେ, ପୁଣି କେତେବେଳେ ପାରେ ନାହିଁ । ବହୁ ଜଟିଳ ତତ୍ତ୍ୱର ସମାରୋହ ହୁଏ ସେଠି । ଆଜି କିନ୍ତୁ ମେଘମୁକ୍ତ ଆକାଶରେ ମୁଁ ଦେଖୁଛି ନୂତନ ସୂର୍ଯ୍ୟୋଦୟର ଛବି । ଅବଶ୍ୟ ଆଶାର । କିନ୍ତୁ ଦିନକୁ ଦିନ ତମେ ମୋ ଆଗରେ ରହସ୍ୟ ହୋଇ ଉଠୁଛ ମିତା ।

ମଧୁମିତା ସେହିପରି ହସି ହସି କହିଲା : ତମେ ନିର୍ବୋଧ ଚନ୍ଦ୍ରକାନ୍ତ, ସେଇଥିପାଇଁ ମୋତେ ବୁଝିପାରୁ ନାହିଁ କିଛି । ମୋ ଛଡ଼ା ତମ ମନଦର୍ପଣରେ ଆଉ କୌଣସି କୁମାରୀର ମୁଖଛବି ନାହିଁ । ତେଣୁ ତୁମେ ବିଶ୍ୱାସ କରିପାରୁ ନାହଁ ମୋତେ । ପାରିବ ନାହିଁ ବି କେବେ । ଆଜି ସେ ସବୁ ତତ୍ତ୍ୱ କଥା ଭିତରକୁ ନ ପଶିବା ହିଁ ଭଲ । ଆଚ୍ଛା କହିଲ, ଗାଡ଼ି ତମର ଆସିଲାଣି ଗ୍ୟାରେଜ୍‌ରୁ ?

: ଆସିଛି, ସଙ୍ଗରେ ଆଣିଛି ମଧ୍ୟ । କିନ୍ତୁ ହଠାତ୍ ଗାଡ଼ିର କ'ଣ ଆବଶ୍ୟକ ପଡ଼ିଲା ତମର ?

: ଅଛି । ଡାଡ଼ି ଆଜି ଏକ ଉତ୍ସବର ଆୟୋଜନ କରିଛନ୍ତି କ୍ଲବରେ । ସେଥିପାଇଁ ବିଶିଷ୍ଟ ସଭ୍ୟମାନଙ୍କୁ ନିମନ୍ତ୍ରଣ କରାହୋଇଛି । ସେମାନଙ୍କୁ ଆଣିବା ପାଇଁ ଗାଡ଼ିର ଆବଶ୍ୟକ ହେବ । ଡାଡ଼ି ସେଇ କଥା କହିବା ପାଇଁ ଡାକିଥିଲେ ମୋତେ । କେଜାଣି କାହିଁକି ସେ ଆଜି ସିଧାସଳଖ କହି ପାରିଲେନି ତମକୁ । ତମେ ଟିକିଏ ସହଯୋଗ କରିପାରିବ ଆମ ସହିତ ?

ଚନ୍ଦ୍ରକାନ୍ତ ଓଲଟି ପ୍ରଶ୍ନ କଲା : ତମର କ'ଣ ମନେହୁଏ ?

ମଧୁମିତା ହସିଲା ଖାଲି । ଦିଆଲ ଘଡ଼ିଟା ଆଡ଼େ ଚାହିଁ କହିଲା : ସମୟ ପାଖେଇ ଆସୁଛି । ମୁଁ ଟିକିଏ କାମଦାମ ସାରି ଦିଏ । ହଁ, ଆଉ ଗୋଟାଏ କଥା ଭୁଲି ଯାଉଚି । ଡାଡ଼ି କହିଛନ୍ତି, କ୍ଲବର ପ୍ରେସିଡ଼େଣ୍ଟ ହିସାବରେ ପ୍ରଥମ ଅନୁଷ୍ଠାନ ଆଜି ତାଙ୍କର । ସେ ଚାହାନ୍ତି ପ୍ରଥମେ ମେମ୍ବର ଖାତାରେ ତମ ନାମ ଲେଖା ହେଉ ।

ଚନ୍ଦ୍ରକାନ୍ତ କହିଲା : ମୁଁ ତାଙ୍କ ଇଚ୍ଛା ପୂରଣ କରିବି ମିତା । କିନ୍ତୁ ଡାଡ଼ି କ'ଣ ଆମ ଇଚ୍ଛା ପୂରଣ କରିବେ ନାହିଁ ?

ଚନ୍ଦ୍ରକାନ୍ତ ଲକ୍ଷ୍ୟ କଲା, ମଧୁମିତା ହଠାତ୍ କିପରି ଚଳଚଞ୍ଚଳ ହୋଇ ଉଠିଲା ।

ମୁହଁରେ ତା'ର ଦେଖା ଦେଲା କିପରି ଏକ ପରିବର୍ତ୍ତନ । କଣ୍ଠସ୍ୱରରେ କଠିନତା ଫୁଟାଇ କହିଲା : ଡାଡ଼ି ଯେ କ'ଣ ଚାହାନ୍ତି, ମୁଁ କିଛି ବୁଝିପାରେ ନାହିଁ । ତେବେ ବର୍ତ୍ତମାନ ସମୟ ହୋଇନାହିଁ । ସମୟ ହେଲେ ମୁଁ ତୁମକୁ କହିବି । ତମେ ଡାଡ଼ିଙ୍କ ପାଖରେ ପ୍ରସ୍ତାବ କରିବ ।

: ସେ ଯଦି ରାଜି ନ ହୁଅନ୍ତି ? ଚନ୍ଦ୍ରକାନ୍ତ ସ୍ୱରରେ ସାମାନ୍ୟ ଉତ୍ତେଜନା ଫୁଟି ଉଠିଥିଲା ।

ମଧୁମିତା ଅବସାନ ଘଟାଇଲା ଉତ୍ତେଜନାର । ସେ ଶାନ୍ତ ସ୍ୱରରେ, କଣ୍ଠରେ ଦୃଢ଼ତା ଫୁଟାଇ କହିଲା : ସେତେବେଳେ ଅନ୍ୟ ପଥ ଚିନ୍ତା କରିବ ଚନ୍ଦ୍ରକାନ୍ତ । ଆଜି ହିଁ ଦୁଶ୍ଚିନ୍ତା କରି ଲାଭ ନାହିଁ ।

ମଧୁମିତା ଚାଲି ଯାଇଥିଲା ତା'ପରେ ।

ବହୁ ଆନନ୍ଦ ଓ ଉତ୍ତେଜନା ଭିତର ଦେଇ ସେଦିନ ରେନ୍‌ବୋ କ୍ଲବରେ ଉତ୍ସବ ପର୍ବ ଚାଲିଥିଲା । ଅସଂଖ୍ୟ ତରୁଣ ତରୁଣୀମାନଙ୍କ ମେଳରେ ମଧୁମିତା ଚନ୍ଦ୍ରକାନ୍ତକୁ ଧରି ସମସ୍ତଙ୍କ ସହିତ ପରିଚୟ କରାଇ ଦେଉଥିଲା । ଆମ କ୍ଲବର ନୂତନ ସଦସ୍ୟ ।

ନମସ୍କାର, ପ୍ରତିନମସ୍କାର; କେଉଁଠି ଟିକିଏ ସ୍ମିତହାସ୍ୟ ଆଉବା କେଉଁଠି ପଦେ କୁଶଳ ସମାଚାର । ତା'ଛଡ଼ା ଯେପରି ସମସ୍ତେ ବ୍ୟସ୍ତ । ନିଜ ନିଜ ବାନ୍ଧବୀମାନଙ୍କ ସହ କଳରୋଳରେ ମାତି ଉଠିଛନ୍ତି ସଭିଏଁ । କାହାକୁ ଫେରି ଚାହିଁବାକୁ ସମୟ ନାହିଁ । ଚନ୍ଦ୍ରକାନ୍ତ ବୁଲି ବୁଲି ଦେଖୁଥିଲା ରେନ୍‌ବୋ କ୍ଲବର ପ୍ରତିଟି କୋଠରି । ବିଳାସର ଚରମ ପୀଠ ଏଇଟା । ଯେଉଁମାନେ ଏହି କ୍ଲବର ମେମ୍ବର ସମସ୍ତେ ଯେପରି ଭିନ୍ନ ଏକ ଜଗତର ଅଧିବାସୀ । ଚନ୍ଦ୍ରକାନ୍ତକୁ ଅନ୍ତତଃ ମନେ ହୋଇଥିଲା ସେହିପରି । ସେମାନଙ୍କର ରୀତି ନୀତି, ସେମାନଙ୍କର ଆଚରଣ ଗଭୀର ମନଯୋଗ ସହକାରେ ଲକ୍ଷ୍ୟ କରୁଥିଲା ଚନ୍ଦ୍ରକାନ୍ତ । ଏ ଏକ ନୂତନ ପୃଥିବୀ । ଅପ୍‌ସରା ଭୁବନ କଥା କେବେ ପଢ଼ିଥିଲା ଚନ୍ଦ୍ରକାନ୍ତ, କିନ୍ତୁ ଆଜି ତା'ର ମନେ ହେଉଥିଲା, ସେ ଯେପରି ନିଜେ ଆଜି ଅପ୍‌ସରା ଭୁବନରେ ପ୍ରବେଶ କରିଛି ।

ଦେହରେ ତା'ର ରୋମାଞ୍ଚ ସୃଷ୍ଟି ହୋଇଥିଲା । ପ୍ରାଣରେ ଉନ୍ମାଦନା ।

ମଧୁମିତା ବୁଝିପାରିଥିଲା ଚନ୍ଦ୍ରକାନ୍ତର ମନକଥା ।

ସେ ଚନ୍ଦ୍ରକାନ୍ତକୁ ତା' ସହିତ ଟାଣି ନେଇଥିଲା ଗୋଟିଏ ନିରୋଳା କକ୍ଷ ଭିତରକୁ ।

ଛୋଟ ସେହି ସଜ୍ଜିତ କକ୍ଷଟି ଭିତରେ ପଶି ଚନ୍ଦ୍ରକାନ୍ତ ଚାରିଆଡ଼କୁ ଚାହିଁ ସମ୍ମୋହିତ ହୋଇପଡ଼ିଥିଲା । ଘରଟିର ସବୁଆଡ଼େ ଏତେ ଯୌନ ଉତ୍ତେଜନାକାରୀ

ଫଟୋମାନ ଟଙ୍ଗା ହୋଇଥିଲା, ଯେଉଁଗୁଡ଼ାକ ଆଡ଼େ ଚନ୍ଦ୍ରକାନ୍ତ ସ୍ତବ୍ଧ ହୋଇ ଅନାଇ ରହିଥିଲା ।

ମଧୁମିତା ଧୀରେଧୀରେ ଘରର ଆଲୋକ ଲିଭାଇ ଦେଇଥିଲା । ବଦଳରେ ଘରସାରା ଖେଳି ଯାଇଥିଲା ନୀଳ ଆଲୋକର ବନ୍ୟା । ଚନ୍ଦ୍ରକାନ୍ତ ମଧୁମିତା ଆଡ଼େ ଆକୁଳ ଆଖିରେ ଚାହିଁ ଯେପରି କ'ଣ କହିବ କହିବ ହୋଇ କହିପାରୁ ନ ଥିଲା ।

ମଧୁମିତା ହାତ ଧରି ବସାଇଥିଲା ଚନ୍ଦ୍ରକାନ୍ତକୁ । କାନ ପାଖକୁ ମୁହଁ ନେଇ କହିଥିଲା : ଜାଗାଟା ତମକୁ କେମିତି ଲାଗୁଛି ଚନ୍ଦ୍ରକାନ୍ତ ?

ଚନ୍ଦ୍ରକାନ୍ତ ଅଭିଭୂତ ହୋଇଯାଇଥିଲା ।

ସେ ତା'ର ବାକ୍‌ଶକ୍ତି ହରାଇ ବସିଥିଲା ।

ମଧୁମିତା କହିଲା : ଜୀବନଟା ଆମର ସବୁବେଳେ ଜଞ୍ଜାଳମୟ । ମନଗୁଡ଼ା ଆମର ସବୁବେଳେ ବ୍ୟାଧିଗ୍ରସ୍ତ । ଆଉ ଆମେ ଏତେ ବ୍ୟସ୍ତ ମଣିଷ ଯେ, ବ୍ୟସ୍ତତା ଭିତରେ ବୁଡ଼ି ରହି ସୁନ୍ଦର ଜୀବନଧର୍ମ ଭୁଲିଯାଆନ୍ତି । ଯେଉଁଟ ଜୀବନ ପକ୍ଷରେ ଏକାନ୍ତ ଅପରିହାର୍ଯ୍ୟ, ସେଇଟାକୁ କେବଳ ମନେପକାଇ ଦେବା ପାଇଁ ଏଇ ରେନ୍‌ବୋ କ୍ଲବର ସୃଷ୍ଟି । କେଉଁ ମନୀଷୀ କେବେ ଏହାର ସର୍ଜନା କରି ଯାଇଥିଲେ କେଜାଣି, ଆଜି କିନ୍ତୁ ବ୍ୟସ୍ତ ମଣିଷକୁ ଜୀବନଧର୍ମ ସମ୍ବନ୍ଧରେ ସଚେତନ କରାଇ ଦେବା ପାଇଁ ଏହି କ୍ଲବଟି ମୁଣ୍ଡ ଟେକି ରହିଛି ।

ଚନ୍ଦ୍ରକାନ୍ତ ମଧୁମିତା ମୁହଁକୁ ଏକ ଧ୍ୟାନରେ ଚାହିଁଥିଲା । କହିଲା : ଡାଡ଼ି ଯଦି ଆମକୁ ଏଇଠି ଏପରି ଅବସ୍ଥାରେ ଦେଖନ୍ତି କ'ଣ ଭାବିବେ ମିତା ?

ମଧୁମିତା ଚନ୍ଦ୍ରକାନ୍ତ ପ୍ରଶ୍ନର କୌଣସି ଉତ୍ତର ନ ଦେଇ ଧୀରେ ଧୀରେ ବ୍ଲାଉଜ୍‌ଟା ଖୋଲିଲା ଦେହରୁ । କହିଲା : ଅସହ୍ୟ ଗରମ ହେଉଛି । ମୁଁ ଏ ଗରମ ସହିପାରୁ ନାହିଁ ଚନ୍ଦ୍ରକାନ୍ତ । ତମେ କିଛି ଅନୁଭବ କରିପାରୁ ନାହଁ ?

ଚନ୍ଦ୍ରକାନ୍ତ କିନ୍ତୁ ଚାହିଁଥିଲା ମଧୁମିତାର ଦେହ ଆଡ଼େ । ତା'ର ମନେ ହେଉଥିଲା, ମଧୁମିତାର ଶଙ୍ଖଧବଳ ଦେହର ସମସ୍ତ ଅଂଶ ଯଦି ଅନାବୃତ କରି ସେ ତାକୁ ଦେଖନ୍ତା, ସାର୍ଥକ ହୁଅନ୍ତା ତା'ର ତରୁଣ ପ୍ରାଣ ।

ମଧୁମିତା ବୁଲି ଚାହିଁଲା ଚନ୍ଦ୍ରକାନ୍ତ ଆଡ଼େ । ତା' ଅନୁମାନ ସତ୍ୟ । ସେ ଭୋକିଲା ଆଖିରେ ଚାହିଁଚି ତା'ରି ଆଡ଼େ । ମୁହଁରେ ଟିକିଏ ସ୍ମିତହସ ଖେଳାଇ ଚନ୍ଦ୍ରକାନ୍ତକୁ କହିଲା : ଲାଇଟ୍‌ଟା ଅଫ୍ କରିଦିଅ । ଏ ଆଲୋକ ବି ମୁଁ ସହ୍ୟ କରିପାରୁ ନାହିଁ ।

ଚନ୍ଦ୍ରକାନ୍ତ ଯନ୍ତ୍ରଚାଳିତ ପରି ମଧୁମିତାର ଆଦେଶ ପାଳନ କଲା ।

ଅନ୍ଧକାର ଭିତରେ ମଧୁମିତା କହିଲା : ଆଉ ଟିକିଏ ପାଖକୁ ଲାଗି ଆସ ଚନ୍ଦ୍ରକାନ୍ତ । ମୋତେ ଖୁବ୍ ଅଶ୍ୱସ୍ତି ବୋଧ ହେଉଚି ।

ଚନ୍ଦ୍ରକାନ୍ତ ଲାଗି ଆସିଲା ମଧୁମିତା ପାଖକୁ ।

ମଧୁମିତା ଚନ୍ଦ୍ରକାନ୍ତ ହାତକୁ ବଢ଼ାଇ ଦେଲା ତା'ର ବ୍ଲାଉଜ ଆଉ ବ୍ରେସିଆର । କହିଲା : ଏଗୁଡ଼ା ଧସ୍ତାଇ ତୁମେ । କିଛି ମୁଁ ଆଜି ଦେହରେ ରଖିପାରୁ ନାହିଁ ।

ମଧୁମିତା ସେଇ ଗାଢ଼ ଅନ୍ଧକାର ଭିତରେ ବିବସ୍ତ୍ର ହୋଇ ଶୋଇଯାଇଥିଲା ଚନ୍ଦ୍ରକାନ୍ତ କୋଳ ଉପରେ ମୁଣ୍ଡ ରଖି । ଗଳାରେ ତା'ର ହାତ ଛନ୍ଦି ମୁହଁଟା ମୁହଁ ପାଖକୁ ଟାଣି କାନ ପାଖରେ ଚୁପି ଚୁପି କହିଲା : ଜୀବନଟା ଉପଭୋଗ ପାଇଁ ଚନ୍ଦ୍ରକାନ୍ତ । ତମେ କିନ୍ତୁ ଜୀବନ ଯନ୍ତ୍ରଣାରେ ସବୁବେଳେ କାତର । ବର୍ତ୍ତମାନ ଜୀବନର ଜୟଗାନ କରି ନ ପାରିଲେ, ଆଉ ତମେ କରିବ କେବେ ?

ମଧୁମିତା ଚନ୍ଦ୍ରକାନ୍ତକୁ ଭିଡ଼ି ନେଉଥିଲା ଧୀରେ ।

ନିମିଷକ ପାଇଁ ଘର ଭିତରେ ଏକ ବିଦ୍ୟୁତ୍ ପ୍ରବାହ ଖେଳିଯାଇ ହଠାତ୍ ବନ୍ଦ ହୋଇଗଲା । ଚନ୍ଦ୍ରକାନ୍ତ ସ୍ତବ୍ଧ ହୋଇ ଯାଇଥିଲା ଏକାବାରେ । ମଧୁମିତାର ନଗ୍ନଦେହର ଗନ୍ଧରେ ସେ ବୋଧହୁଏ ଉନ୍ମତ୍ତ ହୋଇ ଉଠୁଥିଲା ।

ମଧୁମିତା ଆହୁରି ନିବିଡ଼ ଭାବରେ ଭିଡ଼ି ଧରୁଥିଲା ଚନ୍ଦ୍ରକାନ୍ତକୁ । ଚନ୍ଦ୍ରକାନ୍ତର ସମଗ୍ର ଶରୀରଟା ଏକ ବନ୍ୟ ଉତ୍ତେଜନାରେ ଭରି ଯାଇଥିଲା ।

ପୁଣି ଆଉଥରେ ଜଳି ଉଠିଲା ବିଦ୍ୟୁତ୍ ପ୍ରବାହ । ସେହିପରି ନିମିଷକ ପାଇଁ । ପୁଣି ଅନ୍ଧକାର ବିରାଜମାନ କଲା ପ୍ରକୋଷ୍ଠରେ ।

ମଧୁମିତା ଗଳାରେ ହାତ ଛନ୍ଦିଲା ଚନ୍ଦ୍ରକାନ୍ତ ।

ଏଥର କିନ୍ତୁ ସ୍ଥିର ହୋଇ ବସିପାରିଲା ନାହିଁ ଚନ୍ଦ୍ରକାନ୍ତ ।

ମୁହଁ ରଖିଲା ମଧୁମିତାର ମୁହଁ ଉପରେ ।

ସେ ଉନ୍ମତ୍ତ ।

ସେ ବଣ୍ୟ ।

ସେ ହିଂସ୍ର ।

କେଉଁ ଶହ ଶହ ମାଇଲ୍ ଦୂରରେ ପଡ଼ିରହିଲେ ମୃତ୍ୟୁଞ୍ଜୟ ମଙ୍ଗରାଜ । କେଉଁ ନିର୍ଜନ ଗୁହକନ୍ଦରରେ ପ୍ରତିଧ୍ୱନିତ ହୋଇ ସ୍ତବ୍ଧ ହୋଇଗଲା ତାଙ୍କର ଉପଦେଶ । ବର୍ଷ ବର୍ଷର ସାଧନା ତାଙ୍କର ବ୍ୟର୍ଥ ହେଲା । ଚନ୍ଦ୍ରକାନ୍ତର ନିମିଷକ ପାଇଁ ଏଇ ମୁହୂର୍ତ୍ତରେ

ମନେ ପଡ଼ିଲା ନାହିଁ ମୃତ୍ୟୁଞ୍ଜୟ ମଙ୍ଗରାଜଙ୍କୁ । ଯିଏ ତାକୁ ନରକରୁ ଟୋଳି ଆଣି ସ୍ୱର୍ଗର ପଥ ଦେଖାଇଛନ୍ତି । ସଂସାରରେ ମଣିଷ ପରି ମଣିଷ ହୋଇ ବଞ୍ଚି ରହିବାର ସୁଯୋଗ ଦେଇଛନ୍ତି ।

ନା ନା ମିଥ୍ୟା, ସବୁ ଛଳନା, ସବୁ ପ୍ରବଞ୍ଚନା ।
ଏକମାତ୍ର ସତ୍ୟ ଯାହା, ସେ ହେଉଛି ମଧୁମିତା ।

ମଧୁମିତା ଭୀଷଣ କ୍ଳାନ୍ତ ହୋଇ ପଡ଼ିଥିଲା ସେଦିନ ।

ବହୁତ ଆଗରୁ ନିଦ ଭାଙ୍ଗି ଥିଲେ ମଧ ବିଛଣାରୁ ଉଠି ପାରୁ ନ ଥିଲା ସେ । ବେଡ୍ ଟି' ଥଣ୍ଡା ହୋଇ ଯାଇଥିଲା ଟେବୁଲ ଉପରେ । ନାଜ୍‌ନିନ୍ ଡାକି ଯାଇଥିଲା ଅନେକ ଥର । କିନ୍ତୁ ମଧୁମିତାର ଇଚ୍ଛା ହେଉ ନ ଥିଲା ଉଠିବାକୁ । ତନ୍ଦ୍ରାଚ୍ଛନ୍ନ ହୋଇ ପଡ଼ି ରହିଥିଲା ସେ । ଚଳଚ୍ଚିତ୍ର ପରି ଆଖି ଆଗରେ ତା'ର ଅତୀତର ଗୋଟି ଗୋଟି ଘଟଣା ଭାସି ଉଠି ଲୁଚି ଯାଉଥିଲା ।

କିଏ ମଧୁମିତା ! କ'ଣ ତା'ର ପରିଚୟ ! !

ବାରିଷ୍ଟର ଶଶୀଶେଖର ଚଉଧୁରୀଙ୍କ କନ୍ୟା ମଧୁମିତା କେଜାଣି କାହିଁକି ଭାଙ୍ଗି ପଡ଼ିଥିଲା ଜୀବନଯୁଦ୍ଧରେ । ପରାସ୍ତ ସୈନିକ ପରି ଶୋଇ ସେ ସତେକି ଆଗେଇ ଯାଉଥିଲା ମୃତ୍ୟୁପଥକୁ । କାଲି ଯାହା ଜୀବନରେ ସପ୍ନର ଶତ ପାରିଜାତ ଫୁଟି ଉଠିଥିଲା, ଆଜି ସେ ଚିନ୍ତା କରିପାରୁ ନ ଥିଲା ନିଜର ସ୍ଥିତି ସମ୍ବନ୍ଧରେ ।

ଚନ୍ଦ୍ରକାନ୍ତ ! ବିଚରା, ନିରୀହ ଚନ୍ଦ୍ରକାନ୍ତ । ସଂସାର ଅନଭିଜ୍ଞ ଚନ୍ଦ୍ରକାନ୍ତ । କ'ଣ ହେବ ତା'ର ପରିଣତି ! ଆଜି ବା କାଲି ଯେତେବେଳେ ସେ ଜାଣିବ ମଧୁମିତା ଛଳନା, ମଧୁମିତା ମିଥ୍ୟା ? ସେତେବେଳେ କ'ଣ ହେବ ତା'ର ମନର ଅବସ୍ଥା ! କିଏ ତାକୁ ସାନ୍ତ୍ୱନା ଦେବ ? କିଏ ତାକୁ ରକ୍ଷା କରିବ ଜୀବନ ଯନ୍ତ୍ରଣାରୁ ! !

ନାଜ୍‌ନିନ ପୁଣି ଆସି ଡାକିଲା : ଦିଦି ଉଠ । ବେଳ ଅନେକ ହେଲାଣି । ଡାଡ଼ି ଦୁଇଥର ଡାକି ପଠେଇଲେଣି ।

ମଧୁମିତା କର ଲେଉଟାଇଲା । ନାଜ୍‌ନିନ୍‌ର ତାକୁ ଉଠେଇବାରେ କେବେ ତ ଏତେ ଆଗ୍ରହ ନ ଥାଏ । ପୃଥିବୀ ପ୍ରଳୟ ହୋଇଗଲେ ବି ନାଜ୍‌ନିନ୍ କେବେ ବିରକ୍ତ କରେ ନାହିଁ ମଧୁମିତାକୁ । କିନ୍ତୁ ଆଜି ହଠାତ୍...

ମଧୁମିତା ନାଜ୍‌ନିନ୍‌ର ହସିଲା ମୁହଁକୁ ଚାହିଁ ବୁଝିପାରିଲା କାରଣଟା । ଆହୁରି ଦେଖିଲା ନାଜ୍‌ନିନ୍‌ର ହାତଟା ବାରମ୍ବାର ବ୍ଲାଉଜ୍ ଭିତରେ ପଶି ପୁଣି ବାହାରି ଆସୁଛି । ସେ ହସି ହସି ଡାକିଲା ନାଜ୍‌ନିନ୍‌କୁ । ବସାଇଲା ଶେଯ ଉପରେ । ହଠାତ୍ ବ୍ଲାଉଜ ତଳେ ତା'ର ହାତ ପୂରାଇ ଟାଣି ଆଣିଲା କାଗଜ ଖଣ୍ଡେ ! ନାଜ୍‌ନିନ୍‌ର ସ୍ୱାମୀ ଚିଠି ଦେଇଛି । ନାଜ୍‌ନିନ୍ ଚିଠି ପାଇଲେ ନ ପଢ଼ାଇବା ଯାଏ ସ୍ଥିର ହୋଇ ରହିପାରେ ନାହିଁ । ଆଜିକାଲି ମଧୁମିତା ତା'ର ସବୁ ଚିଠି ପଢ଼ିଦିଏ ଆଉ ଉତ୍ତର ଲେଖିଦିଏ ।

ଚିଠିଟି ସଂକ୍ଷିପ୍ତ । କେତୋଟି ଧାଡ଼ି ମାତ୍ର । ମଧୁମିତା ପଢ଼ିସାରି ନାଜ୍‌ନିନ୍‌କୁ କୋଳରେ ଚାପି ଧରି ତା' ମୁହଁରେ ଚୁମ୍ବନ ଦେବାକୁ ଲାଗିଲା । ନାଜ୍‌ନିନ୍ ବିବ୍ରତ ହୋଇପଡ଼ିଲା ପ୍ରଥମେ । କେବେ ତ ମଧୁମିତା ତା' ସହିତ ଏପରି ଆଚରଣ କରେ ନାହିଁ ? ଆଜି ତା'ର ହଠାତ୍ ହେଲା କ'ଣ ?

ମଧୁମିତା ନାଜ୍‌ନିନ୍‌କୁ ନିଜର ସନ୍ତାନ ପରି କୋଳରେ ଚାପି ଧରି କହିଲା : ତୋ'ର ଦୁଃଖର ଦିନ ଶେଷ ହୋଇ ଯାଇଛି ନାଜ୍ ! ତୋ ବର ଲେଖିଛି ତୋତେ ଆସି ନେଇଯିବ । ତା'ର ଚାକିରିରେ ଉନ୍ନତି ହୋଇଚି, ସେ କ୍ୱାଟର ପାଇଚି । ତୋର ଆଉ ଦୁଃଖ ନାହିଁ ନାଜ୍ । ତୋ ବର ଆସିବ । ତୋତେ ସାଙ୍ଗରେ ନେଇଯିବ । ଦୁହେଁ ମିଶି ସଂସାର କରିବ । ଆଉ କେତେ ମାସ ପରେ ତମ ସଂସାରକୁ ଉଜ୍ଜ୍ୱଳ କରି ଆସିବ ଛୋଟ ଶିଶୁ ।

ନାଜ୍‌ନିନ୍ କିନ୍ତୁ ମଧୁମିତାର କଥା ବୋଧହୁଏ ଆଉ ଶୁଣିପାରି ନ ଥିଲା । ତା' ସ୍ୱାମୀ ଆସିବ, ତାକୁ ସଙ୍ଗରେ ନେଇଯିବ, ସେତିକି ଶୁଣି ସାରିବା ପରେ ତାର ମନ ହଜି ଯାଇଥିଲା ଗୋଟିଏ ବଳିଷ୍ଠ ଛାତି ତଳେ । ଯେଉଁ ଛାତି ତଳ ତାତିର ସ୍ପର୍ଶ ଅନୁଭବ କରି ସେ ପଥ ଚାହିଁ ବସି ରହିଛି ଆଜିଯାଏ ।

ମଧୁମିତା ନାଜ୍‌ନିନ୍‌କୁ ହଲାଇ ଦେଇ କହିଲା : ସତରେ ତୁ ଚାଲିଯିବୁ ନାଜ୍ ? ତୋ ଦିଦି ପାଇଁ କ'ଣ ତୋ ପ୍ରାଣରେ ଟିକିଏ ହେଲେ ଅନୁକମ୍ପା ଜାଗିବ ନାହିଁ ?

ନାଜ୍‌ନିନ୍ ମଧୁମିତାର ଅନ୍ତରର ବ୍ୟଥା ହୁଏତ ବୁଝିବା ଭଳି ଅବସ୍ଥାରେ ନ ଥିଲା । ସେ ଭଗବାନଙ୍କ ଉଦ୍ଦେଶ୍ୟରେ ଦୁଇହାତ ଯୋଡ଼ି ପ୍ରଣାମ କରି କହିଲା : ଭଗବାନ

ତୁମର ମଙ୍ଗଳ କରନ୍ତୁ ଦିଦି । ତମେ ସୁଖରେ ରୁହ । ଏ ଗରିବଗୁରୁବାଗୁଡ଼ାଙ୍କ କଥା ଖାଲି ଟିକିଏ ମନେ ରଖିଥିବ ।

ନାଇ୍ନିନ୍ ଚିଠିଟାକୁ ମଧୁମିତା ହାତରୁ ଟାଣି ନେଇ ଦେଖିଲା ଟିକିଏ, ତା'ପରେ ମୁହଁରେ ଲଗାଇ ଚୁମ୍ବନ ଦେଲା ଦି'ଥର, ପୁଣି ଛାତି ତଳେ ଢାକି ଦେଉ ଦେଉ ପଚାରିଲା : କୋଉଦିନ ସେ ଆସିବେ ଦିଦି ? ଆଜି ନୁହେଁ ତ ?

ମଧୁମିତା ନାଇ୍ନିନ୍ ମନର ଆଗ୍ରହ ଭାଙ୍ଗିପାରିଲା ନାହିଁ । ଚିଠିରେ ଆସିବାର କୌଣସି ନିର୍ଦ୍ଦିଷ୍ଟ ଦିନ କଥା ଲେଖା ନ ଥିଲେ ବି ସେ କହିଲା : ବର ତୋର ଏଇ ଦିନେ ଦୁଇଦିନ ଭିତରେ ଆସିଯିବ ଲୋ । ତୁ ବ୍ୟସ୍ତ ହୁଅ ନାଇଁ ।

ନାଇ୍ନିନ୍ ନଇଁପଡ଼ି ମଧୁମିତାର ପାଦଧୂଳି ନେଇ ମୁଣ୍ଡରେ ବୋଳିଲା । କହିଲା : ତମ ତୁଣ୍ଡ ସୁତୁଣ୍ଡ ହେଉ ଦିଦି ।

ମଧୁମିତା ଦେଖିଲା ନାଇ୍ନିନ୍‌ର ଦେହମୁହଁରେ ଅପୂର୍ବ ଏକ ପରିବର୍ତ୍ତନର ଢେଉ ଛୁଟିଛି । ସେ ଚଞ୍ଚଳ ହୋଇ ଉଠିଛି, ଉତ୍ତାଳ ହୋଇ ପଡ଼ିଛି ।

ମନର ମଣିଷ ପାଖକୁ, ନିର୍ଭୟ ଆଶ୍ରୟକୁ ଫେରି ଯିବାକୁ କାହାକୁ ସୁଖ ଲାଗେ ନାହିଁ ?

ଆଉ ସେ ? ଗୋଟାଏ ଦୀର୍ଘଶ୍ୱାସ ପଞ୍ଜରା ଥରାଇ ବାହାରି ଆସିଲା ତା'ର । ସେ ପୁଣି ଥରେ ଶୋଇବାକୁ ଚେଷ୍ଟା କଲା । କିନ୍ତୁ ଶିଡ଼ିରେ କାହାର ଭାରି ପାଦଶବ୍ଦ ଶୁଣି ବୁଲି ଅନେଇଲା ପଛକୁ । ଆରେ, ଡାଡ଼ି ଯେ ! କେବେ ସେ ତ ଆସନ୍ତି ନାହିଁ ଉପରକୁ । ଆଜି ହଠାତ୍ ସଶରୀରେ ଡାଡ଼ିଙ୍କର ଆବିର୍ଭାବ କାହିଁକି ?

ମଧୁମିତା କେଶବାସ ସଜାଡ଼ି ବିଛଣା ଉପରେ ବସିଲା । ଶଶୀଶେଖର ପ୍ରସନ୍ନ ହସ ହସି ଭିତରକୁ ପଶୁ ପଶୁ କହିଲେ : ସକାଳୁ ଆସିଲି ତୋତେ ବିରକ୍ତ କରିବା ପାଇଁ ମିତା । କାରଣ ଚନ୍ଦ୍ରକାନ୍ତକୁ ମୁଁ ବର୍ତ୍ତମାନ ଫୋନ୍ କରିଥିଲି । ସେ କହିଚି, ଅଫିସ୍ ଗଲାବେଳେ ଏଇବାଟ ହେଇ ଯିବ । ସେଥିପାଇଁ ତୋତେ ପ୍ରସ୍ତୁତ ହୋଇ ରହିବାକୁ ହେବ !

ମଧୁମିତା ନୀରବରେ ଶଶୀଶେଖରଙ୍କ କଥା ଶୁଣୁଥିଲା । ସେ ହାତରେ ଧରିଥିବା ଗୋଟିଏ ବନ୍ଦ ଖାମ୍ ମଧୁମିତା ଆଡ଼କୁ ବଢ଼ାଇ ଦେଇ କହିଲେ : ଫଟୋଗୁଡ଼ିକ ବେଶ୍ ସକ୍‌ସେସ୍‌ଫୁଲ ହୋଇଚି । ମୋର ବିଶ୍ୱାସ, ଏତେ ବାଟଯାଏ କଥା ଯିବ ନାହିଁ । ଚନ୍ଦ୍ରକାନ୍ତଟା ଭାରି ସରଳ ପିଲାଟାଏ ! ତୋ' ପ୍ରତି ତା'ର ଅଗାଧ ବିଶ୍ୱାସ । ତୁ ଯାହା କହିବୁ, ସେ ତାହା କରିବାକୁ ଅସୀକାର କରିବ ନାହିଁ ।

ମଧୁମିତା ଶଶୀଶେଖରଙ୍କର ହାତରୁ ବନ୍ଦ ଖାମ୍‌ଟି ନେଇ ନୀରବରେ ଖୋଲିଲା । ତହିଁରେ ପାଞ୍ଚ ଛଅଖଣ୍ଡି ଫଟୋଗ୍ରାଫ୍ । ସେଗୁଡ଼ିକ ସବୁ ଚନ୍ଦ୍ରକାନ୍ତ ଆଉ ମଧୁମିତାର । ଉତ୍ସବ ଦିନ ରାତ୍ରିରେ କ୍ଲବର ଏକ ସତନ୍ତ୍ର କକ୍ଷରେ ମଧୁମିତା ଓ ଚନ୍ଦ୍ରକାନ୍ତର ବିଶେଷ ମୁହୂର୍ତ୍ତର ଫଟୋଗ୍ରାଫ୍ । ମଧୁମିତା ଖଣ୍ଡିଖଣ୍ଡି କରି ଦେଖିଲା ପ୍ରତ୍ୟେକଟି । ସବୁଗୁଡ଼ିକ ନିଖୁଣ । କିନ୍ତୁ ତା' ମନରେ କୌଣସି ଉତ୍ତେଜନା ନ ଥିଲା, ପ୍ରାଣରେ କୌଣସି ଚାଞ୍ଚଲ୍ୟ ନ ଥିଲା ।

ଶଶୀଶେଖର ନୀରବରେ ଲକ୍ଷ୍ୟ କରିଥିଲେ । ଫଟୋଗୁଡ଼ିକୁ ମଧୁମିତା ଖାମ୍‌ରେ ଭରିବା ବେଳକୁ ସେ ପୁଣି ଧୀରେ ଧୀରେ କହିଲେ : ସବୁଠାରୁ ଆମ କ୍ଲବରେ ତୋ'ର ସୁଖ୍ୟାତି ବେଶି, ତା'ର କାରଣ ତୋ'ର ଦାୟିତ୍ୱଗୁଡ଼ିକ ତୁ ଖୁବ୍ ଆନ୍ତରିକତାର ସହ ପାଳନ କରିଥାଉ । କିନ୍ତୁ ମୁଁ ଆଶା କରୁଛି, ମୋ ପ୍ରେସିଡ଼େଣ୍ଟ ହେବା ପରେ ତୋ'ର ଦାୟିତ୍ୱ ଅଧିକ ବଢ଼ିଗଲା । ତୋ ସୁଖ୍ୟାତି ଆଉ ମୋ ସୁଖ୍ୟାତି ଦୁହେଁ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇ ପଡ଼ିଲେ ।

ମଧୁମିତା ତଥାପି ନୀରବରେ ଶୁଣୁଥିଲା ।

ଶଶୀଶେଖର କହିଲେ : ଆଉ ସମୟ ନାହିଁ ମିତା । ଏଥର ପ୍ରସ୍ତୁତ ହେବାକୁ ହେବ । ଚନ୍ଦ୍ରକାନ୍ତ କଥା ଜାଣିଚୁ ତ ! ସେ ହୁଏତ ଏଇ ମୁହୂର୍ତ୍ତରେ ଆସି ପହଞ୍ଚି ଯାଇପାରେ ।

ମଧୁମିତାଆଳସ୍ୟ ମିଶା ସ୍ୱରରେ କହିଲା : ମୋତେ ତା'ହେଲେ କ'ଣ କରିବାକୁ ହେବ ଏଇନେ ? ଫଟୋଗୁଡ଼ିକ କ'ଣ ତାଙ୍କୁ ଦେଇଦେବି ?

ଶଶୀଶେଖର ହସି ହସି ଗଡ଼ିଗଲେ । କହିଲେ : ଦିନକୁ ଦିନ ପିଲା ହୋଇଯାଆନି ମିତା । ପଥ ମୁଁ ବାଛି ରଖିଛି । ତୁ ଆଗେଇବା ମାତ୍ରେ କୃତିତ୍ୱ ଅର୍ଜନ କରିବୁ ।

ମଧୁମିତା ଚାହିଁଲା ଶଶୀଶେଖରଙ୍କ ମୁହଁକୁ । ସେ ଚାହାଣିରେ ଆକୁଳତା ଭରି ରହିଥିଲା । ତଥାପି ସେ ସ୍ୱରକୁ ଯଥା ସମ୍ଭବ ସଂଯତ କରିବାକୁ ଚେଷ୍ଟା କରି କହିଲା : ତମେ ଶୀଘ୍ର ତମର ବକ୍ତବ୍ୟ ଶେଷ କର ଡାଡ଼ି ! ମୋତେ କ'ଣ କରିବାକୁ ହେବ କୁହ ।

ଶଶୀଶେଖର କହିଲେ : ଚନ୍ଦ୍ରକାନ୍ତ ମୋତେ ଆସି ଦେଖିବ, ମୁଁ ଖୁବ୍ ଚିନ୍ତିତ ଏବଂ ବ୍ୟଥିତ । କାରଣ ପଚାରି ମୋଠାରୁ କୌଣସି ସଦୁତ୍ତର ନ ପାଇ ତୋ ପାଖକୁ ନିଶ୍ଚୟ ଛୁଟି ଆସିବ । ତୋତେ ନିଶ୍ଚୟ କାରଣ ପଚାରିବ । ତା'ପରେ ତୁ ଏଣ୍ଡୁତେଣ୍ଡୁ ବାଁରେଇ ଯେତେବେଳେ ଅସଲ କାରଣ ଆରମ୍ଭ କରିବୁ, ସେତେବେଳେ କହିବୁ ଆମର ଘରଦ୍ୱାର, ସମ୍ପତ୍ତି ବାଡ଼ି, ସବୁ ନିଲାମରେ ଉଠିଛି, ଲକ୍ଷେ ଟଙ୍କାକୁ । ଡାଡ଼ି ମା'ର ଗହଣା ଗାଣ୍ଠି ବିକ୍ରୟ କରି ପ୍ରାୟ ପଚାଶ ହଜାର ସଂଗ୍ରହ କରିଛନ୍ତି । ଦୁଇଦିନ ଭିତରେ ଆଉ ପଚାଶ ହଜାର ସଂଗ୍ରହ କରି ନ ପାରିଲେ, ଆମର ସତ୍ତା ଲୋପ ପାଇଯିବ । ସେଇଥିପାଇଁ ଡାଡ଼ିଙ୍କ ମନ ମିଜାଜ୍ ଠିକ୍ ନାହିଁ । କାଲିଠାରୁ ତାଙ୍କର ବହୁ ଆତ୍ମୀୟ ସ୍ୱଜନଙ୍କ ନିକଟକୁ ଫୋନ୍ କରି କରି ସେ ବ୍ୟର୍ଥ ହୋଇ ସାରିଲେଣି । କିନ୍ତୁ କେହି ତାଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ନୁହନ୍ତି ।

ମଧୁମିତା ବୋଧହୁଏ ଆଗକୁ ଆଉ କିଛି ଶୁଣିବାକୁ ଚାହୁ ନ ଥିଲା । ସେ ଉଠି ଠିଆ ହୋଇ ପଡ଼ିଲା ଏବଂ ସଙ୍ଗେସଙ୍ଗେ ଦ୍ରୁତ ବେଗରେ ଯାଇ ବାଥରୁମ୍‌ର ଦରଜାଟା ଖୁବ୍ ଜୋର୍‌ରେ ବନ୍ଦ କରିଦେଲା ।

ଶଶୀଶେଖର ବୋଧହୁଏ ମଧୁମିତାଠାରୁ ଏପରି ବ୍ୟବହାର ଆଶା କରି ନ ଥିଲେ । ସେ ଉଠି ଠିଆ ହୋଇ ପଡ଼ିଲେ । ହାତଟା ତାଙ୍କର ମୁଷ୍ଟିବଦ୍ଧ ହୋଇଉଠିଲା । କପାଳରେ ଚିନ୍ତାର ରେଖା ଫୁଟି ଉଠିଲା । ସେ ଘରଟାରୁ ଏମୁଣ୍ଡରେ ସେ ମୁଣ୍ଡଯାଏ ଦୁଇ ଚାରିଥର ପଦଚାରଣ କରି ବାଥ୍‌ରୁମ୍ ଯାଏ ଆଗେଇ ଗଲେ । ମୁଷ୍ଟିବଦ୍ଧ ହାତଟା ତାଙ୍କର ଦରଜାରେ କରାଘାତ କରିବାକୁ ଯାଇ ସଂଯତ ହେଲା । ଶଶୀଶେଖର ନିଜକୁ ସଂଯତ କରି, ଗଳାକୁ ସ୍ୱାଭାବିକ କରିବାକୁ ଚେଷ୍ଟା କରି କହିଲେ : ମୁଁ ତତେ ଲାଇବ୍ରେରୀରେ ଅପେକ୍ଷା କରୁଚି ମିତା । ତୁ କାମ ଶେଷ କରି ଦଶମିନିଟ୍ ଭିତରେ ଦେଖା କରିବୁ ।

ଶଶୀଶେଖର ଶୁଣିଲେ, ବାଥରୁମ୍ ଭିତରର ସବୁ ପାଇପଗୁଡ଼ାକ ବୋଧହୁଏ ଏକା ସଙ୍ଗରେ ଜଳ ନିଷ୍କାସନ କରିବାରେ ଲାଗି ଯାଇଛନ୍ତି ।

ସେ ଦ୍ରୁତ ପଦ ଚାଲି ତଳକୁ ଓହ୍ଲେଇ ଗଲେ ।

ମଧୁମିତା ଠିକ୍ ଦଶ ମିନିଟ୍ ପରେ ଯାଇ ପହଞ୍ଚିଲା ଲାଇବ୍ରେରୀ ରୁମ୍‌ରେ । ଶଶୀଶେଖର ଟେଲିଫୋନ୍‌ରେ କଥା ହେଉଥିଲେ କାହା ସହିତ । ଇଙ୍ଗିତରେ ମଧୁମିତାକୁ ସାମ୍ନା ଚେଆରରେ ବସିବାକୁ କହି ଟେଲିଫୋନ୍‌ରେ କହିଲେ : ହଁ ହଁ, ପାଞ୍ଚଟାବେଳକୁ ଆସିଲେ ଚଳିବ । ତା'ପରେ ରିସିଭରଟା ରଖିଦେଇ ମଧୁମିତାକୁ କହିଲେ, ମୁଁ ଜାଣେ ତୁ ଠିକ୍ ଆସିବୁ । ଚନ୍ଦ୍ରକାନ୍ତ ବର୍ତ୍ତମାନ ଫୋନ୍ କରିଥିଲା । ସେ କହିଲା, ଅଫିସ୍ ପରେ ଏଇବାଟେ ଫେରିବ । ଭଲ ହେଇଚି । ଆମକୁ ପ୍ରଚୁର ସମୟ ମିଳିଗଲା । ଏହା ଭିତରେ ତୁ ନିଜକୁ ପ୍ରସ୍ତୁତ କରିନିଏ ।

ମଧୁମିତା ଶାନ୍ତ ସ୍ୱରରେ କହିଲା : ନିଜକୁ ମୁଁ ପ୍ରସ୍ତୁତ କରିସାରିଛି ।

: ଗୁଡ୍ । ସେଇଆ ତ ଦରକାର ।

: କିନ୍ତୁ......

: ପୁଣି କିନ୍ତୁ କ'ଣ ମିତା । ଆମେ ପୃଥିବୀକୁ ଆସିଛନ୍ତି କାମ କରିବା ପାଇଁ, ଆମର ସବୁଠାରୁ ବଡ଼ କଥା ହେଲା କର୍ତ୍ତବ୍ୟ ପାଳନ ।

: ଚନ୍ଦ୍ରକାନ୍ତକୁ କିନ୍ତୁ ମୁଁ ମିଛକଥା କହିପାରିବି ନାହିଁ । ମୋତେ କ୍ଷମା କର ଡାଡ଼ି । ମୁଁ ପାରିବି ନାହିଁ ।

ଶଶୀଶେଖର ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲେ ମଧୁମିତା ମୁହଁକୁ ।

ସେହିଭଳି ଶାନ୍ତ ସ୍ୱରରେ କହିଲେ : ମୁଁ ଜାଣେ, ଚନ୍ଦ୍ରକାନ୍ତ ତତେ ଭୀଷଣ ଭଲ ଲାଗିଛି । ତା'ଛଡ଼ା ନାରୀମାନଙ୍କର ହୃଦୟ ଯଥେଷ୍ଟ କୋମଳ । ସେ ଯାହାକୁ ଭଲ ପାଇ ବସନ୍ତି, ସହଜରେ ତା' ସହିତ କୌଣସି ଅସଦ୍ ଆଚରଣ କରିବାକୁ ଚାହାନ୍ତି ନାହିଁ । କିନ୍ତୁ ଏ କ୍ଷେତ୍ରରେ ଆମର ଏହି କେସ୍‌ଟି ସ୍ୱତନ୍ତ୍ର । କାହାରିକୁ ଅନ୍ତର ଭରି ଭଲ ପାଇବା ଆମର ଧର୍ମ ନୁହେଁ, ସେ କଥା ତ ତୁ ଜାଣିଚୁ ମିତା ।

: କିନ୍ତୁ ଡାଡ଼ି ! ମୁଁ ଯଦି ତମ ନିଜର ଝିଅ ହୋଇଥାଆନ୍ତି, ତେବେ କ'ଣ ମୋ ପ୍ରତି ଏପରି ଅବିଚାର କରି ଥାଆନ୍ତ ?

ଶଶୀଶେଖର ମୁହୂର୍ତ୍ତେ ନୀରବ ରହି ପୁଣି କହିଲେ: ତୁ ଯେ ମୋର ଝିଅ ନୋହୁ, ଆଜି ହଠାତ୍ ତୋ ମନରେ ଏ ଦ୍ୱନ୍ଦ୍ୱ ସୃଷ୍ଟି ହେଲା କାହିଁକି ? କର୍ତ୍ତବ୍ୟ ପାଳନ କରିବାରେ ମୋ ପାଖରେ କୌଣସି ପାତର ଅନ୍ତର ନୀତି ନାହିଁ ।

: ନା ଡାଡ଼ି । ଚନ୍ଦ୍ରକାନ୍ତ କେସ୍‌ରେ ମୋତେ ତମକୁ ଭିନ୍ନ ଦୃଷ୍ଟିରେ ଦେଖିବାକୁ ହେବ । ବରଂ ମୁଁ କ୍ଲବ୍ ପାଇଁ ଆଉ ପାଞ୍ଚଟା ମେମ୍ବର ସଂଗ୍ରହ କରିବା ଦେବି, କିନ୍ତୁ ଚନ୍ଦ୍ରକାନ୍ତ....

ଶଶୀଶେଖର ଏଥର ଚିତ୍କାର କରି ଉଠିଲେ । କହିଲେ : ମୁଁ କ୍ଲବର ପ୍ରେସିଡ଼େଣ୍ଟ । ତେଣୁ କ୍ଲବର ଭଲ ମନ୍ଦ ସମ୍ବନ୍ଧରେ ତୀକ୍ଷ୍ଣ ଦୃଷ୍ଟି ରଖିବା ଏବଂ କ୍ଲବର ନିୟମ କାନୁନ ମାନି ଯେପରି ସମସ୍ତେ ଚଳନ୍ତି, ସେଥିପ୍ରତି ଧ୍ୟାନ ଦେବା ମୋର ପ୍ରଥମ କର୍ତ୍ତବ୍ୟ । କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ବା କାହାରି ଆକୁଳ ନିବେଦନରେ ଭୁଲି ମୁଁ କର୍ତ୍ତବ୍ୟରେ ଅବହେଳା କରିପାରିବି ନାହିଁ ମିତା । ତେଣୁ ତୋତେ ମୋର ଆଦେଶ ପାଳନ କରିବାକୁ ହିଁ ହେବ ।

ମଧୁମିତାର ଆଖି ଦୁଇଟା ଧୀରେଧୀରେ ଜଳମଗ୍ନ ହୋଇ ଆସୁଥିଲା । ସେ କହିଲା : ମୁଁ ଆଜିଯାଏ ତମର ପ୍ରତିଟି ଆଦେଶ ହସି ହସି ପାଳନ କରିଛି ଡାଡ଼ି । କୌଣସି ଦିନ କାହାରି ଭଲ ମନ୍ଦ ପ୍ରତି ଟିକିଏ ବି ଚାହିଁ ନାହିଁ । କିନ୍ତୁ ଆଜି ମୋ ପ୍ରତି ତମକୁ ସୁବିଚାର କରିବାକୁ ହେବ ଡାଡ଼ି । ମାନବିକତାର ସାମାନ୍ୟତମ କରୁଣା ମୁଁ ଆଜି ତମଠାରୁ ଭିକ୍ଷା କରୁଛି ।

ଏଥର ଶଶୀଶେଖର ହସି ଉଠିଲେ ହୋ ହୋ ହୋଇ ।

କହିଲେ : ବୟସ ତୋଠାରୁ ମୋର ତିନିଗୁଣ ଅଧିକ ହେବ । ତେଣୁ ଦୁନିଆ ସମ୍ବନ୍ଧରେ ମୋର ଯଥେଷ୍ଟ ଜ୍ଞାନ ଅଛି । ମାନବିକତା ସମ୍ବନ୍ଧରେ ବି ତୋ'ଠାରୁ ମୁଁ ଅଧିକ ବୁଝେ । ମଣିଷ ମନର ପ୍ରତିଟି ସୂକ୍ଷ୍ମ ଚିନ୍ତାଭାବନା ସହିତ ମୋର ପରିଚୟ ଅଛି । ସବୁ କ୍ଷଣସ୍ଥାୟୀ ମିତା, ସବୁ ବୁଦବୁଦ ପରି । କେଉଁ ମୁହୂର୍ତ୍ତରେ ମଣିଷ ମନରେ ଫୁଟି ଉଠି କିପରି ସେ ଅତର୍କିତ ଭାବରେ ଲୀନ ହୋଇଯାଏ, ମଣିଷ ତା'ର ହିସାବ ରଖିପାରେ ନାହିଁ । ତେଣୁ ଆଜି ତୋ ମନ ଯାହା ପ୍ରତି ଅଧିକ ସମ୍ବେଦନଶୀଳ ହୋଇ ଉଠିଛି, କାଲି ଦେଖିବୁ ତାହାରି ପ୍ରତି ତୋ ମନ ହିଂସ୍ର ହୋଇଉଠିବ । ତେଣୁ ଏଇସବୁ ଭାବନାର କୌଣସି ସ୍ଥାୟୀ ରୂପ ନାହିଁ । ମୁଁ ଆଶା କରୁଚି, ଏହାପରେ ତୁ ତୋ କର୍ତ୍ତବ୍ୟ ପାଳନରେ ଅବହେଳା କରିବୁ ନାହିଁ ।

: କିନ୍ତୁ ଡାଡ଼ି, ତମେ ଭୁଲି ଯାଉଛ କାହିଁକି ଯେ, ନାରୀ ଆଉ ପୁରୁଷ ଭଗବାନଙ୍କର ଦୁଇଟି ସ୍ୱତନ୍ତ୍ର ସୃଷ୍ଟି । ତେଣୁ ନାରୀ ମନ ଆଉ ପୁରୁଷ ମନ ଭିତରେ ଦୁଇଟି ସ୍ୱତନ୍ତ୍ର ସତ୍ତା ରହିଛି ।

: ମୁଁ ସବୁ ବୁଝିଛି ମିତା । ମାନବବାଦ, ଈଶ୍ୱରବାଦର ବହୁ ଊର୍ଦ୍ଧ୍ୱରେ ଆମର କର୍ତ୍ତବ୍ୟବୋଧ । ଆମକୁ ସବୁ ଭୁଲିଯିବାକୁ ହେବ । ଆମର ସ୍ଥିତି, ଅବସ୍ଥିତି ସମ୍ବନ୍ଧରେ ବି ଆମେ ଅଚେତନ ରହିବା । ଆମେ ନିଜର ସ୍ୱାର୍ଥ ସମ୍ବନ୍ଧରେ ଚିନ୍ତା କରିପାରିବା ନାହିଁ ମିତା । ସେ ଅଧିକାର ଆମର ନାହିଁ । ତେଣୁ ଅନୁଷ୍ଠାନର ସ୍ୱାର୍ଥ ପାଇଁ ସାମାନ୍ୟତମ ସୁଯୋଗ ବି ଆମେ ନଷ୍ଟ କରିପାରିବା ନାହିଁ ।

: ଡାଡ଼ି ! ସବୁ ପରେ ବି ମୁଁ ମଣିଷ । ଅନୁଷ୍ଠାନର ଦ୍ୱାହି ଦେଇ ଗଢ଼ିଉଠିଥିବା ଏଭଳି ଗୋଟାଏ ପ୍ରତିଷ୍ଠାନର ସ୍ୱାର୍ଥ ପାଇଁ ଅତୀତରେ ମୁଁ କ'ଣ ନ କରିଛି କହିଲ ? ଅଶୋକ କଥା ମନେପଡ଼େ ତମର ? ରେସ୍‌କୋର୍ସରୁ ତାକୁ ଟାଣି ଆଣିଥିଲି ମୁଁ । ତା' ସହିତ ଆନ୍ତରିକତା ଜମାଇ, ତାକୁ ସବୁ ଦେବାର ଭରସା ଦେଇ ନିଜର କରିଥିଲି ମୁଁ । କିନ୍ତୁ ଶେଷ ଯାଏ କର୍ତ୍ତବ୍ୟ ପାଳନରେ ସାମାନ୍ୟତମ ଅବହେଳା କରିଥିଲି କି ?

ଅଶୋକ ଶେଷ ପର୍ଯ୍ୟନ୍ତ ସର୍ବସ୍ୱାନ୍ତ ହୋଇ ଦେଶାନ୍ତରୀ ହୋଇଗଲା । ତା' ପାଇଁ ମୋ ପ୍ରାଣରେ ଟିକିଏ ହେଲେ କରୁଣା ଜାଗି ନ ଥିଲା । କାରଣ ମୁଁ ଜାଣିଥିଲି ଅଶୋକ ମୋର କେହି ନୁହେଁ, ମୁଁ ଯାହା କରୁଛି କେବଳ ମୋର କର୍ତ୍ତବ୍ୟ କରୁଛି ।

ତା'ପରେ ପ୍ରତିଷ୍ଠାନର ସ୍ୱାର୍ଥ ଦୃଷ୍ଟିରୁ ମୁଁ ଧରିଥିଲି ଦେବନାଥକୁ । ତା' ପାଖରେ ବି ମୋତେ ମୋର ଦେହମନ ସମସ୍ତ ବିକ୍ରୟ କରିବାକୁ ହେଇଥିଲା । ପାଦେ ପାଦେ କରି ମାପିଚୁପି ମୁଁ କର୍ତ୍ତବ୍ୟ ପାଳନ କରିଥିଲି । ତା'ର ଦୁଇ ଦୁଇଟା କୋଠା, ବଡ଼ ବଜାରର ବିରାଟ ଲୁଗା ବ୍ୟବସାୟ, ସବୁ ସେ ହରାଇ ଆଜି ତା'ର ଅବସ୍ଥା କ'ଣ ହେଇଚି ଜାଣ ତମେ ? ସେ ଆଜି ପେଟ ପୋଷିବା ପାଇଁ, ମୁହଁରେ ଚୂନକାଳି ବୋଳି ରଙ୍ଗମଞ୍ଚରେ ଜୋକର ସାଜୁଛି । ତଥାପି ତ ମୁଁ ମୋର କର୍ତ୍ତବ୍ୟରେ ଅବହେଳା କରି ନ ଥିଲି । ତମେ କ'ଣ ଭାବିଛ ସେମାନଙ୍କ ସହିତ ଦୀର୍ଘଦିନର ମିଳାମିଶା ଭିତରେ ସେମାନଙ୍କ ପ୍ରତି ମୋର କୌଣସି ଆନ୍ତରିକତା ଜନ୍ମି ନ ଥିଲା ? କେଉଁ କେଉଁ ମୁହୂର୍ତ୍ତରେ ମୁଁ କ'ଣ ସେମାନଙ୍କୁ ଧରି ଘରସଂସାର କରିବାକୁ ଇଚ୍ଛା ପ୍ରକାଶ କରୁ ନ ଥିଲି ?

କିନ୍ତୁ ଏସବୁ ପରେ ମୋର ମନେ ଥିଲା ଆମର କ୍ଲବ କଥା । କ୍ଲବ ପ୍ରତି ମୋର କର୍ତ୍ତବ୍ୟ କଥା । ସେତେବେଳେ ତ ମୁଁ ପ୍ରତିବାଦ କରି ନ ଥିଲି ଆଦେଶ ପାଳନରେ ?

ବିଶେଷ କରି ପ୍ରାଣତୋଷ ହାଜରା କଥା ଚିନ୍ତା କଲ । କେତେ ଆଶା ଥିଲା ତା' ମନରେ । କେତେ ସପ୍ନ ରଚନା କରିଥିଲା ସେ ମୋତେ କେନ୍ଦ୍ର କରି । ଯେଉଁଦିନ ଏସ୍‌ପ୍ଲାନେଡ଼ରୁ ତାକୁ ଧରି ଆଣି ତମ ପାଖରେ ହାଜର କରାଇଥିଲି, ତମେ ତ ତା' ଚେହେରାର ପ୍ରଶଂସାରେ ଶତମୁଖ ହୋଇ ଉଠିଥିଲ । ରକ୍ତ ଯେମତି ଥୋପି ପଡୁଥିଲା ତା ମୁହଁରେ । କି ଅପୂର୍ବ ସ୍ୱାସ୍ଥ୍ୟ ! ତମେ ତ ପୁଣି ଉଚ୍ଚକଣ୍ଠରେ ତା'ର ପୁରୁଷତ୍ୱର ପ୍ରଶଂସା କରିଥିଲ । ଆଉ ମୁଁ ତ ନାରୀ । ସେତେବେଳେ ମୋ ମନର ଅବସ୍ଥା କଥା ତମକୁ ଅଜଣା ନ ଥିଲା ।

ଆହୁରି ଖୁସି ହୋଇଥିଲ, ଯେତେବେଳେ ତମେ ଜାଣିଲ ଯେ ପ୍ରାଣତୋଷ ହାଜରା ବିଶାଳ ସମ୍ପତ୍ତିର ଅଧିକାରୀ । ସେ ଏକମାତ୍ର କୁଳନନ୍ଦନ । ବାପା ମା' କେହି ନାହାନ୍ତି ତା' କାର୍ଯ୍ୟରେ ପ୍ରତିବାଦ କରିବା ପାଇଁ ।

ତା'ପରେ ତମେ କରିଥିଲ କ'ଣ ? ମୋତେ ପ୍ରାଣତୋଷ ପଛରେ ଛୁଟାଇ ଦେଇଥିଲ । ମୋର କାନେକାନେ ଶିକ୍ଷା ଦେଇଥିଲ, ଏପରି ସୁଯୋଗ ଜୀବନରେ କ୍ୱଚିତ ଆସିଥାଏ । ହାତଛଡ଼ା କରିବାର ନୁହେଁ ।

ମୁଁ ମୋର କର୍ତ୍ତବ୍ୟ ଆରମ୍ଭ କରିଦେଇଥିଲି । ସବୁପ୍ରକାର ସମ୍ଭାବନା ପ୍ରାଣତୋଷ ମନରେ ଲଗାଇ, ମୋ ପ୍ରତି ଆକର୍ଷିତ କରିଥିଲି । ସେ କିନ୍ତୁ ଏକା ଜିଦ୍ ଧରି ବସିଥିଲା, ପ୍ରଥମେ ବୈଦିକ ମତରେ ତା' ସହିତ ବିବାହ କରିବାକୁ ହେବ, ତା'ପରେ ଅନ୍ୟ କଥା ।

ତମେ ହଁ ଭରିଥିଲ । ପ୍ରାଣତୋଷ ସହିତ ମୋର ବିବାହ ହୋଇଥିଲା । ମୁଁ ବଧୂ ସାଜିଥିଲି । ପ୍ରାଣତୋଷର ଘର ସଜେଇଥିଲି । ମୋ ନାରୀ ମନ ସାର୍ଥକ ହୋଇଥିଲା । ମୁଁ ପ୍ରାଣତୋଷକୁ ସ୍ୱାମୀ ଭାବରେ ପାଇ ପରମ ସନ୍ତୋଷରେ ଜୀବନଯାପନର ପଥ ତ ବାଛି ନେଇପାରି ଥାଆନ୍ତି ! !

କିନ୍ତୁ ମୋର କର୍ତ୍ତବ୍ୟବୋଧ ମୋ ପ୍ରାଣରେ ଅହରହ କାର୍ଯ୍ୟ କରୁଥିଲା ।

ପ୍ରାଣତୋଷର ସମସ୍ତ ପ୍ରକାର ଆନ୍ତରିକତା ସତ୍ତ୍ୱେ ମୁଁ କରିଥିଲି କ'ଣ ? କରିଥିଲି. କାହା ପାଇଁ ?

ତମେ ସବୁ ଜାଣିଚ ଡାଡ଼ି । ତମର ନିର୍ଦ୍ଦେଶରେ ପ୍ରାଣତୋଷକୁ ମୁଁ ସ୍ଲୋ ପଏଜନ କରିଥିଲି । ନିଜର ସ୍ୱାମୀକୁ ନିଜ ହାତରେ ହତ୍ୟା କରି ନିଜ ସୀମନ୍ତର ସିନ୍ଦୂର ନିଜେ ମୁଁ ପୋଛି ପକାଇଥିଲି । ତମର ତ ସବୁ ମନେ ଅଛି ଡାଡ଼ି । ମୁଁ କୌଣସି ପ୍ରତିବାଦ କରିଥିଲି ସେତେବେଳେ ? କର୍ତ୍ତବ୍ୟରେ ଅବହେଳା କରିଥିଲି ତିଳେହେଲେ ?

କିନ୍ତୁ ଆଜି ! ନା ନା ଡାଡ଼ି । ଆଜି ମୋତେ ଆଉ କର୍ତ୍ତବ୍ୟବୋଧ ସମ୍ବନ୍ଧରେ ଶିକ୍ଷା ଦିଅ ନାହିଁ । ମୋତେ ବଞ୍ଚିବାକୁ ଦିଅ । ମୁଁ ବଞ୍ଚି ରହିଲେ ତମର, ତମ କ୍ଲବର ଅଶେଷ କଲ୍ୟାଣ ସାଧନ କରିପାରିବି ।

ମଧୁମିତା କାନ୍ଦି କାନ୍ଦି ଟେବୁଲ ଉପରେ ମୁଣ୍ଡ ପିଟୁଥିଲା ।

ଶଶୀଶେଖର ଗମ୍ଭୀର ଭାବରେ ତା' ଆଡ଼େ ଅନାଇ ରହିଥିଲେ ।

ଏକ ସମୟରେ ମଧୁମିତା ମୁଣ୍ଡରେ ହାତ ବୁଲାଇ ଅବିଚଳିତ କଣ୍ଠରେ ଧୀରେ ଧୀରେ କହିଲେ : ମୁଁ ତୋର ମନର ବେଦନା ବୁଝୁଛି ମିତା । ମୁଁ ଜାଣୁଛି ଆଜି ତୋର

ଭାବାନ୍ତର କାହିଁକି ! ତୋ ମନରେ ଆଜି ଘର ବାନ୍ଧିବାର ଯେଉଁ ପ୍ରବୃତ୍ତି ଜାଗିଛି, ସେ ଗୋଟାଏ ବୟସରେ ସବୁ ଝିଅଙ୍କ ମନରେ ଜାଗିଥାଏ । ସେଥିପାଇଁ ମୁଁ ତୋର ଦୋଷ ଦେଉନାହିଁ । କିନ୍ତୁ ତୁ ଜାଣୁ ମିତା ! ମୁଁ ତ ଆଉ ଏକଛତ୍ର ଅଧିକାରୀ ନୁହେଁ । ଆମର କମିଟି ଅଛି, କମିଟିର ନିୟମ ଅଛି; ନିୟମ ପାଳନ କରିବା ପାଇଁ ଆମେ ସମସ୍ତେ ଶପଥ ନେଇଛନ୍ତି । ଆଉ ମଧ୍ୟ ତୁ ଜାଣିଚୁ ନିୟମ ପାଳନ ନ କଲେ, କର୍ତ୍ତବ୍ୟରେ ଅବହେଳା କଲେ, କି ନିଷ୍ଠୁର ଶାସ୍ତି ଭୋଗ କରିବାକୁ ପଡ଼ିଥାଏ ।

ମଧୁମିତା ସେହିପରି କାନ୍ଦି କାନ୍ଦି କହିଲା : ମୋ ପ୍ରତି ବରଂ ସେହି ନିଷ୍ଠୁର ଶାସ୍ତି ବିଧାନର ବ୍ୟବସ୍ଥା କର ଡାଡ଼ି । ମୁଁ କିନ୍ତୁ ଆଉ ପାରୁ ନାହିଁ । ଯେତେବେଳେ ମୁଁ ଚିନ୍ତା କରୁଚି ମୋର ଗତଦିନର କଥା, ମୋର ହେଉଛି କେତେଗୁଡ଼ାଏ ଆକୁଳ ଆଖି ମୋର ଚାରିଆଡ଼େ ବୁଲୁଛନ୍ତି । ସମସ୍ତେ ଯେପରି ମୋତେ କୈଫିୟତ୍ ମାଗୁଚନ୍ତି, ଆମର ଏପରି ସର୍ବନାଶ କାହିଁକି କଲୁ ମିତା ! ଆଶା ଦେଇ, ଭରସା ଦେଇ, ଶେଷରେ...ଶେଷରେ... ନା ଡାଡ଼ି, ମୁଁ ଆଉ ପାରୁ ନାହିଁ । ତମେ କ'ଣ ଇଚ୍ଛା କର ମୁଁ ସବୁଦିନ ଏହିପରି ଉପନାୟିକା ହୋଇ ରହିଯିବି ! ସତ କହିଲ ଡାଡ଼ି, ତମେ ତମ ନିଜର ଝିଅ ପ୍ରତି କ'ଣ ଏହିପରି ଅବିଚାର କରିପାରିଥାନ୍ତ !

ମୁହୂର୍ତ୍ତକ ପାଇଁ ବୋଧହୁଏ ଶଶୀଶେଖର ଆତ୍ମବିଭୋର ହୋଇ ଉଠିଥିଲେ । ତା'ପରେ ସେ ପ୍ରକୃତିସ୍ଥ ହୋଇ କହିଲେ : ମୁଁ ବୁଝୁଛି ମିତା । ସବୁ ବୁଝୁଛି । ବୁଝିଲେ ବି ମୋର କରିବାର କିଛି ନାହିଁ । ତୁ ତ ଜାଣୁ ଆମର ଏ ସମ୍ବନ୍ଧ କେବଳ ଅଭିନୟ ମାତ୍ର । ତୁ କେଉଁଠୁ ଆସିଛୁ, ମୁଁ କେଉଁଠୁ ଆସିଛି, ଆମେ ଜାଣନ୍ତି ନାହିଁ । କାହାରି ପରିଚୟ ଜାଣିବା ପାଇଁ ମଧ୍ୟ ଆମେ କୌଣସି ଦିନ ଆଗ୍ରହ ପ୍ରକାଶ କରି ନାହାନ୍ତି । ଏ ଘର, ଏ ସଂସାର ସବୁ ମିଥ୍ୟା । ସବୁ ଅନ୍ୟର । ଆମେ କେବଳ ଗୋଟିଏ ଗୋଟିଏ ଭୂମିକାରେ ଅଭିନୟ କରି ଚାଲିଛନ୍ତି । ଅବଶ୍ୟ ତୋ ଆଉ ମୋ ଭିତରେ ଯେଉଁ ଅନ୍ତର୍ନିହିତ ସମ୍ବନ୍ଧଟି ଲୁଚି ରହିଛି, ତା'ର ସତ୍ୟତା ଅନେକ ସମୟରେ ମୁଁ ଅନୁଭବ କରେ । ସେଇଟା ବୋଧହୁଏ ଆମେ ଦୀର୍ଘ ଦିନ ଧରି ଗୋଟିଏ ଜାଗାରେ ରହିଥିବାରୁ । ଯା' ହେଉ, ସେ ସବୁ କଥା ଆଜି ଆଲୋଚନା କରିବାର ବେଳ ନୁହେଁ, କିଛି ଲାଭ ବି ନାହିଁ । ଆଜିର ତୋର ଯାହା କର୍ତ୍ତବ୍ୟ, ସେଇଟା ହେଉଛି ଚନ୍ଦ୍ରକାନ୍ତଠାରୁ ପଚାଶ ହଜାର ଟଙ୍କା ସଂଗ୍ରହ କରିବା । ତାହା ଯେ କୌଣସି ଉପାୟରେ ହେଉ ।

କହିସାରି ଶଶୀଶେଖର ଉଠି ଠିଆ ହୋଇ ପଡ଼ିଲେ ।

ମଧୁମିତା ବୋଧହୁଏ ଏହା ଭିତରେ ନିଜକୁ ପ୍ରସ୍ତୁତ କରି ନେଇଥିଲା । ସେ ମଧ କଣ୍ଠରେ ଦୃଢ଼ତା ଫୁଟାଇ କହିଲା : ମୁଁ ପାରିବି ନାହିଁ ।

ଶଶୀଶେଖର ମଧୁମିତାର କଣ୍ଠସ୍ୱର ଶୁଣି ଚମକି ଉଠିଲେ । ଦୀର୍ଘ ଏଇ ସାତ ଆଠ ବର୍ଷ ଭିତରେ କେବେ ତ ସେ ମଧୁମିତାର ଏପରି ସ୍ୱର ଶୁଣି ନ ଥିଲେ ! ତାଙ୍କର ସମସ୍ତ ଦେହର ରକ୍ତପ୍ରବାହ କିପରି ଦ୍ରୁତ ହୋଇ ଉଠିଲା । ସେ ଏକ ହିଂସ୍ର ଚାହାଣିରେ ମଧୁମିତା ମୁହଁକୁ ଚାହିଁ ଟେବୁଲରେ ବିଧା ମାରି କହିଲେ : ତତେ ଯେମିତି ହେଉ ପାରିବାକୁ ହେବ !

ମଧୁମିତା ସେହିପରି ଉତ୍ତେଜିତ କଣ୍ଠରେ କହିଲା : ମୁଁ କହୁଛି, ମୁଁ ପାରିବି ନାହିଁ ! ମୁଁ ଯାହା ପାରିବି ନାହିଁ, ତା' ଉପରେ ଆଉ କୌଣସି ବାଧବାଧକତା ଚଳିବ ନାହିଁ । ବିଶେଷ କରି ଚନ୍ଦ୍ରକାନ୍ତ ପରି ଏକ ଶାନ୍ତନିରୀହ ମଣିଷ । ଯିଏ ଶିଶୁଠାରୁ ବି ଆହୁରି ନିର୍ବୋଧ ! ତାକୁ ମୁଁ ପ୍ରତାରିତ କରିପାରିବି ନାହିଁ ।

: ତୁ ଭୁଲିଯାଉଛୁ ମିତା । ତୁ ଭୁଲି ଯାଉଚୁ କାହା ସହିତ କଥାବାର୍ତ୍ତା କରୁଚୁ । ମୁଁ ଏଇ ମୁହୂର୍ତ୍ତରେ ତୋର ଡାଡ଼ି ନୁହେଁ କିମ୍ବା ଶଶୀଶେଖର ଚଉଧୁରୀ ନୁହେଁ । ମୁଁ ରେନ୍‌ବୋ କ୍ଲବର ପ୍ରେସିଡ଼େଣ୍ଟ କହୁଚି । ତୋତେ ମୋର ଆଦେଶ ପାଳନ କରିବାକୁ ହେବ ।

ମଧୁମିତା ବୋଧହୁଏ ଉତ୍ୟକ୍ତ ହୋଇ ଉଠିଥିଲା । ସେ ଠିଆ ହୋଇପଡ଼ି ସ୍ୱରରେ ଆହୁରି କାଠିନ୍ୟ ଫୁଟାଇବାକୁ ଚେଷ୍ଟା କରି କହିଲା : ତମେ ଯିଏ ହୁଅନା କାହିଁକି, ମଧୁମିତାକୁ ଆଜି ତା' ପ୍ରତିଜ୍ଞାରୁ ଟଳାଇ ପାରିବ ନାହିଁ । ଏଇ ନିଅ ତମର ଫଟୋଗ୍ରାଫ୍, ଏଇ ରହିଲା ତମ ଉପର ଘରର ଚାବି, ମୁଁ...ମୁଁ....

ମଧୁମିତା ଖାମ୍‌ଟିକୁ ଏତେ ଜୋର୍‌ରେ ଫୋପାଡ଼ି ଦେଲା ଯେ ତା'ଭିତରେ ଥିବା ଫଟୋଗ୍ରାଫ୍‌ଗୁଡ଼ିକ ଟେବୁଲ ଉପରେ ବିଛି ହୋଇ ପଡ଼ିଲା । ସବୁଗୁଡ଼ିକ ମଧୁମିତାର ଆଉ ଚନ୍ଦ୍ରକାନ୍ତର ଅଶ୍ଳୀଳ ପୋଜ୍‌ର ଫଟୋ । ଯେଉଁଗୁଡ଼ିକ ଶଶୀଶେଖର ଛାଡ଼ି ଆସିଥିଲେ ମଧୁମିତା ଘରେ ।

ଶଶୀଶେଖର ଗର୍ଜନ କରି ଉଠିଲେ ।

: ସାବଧାନ ମିତା, ତୁ ଆଉ ପାଦେ ଆଗେଇଚୁ ତ, ଏହି ଆଗ୍ନେୟାସ୍ତ୍ରଟି ତୋ ଛାତିର ରକ୍ତ ନିଗାଡ଼ି ଆଣିବ । ଶଶୀଶେଖର ହୃଦୟରେ ଦୟାମାୟା କିଛି ଟିକିଏ ବି ଅବଶିଷ୍ଟ ନାହିଁ । କର୍ତ୍ତବ୍ୟ ହିଁ ତା'ର ଧର୍ମ ।

ମଧୁମିତା ଦେଖିଲା, ଶଶୀଶେଖରଙ୍କ ହାତରେ ପିସ୍ତଲଟା ତା'ରି ଛାତିକୁ ଲକ୍ଷ୍ୟ କରି ରହିଚି ।

ପାଦଟା ତା'ର ଆଗକୁ ଉଠି ବି ପଛକୁ ଫେରି ଆସିଲା ।

ସେ ଚାହିଁଲା ଶଶୀଶେଖରଙ୍କ ମୁହଁକୁ । ସେଠି ଦୟାମାୟା ବା ଆତ୍ମୀୟତାର ବିନ୍ଦୁ ମାତ୍ର ସଙ୍କେତ ନାହିଁ । ଆଖି ଦୁଇଟାରୁ ଯେପରି ସର୍ବନାଶର ଇଙ୍ଗିତ ଝରି ପଡୁଥିଲା ।

ମଧୁମିତା ଆଖି ମିଳାଇଲା ସେ ଆଖି ସହିତ ।

ଏତେ ତୀବ୍ର, ଏତେ ତେଜୀୟାନ୍ ସେ ଆଖିର ଚାହାଣି !

କେତୋଟି ମୁହୂର୍ତ୍ତ ମାତ୍ର !

ତା'ପରେ ହୋ ହୋ ହୋଇ ହସିଉଠିଲା ମଧୁମିତା । ହସି ଉଠିଲା ଖୁବ୍ ଜୋର୍‌ରେ । ତରଙ୍ଗାୟିତ ହସର ବନ୍ୟା ଯେପରି ବାଧା ବନ୍ଧନ କିଛି ମାନିବାକୁ ଚାହେଁ ନାହିଁ । ହସ, କେବଳ ହସର ଢେଉ ।

ଶଶୀଶେଖର ସ୍ତବ୍ଧ ହୋଇଗଲେ । ହାତର ପିସ୍ତଲଟା ତାଙ୍କର ତଳକୁ ନଇଁ ପଡ଼ିଲା ।

ହଠାତ୍ ମଧୁମିତାର ହେଲା କ'ଣ ? ଆଖି ଦୁଇଟା ଯେ ଅସ୍ୱାଭାବିକ । ମୁହଁଟାର ଭାବଟା ବି କିପରି ଅପ୍ରାକୃତିକ । ତେବେ କ'ଣ, ତେବେ କ'ଣ ହଠାତ୍ ମଧୁମିତାର ମୁଣ୍ଡ ଖରାପ ହୋଇଗଲା ?

ଶଶୀଶେଖର ପିସ୍ତଲଟା ପୁଣି ଡ୍ରୟାରରେ ବନ୍ଦ କରି ମଧୁମିତା ପାଖକୁ ଆଗେଇ ଆସିଲେ । ତା'ର ଦେହରେ ହାତ ଦେଇ ଧ୍ୟାନଭଙ୍ଗ କରେଇବା ପାଇଁ ଡାକିଲେ : ମିତା । ମିତା ! !

ମଧୁମିତା କିନ୍ତୁ ହସୁଥିଲା ।

ଅସ୍ୱାଭାବିକ ହସର ତରଙ୍ଗ ପ୍ରକୋଷ୍ଠର ପ୍ରତିଟି କୋଣ ଅନୁକୋଣରେ ପ୍ରତିଧ୍ୱନିତ ହେଉଥିଲା ।

: ମିତା ! ମିତା ! !

ଶଶୀଶେଖର ଆହୁରି ଜୋର୍‌ରେ ଚିତ୍କାର କରି ମଧୁମିତାର ଧ୍ୟାନ ଭଙ୍ଗ ପାଇଁ ଚେଷ୍ଟା କରୁଥିଲେ ।

କିନ୍ତୁ ମଧୁମିତା ହସୁଥିଲା, ଆଉ ହସି ହସି ଦୁଇ ହାତରେ ଅଙ୍ଗବାସ ଛିନ୍ନ କରିବାରେ ଲାଗିଥିଲା ।

ଶଶୀଶେଖର ବିଚଳିତ ହୋଇପଡ଼ିଥିଲେ ।

ତେବେ ସତେରେ କ'ଣ ମଧୁମିତା ଉନ୍ମାଦିନୀ ହୋଇ ଉଠିଲା ! ବହୁ ଦୁର୍ଭାବନାର ଧକ୍କା ସହି ନ ପାରି ମୁଣ୍ଡଟା କ'ଣ ତା'ର ସତରେ ବିଗିଡ଼ି ଗଲା ! ଶଶୀଶେଖରଙ୍କର ସବୁ ଆଶା, ସମ୍ଭାବନା କ'ଣ...

ମଧୁମିତା ଏଥର କଣ୍ଠ ଫଟାଇ ହସିବାକୁ ଆରମ୍ଭ କରି ଦେଇଥିଲା ।

ଶଶୀଶେଖର ସ୍ଥିର ହୋଇ ବସି ପାରୁ ନ ଥିଲେ । ତାଙ୍କ ମୁହଁର ଅବସ୍ଥା ଆଡ଼େ ଚାହିଁଲେ ମନେ ହେଉଥିଲା, କେଇଘଣ୍ଟା ଭିତରେ ଯେପରି ତାଙ୍କର ବୟସ ବହୁତ ବଢ଼ିଯାଇଛି । ସେ ଲାଇବ୍ରେରିରେ କେବଳ ଟହଲିବାରେ ଲାଗିଥିଲେ ।

ବାହାରେ ଗାଡ଼ି ଲାଗିବାର ଶବ୍ଦ ଶୁଣି ଶଶୀଶେଖର ଚାହିଁଲେ ଟିକିଏ । ତାଙ୍କର ପରିଚିତ ଗାଡ଼ି ।

ଚନ୍ଦ୍ରକାନ୍ତ ଓହ୍ଲାଉଚି ଗାଡ଼ିରୁ ।

ଶଶୀଶେଖର ପୁଣି ଟହଲିବାକୁ ଆରମ୍ଭ କରିଦେଲେ । ଏଥର ଶିକାର ତାଙ୍କୁ ନିଜ ହାତରେ କରିବାକୁ ହେବ । ଚନ୍ଦ୍ରକାନ୍ତ ଜାଣି ନାହିଁ କିଛି । ପ୍ରଥମେ ଆସି ସେ ମଧୁମିତାକୁ ଖୋଜିବ । କି ଉତ୍ତର ଦେବେ ତାକୁ ଶଶୀଶେଖର ?

ଚନ୍ଦ୍ରକାନ୍ତ ଛୁଟି ଆସିଲା ଲାଇବ୍ରେରୀ ରୁମ୍‌କୁ । ସେ କ'ଣ ଆଶା କରିଥିଲା ଶଶୀଶେଖରଙ୍କୁ ଏପରି ଅବସ୍ଥାରେ ଭେଟିବ !

ଶଶୀଶେଖର ଚନ୍ଦ୍ରକାନ୍ତକୁ ଦେଖି ନ ଦେଖିଲା ପରି ସେହିପରି ଟହଲୁ ଟହଲୁ ଗମ୍ଭୀର କଣ୍ଠରେ କହିଲେ : ବସ ଚନ୍ଦ୍ରକାନ୍ତ !

ଚନ୍ଦ୍ରକାନ୍ତ ଶଶୀଶେଖରଙ୍କ କଣ୍ଠସ୍ୱର ଶୁଣି ଚମକି ପଡ଼ିଲା ଯେପରି । ଚୁପ୍‌ଚାପ୍ ବସି ପଡ଼ିଲା ଗୋଟିଏ ଚେଆର ଉପରେ ।

ଶଶୀଶେଖର ବୋଧହୁଏ ମନ ସ୍ଥିର କରିପାରୁ ନ ଥିଲେ । ସେ କିପରି ଭାବରେ ଏବଂ କେଉଁ ଉପାୟରେ ଚନ୍ଦ୍ରକାନ୍ତକୁ ବାଗ ମନେଇବେ !

ହାତ ଦୁଇଟା ପଛ ଆଡ଼କୁ ଜାକି ଧୀରେ ଧୀରେ ସେ ଆଗେଇ ଆସିଲେ । ଠିଆହେଲେ ଆସି ଚନ୍ଦ୍ରକାନ୍ତ ସାମନାରେ । ତା'ପରେ ଚେଆର ଉପରେ ବସୁ ବସୁ କହିଲେ : କେତେକ କାରଣରୁ ମୁଁ ଖୁବ୍ ଚିନ୍ତିତ ହୋଇପଡ଼ିଛି । ଆଶା କରୁଛି, ହାତରେ ଯଥେଷ୍ଟ ସମୟ ରଖି ଆସିଚ ତମେ ।

ଚନ୍ଦ୍ରକାନ୍ତ କହିଲା : ତେବେ ଛଅଟା ବେଳେ ଆମର ଆଜି ପିକ୍‌ଚର ଯିବା ଅଛି । ମିତା ଆପଣଙ୍କୁ କିଛି କହି ନାହିଁ ?

ଶଶୀଶେଖର ମୁହଁ ଟେକି ଚାହିଁଲେ ଚନ୍ଦ୍ରକାନ୍ତକୁ । ସେଇ ଶାନ୍ତ, ସରଳ ଆଖି ଦୁଇଟି । ବିନୟରେ ପୂରି ରହିଛି ।

: ନା, ମିତା ମୋତେ କିଛି କହି ନାହିଁ । ତେବେ ସେ ଆଜି ଯାଇପାରିବ ନାହିଁ ତମ ସହିତ ।

: କାହିଁକି ? ମିତାର ଦେହ ଭଲ ଅଛି ତ ? ଚନ୍ଦ୍ରକାନ୍ତ ସ୍ୱରରେ ଉଦ୍‌ବେଗ ଫୁଟି ଉଠିଥିଲା ।

ଶଶୀଶେଖରଙ୍କ ଡାହାଣ ହାତଟା କେବଳ ଡ୍ରୟାରଟା ଟାଣି ପୁଣି ବନ୍ଦ କରିବାରେ ବ୍ୟସ୍ତ ଥିଲା ।

ସେ କହିଲେ : ରେନ୍‌ବୋ କ୍ଲବର ଉତ୍ସବ ଦିନ ରାତିରେ ଯେଉଁଦିନ ତମେ ମେମ୍ବର ହେଲେ କ୍ଲବର; ସେଦିନ ମିତା ସହିତ ତମର ଦେଖା ହୋଇଥିଲା ?

ହଠାତ୍ କାହିଁକି ଚନ୍ଦ୍ରକାନ୍ତର ଛାତିଟା କମ୍ପି ଉଠିଲା । ସେ କହିଲା : ସେଦିନ ରାତିରେ ମିତା ମୋ ସଙ୍ଗେ ସଙ୍ଗେ ଥିଲା ।

: କିନ୍ତୁ ୟଙ୍ଗମ୍ୟାନ୍ ! ମୁଁ ମୋତେ ଏତେଟା ଆଶା କରି ନ ଥିଲି । ମୁଁ ଜାଣିଥିଲି ତୁମେ ଭଦ୍ରଘରର ପିଲା । ତମ ଆଚରଣ ସେହିପରି ମାର୍ଜିତ ଆଉ ରୁଚିସଙ୍ଗତ ହୋଇଥିବ । ସେଇଥିପାଇଁ ମୁଁ ତୁମକୁ ମୋର ଘରେ ପ୍ରବେଶର ଅଧିକାର ଦେଇଥିଲି । ମିତା ସହିତ ମିଶିବାର ସୁଯୋଗ ଦେଇଥିଲି । କିନ୍ତୁ....

ଶଶୀଶେଖର ହଠାତ୍ ଅଟକି ଯାଇ ଚନ୍ଦ୍ରକାନ୍ତର ମୁହଁକୁ ଚାହିଁଲେ । ଯେପରି ସବୁ ରକ୍ତ-କିଏ ଶୋଷି ନେଇଛି ତା' ମୁହଁରୁ ! ଆଖି ଦୁଇଟା ନଇଁ ପଡ଼ିଛି ତଳକୁ । ସେ ନୀରବ ନିଶ୍ଚଳ ।

ଶଶୀଶେଖର ଏଥର ଡ୍ରୟାରରୁ ଫଟୋଗୁଡ଼ିକ ବାହାର କରି, ଖାମ୍ ସହ ସେଗୁଡ଼ିକ ଚନ୍ଦ୍ରକାନ୍ତ ହାତକୁ ବଢ଼ାଇ ଦେଇ କହିଲେ : ଛି ଛି ଛି । ମୁଁ ବାପ ହୋଇ....

ଶଶୀଶେଖର ଦ୍ରୁତ ପଦରେ ଦୂରେଇ ଗଲେ ସେଠାରୁ । ଝରକା ପାଖରେ ଯାଇ ବାହାରକୁ ଚାହିଁ ଠିଆ ହେଲେ ।

ଚନ୍ଦ୍ରକାନ୍ତ ଥରିଲା ହାତରେ ଖାମ୍‌ଟି ଖୋଲି, ଯେତେବେଳେ ପ୍ରଥମ ଫଟୋଗ୍ରାଫ୍ ଖଣ୍ଡିକ ଦେଖିଲା, ତା'ର ସର୍ବାଙ୍ଗ ଯେପରି ଶୀତଳ ହୋଇ ଆସିଲା । ମଧୁମିତା ଶୋଇଛି ଉଲ୍ଲଙ୍ଗ ହୋଇ । ହାତ ଛନ୍ଦିଛି ଚନ୍ଦ୍ରକାନ୍ତ ବେକରେ । ଚନ୍ଦ୍ରକାନ୍ତର ମୁହଁଟା ନଇଁ ଯାଇଛି ମଧୁମିତାର ମୁହଁ ପାଖକୁ ।

ତା'ପରେ ଆହୁରି ଖଣ୍ଡେ, ଦୁଇଖଣ୍ଡ, ତିନିଖଣ୍ଡ । ଚନ୍ଦ୍ରକାନ୍ତ ନିଜେ ବି ସେ ଫଟୋଗୁଡ଼ିକୁ ଚାହିଁ ପାରୁ ନ ଥିଲା । ସେ ମନେ ପକାଇବାକୁ ଚେଷ୍ଟା କରୁଥିଲା ଉତ୍ସବ ଦିନ ସେଇ ରାତିକୁ । ଯେଉଁ ରାତିରେ ମଧୁମିତା ସହିତ ସେ ନିରୋଳାରେ ପ୍ରକୋଷ୍ଠରେ ପ୍ରବେଶ କରିଥିଲା । ତା'ପରେ ଆଉ ମନେ ପଡ଼ୁ ନ ଥିଲା କିଛି । ମୁଣ୍ଡ ଟେକି ଚାହିଁ ପାରୁ ନ ଥିଲା ସେ ଶଶୀଶେଖରଙ୍କ ଆଡ଼କୁ । ତା'ର ସର୍ବାଙ୍ଗରେ କମ୍ପନ ସୃଷ୍ଟି ହୋଇ ଯାଇଥିଲା । ମନେ ହେଉଥିଲା, ସେ ଯଦି ଏଇ ମୁହୂର୍ତ୍ତରେ ଆତ୍ମହତ୍ୟା କରିପାରନ୍ତା....

ଶଶୀଶେଖର ଆଗେଇ ଆସୁଥିଲେ ।

ଚନ୍ଦ୍ରକାନ୍ତ ଫଟୋଗୁଡ଼ିକୁ ଲୁଚେଇବାକୁ ଚେଷ୍ଟା କରୁଥିଲା ।

ଶଶୀଶେଖର ପୁଣି ନିଜର ଆସନ ଅଧିକାର କରି ବସୁ ବସୁ କହିଲେ : ତମେ ଏତେ ହୀନ, ଏତେ ନୀଚ ହୋଇପାର, ମୁଁ ମୋଟେ ଆଶା କରି ପାରି ନ ଥିଲି ।

ଚନ୍ଦ୍ରକାନ୍ତ ବହୁ କଷ୍ଟରେ କହିଲା : ମୋତେ କ୍ଷମା କରନ୍ତୁ ଡାଡ଼ି । କିନ୍ତୁ ଏହାର ବହୁ ପୂର୍ବରୁ ମୁଁ ମିତାର ସମସ୍ତ ଦାୟିତ୍ୱ ନେଇଛି ।

ଶଶୀଶେଖର ଗର୍ଜନ କରି ଉଠିଲେ : ତମେ ମିତାର କି ଦାୟିତ୍ୱ ବହନ କରିବ ୟଙ୍ଗମ୍ୟାନ୍ । ମିତା ସହିତ ମୁଁ ବି ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ତମେ ଜାଣିଛ ? ଦୀର୍ଘ କେତେ ବର୍ଷ ହେବ ମୋର କୌଣସି ଆୟ ନାହିଁ । ମୁଁ ଯାହା ବ୍ୟୟ କରୁଚି, ସବୁ ଧାର୍‌କରଜ କରି । ଯା ଫଳରେ ପଚାଶ ହଜାର ଟଙ୍କାର ଡିକ୍ରି ପାଇଛି ମହାଜନ । ସମୟ ମାତ୍ର ମଝିରେ ଗୋଟିଏ ଦିନ । ପଚାଶ ହଜାର ଟଙ୍କା ଜମା ଦେଇ ନ ପାରିଲେ, ଆମର ଏଇ ଘର, ଦ୍ୱାର ସବୁ ନିଲାମ ହୋଇଯିବ । ସେତେବେଳେ ଆମର ଆଶ୍ରୟସ୍ଥଳୀ ହେବ ଗଛ ମୂଳେ ।

: କିନ୍ତୁ.... ଚନ୍ଦ୍ରକାନ୍ତ କ'ଣ କହିବାକୁ ଯାଇ ପୁଣି ଅଟକିଗଲା ।

ଶଶୀଶେଖର କଣ୍ଠ କୋମଳ କରି କହିଲେ : ଏଥିରେ କିଛି କିନ୍ତୁ ନାହିଁ ୟଙ୍ଗମ୍ୟାନ୍ । ହାଇକୋର୍ଟଙ୍କର ରାୟ ଉପରେ କେହି ହସ୍ତକ୍ଷେପ କରିପାରିବେ ନାହିଁ । ଦୁଇ ଦିନ ପରେ ଆମକୁ ପଥର ଭିକାରି ସାଜିବାକୁ ହେବ ।

ଚନ୍ଦ୍ରକାନ୍ତର ଇଚ୍ଛା ହେଉଥିଲା ସେ ପଚାରି ଥାଆନ୍ତା, ମଧୁମିତା ସହ ଏଇ ଦୁର୍ବଳ ମୁହୂର୍ତ୍ତର ଫଟୋ କେଇଖଣ୍ଡ ଶଶୀଶେଖରଙ୍କ ହାତକୁ ନ ଆସିଥିଲେ ସେ କ'ଣ ହାଇକୋର୍ଟଙ୍କର ରାୟକୁ ବଦଳାଇ ଦେଇ ପାରି ଥାଆନ୍ତେ ? କିନ୍ତୁ ଏଇ କଥା କହିବାକୁ ତା'ର ସାହସ ହେଉ ନ ଥିଲା ।

ଶଶୀଶେଖର ବୋଧହୁଏ ତା' ମନ କଥା ବୁଝି ପାରିଥିଲେ ।

ସାମାନ୍ୟ ନିରବତା ପରେ ପୁଣି ସେ ଆରମ୍ଭ କଲେ : ମୁଁ ଗୋଟାଏ ଜାଗାରେ ମଧୁମିତାର ବିବାହ ସମ୍ବନ୍ଧ ସ୍ଥିର କରିଥିଲି । ସେମାନେ ଖୁବ୍ ବଡ଼ଲୋକ । ମୋର ଅବସ୍ଥା କଥା ସେମାନଙ୍କୁ ଜଣାଥିଲା । ସେମାନେ ରାଜି ହୋଇଥିଲେ ମୋତେ ଋଣମୁକ୍ତ କରିବା ପାଇଁ । ଟଙ୍କାଟା ସେମାନଙ୍କର ଆଜି ମୋ ପାଖକୁ ପଠାଇବାର ଥିଲା । କିନ୍ତୁ ତା ବଦଳରେ କ'ଣ ପାଇଲି ଜାଣ ୟଙ୍ଗମ୍ୟାନ୍ ? ଏଇ ଫଟୋ କେଇଖଣ୍ଡି ।

ଏହା କହି ସେ ଅନ୍ୟ ଆଡ଼କୁ ମୁହଁ ବୁଲାଇ ନୀରବରେ ବସି ରହିଲେ ।

ଚନ୍ଦ୍ରକାନ୍ତ ମନ ଭିତରେ ଝଡ଼ ଉଠିଥିଲା ।

ଶଶୀଶେଖରଙ୍କ ଏଇ ଦୁର୍ଦ୍ଦିନରେ ସେ କ'ଣ ତାଙ୍କୁ ସାହାଯ୍ୟ କରିପାରିବ ନାହିଁ ? ଅବଶ୍ୟ ପଚାଶ ହଜାର ଟଙ୍କା ଦେବା ଭଳି ଶକ୍ତି ବ୍ୟକ୍ତିଗତ ଭାବରେ ତା'ର ନାହିଁ । କିନ୍ତୁ ଇଚ୍ଛା କଲେ କମ୍ପାନୀ ଏକାଉଣ୍ଟରୁ ସେ ତ ଦେଇପାରନ୍ତା । ମିତା, ତା'ର ପ୍ରାଣର ମିତା । ଯିଏ ତାକୁ ଶ୍ରେଷ୍ଠ ସର୍ବସ୍ୱ ଦାନ କରିଛି ତା' ପାଇଁ ସେ ଏତିକି କରିପାରିବ ନାହିଁ ! !

ଧୀରେ ଧୀରେ ମୁହଁ ଟେକି ଚାହିଁଲା ଚନ୍ଦ୍ରକାନ୍ତ ।

ଶଶୀଶେଖରଙ୍କ ପ୍ରଶସ୍ତ କପାଳରେ ଅଗଣନ ଚିନ୍ତାର ରେଖା ।

ସେ ମନ ଭିତରେ ବଳ ସଂଚୟ କରି କହିଲା : ଡାଡ଼ି ! ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ମିତାର ଦାୟିତ୍ୱ ନେବାକୁ ଯେତେବେଳେ ସ୍ଥିର କରିଛି, ସେତେବେଳେ ଆପଣଙ୍କୁ ଗଛମୂଳେ ଆଶ୍ରା କରିବାକୁ ପଡ଼ିବ ନାହିଁ ।

ଶଶୀଶେଖରଙ୍କ ମୁହଁରେ ହଠାତ୍ ପ୍ରସନ୍ନତାର ଢେଉ ଉକୁଟି ଉଠିଲା । ସେ ସପ୍ନରୁ ଉଠିଲା ପରି, ଆନନ୍ଦ ଗଦ୍‌ଗଦ କଣ୍ଠରେ କହିଲେ : ମୁଁ ଜାଣିଥିଲି ୟଙ୍ଗମ୍ୟାନ୍ ! ତମେ ଆମର ଏଇ ଦୁଃସମୟରେ ନିଶ୍ଚୟ ସହାୟ ହେବ । ପଚାଶ ହଜାର ଟଙ୍କାର ଦାୟିତ୍ୱ ବହନ କରିବାକୁ ହୁଏତ ତୁମକୁ ଟିକିଏ କଷ୍ଟ ହୋଇପାରେ ୟଙ୍ଗମ୍ୟାନ୍ ! କିନ୍ତୁ ମୁଁ ଜାଣିଥିଲି ତମେ ପାରିବ ।

ଚନ୍ଦ୍ରକାନ୍ତ ଶଶୀଶେଖରଙ୍କ ପରିବର୍ତ୍ତନ ଲକ୍ଷ୍ୟ କରି ସ୍ୱସ୍ତିର ଗୋଟିଏ ନିଃଶ୍ୱାସ ପକାଇଲା ।

ଶଶୀଶେଖର ପୁଣି କହିଲେ : ମଧୁମିତାକୁ ମୁଁ ପଠାଇଛି ମୋର ଜଣେ ପୁରୁଣା ବନ୍ଧୁଙ୍କ ଘରକୁ । ଏଇ ଟଙ୍କା ସଂଗ୍ରହ କରିବା ଆଶାରେ । ମୁଁ ଜାଣେ ସେଠାରୁ ବି ସେ ବ୍ୟର୍ଥ ହୋଇ ଫେରିବ । କିନ୍ତୁ ତମର ଯେପରି ମନେ ରହେ ୟଙ୍ଗମ୍ୟାନ୍ । କାଲି ବାରଟା ଭିତରେ ଟଙ୍କା ଜମା ଦେଇ ନ ପାରିଲେ...

ଚନ୍ଦ୍ରକାନ୍ତ ଉଠି ଠିଆ ହେଲା । କହିଲା : ଆପଣ ନିଶ୍ଚିତ ହୋଇ ରୁହନ୍ତୁ ଡାଡ଼ି । ମୁଁ କାଲି ଏଗାରଟା ଭିତରେ ଟଙ୍କା ଧରି ନିଶ୍ଚୟ ଆସି ପହଞ୍ଚିବି ।

ଚନ୍ଦ୍ରକାନ୍ତ ଫେରି ଯାଉଥିଲା ।

ଶଶୀଶେଖର କହିଲେ : ମଧୁମିତା ଆସିବା ଯାଏ ଅପେକ୍ଷା କରିବ ୟଙ୍ଗମ୍ୟାନ୍ ? ହୁଏତ ତା'ର ଡେରି ହୋଇପାରେ । ତଥାପି...

ଚନ୍ଦ୍ରକାନ୍ତ କହିଲା : ନା ସେ ଆସିଲେ ଆପଣ କହିଦେବେ କାଲି ତା' ସହିତ ଦେଖା ହେବ ।

ଚନ୍ଦ୍ରକାନ୍ତ ଗାଡ଼ି ନେଇ ବାହାରିଯିବା ଯାଏ ଶଶୀଶେଖର ବାରଣ୍ଡାରେ ଠିଆ ହୋଇ ପ୍ରସନ୍ନ ଦୃଷ୍ଟିରେ ତା' ଆଡ଼େ ଚାହିଁ ରହିଥିଲେ । ପୁଣି ସେ ଲାଇବ୍ରେରୀ ଭିତରେ ପ୍ରବେଶ କଲାବେଳକୁ ଦେଖିଲେ, ନାଇ୍‌ନିନ୍ ଉପରୁ ଆକୁଳ ଚିତ୍କାର କରି ତଳକୁ ଧାଇଁ ଆସୁଛି । ସେ ସିଡ଼ିରୁ ପଡ଼ି ଯାଉ ଯାଉ ଶଶୀଶେଖର ତାକୁ ଦୁଇ ହାତରେ ଧରି ପକାଇ ପଚାରିଲେ, ହେଲା କ'ଣ ?

ନାଇ୍‌ନିନ୍ ନିଜର ରକ୍ତାକ୍ତ ହାତଟା ଦେଖାଇ କହିଲା : ଦିଦି ମୋତେ କାମୁଡ଼ି କ'ଣ କରିଛି ଦେଖନ୍ତୁ ।

ଶଶୀଶେଖର ନାଇ୍‌ନିନ୍ ହାତରୁ ରକ୍ତ ପୋଛିଦେଲେ । କହିଲେ : ତୁ ତା' ପାଖକୁ ଗଲୁ କାହିଁକି ?

ମୁଁ ଖାଇବାକୁ ଦେବାକୁ ଯାଇଥିଲି । ଦିଦି ମୋତେ ପାଖକୁ ଡାକିଲା । କହିଲା ତାଲାଟା ଖୋଲିଦିଏ । ମୁଁ ତାଲା ଖୋଲି ଦେବାରୁ ସେ ମୋତେ କାମୁଡ଼ି ଏଇ ଅବସ୍ଥା କରିଛି ।

ଶଶୀଶେଖର ସାନ୍ତ୍ୱନା ଦେଇ କହିଲେ : ଆଉ ତୁ ଝିଡ଼ିକିରେ ବି ହାତ ଗଳେଇ ଖାଇବାକୁ ଦେବୁ ନାହିଁ । ତା' ଛଡ଼ା କାଲି ମୁଁ ତାକୁ ମେଣ୍ଟାଲ ହସପିଟାଲ୍‌କୁ ପଠାଇ ଦେବି ।

ନାଇ୍‌ନିନ୍ ବୋକୀ ପାଲଟି ଯାଇଥିଲା । ସେ କହିଲା : ଦିଦି କ'ଣ ଆଉ ଭଲ ହେବ ନାହିଁ ଡାଡ଼ି ?

ଶଶୀଶେଖର ନାଇ୍‌ନିନ୍ ମୁହଁକୁ ଚାହିଁ ଟିକିଏ ହସିଲେ । କହିଲେ : ତୁ ଯା ହାତରେ ଟିକିଏ ଆଇଓଡ଼ିନ୍ ଲଗାଇ ଦେବୁ ।

ଆରଦିନ ଠିକ୍ ଏଗାରଟା ବେଳେ ଚନ୍ଦ୍ରକାନ୍ତର ଗାଡ଼ି ଆସି ଶଶୀଶେଖର ଦୁଆରେ ଠିଆ ହେଲା ।

ଶଶୀଶେଖର ଲାଇବ୍ରେରୀରୁ ଉଠି ଯାଇ ଦେଖିଲେ, ଚନ୍ଦ୍ରକାନ୍ତ ଗୋଟିଏ ପୋର୍ଟଫୋଲିଓ ବ୍ୟାଗ ଧରି ଗାଡ଼ିରୁ ଓହ୍ଲାଉଚି ।

ଚନ୍ଦ୍ରକାନ୍ତ ଲାଇବ୍ରେରୀ ରୁମ୍‌ରେ ପହଞ୍ଚି ଦେଖିଲା, ଆଉଜଣେ ଭଦ୍ରଲୋକ ଅପେକ୍ଷା କରି ବସିଛନ୍ତି ।

ଶଶୀଶେଖର କହିଲେ : ତୁମ ମୋତେ ବଞ୍ଚାଇଲ ଚନ୍ଦ୍ରକାନ୍ତ ! ତୁମେ ନ ଥିଲେ ଅବସ୍ଥା ଯେ ମୋର କ'ଣ ହୋଇ ଥାଆନ୍ତା ! !

ଚନ୍ଦ୍ରକାନ୍ତ ପୋର୍ଟଫୋଲିଓ ବ୍ୟାଗ୍‌ଟି ଶଶୀଶେଖରଙ୍କ ହାତକୁ ବଢ଼ାଇ ଦେଇ କହିଲା : ଏହା ଭିତରେ ପୂରା ପଚାଶ ହଜାର ଅଛି ।

ଶଶୀଶେଖର ବ୍ୟାଗଟି ଚନ୍ଦ୍ରକାନ୍ତ ହାତରୁ ନେଇ ପାଖ ଚେଆରରେ ବସିଥିବା ଭଦ୍ରଲୋକଟି ହାତକୁ ବଢ଼ାଇ ଦେଇ କହିଲେ : ଶୀଘ୍ର ନେଇ ଯାଆନ୍ତୁ ମିଷ୍ଟର ସେନ୍, ଆଜି ବାରଟା ଭିତରେ ଜମା ନ ଦେଲେ ଚଳିବ ନାହିଁ ।

ମିଷ୍ଟର ସେନ୍ ଶଶୀଶେଖରଙ୍କ ହାତରୁ ବ୍ୟାଗଟି ନେଇ ଉଠି ଠିଆ ହୋଇପଡ଼ିଲେ । ମୁହୂର୍ତ୍ତେ ବି ଅପେକ୍ଷା ନ କରି ଘରୁ ସେ ବାହାରିଗଲେ ।

ଶଶୀଶେଖର ଯେପରି ସସ୍ତିର ଗୋଟିଏ ନିଃଶ୍ୱାସ ମାରି କହିଲେ : ତମେ ମୋର ମାନ ରଖିଲ ୟଙ୍ଗମ୍ୟାନ୍ ।

ଚନ୍ଦ୍ରକାନ୍ତର ଆଖି ଦୁଇଟା ବୋଧହୁଏ ମଧୁମିତାକୁ ଦେଖିବା ପାଇଁ ଚଳଚଞ୍ଚଳ ହୋଇ ଉଠିଥିଲା । କାଲିଠାରୁ ଦେଖା ହୋଇନି ତା' ସହିତ । ହୁଏତ ଅଭିମାନ କରି ବସିଥିବ କେଉଁଠି !

ଚନ୍ଦ୍ରକାନ୍ତ ଆଖିର ଭାଷା ବୁଝିପାରି ଶଶୀଶେଖର ଶାନ୍ତ ସ୍ୱରରେ କହିଲେ : ମଧୁମିତା ନାହିଁ ୟଙ୍ଗମ୍ୟାନ୍ । ତା' ସହିତ ତମର ଦେଖାହେବ ନାହିଁ ।

: ମଧୁମିତା ନାହିଁ ମାନେ ? ଚନ୍ଦ୍ରକାନ୍ତ ତା' ନିଜ ସ୍ୱର ଶୁଣି ଚମକିପଡ଼ିଲା ।

ଶଶୀଶେଖର ସେହିପରି ଶାନ୍ତସଂଯତ ସ୍ୱରରେ କହିଲେ : ସେ ତମର ଏହି ଫଟୋଗୁଡ଼ିକ ଦେଖିବା ପୂର୍ବରୁ ପାଗଳୀ ହୋଇଯାଇଛି ।

: କ'ଣ କହିଲେ ? ମଧୁମିତା ପାଗଳୀ ହୋଇଯାଇଛି ? ନା ନା, ସେ ପାଗଳୀ ହୋଇପାରେନା, ମୁଁ ତାକୁ କଥା ଦେଇଥିଲି....

ହଠାତ୍ ଟେବୁଲ ଉପରେ ଫୋନ୍‌ଟା ବାଜି ଉଠିଲା । ଶଶୀଶେଖର ରିସିଭରଟା ଉଠାଇ କାନରେ ଦେଲେ । ଅପର ପ୍ରାନ୍ତର ସମସ୍ତ କଥା ଶୁଣିସାରି

କହିଲେ : ଡକ୍ଟର୍ ବୋଷ ! ମଧମିତା ସମ୍ବନ୍ଧରେ ମୋତେ ଯାହା କହିଲେ, ସବୁକଥା ଆଉଥରେ କୁହନ୍ତୁ ।

ଶଶୀଶେଖର ରିସିଭରଟା ଚନ୍ଦ୍ରକାନ୍ତ ହାତକୁ ବଢ଼ାଇ ଦେଇ କହିଲେ : ଡକ୍ଟର ବୋଷ । ମେଣ୍ଟାଲ ହସପିଟାଲର ଅଧିକର୍ତ୍ତା । ଆଜି ସକାଳୁ ମଧୁମିତାକୁ ପଠାଇ ଦେଇଛି ମୁଁ । ତା'ର ଭଲ ହେବାର ସମ୍ଭାବନା ଖୁବ୍ କମ୍ ।

ଚନ୍ଦ୍ରକାନ୍ତ ରିସିଭରଟି କାନରେ ଦେଇ ଶୁଣିଲା ଡକ୍ଟର ବୋଷଙ୍କ କଥା । ଧୀରେ ଧୀରେ ରାହୁ ଗ୍ରାସିଲା ପରି ଚନ୍ଦ୍ରକାନ୍ତ ମୁହଁରେ କାଳିମା ଘୋଟି ଯାଉଥିଲା ।

ଶଶୀଶେଖର ନୀରବ ଦର୍ଶକଙ୍କ ପରି ଭାବଲେଶହୀନ ହୋଇ ତା ମୁହଁକୁ ଚାହିଁଥିଲେ ।

ଚନ୍ଦ୍ରକାନ୍ତର ହାତଟା କ୍ରମେ ଶିଥିଳ ହୋଇ ଆସୁଥିଲା । ସେ ବୋଧହୁଏ କାନରେ ଆଉ କିଛି ଶୁଣିପାରୁ ନ ଥିଲା । କେବଳ ଡକ୍ଟର ବୋଷଙ୍କ ସେଇ କଥା ପଦିକ ତା' କାନରେ ପ୍ରତିଧ୍ୱନିତ ହେଉଥିଲା, ମଧୁମିତା ସମ୍ପୂର୍ଣ୍ଣ ପାଗଳ ହୋଇଯାଇଛି । ଭଲ ହେବାର ସମ୍ଭାବନା ଖୁବ୍ କମ୍ !

କିନ୍ତୁ କାହିଁକି ? କାହିଁକି ? କାହିଁକି ? ?

ଚନ୍ଦ୍ରକାନ୍ତ ଶଶୀଶେଖରଙ୍କ ମୁହଁରୁ ତା' ପ୍ରଶ୍ନର କୌଣସି ଉତ୍ତର ପାଇ ନ ଥିଲା । ସେ ନିଶ୍ଚଳ ଭାବରେ ସେଇଠି ସେମିତି ବସି ରହିଥିଲେ ।



ରଚନାକାଳ : ୧୯୬୬




ଶର୍ମାଜୀ ହଠାତ୍ ଟର୍ଚ୍‌ଟା ନିଭେଇ ଦେଇ କହିଲେ : ସଂଜୀବ ନାରାୟଣଙ୍କ ସାଆନ୍ତ ବାପାଙ୍କ ଅମଳରେ ଏ ରାଜ୍ୟରେ କୌଣସି ଯୁବତୀ କନ୍ୟା ଘରୁ ବାହାରକୁ ବାହାରୁ ନ ଥିଲେ । ଯେଉଁମାନେ ଅତି ସୁନ୍ଦରୀ କନ୍ୟା ଜନ୍ମୁଥିଲେ, ସେମାନଙ୍କ ପିତାମାତାମାନେ ସେହି କନ୍ୟାର ସର୍ବାଙ୍ଗରେ ଚିତାକୁଟେଇ, ଲୁହା ଛିଙ୍କା ଦେଇ ସେମାନଙ୍କୁ କୁରୂପା କରି ଦେଉଥିଲେ । କାରଣ ରାଜାଙ୍କ ଗୁପ୍ତଚର ଆଖିରୁ କୌଣସି ସୁନ୍ଦରୀ କନ୍ୟା ବାଦ୍ ଯାଇ ନ ଥିଲେ ଏବଂ ରାଜାଙ୍କର ନିତି ନିତି ନୂଆ ନୂଆ କୁମାରୀ କନ୍ୟାଙ୍କର ଆବଶ୍ୟକ ହେଉଥିଲା, ସେ ପୁଣି ଗୁପ୍ତରେ । ରାଣୀ ମା'ଙ୍କ ଅଗୋଚରରେ । ଏହି ଗୁପ୍ତ କୋଠରି ସେଥିପାଇଁ ତିଆରି ହୋଇଥିଲା ।

|| ଅନ୍ଧୁଆରଆଲୋକ ||
|| ଇନ୍ଦ୍ରଜାଲ ||

ଟ୍ରେନ ଯେତେବେଳେ ଷ୍ଟେସନରେ ପହଞ୍ଚିଲା, ସେତେବେଳକୁ ରାତି ଦଶ । ମୁଁ ଟ୍ରେନରୁ ଓହ୍ଲାଇ ନିବିଡ଼ ଅନ୍ଧକାର ଦେଖିଲି । ଘରଦ୍ୱାର ଗଛବୃଛ କିଛି ମୋତେ ଦିଶୁ ନ ଥିଲା । ବର୍ଷା ବି ବର୍ଷୁଥିଲା ଝିପି ଝିପି ହୋଇ । ସେଇ ଷ୍ଟେସନରେ ଆଉ କିଏ ଓହ୍ଲାଇଲେ କି ନାହିଁ ମୁଁ କିଛି ବୁଝି ପାରିଲି ନାହିଁ । ବହୁ ଦୂରରେ ଗୋଟିଏ ସ୍ତିମିତ ଆଲୋକଶିଖା ଦିଶୁଥିଲା । ବୋଧହୁଏ ସେଇଟା ଷ୍ଟେସନ ମାଷ୍ଟରଙ୍କ ଘର ।

ମୁଁ ବର୍ଷାରେ ଭିଜିଭିଜି ମୋର କର୍ତ୍ତବ୍ୟ ସ୍ଥିର କରିବା ପୂର୍ବରୁ ହୁଇସିଲ୍‌ର କର୍କଶ ଶବ୍ଦ ଶୁଣିଲି । ସଙ୍ଗେସଙ୍ଗେ ଗାଡ଼ି ଛାଡ଼ି ଦେଲା । ମୁଁ ସେଇ ଆଲୋକଶିଖାକୁ ଲକ୍ଷ୍ୟ କରି ଧୀରେ ଧୀରେ ଆଗକୁ ପାଦ ବଢ଼ାଇଲି ।

ମୋ ଟ୍ରେନଟା କିନ୍ତୁ ନନ୍ଦନଗଡ଼ ଷ୍ଟେସନରେ ସନ୍ଧ୍ୟା ସାତଟାରେ ପହଞ୍ଚିବାର ଥିଲା । ଅସମୟରେ ଝଡ଼ବୃଷ୍ଟି ହେବା ଫଳରେ - ଟ୍ରେନ ଲାଇନ୍‌ରେ ଗଛ ପଡ଼ି ଟ୍ରେନ ତିନିଘଣ୍ଟା ଲେଟ୍ ହୋଇଗଲା ।

ନନ୍ଦନଗଡ଼ ଏକ ପାର୍ବତ୍ୟ ଅଞ୍ଚଳରେ ଅବସ୍ଥିତ । ଏଠା ରାଜପରିବାରର ରାଜମାତା ବର୍ତ୍ତମାନ ଜୀବିତ । ସରକାର ବିଶ୍ୱସ୍ତ ସୂତ୍ରରେ ଖବର ପାଇଛନ୍ତି ଯେ, ରାଜମାତାଙ୍କ ଜ୍ଞାତସାରରେ ବହୁ ଗୁପ୍ତଧନ ରାଜବାଟୀରେ କୌଣସି ଗୁପ୍ତ ସ୍ଥାନରେ ଲୁକ୍‌କାୟିତ ହୋଇ ରହିଛି । ଯାହାର ହିସାବ ସେ ସରକାରଙ୍କୁ ଦେଇ ନାହାନ୍ତି । ସରକାରଙ୍କ ତରଫରୁ ନାନା ଉଦ୍ୟମ ହୋଇ ମଧ ସେଇ ଗୁପ୍ତଧନର ସନ୍ଧାନ ମିଳିବା ସମ୍ଭବ ହୋଇ ନାହିଁ । ଶେଷରେ ଗୋପନରେ ସେ ଦାୟିତ୍ୱ ଦିଆ ହୋଇଛି ମୋ ଉପରେ । ମୁଁ ବେସରକାରୀ ଭାବରେ ସେହି ଗୁପ୍ତଧନର ଅନୁସନ୍ଧାନ କରି ଫଳାଫଳ

ସରକାରଙ୍କୁ ଜଣାଇବି । ସେଇଥିପାଇଁ ଖୁବ୍ ଗୋପନ ମୋର ଅଭିଯାନ । ନନ୍ଦନଗଡ଼ ଷ୍ଟେସନରେ ପହଞ୍ଚିବା ପରେ ଷ୍ଟେସନମାଷ୍ଟର ଦୟାଲଶଙ୍କର ଶର୍ମା ମୋତେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇ ଦେବାର ସବୁ ବ୍ୟବସ୍ଥା କରା ହୋଇଛି । ମୁଁ କିଏ, କାହିଁକି ଆସିଛି, ସେ କଥା ସେ କିଛି ଜାଣନ୍ତି ନାହିଁ, କିନ୍ତୁ ମୋତେ ନେଇ ନନ୍ଦନଗଡ଼ ଥାନା ଅଫିସରଙ୍କ ପାଖରେ ପହଞ୍ଚାଇବା ଦାୟିତ୍ୱ ତାଙ୍କ ଉପରେ ।

ମୁଁ ସେହି ଆଲୋକକୁ ଲକ୍ଷ୍ୟ କରି ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା ବେଳକୁ ଗୋଟିପଣ ଭିଜି ଯାଇଥିଲି । ହଁ, ସେଇଟା ଗୋଟିଏ ଅଫିସ ଘର । କିରୋସିନି ଲଣ୍ଠନଟି ଟେବୁଲ ଉପରେ ଥୁଆ ହୋଇଥିଲା । ଘରେ କେହି ନ ଥିଲେ । ଟେବୁଲ ଉପରେ କିଛି କାଗଜପତ୍ର, ଫାଇଲ ଇତ୍ୟାଦି ।

ମୁଁ ମୁହୂର୍ତ୍ତେ ଠିଆହୋଇ ଚାରିଆଡ଼କୁ ଚାହିଁଲି ।

ହଁ, ଏଇଟା ଷ୍ଟେସନ ମାଷ୍ଟରଙ୍କ ଅଫିସ ହୋଇପାରେ । କିନ୍ତୁ ଭଦ୍ରଲୋକ ଗଲେ କୁଆଡ଼େ ? ମୁଁ ଟେବୁଲ ଉପରେ ମୋ ହାତରେ ଆଟାଚିଟି ଥୋଇ ଭାବୁଚି ଲୁଗାପଟା ବଦଳାଇବି କି ନାହିଁ, ହଠାତ୍ ବାହାରୁ ଜଣେ ବର୍ଷାତି ପିନ୍ଧା ଲମ୍ବାଲୋକ ହାତରେ ଗୋଟାଏ ନୀଳ ଲଣ୍ଠନ ଧରି ଭିତରକୁ ପଶି ଆସୁଥିବାର ମୁଁ ଲକ୍ଷ୍ୟ କଲି । ସେ ମୋତେ ଦେଖି ପଚାରିଲେ : ଆପଣ ମିଷ୍ଟର ସତ୍ୟବ୍ରତ ମହାପାତ୍ର ବୋଧହୁଏ ?

: ହଁ । ଆପଣ ?

: ମୁଁ ଦୟାଳଶଙ୍କର ଶର୍ମା । ଏଇ ନନ୍ଦନଗଡ଼ର ଷ୍ଟେସନ ମାଷ୍ଟର । ଟ୍ରେନ୍‌କୁ ବିଦାୟ କରିସାରି ଆପଣଙ୍କୁ ମୁଁ ଖୋଜୁଥିଲି । ଆଜି ଆମ ଏ ଅଞ୍ଚଳରେ ବଡ଼ ଦୁର୍ଦ୍ଦିନ । ତିନି ଚାରିଘଣ୍ଟା ଆଗରୁ ଅସମୟରେ ପ୍ରଚଣ୍ଡ ବେଗରେ ଝଡ଼ତୋଫାନ ହୋଇ ଇଲେକ୍‌ଟ୍ରିକ୍ ଲାଇନ ଫାଇନ ସବୁ ଛିଣ୍ଡେଇ ଏକାକାର କରି ଦେଇଛି । ଆରେ ଆପଣ ଭିଜି ଯାଇଛନ୍ତି ଯେ ! ଲୁଗାପଟା ବଦଳାଇ ପକାନ୍ତୁ । ଭଦ୍ରଲୋକ ଏକା ନିଃଶ୍ୱାସରେ ସବୁକଥା ଶେଷ କରି ଦେଇ ମୋ ମୁହଁକୁ ଚାହିଁଲେ ।

ମୁଁ କହିଲି : ଲୁଗାପଟା ତ ନିଶ୍ଚୟ ବଦଳାଇବି, କିନ୍ତୁ ନନ୍ଦନଗଡ଼ ଏଠାରୁ କେତେ ବାଟ ?

ଷ୍ଟେସନ ମାଷ୍ଟର କହିଲେ : ଆପଣ ଏଇ ଝଡ଼ ରାତିରେ ନନ୍ଦନଗଡ଼ ଯିବେ ଭାବିଛନ୍ତି ? ବଣ, ଜଙ୍ଗଲ, ପାହାଡ଼ିଆ ରାସ୍ତା, ଏଇ ସବୁ ଅତିକ୍ରମ କରି ସାତ ଆଠ

କିଲୋମିଟର ଯିବାକୁ ହେବ । ନନ୍ଦନଗଡ଼ ରାଜବାଟୀ ପାଖରୁ ଥାନା ଆହୁରି ଏକ କିଲୋମିଟର ଦୂରରେ । ଆପଣ ଯଦି ଏକାନ୍ତ ଯିବାକୁ ଚାହାନ୍ତି, ମୋର ଆପତ୍ତି ନାହିଁ । କାରଣ ଆଜି ଯେତେ ରାତି ହେଉ ଆପଣଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇ ଦେବାର ନିର୍ଦ୍ଦେଶ ଅଛି । ତା'ଛଡ଼ା ସଉକତ ଅଲ୍ଲିର ଘୋଡ଼ାଗାଡ଼ି ଆପଣଙ୍କ ପାଇଁ ଅପେକ୍ଷା କରିଛି । ମୁଁ ଖାଲି ଡରୁଥିଲି ଏଇ ଦୁର୍ଯୋଗ ପାଇଁ ।

: କିନ୍ତୁ ମୋତେ ଆଜି ଯେପରି ହେଉ ସେଠାକୁ ଯିବାକୁ ହେବ । ଆପଣଙ୍କୁ ଟିକିଏ ହଇରାଣ କରିବି ।

: ଆରେ ନା ନା, ଆପଣ ମୋତେ କ'ଣ ହଇରାଣ କରିବେ ? ମୁଁ ତ ଇଚ୍ଛାକରି ହଇରାଣ ହେବାପାଇଁ ନନ୍ଦନଗଡ଼ ପରି ଏଇ କ୍ଷୁଦ୍ର ଷ୍ଟେସନରେ ରହିଛି । ଆପଣ ଲୁଗାପଟା ପିନ୍ଧି ପ୍ରସ୍ତୁତ ହୁଅନ୍ତୁ । ମୁଁ ସଙ୍ଗେସଙ୍ଗେ ଆସୁଛି ।

ଦୟାଲଶଙ୍କର ଶର୍ମା ଘରୁ ବାହାରି ଚାଲିଗଲେ । ସେ ଏପରି ଏକ ଉହାଡ଼ିଆ ଜାଗାରେ ଠିଆ ହୋଇଥିଲେ ଯେ ତାଙ୍କ ଚେହେରାଟା ବି ମୁଁ ଭଲ ଭାବରେ ଦେଖିପାରୁ ନ ଥିଲି ।

ଲଣ୍ଠନଟା ଦପ୍ ଦପ୍ ହେଉଥିଲା । ବୋଧହୁଏ ତେଲ ଶେଷ ହୋଇ ଆସିଥିଲା । ମୁଁ ସେଇ ଝାପ୍‌ସା ଆଲୁଅରେ ଆଟାଚି ଖୋଲି ଗୋଟିଏ ପାଇଜାମା ବାହାର କରି ପିନ୍ଧିଲି ଏବଂ ପଞ୍ଜାବିଟା ମୁଣ୍ଡରେ ଗଳାଉଛି, ବାହାରେ କାହାର ପାଦଶବ୍ଦ ଶୁଣିଲି । ବୋଧହୁଏ ଶର୍ମାଜୀ ଆସୁଛନ୍ତି । ଶୀଘ୍ର ମୁଁ ପଞ୍ଜାବିଟା ଦେହ ଉପରକୁ ଟାଣିଦେଇ ବାହାରକୁ ଚାହିଁଲା ବେଳକୁ ଲଣ୍ଠନଟା ଦପ୍‌କରି ଲିଭି ଗଲା ।

ମୁଁ ସେଇ ନିବିଡ଼ ଅନ୍ଧକାରରେ ଅନେକ ସମୟ ଠିଆ ହୋଇ ରହିଲି । ଶର୍ମାଜୀ ଆସିଲେ ନାହିଁ କିମ୍ବା ବାହାରେ ଆଉ କାହାର ପାଦଶବ୍ଦ ଶୁଣିବାକୁ ପାଇଲି ନାହିଁ । ମୋ ଆଟାଚିରେ ଗୋଟିଏ ଟର୍ଚ୍ଚ ଥିଲା, ଭାବିଲି ସେଇଟା ବାହାର କରି ହାତରେ ରଖିବି । କିନ୍ତୁ ଅନ୍ଧକାରରେ ଅଣ୍ଡାଳି ଅଣ୍ଡାଳି ଆଟାଚିଟା ବି ପାଇଲି ନାହିଁ । ଆଶ୍ଚର୍ଯ୍ୟ ! ଆଟାଚିଟା ଗଲା କୁଆଡ଼େ ?

ପ୍ୟାଣ୍ଟ ପକେଟରେ ଦିଆସିଲି ଥିଲା, ବାହାର କଲି । କିନ୍ତୁ ବୃଥା । ବର୍ଷାରେ ଭିଜି ଯାଇଥିବାରୁ ତାହା ଆଉ ଜଳିଲା ନାହିଁ । ମୁଁ ସେଇ ଅନ୍ଧକାର ଭିତରେ ଭଲ କରି ଆହୁରି ଥରେ ଟେବୁଲଟା ଅଣ୍ଡାଳି ଦେଖିଲି, ନା, ଆଟାଚି କେସ୍‌ଟା ଟେବୁଲ ଉପରେ ନାହିଁ ।

ତେବେ ? ମୋର ମନେହେଲା ଏପରି ଅଘଟଣ ମୋ ଜୀବନରେ ଖୁବ୍

କମ୍ ଘଟିଛି । ମୁଁ ନିଶ୍ଚୁପ ହୋଇ ସେହି ଅନ୍ଧକାର ଭିତରେ ବହୁତ ବେଳଯାଏ ଠିଆ ହୋଇ ରହିଥିଲି । ଭାବିଥିଲି ଶର୍ମାଜୀ ନିଶ୍ଚୟ ଆସିବେ । ତା'ପରେ ଯାହା ହେବାର ହେବ ।

ପ୍ରାୟ ଅଧଘଣ୍ଟା ଅତିବାହିତ ହୋଇଗଲା । କିନ୍ତୁ ଶର୍ମାଜୀ ଗଲେ କୁଆଡ଼େ ? ଷ୍ଟେସନଟା ଧୀରେ ଧୀରେ ଆହୁରି ନିଶୂନ୍ ହୋଇ ଆସୁଥିଲା । ଝିଙ୍କାରୀର ସ୍ୱର ସହିତ ଅନ୍ୟାନ୍ୟ ରାତ୍ରିଚରମାନଙ୍କ ସ୍ୱର ମିଶି ରାତ୍ରିଟା ଆହୁରି ଭୟଙ୍କର ମନେ ହେଉଥିଲା । ଓଦା ପ୍ୟାଣ୍ଟ ପକେଟରୁ ରିଭଲଭରଟି ବାହାର କରି ପଞ୍ଜାବି ପକେଟରେ ଭରିଲି । ଯଦି ଏଠାରେ କିଛି ଅଘଟଣ ଘଟେ ତା'ହେଲେ ସେଇ ମୋର ଏକମାତ୍ର ସହାୟ !!

ଅଘଟଣ ଘଟିବାର ସମ୍ଭାବନା ଯଥେଷ୍ଟ ଥିଲା । କାରଣ ମୁଁ ଯେଉଁ କାମରେ ନନ୍ଦନଗଡ଼ ଆସିଛି, ତା'ର ବିରୋଧିତା କରିବା ପାଇଁ ନନ୍ଦନଗଡ଼ର କର୍ତ୍ତୃପକ୍ଷ ତ ନିଶ୍ଚୟ ଚେଷ୍ଟା କରିବେ । ଖାଲି ଚେଷ୍ଟା ନୁହେଁ, ମୋତେ ମୋର ଯାତ୍ରାପଥରୁ ନିବର୍ତ୍ତାଇବା ପାଇଁ ସେମାନେ ମୋତେ ହତ୍ୟା କରିବାକୁ ବି କୁଣ୍ଠାବୋଧ କରିବେ ନାହିଁ । ଅବଶ୍ୟ ସମ୍ବାଦଟା ଯଦି ସେମାନେ ପାଇ ଥାଆନ୍ତି । ଏ କ୍ଷେତ୍ରରେ ମୋର ବିଶେଷ ସାବଧାନତା ଅବଲମ୍ବନ କରିବା ଏକାନ୍ତ କର୍ତ୍ତବ୍ୟ ।

ହଠାତ୍ ମୋ ଭାବନା ଥମିଗଲା । ମୁଁ ଶର୍ମାଜୀଙ୍କର କଣ୍ଠସ୍ୱର ଶୁଣିବାକୁ ପାଇଲି : ଆରେ, ଆପଣ ଏତେ ବେଳଯାଏ ଠିଆ ହୋଇ ଏଇ ଅନ୍ଧକାରରେ କ'ଣ ଚିନ୍ତା କରୁଛନ୍ତି ? ମୁଁ ସେତେବେଳୁ ଆପଣଙ୍କ ଆଟାଚିଟା ନେଇ ଘୋଡ଼ା ଗାଡ଼ିରେ ରଖି ଆସିଲିଣି । ଅଥଚ ...

: ଓଃ, ଆପଣ ତା'ହେଲେ ସେତେବେଳେ ମୋ ଆଟାଚିଟା ନେଇ ଯାଇଥିଲେ । ମୁଁ ଏଣେ ଖୋଜୁଚି । ମୁଁ ଜାଣି ପାରିନାହିଁ ଆପଣ କେତେବେଳେ ଆସି ...

: କିନ୍ତୁ ଗୋଟାଏ ଅସୁବିଧା ହୋଇଛି ମହାପାତ୍ରଜୀ । ସଉକତ ଅଲିକୁ ମୁଁ ଖୋଜି ପାଉ ନାହିଁ । ଘୋଡ଼ାଗାଡ଼ିଟା ରାସ୍ତାକଡ଼ରେ ଠିଆ ହୋଇଛି, କିନ୍ତୁ ତା'ର ପତ୍ତା ନାହିଁ । ସେଇଆକୁ ଏତେବେଳ ଯାଏ ମୁଁ ଖୋଜୁଥିଲି ।

: ତା' ହେଲେ ...

: ତା' ହେଲେ ଆଉ କ'ଣ ? ଆପଣ ବସନ୍ତୁ । ମୁଁ ଆପଣଙ୍କୁ ନେଇ ଯଥା ସ୍ଥାନରେ ଛାଡ଼ି ଦେଇ ଆସିବି ।

: ଆପଣ ଯେ ଯିବେ, ଏଣେ ଷ୍ଟେସନ ?

: ଷ୍ଟେସନରେ ଆଉ କିଛି କାମ ନାହିଁ । ଶେଷ ଟ୍ରେନ୍ ଚାଲିଯାଇଛି । ଆଉ କୌଣସି ଟ୍ରେନ୍ ଏଠାରେ ରହିବ ନାହିଁ । ତେଣୁ ଆପଣ ନିଶ୍ଚନ୍ତରେ ମୋ ସହିତ ଆସି ପାରନ୍ତି ।

ଶର୍ମାଜୀ ଆଗେଇଲେ ।

ମୁଁ ତାଙ୍କ ପଛେ ପଛେ ଅନ୍ଧକାରରେ ତାଙ୍କ ଛାୟାମୂର୍ତ୍ତିକୁ ଅନୁସରଣ କରୁଥିଲି ।

କିଛି ବାଟ ଆଗେଇ ଯିବା ପରେ ପଚାରିଲି : ଆଚ୍ଛା ଶର୍ମାଜୀ ! ଆପଣଙ୍କ ଷ୍ଟେସନରେ ଆଉ ତ କାହାରିକୁ ଦେଖିଲି ନାହିଁ । କୌଣସି ସବ୍ ଅର୍ଡ଼ିନେଟ ଷ୍ଟାଫ ବା ଆପଣଙ୍କ ସହକର୍ମଚାରୀ ...

: ଅଛନ୍ତି, ଅଛନ୍ତି । ଶର୍ମାଜୀ ଚାଲୁ ଚାଲୁ କହିଲେ, ସେମାନେ ସବୁ ଅନେକ ବେଳୁ ଚାଲି ଗଲେଣି, କେବଳ ଗୋଟିଏ ବୁଢ଼ା ଚୌକିଦାର ପାଖ ଘରେ ଶୋଇଛି । ସେଇ ରାତିରେ ପହରା ଦିଏ ।

ଆମେ ଷ୍ଟେସନ ପ୍ଲାଟଫର୍ମରୁ ଗୋଟିଏ ଢାଲୁ ରାସ୍ତାରେ ତଳକୁ ଓହ୍ଲାଇଲୁ । ବର୍ଷା ଛାଡ଼ି ଯାଇଥିଲା । କିନ୍ତୁ ଜମାଟ ଅନ୍ଧକାର ଯେପରି ଆହୁରି ଜମି ଆସୁଥିଲା । ଶର୍ମାଜୀ ଟିକିଏ ଆଗେଇ ଯାଇଥିଲେ । ମୁଁ ତାଙ୍କର ଛାୟା ବି ଦେଖି ପାରୁ ନ ଥିଲି ।

ଆମେ ଯାଇ ଘୋଡ଼ା ଗାଡ଼ି ପାଖରେ ପହଞ୍ଚିଲୁ । ଶର୍ମାଜୀ ମୋତେ ଗାଡ଼ି ଭିତରେ ବସିବାକୁ କହି ସିଧା ସେ କୋଚୱାନ ସିଟ୍‌କୁ ଉଠିଗଲେ । ଦ୍ୱିଧାଗ୍ରସ୍ତ ମନ ନେଇ ମୁଁ ଘୋଡ଼ାଗାଡ଼ି ଉପରକୁ ଉଠିଲି ।

ମୁଁ ଗାଡ଼ି ଉପରକୁ ଉଠିଯିବା ମାତ୍ରକେ ସଙ୍ଗେସଙ୍ଗେ ଘୋଡ଼ାଟାପୁର ଶବ୍ଦ ଶୁଣିଲି । ଶର୍ମାଜୀ ଗାଡ଼ି ଛୁଟାଇ ଦେଇଥିଲେ । ମୁଁ ସିଟ୍‌ରେ ବସି ଅନୁଭବ କଲି, ମୋ ଆଟାଚି କେସ୍‌ଟା ସିଟ୍ ଉପରେ ରହିଛି ।

ଗଭୀର ନିର୍ଜନତା ଭିତରେ କେବଳ ଘୋଡ଼ାଟାପୁର ଶବ୍ଦ ଠକ୍ ଠକ୍ ଠକ୍ ଶୁଭୁଥିଲା । ମନେ ହେଉଥିଲା, ଏ ଶବ୍ଦ ଯେପରି ଭୟଙ୍କର, ସେହିପରି ବିପଦସଙ୍କୁଳ ।

ଗାଡ଼ି ଚାଲିଥିଲା । ମୋ ମନର ଅସଂଖ୍ୟ ଭାବନା ପଡ଼ି ଯାଉଥିଲା ପଛରେ । ବାହାରେ ମୁଁ କିଛି ଦେଖି ପାରୁ ନ ଥିଲି । କେବଳ କାନରେ ବାଜୁଥିଲା ଘୋଡ଼ା ଟାପୁର ଶବ୍ଦ ।

ହଠାତ୍ ମୋର ମନେ ପଡ଼ିଲା ଟର୍ଚ୍ଚ୍ ଲାଇଟ୍‌ଟା କଥା । ସେଇଟା ବାହାର କରି ହାତରେ ରଖିବାକୁ ହେବ । ଆଟାଚି କେସ୍‌ଟା ମୁଁ କୋଳ ଉପରକୁ ଉଠାଇ ଆଣୁଥିଲି ।

ଦୟାଲଶଙ୍କର ଶର୍ମା କହିଲେ, : ମହାପାତ୍ରଜୀ । ଆପଣ ନନ୍ଦନଗଡ଼ରେ କେତେଦିନ ରହିବେ ?

: କିଛି ଠିକ୍ ନାହିଁ । ଯେଉଁ କାମରେ ଆସିଛି, କାମ ଶେଷ ହୋଇଗଲେ ମୁଁ ଚାଲିଯିବି ।

: ଆପଣ ଅମରନାଥ ଶାସ୍ତ୍ରୀଙ୍କୁ ଚିହ୍ନନ୍ତି ?

: ଅମରନାଥ ଶାସ୍ତ୍ରୀ, ଓ, ଆପଣ ନନ୍ଦନଗଡ଼ର ଥାନା ଇନଚାର୍ଯଙ୍କ କଥା କହୁଚନ୍ତି ? ନା ମୋର ତାଙ୍କ ସହିତ ଚାକ୍ଷୁସ ପରିଚୟ ନାହିଁ । ଆପଣଙ୍କ ସହିତ କିପରି ପରିଚୟ ?

: ଭଲ, ଶାସ୍ତ୍ରୀଜୀ ବେଶ୍ ଲୋକପ୍ରିୟ ।

ଶର୍ମାଜୀ କଥା ଶେଷ କରି ଘୋଡ଼ାକୁ ଚାବୁକ୍ ମାରିଲେ । ଗାଡ଼ି ଦ୍ରୁତ ବେଗରେ ଛୁଟିବାକୁ ଲାଗିଲା ।

ପୁଣି ନୀରବତା ।

ମୁଁ ଆଟାଚି କେସ୍‌ଟା ଆଉ ଥରେ କୋଳ ଉପରେ ଥୋଇ, ଟର୍ଚ୍ଚ୍‌ଟା ଖୋଜିବା ପାଇଁ ଖୋଲିଲି । କିନ୍ତୁ ଟର୍ଚ୍ଚ୍ କାହିଁ ? ଏ ପାଖ ସେପାଖ ଭଲ କରି ଖୋଜି ଦେଖିଲି ନା, ଟର୍ଚ୍ଚ୍‌ଟା ଆଟାଚି କେସ୍‌ରୁ ଅଦୃଶ୍ୟ ହୋଇଛି !

ଦେହ ଭିତରେ ହଠାତ୍ କିପରି ଏକ ଶିହରଣ ଖେଳିଗଲା । ମୁଁ କୋଚଓ୍ୱାନ ସିଟ୍‌କୁ ଚାହିଁଲି । ସମଗ୍ର ଦେହଟା ବର୍ଷାତିରେ ଆବୃତ କରି, ମୁଣ୍ଡରେ ଗୋଟାଏ ଟୋପି ପିନ୍ଧି ଶର୍ମାଜୀ ଘୋଡ଼ାକୁ ଚାବୁକ ମାରୁଛନ୍ତି । ମୋତେ ଗୋଟାଏ ଅସ୍ପଷ୍ଟ ଛାୟାମୂର୍ତ୍ତି ଛଡ଼ା ଆଉ କିଛି ଦେଖା ଯାଉ ନାହିଁ । ଏ ପର୍ଯ୍ୟନ୍ତ ତାଙ୍କ ମୁହଁଟା ବି ମୁଁ ସ୍ପଷ୍ଟ ଦେଖି ପାରି ନାହିଁ ।

ପୁଣି ଶର୍ମାଜୀ କହିଲେ : ନନ୍ଦନଗଡ଼ ରାଜମାତାଙ୍କ ସହିତ ଆପଣଙ୍କର ପରିଚୟ ଅଛି ?

ମୁଁ ଶର୍ମାଜୀଙ୍କ ପ୍ରଶ୍ନର ଉତ୍ତର ଦେବାପାଇଁ କେତୋଟି ମୁହୂର୍ତ୍ତ ଚିନ୍ତା କଲି । କହିଲି : ହଁ, ଅଛି ଯେ; ସାମାନ୍ୟ ।

: ଆପଣ ରାଜମାତାଙ୍କ ପରିବାରରେ ଆଉ କାହାକୁ ଚିହ୍ନନ୍ତି ?

: ନା କାହାରିକୁ ଚିହ୍ନି ନାହିଁ । ତେବେ ରାଜମାତାଙ୍କ ମୁଖରୁ ଶୁଣିଥିଲି ତାଙ୍କର ତିନି ପୁତ୍ର ଦୁଇ କନ୍ୟା ।

ଅବଶ୍ୟ ଶର୍ମାଜୀଙ୍କୁ ମୁଁ ମିଛ କଥା କହିଥିଲି । କାରଣ ରାଜମାତାଙ୍କ ସହିତ

ମୋର ଆଦୌ ପରିଚୟ ନ ଥିଲା । କିନ୍ତୁ ତାଙ୍କ ବଂଶ ଇତିହାସ ମୋତେ ସରକାରଙ୍କ ପକ୍ଷରୁ ଜଣାଇ ଦିଆ ଯାଇଥିଲା ।

: ରାଜମାତା ଠିକ୍ କହିଛନ୍ତି । କିନ୍ତୁ ରାଜାଙ୍କର ପ୍ରଥମ ସ୍ତ୍ରୀଙ୍କ ପକ୍ଷରୁ ଆଉ ଗୋଟିଏ ପୁତ୍ର ଥିଲା । ସେକଥା ରାଜମାତା ବୋଧହୁଏ କହି ନାହାନ୍ତି । ନ କହିବା ବି ସ୍ୱାଭାବିକ, କାରଣ ସେ ତାଙ୍କର ଜନ୍ମିତ ପୁତ୍ର ନୁହେଁ ତ !

କ'ଣ ହେଲା ! ଶର୍ମାଜୀ ଯେ ଗୋଟାଏ ନୂଆ କଥା ଶୁଣାଇଲେ । ରାଜେନ୍ଦ୍ର ନାରାୟଣଙ୍କର ଦୁଇ ରାଣୀ ଥିବା କଥା ସେ ଜାଣିଛନ୍ତି । ପ୍ରଥମ ରାଣୀଙ୍କର କୌଣସି ସନ୍ତାନ ଥିବା କଥା ତ ରିପୋର୍ଟରେ ନାହିଁ !

: ସଞ୍ଜୀବ ନାରାୟଣ କିନ୍ତୁ ଖୁବ୍ ଫେରୋ ସସ୍ । ତା' ପ୍ରତି ସାବଧାନରେ ଥିବେ । ପୁଣି ଶର୍ମାଜୀ କହିଲେ ।

:ମାନେ ? ମୋ କଣ୍ଠସ୍ୱରଟା ଅସ୍ୱାଭାବିକ ହୋଇ ଉଠିଥିଲା ।

:ମାନେ ଆଉ କ'ଣ, ମୁଁ କହୁଛି ଆପଣ ଯଦି ନନ୍ଦନଗଡ଼ ରାଜବାଟୀକୁ ଯାଆନ୍ତି, ସଞ୍ଜୀବ ନାରାୟଣ ସହିତ ସତର୍କତା ସହିତ କଥାବାର୍ତ୍ତା କରିବେ । କାରଣ ସେ ଗୋଟାଏ ବଣ୍ୟ ପଶୁ ସଦୃଶ । କାହାରିକୁ ସେ ବିଶ୍ୱାସ କରେ ନାହିଁ ।

ମୁଁ ଉତ୍ତେଜିତ ହୋଇ ଉଠିଥିଲି । ମୋର ମନେ ହେଉଥିଲା, ଶର୍ମାଜୀ ଯେପରି ମୋର ଏଠାକୁ ଆସିବାର ଉଦ୍ଦେଶ୍ୟ ସବୁ ବୁଝି ପାରିଛନ୍ତି । ପୁଣି ମୁଁ ନୀରବ ହୋଇଗଲି । ଚିନ୍ତା କଲି ଏହି ନନ୍ଦନଗଡ଼ ରାଜବାଟୀ ସମ୍ବନ୍ଧରେ ଏପରି ହୁଏତ ଅନେକ ଗୋପନୀୟ ରହସ୍ୟ ଅଛି, ଯାହା ସରକାରଙ୍କୁ ଜଣା ନାହିଁ । ହୁଏତ ଶର୍ମାଜୀଙ୍କଠାରୁ ନୂତନ କିଛି ତଥ୍ୟ ମିଳି ଯାଇପାରେ ।

ଗାଡ଼ି ଚାଲିଥିଲା ।

ବେଶ୍ କିଛି ସମୟ ନିରବତା ପରେ ମୁଁ ପଚାରିଲି : ଆଚ୍ଛା ଶର୍ମାଜୀ ! ଆପଣ ଏଠାରେ କେତେ ବର୍ଷ ହେବ ଅଛନ୍ତି ?

: ଅନେକ, ଅନେକ ବର୍ଷ । ମୋର ଜନ୍ମ ଏଇଠି । ଏଇ ନନ୍ଦନଗଡ଼ରେ ।

: ହୁଁ, ତା'ହେଲେ ଆପଣ ନନ୍ଦନଗଡ଼ ରାଜପରିବାର ସମ୍ବନ୍ଧରେ ତ ଅନେକ କଥା ଜାଣିଥିବେ ?

: କିଛି କିଛି ଜାଣିଛି ।

: ତା'ହେଲେ ରାଜେନ୍ଦ୍ର ନାରାୟଣ ହେଉଛନ୍ତି ନନ୍ଦନଗଡ଼ର ଶେଷ ସାଧୀନ ରାଜା ।

: ହଁ ।

: ତାଙ୍କର ପ୍ରଥମ ସ୍ତ୍ରୀଙ୍କର ଯେଉଁ ଗୋଟିଏ ପୁତ୍ର ଥିଲା ବୋଲି ଆପଣ କହୁଛନ୍ତି, ସେ ବର୍ତ୍ତମାନ କେଉଁଠି ?

: ନିରୁଦ୍ଦେଶ ।

: କାରଣ ?

: କାରଣ ମୁଁ ଠିକ୍ ଜାଣିନାହିଁ । ଶୁଣିଛି ରାଜେନ୍ଦ୍ର ନାରାୟଣଙ୍କର ପ୍ରଥମ ସ୍ତ୍ରୀଙ୍କର ମୃତ୍ୟୁ ପରେ ତାଙ୍କର ଦ୍ୱିତୀୟ ସ୍ତ୍ରୀ, ମାନେ ବର୍ତ୍ତମାନର ରାଜମାତା ଦେବେନ୍ଦ୍ର ନରାୟଣଙ୍କୁ ଆଉ ଭଲ ଆଖିରେ ଦେଖିଲେ ନାହିଁ । ନିଜ ଘର ପୁଅ ଭଳି ବ୍ୟବହାର କଲେ ନାହିଁ । ଦେବେନ୍ଦ୍ର ନାରାୟଣ ଆଉ ସଞ୍ଜୀବ ନାରାୟଣ ଦୁଇ ଭାଇଙ୍କର ବୟସର ତାରତମ୍ୟ ତିନି ଚାରି ବର୍ଷ ହୋଇଥିଲେ ମଧ୍ୟ ସଞ୍ଜୀବ ନାରାୟଣ ଛୋଟ ଭାଇ ହୋଇଥିଲେ ମଧ୍ୟ ସେ ମା'ଙ୍କ ପ୍ରରୋଚନାରେ ଦେବେନ୍ଦ୍ର ନାରାୟଣ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲା । ଦେବେନ୍ଦ୍ର ନାରାୟଣର ହାରି ଗୁହାରି କେହି ଶୁଣୁ ନ ଥିଲେ ।

ଶର୍ମାଜୀ ଚୁପ୍ ହୋଇଗଲେ ।

ଗାଡ଼ି ଆଗେଇ ଚାଲିଥିଲା ।

: ତା' ପରେ ? ମୁଁ ପଚାରିଲି ।

ଶର୍ମାଜୀ ଖୁବ୍ ଜୋରରେ ଘୋଡ଼ା ପିଠିରେ ନୃଶଂସ ଭାବରେ ଦୁଇ ଚାରିଥର ଚାବୁକ ମାରି କହିଲେ : ଦେବେନ୍ଦ୍ର ନାରାୟଣ ଆଉ ସଞ୍ଜୀବ ନାରାୟଣର ଅତ୍ୟାଚାର ସହି ନ ପାରି ନିରୁଦ୍ଦେଶ୍ୟ ହୋଇ ଯାଇଥିଲେ ।

: ରାଜା ରାଜେନ୍ଦ୍ର ନାରାୟଣ କିଛି କହିଲେ ନାହିଁ ?

: ସେ ସେତେବେଳକୁ ମୃତ୍ୟୁଶଯ୍ୟାରେ ।

: ସେତେବେଳକୁ ଦେବେନ୍ଦ୍ର ନାରାୟଣର ବୟସ କେତେ ହୋଇଥିଲା ?

: ବାର ଚଉଦ ହୋଇଥିବ ।

: ଆପଣ କେତେ ବର୍ଷ ତଳର କଥା କହୁଛନ୍ତି ?

: ପନ୍ଦର କୋଡ଼ିଏ ବର୍ଷ ତଳର ହେବ ।

: ଆପଣ ଦେବେନ୍ଦ୍ର ନାରାୟଣଙ୍କୁ ଦେଖିଛନ୍ତି ?

: ଦେଖିଛି ମାନେ, ଦେବେନ୍ଦ୍ର ନାରାୟଣ ସହିତ ମୋର ଖୁବ୍ ଘନିଷ୍ଠତା ଥିଲା ।

: ତା'ହେଲେ ତ ଦେବେନ୍ଦ୍ର ନାରାୟଣ ଆପଣଙ୍କୁ ସବୁକଥା କହିଥିବ ।

: କିଛି କିଛି ଯେ କହି ନ ଥିଲା ମୁଁ ମନାକରୁ ନାହିଁ । କିନ୍ତୁ ସେ ଆଜିକୁ ପନ୍ଦର କୋଡ଼ିଏ ବର୍ଷ ତଳର କଥା । କିଛି ମନେ ନାହିଁ ।

: ତଥାପି ...

: ତଥାପି ଆଉ କ'ଣ ! ଦେବେନ୍ଦ୍ର ନାରାୟଣ ମାତୃହରା ହୋଇ ଦୁଇ ତିନି ବର୍ଷ ରାଜବାଟୀରେ ଥିଲେ । ଯେତେଦିନ ଯାଏ ରାଜା ସୁସ୍ଥ ଥିଲେ ସେତେଦିନ ଯାଏ ଦେବେନ୍ଦ୍ର ନାରାୟଣଙ୍କର କୌଣସି ଅସୁବିଧା ହୋଇ ନ ଥିଲା । ସେ ରାଜକୀୟ ଥାଟରେ ସମୟ କଟାଇ ଥିଲେ । କିନ୍ତୁ ରାଜା ଅସୁସ୍ଥ ହୋଇ ବିଛଣା ଧରିବା ପରଠାରୁ ଦେବେନ୍ଦ୍ର ନାରାୟଣ ପ୍ରତି ଅନାଦର ଆରମ୍ଭ ହୋଇଗଲା ।

ଶର୍ମାଜୀ ଏତିକି କହି ଚୁପ୍ ରହିଗଲେ ।

: କିପରି ? ମୁଁ ପ୍ରଶ୍ନ କଲି ।

: ସାବତ ମା ନିଜ ପିଲାମାନଙ୍କ ପ୍ରତି ଯେପରି ଧ୍ୟାନ ଦେଲେ ଦେବେନ୍ଦ୍ର ନାରାୟଣ ପ୍ରତି ସେପରି ଦେଲେ ନାହିଁ । ଏପରି କି ସଞ୍ଜୀବ ନାରାୟଣକୁ ଧୀରେ ଧୀରେ ଦେବେନ୍ଦ୍ର ନାରାୟଣ ସହିତ ମିଳାମିଶା କରିବାକୁ ବନ୍ଦ କରାଇଲେ । ଖିଆପିଆ, ପାଠପଢ଼ା, କେଉଁଟା ପ୍ରତି ଧ୍ୟାନ ଦିଆ ହେଲା ନାହିଁ । ପ୍ରଥମେ ପ୍ରଥମେ ଦେବେନ୍ଦ୍ର ନାରାୟଣ ଏସବୁ କିଛି ବୁଝି ପାରି ନ ଥିଲେ । ସଞ୍ଜୀବ ଆଉ ଦେବେନ୍ଦ୍ର ମଧ୍ୟରେ ଅଗାଧ ବନ୍ଧୁତ୍ୱ ଥିଲା । ଦୁହେଁ ଏକା ସଙ୍ଗରେ ଖେଳୁଥିଲେ, ବୁଲୁଥିଲେ, ପଢୁଥିଲେ । ହଠାତ୍ ସେମାନଙ୍କ ମଝିରେ ଗୋଟାଏ ପ୍ରାଚୀର ଛିଡ଼ା କରେଇବାକୁ ଯେତେବେଳେ ଚେଷ୍ଟା କରା ହେଲା, ଅବଶ୍ୟ ଦୁହେଁ ଟିକିଏ ବିବ୍ରତ ହୋଇ ପଡ଼ିଥିଲେ । କିନ୍ତୁ ସେହି ବିବ୍ରତବୋଧ ନିତିଦିନିଆ ହୋଇ ଉଠିଲା । ସଂଜୀବ ଯେତେବେଳେ ଦେବେନ୍ଦ୍ର ସହିତ ବୁଲିବାକୁ ବାହାରିଲେ, ରାଣୀ ବାଧା ଦେଲେ । କହିଲେ, ତୋର ମୁଣ୍ଡ ଉପରେ ପରୀକ୍ଷା । ତୋର ଏଇ ମୁହୂର୍ତ୍ତରେ ପଢ଼ାପଢ଼ି କରିବା ଉଚିତ ।

ଏହିପରି ଛୋଟ ଛୋଟ କାରଣ ଦେଖାଇ ରାଣୀ ଦୁଇ ଭାଇଙ୍କ ଭିତରେ ଦୂରତ୍ୱ ସୃଷ୍ଟି କରିବାକୁ ଚେଷ୍ଟା କଲେ । ଦୁଇଭାଇଙ୍କ ଭିତରେ ବିରୋଧ ଭାବ ଜନ୍ମାଇବାକୁ ଆପ୍ରାଣ ଉଦ୍ୟମ କରି ସଫଳ ହେଲେ ।

ଏପରି ଦିନ ଆସିଲା ଯେତେବେଳେ ଦେବେନ୍ଦ୍ର ନାରାୟଣ ଘଣ୍ଟା ପରେ ଘଣ୍ଟା ଅପେକ୍ଷା କରି ମଧ୍ୟ ସଂଜୀବ ନାରାୟଣର ଭେଟ ପାଇଲେ ନାହିଁ । ପ୍ରଥମେ ପ୍ରଥମେ ଦେବେନ୍ଦ୍ର ନାରାୟଣଙ୍କର ଖୁବ କଷ୍ଟ ହୋଇଥିଲା । କିନ୍ତୁ କ୍ରମେ ଦିହସୁହା ହୋଇଗଲା ।

ଦିନେ କୁଆଡ଼େ ରୋଗଶଯ୍ୟାରେ ଶୋଇ ଦେବେନ୍ଦ୍ର ନାରାୟଣକୁ ଦେଖିବାକୁ ଚାହିଁଲେ ରାଜା ରାଜେନ୍ଦ୍ର ନାରାୟଣ । ସେତେବେଳକୁ ଦେବେନ୍ଦ୍ର ନାରାୟଣ ସାତ ଆଠ ଦିନ ହେବ ପିତାଙ୍କ ଦର୍ଶନରୁ ବଞ୍ଚିତ ହୋଇଥିଲେ । ଯେତେବେଳେ ସେ ଯିବାକୁ ଚାହୁଁଥିଲେ, ସେତେବେଳେ ତାଙ୍କୁ ବାରଣ କରି ଦିଆ ହେଉଥିଲା । ଡାକ୍ତର ମନା କରଛନ୍ତି, ଅବସ୍ଥା ଭଲ ନୁହେଁ । କାହାରି ସହିତ କଥାବାର୍ତ୍ତା କରିବା ମନା ।

ଅବଶ୍ୟ ଦେବେନ୍ଦ୍ର ନାରାୟଣ ସେତେବେଳେ ରାଣୀଙ୍କର ମନ୍ଦ ଅଭିଳାଷ କଥା ବୁଝିପାରି ନ ଥିଲେ । ସେ ସରଳ ବିଶ୍ୱାସରେ ଫେରି ଯାଉଥିଲେ, କିନ୍ତୁ ରାଜା ଯେଉଁଦିନ ନିଜେ ଡାକି ପଠାଇଲେ, ସେଦିନ ରାଣୀ ଦେବେନ୍ଦ୍ର ନାରାୟଣଙ୍କ ବିରୋଧରେ ନାନା ଅଭିଯୋଗ ଆରମ୍ଭ କଲେ ରାଜାଙ୍କ ପାଖରେ । କହିଲେ : ଦେବେନ୍ଦ୍ର ଆଉ ରାଜକୁମାର ହୋଇ ନାହିଁ । ସେ ମୋର କଥା ବୋଲ କିଛି ଶୁଣୁନାହିଁ । ଦଣ୍ଡେ ଘଡ଼ିଏ ରାଜବାଟୀରେ ରହୁ ନାହିଁ । ସକାଳୁ ଉଠି ଦି'ଟା ଖାଇ ଦେଇ କୁଆଡ଼େ ସେ ଯାଉଚି, ଫେରୁଚି ପୁଣି ଖାଇବା ବେଳକୁ ।

ଏହିପରି ନାନା ପ୍ରକାର ଅଭିଯୋଗ କରି ରାଣୀ ରାଜାଙ୍କ ମନକୁ ଦେବେନ୍ଦ୍ର ପ୍ରତି ବିଷାକ୍ତ କରିବାକୁ ଚାହିଁଲେ । କିନ୍ତୁ ରାଜା ବୋଧହୁଏ ରାଣୀଙ୍କ କଥା ଉପରେ ଆସ୍ଥା ରଖି ପାରୁ ନ ଥିଲେ । ସେ ହୁଏତ ଅନୁଭବ କରୁଥିଲେ ରାଣୀଙ୍କର ଦେବେନ୍ଦ୍ର ପ୍ରତି ଏହା ଅବହେଳା । ସେ ହୁଏତ ଜାଣି ପାରୁଥିଲେ ଦେବେନ୍ଦ୍ର ରାଣୀଙ୍କର ସାବତ ପୁଅ ହୋଇଥିବାରୁ ତା' ପ୍ରତି ଏପରି ଆଚରଣ । କିନ୍ତୁ ରାଜାଙ୍କର ସେତେବେଳେ ଆଉ କହିବାର କିଛି ନ ଥିଲା । ସେ ରୋଗଶଯ୍ୟାରେ ଶୋଇ ସବୁ କଥା ବିସ୍ମରି ଯାଇଥିଲେ ।

ଦିନ ପରେ ଦିନ ରାଣୀଙ୍କ ଅତ୍ୟାଚାର ଦେବେନ୍ଦ୍ର ଉପରେ ବଢ଼ିବାକୁ ଲାଗିଲା । ଏପରି ଦିନ ଆସିଲା, ଯେତେବେଳେ ଦେବେନ୍ଦ୍ରର ସ୍ଥାନ ହେଲା ଦାସଦାସୀଙ୍କ ଗହଣରେ । ତାକୁ ବାହାରେ ଗୋଟାଏ ଅଲଗା ଘର ରହିବାକୁ ଦିଆଗଲା । ତା' ଖାଇବା ପଠାଇ ଦିଆ ହେଲା । ପାଠ ପଢ଼ା ପ୍ରତି ଆଉ ଦୃଷ୍ଟି ଦିଆ ହେଲା ନାହିଁ । ଭଇ ଭାଇ ମଧ୍ୟରେ ଦେଖା ସାକ୍ଷାତ ହେଲା ନାହିଁ । ସାନଭାଇ ସଂଜୀବ ନାରାୟଣ ଗାଡ଼ି ଘୋଡ଼ା ଚଢ଼ି ରାଜକୁମାର ବେଶରେ ନଗର ପରିଦର୍ଶନ କରି ବାହାରିଲା ବେଳେ ବଡ଼ ଭାଇ ଦେବେନ୍ଦ୍ର ନାରାୟଣ ଦୀନ ଦରିଦ୍ରଙ୍କ ପରି ମଇଳା ପୋଷାକ ପିନ୍ଧି ରାସ୍ତାକଡ଼ରେ ବାଟ

ଭାଙ୍ଗି ଠିଆ ହେଉଥିଲା । କିଛି ଦିନ ପରେ ସଂଜୀବ ନାରାୟଣ ଆଉ ଦେବେନ୍ଦ୍ର ନାରାୟଣଙ୍କୁ ଚିହ୍ନି ପାରିଲା ନାହିଁ ।

ଦେବେନ୍ଦ୍ର ନାରାୟଣ କିନ୍ତୁ ପ୍ରତୀକ୍ଷାରେ ଥିଲେ । ରାଜା ସୁସ୍ଥ ହୋଇ ଉଠିଲେ, ତାଙ୍କ ଆଗରେ ସେ ସବୁ କଥା କହିବେ । ସେ ପୁଣି ତାକୁ କୋଳକୁ ଟାଣି ନେବେ ଆଦର କରିବେ । ନ୍ୟାଯ୍ୟ ଅଧିକାର ଦେବେ । କିନ୍ତୁ ରାଜା ଆଉ ସୁସ୍ଥ ହୋଇ ଉଠିଲେ ନାହିଁ । ଡାକ୍ତର କବିରାଜ ଆସିଲେ ଗଲେ । ନାନା ପ୍ରକାର ଚେଷ୍ଟା କରାହେଲା । କିନ୍ତୁ ରାଜାଙ୍କ ଅବସ୍ଥା ଦିନକୁ ଦିନ ତଳକୁ ଗଲା ।

ଧୀରେ ଧୀରେ ରାଜପ୍ରାସାଦରେ ରାଣୀ ପ୍ରଭାବ ବିସ୍ତାର କଲେ । ସଂଜୀବ ନାରାୟଣଙ୍କୁ ସବୁ ସ୍ଥାନରେ ଆଗୁଆ କରି ଠିଆ କରାହେଲା । ରାଣୀ ଏପରି ଏକ ଭାବ ଦେଖାଉ ଥିଲେ, ଯେପରି ନନ୍ଦନଗଡ଼ର ଏକମାତ୍ର ଉତ୍ତରାଧିକାରୀ ସଂଜୀବ ନାରାୟଣ । ମନ୍ତ୍ରୀ ପାରିଷଦବୃନ୍ଦ, ରାଜବାଟୀର ଦାସଦାସୀ ସମସ୍ତେ ସଂଜୀବ ନାରାୟଣଙ୍କୁ ସଂଭ୍ରମ ଦେଖେଇବାକୁ ଆରମ୍ଭ କଲେ । ଏ ସବୁ ଘଟୁଥିଲା ରାଣୀଙ୍କ ପ୍ରରୋଚନାରେ ।

ଦେବେନ୍ଦ୍ର ନାରାୟଣ ଏପରି ଏକ ପରିବର୍ତ୍ତନର କାରଣ କିଛି ବୁଝି ପାରୁଥିଲେ ବି କରିବାର କିଛି ନ ଥିଲା । ରାଜମହଲରେ କେତେଜଣ କର୍ମୀ ଦେବେନ୍ଦ୍ର ନାରାୟଣଙ୍କ ପ୍ରତି ଏପରି ଅବହେଳାରେ ଦୁଃଖ ପ୍ରକାଶ କରିଥିଲେ । ଦେବେନ୍ଦ୍ର ନାରାୟଣଙ୍କୁ ଏହାର ପରିଣତି କଥା ବୁଝାଇ ଥିଲେ । କିନ୍ତୁ ସମାଧାନର ପଥ କେହି ଖୋଜି ପାଇ ନ ଥିଲେ ।

ତଥାପି ଦେବେନ୍ଦ୍ର ନାରାୟଣ ସବୁ ସହ୍ୟ କରି ଅଲଗା ଘରେ ଅତ୍ୟାଚାର ସହି ପଡ଼ି ରହିଥିଲେ । ତାଙ୍କର ଏକମାତ୍ର ଆଶା ଥିଲା, ବାବା ଦିନେ ନା ଦିନେ ଭଲ ହୋଇ ଉଠିବେ । ସେତେବେଳ ଯାଏ ତାଙ୍କୁ ପ୍ରତୀକ୍ଷା କରି ବସି ରହିବାକୁ ପଡ଼ିବ ।

ଦେବେନ୍ଦ୍ର ନାରାୟଣଙ୍କର ଜନ୍ମ ପରେ ଯେଉଁ ଦାସୀଟି ତାଙ୍କୁ କୋଳରେ କାଖେଇ ଧରି ମଣିଷ କରିଥିଲା, ସେହି ଦାସୀଟି ଆଜି ବି ଦେବେନ୍ଦ୍ର ନାରାୟଣଙ୍କ ମନରେ ସାହସ, ଦମ୍ଭ ସଞ୍ଚାର କରି ତାଙ୍କୁ ବଞ୍ଚେଇ ରଖିଥିଲା । ରାଣୀ ଦିନେ ଜାଣି ପାରିଲେ ଯେ, ସେଇ ଦାସୀଟି ଦେବେନ୍ଦ୍ର ନାରାୟଣଙ୍କର ଏକାନ୍ତ ଅନୁଗତ । ରାଜମହଲର ବହୁତ ଗୋପନ କଥା ତାରି ଜରିଆରେ ଦେବେନ୍ଦ୍ର ନାରାୟଣଙ୍କ କାନକୁ ଚାଲି ଆସୁଛି ।

ତା'ପରେ ରାଜମହଲରୁ ସେହି ଦାସୀଟି ବହିଷ୍କୃତ ହେଲା । ଦେବେନ୍ଦ୍ର ନାରାୟଣ ତାଙ୍କର ଏକମାତ୍ର ଶେଷ ଆଶ୍ରୟ ହରାଇଲେ । ଏବେ ଆଉ ଠିକ୍ ସମୟରେ ତାଙ୍କ

ପାଇଁ କେହି ଖାଇବାକୁ ଆଣିଲେ ନାହିଁ, ଶୋଇବାକୁ ବିଛଣା ବିଛେଇ ଦେଲେ ନାହିଁ । ଦେବେନ୍ଦ୍ର ନାରାୟଣ ଅତ୍ୟନ୍ତ ଅସହାୟ ହୋଇ ପଡ଼ିଲେ ।

ଏପରି ଦିନ ଆସିଲା, ଯେତେବେଳେ ତାଙ୍କର ଖାଦ୍ୟବସ୍ତ୍ରର ସଙ୍କଟ ପଡ଼ିଲା । ଖଣ୍ଡିଏ ଲୁଗାଜାମାରେ ଓ ବେଳାଏ ଅଧପେଟ ଖାଇ ବଞ୍ଚି ରହିବାକୁ ପଡ଼ିଲା ।

ଦେବେନ୍ଦ୍ର ନାରାୟଣ ଏପରି ପରିସ୍ଥିତି ଆଉ ସହି ପାରିଲେ ନାହିଁ । ସେ ମନେ ମନେ ସ୍ଥିର କଲେ, ଯେପରି ହେଉ ସେ ଆଜି ନିଶାର୍ଦ୍ଧରେ ରାଜାଙ୍କ ସହିତ ଭେଟ କରି ସବୁକଥା ତାଙ୍କୁ କହିବେ । ସେ ଯଦି ଏହାର କିଛି ବିହିତ ପ୍ରତିକାର ନ କରନ୍ତି, ତେବେ ସେ ରାଜ୍ୟ ଛାଡ଼ି ଚାଲିଯିବେ ।

ସେଦିନ ରାତିରେ ସେ ପ୍ରସ୍ତୁତ ହେଲେ । ଆଖିରେ ତାଙ୍କର ନିଦ ନ ଥିଲା । ନିଶାର୍ଦ୍ଧରେ ଧୀର ପାଦ ଚାଲି ସେ ଆଗେଇ ଗଲେ ରାଜାଙ୍କ ଶୟନକକ୍ଷ ଆଡ଼େ । ଯେତେବେଳେ ରାଜାଙ୍କ ଶୟନକକ୍ଷର ଦୁଆର ଠେଲି ଭିତରକୁ ପଶିବାର ଉଦ୍ୟମ କଲେ, ସେତିକିବେଳେ ଶୁଣିଲେ ଶୟନ କକ୍ଷ ମଧ୍ୟରୁ ଏକ କ୍ରନ୍ଦନର କଳରୋଳ ଭାସି ଆସୁଛି । ଦରଜା ଠେଲି ଦେଇ ଦେଖିଲେ ରାଣୀ ଓ ପାରିଷଦବର୍ଗ ଏକା ସଙ୍ଗରେ କ୍ରନ୍ଦନ କରୁଛନ୍ତି । ଦେବେନ୍ଦ୍ର ବୁଝି ପାରିଲେ, ତାଙ୍କର ସମସ୍ତ ଆଶାଭରସା ଶେଷ ହୋଇ ଯାଇଛି । ରାଜା ଦେହ ତ୍ୟାଗ କରିଛନ୍ତି ।

ଏତକ କହିସାରି ଦୟାଳ ଶଙ୍କର ଶର୍ମା ମୁହୂର୍ତ୍ତେ ନୀରବ ରହି ଗୋଟାଏ ଦୀର୍ଘଶ୍ୱାସ ଛାଡ଼ି ପୁଣି କହିଲେ : କିନ୍ତୁ ଲୋକେ କହନ୍ତି, ରାଜାଙ୍କର ଏ ମୃତ୍ୟୁ ଅପମୃତ୍ୟୁ !

: ମାନେ ? ରାଜାଙ୍କୁ ତେବେ କ'ଣ ହତ୍ୟା କରା ହୋଇଥିଲା ? ମୁଁ ପଚାରିଲି ।

ଶର୍ମାଜୀ ଆଉ କିଛି ଉତ୍ତର ଦେଲେ ନାହିଁ । ମନେ ହେଲା, ଘୋଡ଼ାଟାପୁର ଶବ୍ଦ ଧୀରେ ଧୀରେ ଯେପରି ଶିଥିଳ ହୋଇ ଆସୁଛି ଏବଂ କେତୋଟି ମୁହୂର୍ତ୍ତ ପରେ ନିଶ୍ଚଳ ହୋଇଗଲା । ଗାଡ଼ି ଠିଆ ହୋଇଗଲା ।

ମୋ ମନରେ ଆଶଙ୍କା ଜନ୍ମିଲା । କ'ଣ ହେଲା ? ଗାଡ଼ି ଅଟକିଲା କାହିଁକି ?

ମୁଁ ଦେଖିଲି ଶର୍ମାଜୀ ଗାଡ଼ିରୁ ତଳକୁ ଓହ୍ଲେଇଲେ । ମୋ ପକେଟର ରିଭଲଭରଟା ମୁଁ ଶକ୍ତ ମୁଠାରେ ଜାବୁଡ଼ି ଧରିଥିଲି । ବାହାରକୁ ଓହ୍ଲାଇବି କି ନାହିଁ ଚିନ୍ତା କରୁଛି ଶର୍ମାଜୀ ମୋତେ ଡାକି କହିଲେ : ଏ ଆଡ଼କୁ ଭୀଷଣ ଝଡ଼ ହୋଇ ଯାଇଛି । ରାସ୍ତା ଉପରେ ଗୋଟିଏ ଗଛ ଉପୁଡ଼ି ପଡ଼ିଛି । ଅବଶ୍ୟ ଗଛଟି ସରୁ । ଆପଣ ମୁଁ ଦୁହେଁ ଚେଷ୍ଟା କଲେ, ଠେଲି ଉଠେଇ ଦେଇ ରାସ୍ତା ସଫା କରି ଦେଇ ପାରିବା ।

ଦୁହେଁ ଲାଗି ପଡ଼ି ଗଛଟାକୁ ରାସ୍ତାରୁ ଘୁଞ୍ଚେଇ ଦେଲୁ । ସେଇ ଗଛ ଉଠେଇବା ବେଳେ ମୁଁ ଶର୍ମାଜୀଙ୍କର ବହୁତ ନିକଟକୁ ଇଚ୍ଛାକରି ଘୁଞ୍ଚି ଯାଇଥିଲି ଏବଂ ତାଙ୍କ ମୁହଁ ଦେଖିବା ପାଇଁ ଚେଷ୍ଟା କରିଥିଲି । କିନ୍ତୁ ଅନ୍ଧକାରରେ ସ୍ପଷ୍ଟ କିଛି ଦେଖି ହେଲା ନାହିଁ ।

ତା'ପରେ ଶର୍ମାଜୀ କୋଚଓ୍ୱାନ୍ ସିଟ୍‌କୁ ଉଠି ଯାଇଥିଲେ ଏବଂ ମୁଁ ଗାଡ଼ି ଭିତରକୁ ଚାଲି ଯାଇଥିଲି ।

ଶର୍ମାଜୀ ଗାଡ଼ି ଷ୍ଟାର୍ଟ କରିବା ପୂର୍ବରୁ ମୁଁ ପଚାରିଲି : ଆଉ କେତେ ବାଟ ରହିଲା ?

: ଆମେ ପାଖେଇ ଆସିଲେଣି । ଆଉ ମଧ ଘଣ୍ଟାଏ ଭିତରେ ପହଞ୍ଚି ଯାଇ ପାରିବା ।

ଗାଡ଼ି ପୁଣି ଦ୍ରୁତ ଗତିରେ ଛୁଟିବାକୁ ଲାଗିଲା ।

ମୁଁ ବୁଝିପାରୁ ନ ଥିଲି ଆମେ କୁଆଡ଼କୁ ଯାଉଚୁ, ଠିକ୍ ପଥରେ ନା ଶର୍ମାଜୀ ତାଙ୍କ ଇଚ୍ଛା ଅନୁସାରେ ମୋତେ ପରିଚାଳିତ କରୁଛନ୍ତି ।

ଆଟାଚି କେସ୍ ଭିତରୁ ଟର୍ଚ୍ଚଟା ଖୋଜି ନ ପାଇବା ପରଠାରୁ ମୋ ମନଟା ସନ୍ଦେହରେ ଭରି ଯାଇଥିଲା । ଯଦି ଟର୍ଚ୍ଚଟା ଆଟାଚି କେସ୍‌ରୁ ଅପସାରଣ କରା ହୋଇଥାଏ ଏବଂ ଖୁବ୍ ସମ୍ଭବ ଅପସାରଣ କରା ହୋଇଛି, ତା'ହେଲେ ଶର୍ମାଜୀ ଛଡ଼ା ଆଉ କିଏ ଏ କାର୍ଯ୍ୟ କରିବ ? ଯଦିବା ଶର୍ମାଜୀ ମୋର ଟର୍ଚ୍ଚଟା ଅପସାରଣ କରିଥାନ୍ତି, ତେବେ ତାଙ୍କର ଉଦ୍ଦେଶ୍ୟ ନିଶ୍ଚୟ ମହତ୍ ନୁହେଁ ।

ଘୋଡ଼ାଟାପୁର ଶବ୍ଦ ଦ୍ରୁତରୁ ଦ୍ରୁତତର ହେଉଥିଲା ।

ମୋ ଭାବନା ଅନାବନା ପଥରେ ଛୁଟିଥିଲା । ଶର୍ମାଜୀ ଅସଲ ଦୟାଲଶଙ୍କର ଶର୍ମା ତ ! ଏ ଯଦି ଶତ୍ରୁପକ୍ଷୀୟ କୌଣସି ଲୋକ ହୋଇ ଥାଆନ୍ତି ...

କିଛି ସମୟ ପରେ ମୁଁ ପୁଣି ପଚାରିଲି : ଆଚ୍ଛା ଶର୍ମାଜୀ !

ଶର୍ମାଜୀଙ୍କ କାନରେ ମୋ ଡାକ ବାଜିବା କ୍ଷଣି ଘୋଡ଼ାଟାପୁର ଶବ୍ଦ ଶିଥିଳ ହେଲା । ସେ ବୋଧହୁଏ ଘୋଡ଼ାର ଲଗାମ ଟାଣି ଧରିଲେ ।

ମୁଁ କହିଲି : ତା' ପରର ଘଟଣା ତ କିଛି କହିଲେ ନାହିଁ ?

: କାହା ପରର ଘଟଣା ?

: ନନ୍ଦନଗଡ଼ ରାଜାଙ୍କର ଅକାଳ ମୃତ୍ୟୁ ହେଲା । ସେଇଠୁ ଦେବେନ୍ଦ୍ର ନାରାୟଣ

କ'ଣ କଲେ । ଏବଂ ରାଜାଙ୍କର ସେହି ଅକାଳ ମୃତ୍ୟୁ ସମ୍ବନ୍ଧରେ କୌଣସି ତଦନ୍ତ ହେଲା କି ନାହିଁ ।

ଶର୍ମାଜୀ ଅବଜ୍ଞାର ହାସ୍ୟଧ୍ୱନି ମୋ କାନରେ ବାଜିଲା । ସେ କହିଲେ : ରାଜାଙ୍କର ଅକାଳ ମୃତ୍ୟୁ ସମ୍ବନ୍ଧରେ କୌଣସି ପ୍ରମାଣ ନ ଥିଲା । ତା' ଛଡ଼ା କଥାଟା ରାଜାଙ୍କ ମୃତ୍ୟୁର କେତେବର୍ଷ ପରେ ରାଜ୍ୟରେ ଲୋକମୁଖରୁ ଶୁଣାଗଲା । ସେତେବେଳେ ଆଉ କରିବାର କିଛି ନ ଥିଲା କିମ୍ବା ଅନୁସନ୍ଧାନ କରିବା ପାଇଁ କେହି ନ ଥିଲେ ।

: ଦେବେନ୍ଦ୍ର ନାରାୟଣ ?

: ସେ ତ ସେଇଦିନ ରାତିରେ ରାଜନଅରରୁ ଗୋଡ଼ କାଢ଼ି ବାହାରି ଆସିଥିଲେ ।

: ଆସି କ'ଣ କଲେ ?

: କ'ଣ ଆଉ କରିବେ । ରାଜ୍ୟରେ ଏଇ ମହତ୍ ଆଶ୍ରୟରେ କିଛିଦିନ ରହିଥିଲେ । ତାଙ୍କୁ ଯିଏ ଆଶ୍ରୟ ଦେଇଥିଲେ, ସେ ଏକଦା ରାଜାଙ୍କର ଜଣେ ବିଶ୍ୱାସଭାଜନ ବ୍ୟକ୍ତି ଥିଲେ । କିନ୍ତୁ ରାଜାଙ୍କ ମୃତ୍ୟୁର ବହୁ ପୂର୍ବରୁ ସେ ଅବସର ଗ୍ରହଣ କରିଥିଲେ । ପିଲାଦିନେ ଦେବେନ୍ଦ୍ର ନାରାୟଣ ଓ ସଂଜୀବ ନାରାୟଣ ଦୁଇଭାଇ ତାଙ୍କରି ତତ୍ତ୍ୱାବଧାନରେ ଥିଲେ । ତେଣୁ ଏହି ବ୍ୟକ୍ତିଙ୍କର ଦେବେନ୍ଦ୍ର ନାରାୟଣ ପ୍ରତି ପ୍ରଗାଢ଼ ମମତା ଥିଲା । ସେଥିପାଇଁ ଦେବେନ୍ଦ୍ର ନାରାୟଣଙ୍କୁ ତାଙ୍କ ଗୃହରେ ଆଶ୍ରୟ ଦେଇଥିଲେ ।

: ରାଣୀ ସେ ଖବର ପାଇଲେ ନାହିଁ ?

: ଦେବେନ୍ଦ୍ର ନାରାୟଣ ତାଙ୍କ ଘରେ ଏକ ପ୍ରକାର ଆତ୍ମଗୋପନ କରି ରହିଥିଲେ । ସେ ବାହାରକୁ ବାହାରୁ ନ ଥିଲେ । କାହାରି ସହିତ ମିଳାମିଶା କରୁ ନ ଥିଲେ । କେବଳ ଖାଇପିଇ ବିଦ୍ୟାଧ୍ୟୟନ କରୁଥିଲେ । ଏବଂ ଏହି ବ୍ୟକ୍ତିଙ୍କର ଇଚ୍ଛା ଥିଲା, ଦେବେନ୍ଦ୍ର ନାରାୟଣ ସାବାଳକ ହୋଇ ସାରିବା ପରେ ସେ ଆଇନର ଆଶ୍ରୟରେ ତା'ର ଦାବି ଆଦାୟ କରିବା ପାଇଁ ଆଗେଇ ଯିବ ।

କିନ୍ତୁ ଦୁର୍ଭାଗ୍ୟ ଯେତେବେଳେ ମଣିଷ ପଛରେ ଧାଏଁ, କେହି ତା'ର ଗତିରୋଧ କରି ପାରେ ନାହିଁ । ରାଣୀଙ୍କ କାନରେ ସମ୍ବାଦଟା କିପରି ଯାଇ ପହଞ୍ଚିଲା । ରାଣୀ ଦେବେନ୍ଦ୍ରର ଆଶ୍ରୟଦାତାକୁ ତଲବ କଲେ । ପରଦିନ ଦେବେନ୍ଦ୍ର ନାରାୟଣ ରାତ୍ରିର ଗଭୀର ଅନ୍ଧକାର ମଧ୍ୟରେ ରାଜ୍ୟ ଛାଡ଼ି ଚାଲିଯିବାକୁ ବାଧ୍ୟ ହେଲେ ।

: ତା' ପରେ ?

: ତା' ପରଠାରୁ ଦେବେନ୍ଦ୍ର ନାରାୟଣଙ୍କୁ ଆଉ କେହି ନନ୍ଦନଗଡ଼ରେ ଦେଖି ନାହାନ୍ତି ।

ଶର୍ମାଜୀ କଥା ଶେଷ କରି ଘୋଡ଼ା ପିଠିରେ ଚାବୁକ୍ ମାରିଲେ । ଘୋଡ଼ାଟାପୁର ଶବ୍ଦ ଦ୍ରୁତରୁ ଦ୍ରୁତତର ହେବାକୁ ଲାଗିଲା ।

ମୁଁ ନିରବରେ ବସି ଚିନ୍ତା କରୁଥିଲି ଶର୍ମାଜୀଙ୍କ କଥା । ସେ ଯାହା କହୁଛନ୍ତି ସତ କହୁଛନ୍ତି ତ ! ନା ମୋତେ ଆକୃଷ୍ଟ କରିବା ପାଇଁ ଗୋଟାଏ କଳ୍ପିତ କାହାଣୀ ଶୁଣାଉଛନ୍ତି ?

କିଛି ସମୟ ପରେ ପୁଣି ମୁଁ ପଚାରିଲି : ଆଚ୍ଛା ଶର୍ମାଜୀ ! ବର୍ତ୍ତମାନ ସଂଜୀବ ନାରାୟଣ ତା' ହେଲେ ସର୍ବେସର୍ବା । ସେଇ ସମସ୍ତ ସମ୍ପତ୍ତିର ଉତ୍ତରାଧିକାରୀ ?

ପୁଣି ଘୋଡ଼ାଟାପୁର ଶବ୍ଦ ଶିଥିଳ ହୋଇ ଆସିଲା ।

ଶର୍ମାଜୀ କହିଲେ : ସଂଜୀବ ନାରାୟଣ ସମସ୍ତ ସମ୍ପତ୍ତିର ଉତ୍ତରାଧିକାରୀ ହେବେ ହୁଏତ ତାଙ୍କ ମାଆଙ୍କ ମୃତ୍ୟୁ ପରେ । ଏବେ କିନ୍ତୁ ନନ୍ଦନଗଡ଼ ରାଣୀ ପ୍ରବଳ ପ୍ରତାପୀ । ଅବଶ୍ୟ ଆଜି ସେମାନଙ୍କର ରାଜ୍ୟ ନାହିଁ କିମ୍ବା ରାଜତ୍ୱ ନାହିଁ । କିନ୍ତୁ ରାଣୀ ମନେକରନ୍ତି, ଏବେ ବି ସେ ନନ୍ଦନଗଡ଼ର ଶାସନକର୍ତ୍ତ୍ରୀ । ସଂଜୀବ ନାରାୟଣଙ୍କର ପ୍ରତାପ ବି କମ୍ ନୁହେଁ । ତେବେ ସେ ମା'ଙ୍କୁ ସଂଭ୍ରମ କରି ଚଳନ୍ତି । ଯାହାକୁ କୁହନ୍ତି ବାଧ୍ୟ ସନ୍ତାନ ।

ମୁଁ କହିଲି : ତା' ହେଲେ ନନ୍ଦନଗଡ଼ର ରାଣୀ ସୌଭାଗ୍ୟବତୀ । ବିଶେଷତଃ ରାଜପରିବାରମାନଙ୍କରେ ବାଧ୍ୟ ସନ୍ତାନ ଜନ୍ମିବାର ପ୍ରବାଦ ନାହିଁ ।

ଶର୍ମାଜୀ ଏଥର ହୋ ହୋ ହୋଇ ହସି ଉଠିଲେ । କହିଲେ : ସଂଜୀବ ନାରାୟଣ ବି ବାଧ୍ୟ ନୁହନ୍ତି । ସେ କେବଳ ନିଜର ଉଦ୍ଦେଶ୍ୟ ସାଧନ ପାଇଁ ବାଧ୍ୟ ହେବାର ଛଳନା କରୁଛନ୍ତି ।

: ମାନେ ?

ଶର୍ମାଜୀ ଘୋଡ଼ାଗାଡ଼ିକୁ ଏକଦମ୍ ବନ୍ଦ କରାଇ ଦେଲେ । କୋଚୱାନ୍ ସିଟ୍ ଉପରୁ ମୁହଁଟା ମୋ ଆଡ଼କୁ ବଢ଼ାଇ ଅତି ଧୀର ଗଳାରେ କହିଲେ : ରାଣୀ ଖୁବ୍ ବୁଦ୍ଧିମତୀ ମହିଳା । ସରକାରଙ୍କ ଆଖିରେ ଧୂଳି ଫିଙ୍ଗି ସେ ବହୁତ ସମ୍ପତ୍ତି ଲୁଚାଇ ରଖିଛନ୍ତି । ତା' ସମ୍ବନ୍ଧରେ ସଂଜୀବ ନାରାୟଣ କିଛି କିଛି ଜାଣନ୍ତି । ଏବଂ ସେ ଜାଣନ୍ତି ମା'ଙ୍କର ଏକାନ୍ତ ବିଶ୍ୱାସଭାଜନ ନ ହୋଇ ପାରିଲେ, ସେଇ ଗୁପ୍ତଧନର ଅଧିକାରୀ ସେ ହୋଇ ପାରିବେ ନାହିଁ ।

ଶର୍ମାଜୀ ମୋ ଆଡୁ ମୁହଁ ଉଠାଇ ନେଇ ଘୋଡ଼ା ପିଠିରେ ଚାବୁକ୍ ମାରିଲେ । ଅନ୍ଧକାରର ବକ୍ଷ ବିଦୀର୍ଣ କରି ଗାଡ଼ି ଆଗେଇ ଚାଲିଥିଲା ।

ମୁଁ କିନ୍ତୁ ଧୀରେ ଧୀରେ ଅଧିକ ଅଶ୍ୱସ୍ତି ଅନୁଭବ କରୁଥିଲି । ମୋର ମନେ ହେଉଥିଲା, ଏହି ଶର୍ମାଜୀଟି ଯିଏ ହେଉନା କାହିଁକି ସେ ଗୋଟିଏ ଅତି ଚତୁର ଲୋକ ଏବଂ ଖୁବ୍ ସମ୍ଭବତଃ ଶତ୍ରୁ ପକ୍ଷୀୟ ଲୋକ । ମୋର ଆଗମନର ଉଦ୍ଦେଶ୍ୟ ସେ ସବୁ ଜାଣିଛି ଏବଂ ମୋତେ ଭୁଲ୍ ପଥରେ ପରିଚାଳିତ କରି ନେଇ ଯାଉଛି ହୁଏତ କେଉଁ ଅନ୍ଧକାର ଗହ୍ୱରକୁ । ଏତେ ରାତିରେ, ଏହିପରି ଦୁର୍ଯୋଗକୁ ମୁଣ୍ଡରେ ମୁଣ୍ଡେଇ ମୋର ଷ୍ଟେସନରୁ ପାଦେ ଆଗେଇବା ଉଚିତ ନ ଥିଲା ।

: ବୁଝିଲେ ମହାପାତ୍ରଜୀ ! ହଠାତ୍ ଶର୍ମାଜୀଙ୍କର କଣ୍ଠସ୍ୱରରେ ମୁଁ ପ୍ରକୃତିସ୍ଥ ହେଲି । ସେ କହି ଚାଲିଲେ, ନନ୍ଦନଗଡ଼ର ରାଜ ପରିବାର ସମ୍ବନ୍ଧରେ ବହୁ ପ୍ରବାଦ ପ୍ରଚଳିତ ଅଛି । ମୁଁ ତ ଏଇ ରାଜ୍ୟର ପ୍ରଜା । ମୁଁ ପିଲା ଦିନରୁ ବହୁତ କଥା ଶୁଣିଛି । ନନ୍ଦନଗଡ଼ର ପୂର୍ବପୁରୁଷମାନେ ଖୁବ୍ ଧନୀ ଥିଲେ । ପରମ୍ପରା କ୍ରମେ ସେମାନେ ବିତ୍ତଶାଳୀ । କିନ୍ତୁ ସେଇ ଅକଳନ ସମ୍ପତ୍ତି କେଉଁଠି ରୁହେ, ରାଜପରିବାରର କେବଳ ଜଣକୁ ତାହା ଜଣା ଥାଏ । ଉତ୍ତରାଧିକାର ସୂତ୍ରରେ ସେ ଅଧିକାର ତାକୁ ଦିଆଯାଏ ।

: ତା' ହେଲେ କ'ଣ ବର୍ତ୍ତମାନ ନନ୍ଦନଗଡ଼ର ଗୁପ୍ତଧନର ତଥ୍ୟ ଏକମାତ୍ର ରାଣୀ ଜାଣନ୍ତି ? ମୁଁ ପଚାରିଲି ।

: ହଁ, ତେବେ ଲୋକେ କହନ୍ତି ସେଇ ଗୁପ୍ତଧନର ସନ୍ଧାନ ଆଉ ଜଣେ ପାଇଥିଲେ ।

: କିଏ ସଂଜୀବ ନାରାୟଣ ?

: ନା ସଂଜୀବ ନାରାୟଣ ନୁହନ୍ତି ।

: ତେବେ ?

: ସେ ଜଣେ ସନ୍ନ୍ୟାସୀ ।

: ସନ୍ନ୍ୟାସୀ ?

: ହଁ, ରାଜାଙ୍କ ମୃତ୍ୟୁର ଦଶ ବାରବର୍ଷ ପରେ ନନ୍ଦନଗଡ଼କୁ ଜଣେ ସନ୍ନ୍ୟାସୀ ଆସିଥିଲେ । ତାଙ୍କର ଉଜ୍ଜ୍ୱଳ ଜ୍ୟୋତିରେ ନନ୍ଦନଗଡ଼ ଆଲୋକିତ ହୋଇ ଉଠିଥିଲା । ରାଜ ନଅରର ଅନତି ଦୂରରେ ସେ ତାଙ୍କର ଆସ୍ଥାନ ଜମେଇ ଥିଲେ । ଦିନ କେତୁଟାରେ

ନନ୍ଦନଗଡ଼ରେ ତାଙ୍କର ଖ୍ୟାତି ବଢ଼ିଗଲା । ସେ ନନ୍ଦନଗଡ଼ରେ ଏକ ବିରାଟ ଆକାରର ଯଜ୍ଞର ଆୟୋଜନ କଲେ । ନନ୍ଦନଗଡ଼ର ଲୋକେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ସନ୍ନ୍ୟାସୀଙ୍କ ଉଦ୍ୟମରେ ସେହି ଯଜ୍ଞ କିଛିଦିନ ପାଇଁ ଏକ ତୀର୍ଥସ୍ଥଳୀ ହୋଇ ଉଠିଲା । ଭାରତର ବିଭିନ୍ନ ପ୍ରାନ୍ତରୁ ଲୋକେ ଆସିଲେ ସନ୍ନ୍ୟାସୀଙ୍କର ଦର୍ଶନ ପାଇଁ । ତାଙ୍କ କୃପା ଯିଏ ଲାଭ କଲା ସିଏ ନିଜକୁ ଧନ୍ୟ ମଣିଲା ।

ସନ୍ନ୍ୟାସୀଙ୍କର ଏହି ସୁଖ୍ୟାତି ନନ୍ଦନଗଡ଼ ରାଜ ନଅରର ଦ୍ୱାର ଭେଦ କରି ଦିନେ ଯାଇ ରାଣୀଙ୍କ କର୍ଣ୍ଣଗହ୍ୱରରେ ପ୍ରବେଶ କଲା । ସେ ମଧ ଆକୃଷ୍ଟ ହେଲେ । ସନ୍ନ୍ୟାସୀ ନିମନ୍ତ୍ରିତ ହେଲେ ରାଜ ନଅରକୁ ।

: ତା'ପରେ ?

: ତା' ପରେ ସନ୍ନ୍ୟାସୀ ରାଜମାତାଙ୍କର ବିଶ୍ୱାସଭାଜନ ହୋଇ ଉଠିଲେ । ସନ୍ନ୍ୟାସୀଙ୍କର ଅବାଧ ଗତି ହେଲା ରାଜପ୍ରାସାଦକୁ ।

ଶର୍ମାଜୀ କଥାଟା ସେଇଠି ଅସମାପ୍ତ ରଖି ମୋତେ ହଠାତ୍ ପ୍ରଶ୍ନ କଲେ ।

: ଆପଣ ତ ଅନେକ ଦୂରରୁ ଆସିଛନ୍ତି, ଆପଣଙ୍କର ରହିବା ବ୍ୟବସ୍ଥା କ'ଣ ନନ୍ଦନଗଡ଼ର ଅତିଥିଶାଳାରେ ହୋଇଛି ?

: ହଠାତ୍ ଏ ପ୍ରଶ୍ନ କାହିଁକି ?

: ନା, ଅତିଥିଶାଳାଟା ପାଖେଇ ଆସିଲାଣି ତ ! ସେଇଥି ଲାଗି ପଚାରୁଥିଲି ।

ପୁଣି ନିରବତା ଭିତରେ କିଛି ସମୟ ଘୋଡ଼ାଟାପୁର ଶବ୍ଦ ଗଣିବାକୁ ହେଲା । ଏବଂ ଶବ୍ଦଟା ଧୀରେ ଧୀରେ ଶିଥିଳ ହୋଇ ଆସିଲା । ଏକ ସମୟରେ ଶର୍ମାଜୀ ଲଗାମ ଟାଣି ଧରି ଘୋଡ଼ାର ଗତିବେଗ ରୋଧ କରିଦେଲେ । ସେ ବସିବା ଜାଗାରୁ ଉଠିପଡ଼ି ଠିଆହୋଇ କ'ଣ ଯେପରି ଲକ୍ଷ୍ୟ କଲେ । ମୋତେ ଚଞ୍ଚଳ କଣ୍ଠରେ କହିଲେ : ସର୍ବନାଶ ହୋଇଛି ମହାପାତ୍ରଜୀ । ସଂଜୀବ ନାରାୟଣ ଆପଣଙ୍କ ଉପସ୍ଥିତି ସମ୍ବାଦ ପାଇ ଯାଇଛି ।

: ମାନେ ? ମୁଁ ଚମକି ଉଠିଲା ପରି କହିଲି ।

ଶର୍ମାଜୀ କହିଲେ : ଆପଣ ଗାଡ଼ି ଉପରେ ଠିଆହୋଇ ଲକ୍ଷ୍ୟ କରନ୍ତୁ, ଏଇ ରାସ୍ତାରେ, ବହୁତ ଦୂରରେ କେତେଗୁଡ଼ାଏ ଆଲୋକ ଦିଶୁଚି । ଏବଂ ସେହି ଆଲୋକ ଭିତରେ ଏକ ଲାଲ ଆଲୋକ ଜଳୁଛି । ତା'ମାନେ ସଂଜୀବ ନାରାୟଣ ସଦଳବଳେ ଅଭିଯାନ ଆରମ୍ଭ କରିଛି । ଏତେ ରାତିରେ ଆଉ ସଂଜୀବ ନାରାୟଣର ଅଭିଯାନର କାରଣ କ'ଣ ହୋଇପାରେ ? ହୁଏତ ସେ ଆପଣଙ୍କର ଗତିପଥ ରୋଧ କରିବା ପାଇଁ ଆଗେଇ ଆସୁଛି ।

: କିନ୍ତୁ ମୁଁ ଏଠାକୁ କାହିଁକି ଆସିଛି, ମୋ ଆସିବାର ଉଦ୍ଦେଶ୍ୟ କ'ଣ, ତା'ଛଡ଼ା ମୁଁ ଆସିଛି ବୋଲି ସଞ୍ଜୀବ ନାରାୟଣ ମୋର ଗତିପଥ ରୋଧ କରିବାକୁ ଏତେ ରାତିରେ କାହିଁକି ଆଗେଇ ଆସିବ ?

ମୁଁ ଶର୍ମାଜୀଙ୍କ ସହିତ କଥା କହୁଥିଲି ଏବଂ ସେଇ ଆଲୋକ ଆଡ଼େ ଦୃଷ୍ଟି ରଖିଥିଲି । ପ୍ରକୃତରେ ସେଇ ଆଲୋକ କେତୁଟା ଆମରି ଆଡ଼କୁ ମାଡ଼ି ଆସୁଥିଲା ।

ଶର୍ମାଜୀ କହିଲେ : ସଞ୍ଜୀବ ନାରାୟଣ ସବୁ ଜାଣେ ମହାପାତ୍ରଜୀ । ତା'ଛଡ଼ା ଥାନା ଅଫିସର ଅମରନାଥ ଶାସ୍ତ୍ରୀଙ୍କ ସହିତ ତା'ର ପ୍ରଗାଢ଼ ବନ୍ଧୁତ୍ୱ । ସେ ସବୁକଥା ସେଉଠୁ ଶୁଣିଛି । ଶୀଘ୍ର ଗୋଟାଏ କିଛି ସିଦ୍ଧାନ୍ତ ନିଅନ୍ତୁ । ତା' ନ ହେଲେ ଆପଣଙ୍କ ସହିତ ମୋ ପ୍ରାଣହାନିର ମଧ୍ୟ ଆଶଙ୍କା ରହିଛି ।

ମୋ ଠାରୁ ଶର୍ମାଜୀ କିଛି ଉତ୍ତର ପାଇବା ପୂର୍ବରୁ ଘୋଡ଼ାଗାଡ଼ିଟାକୁ ବାଁ ଆଡ଼କୁ ଘୂରାଇଲେ । କହିଲେ : ବର୍ତ୍ତମାନ ଆତ୍ମଗୋପନ କରିବା ଛଡ଼ା ଅନ୍ୟଗତି ନାହିଁ । ମୁଁ ଆମକୁ ଏପରି ଏକ ନିରାପଦ ସ୍ଥାନକୁ ନେଇ ଯାଉଛି, ଯେଉଁ ସ୍ଥାନକୁ ଆମେ ଯାଇ ପାରନ୍ତି ବୋଲି ସଞ୍ଜୀବ ନାରାୟଣ ମୋଟେ ସନ୍ଦେହ କରିବ ନାହିଁ ।

ଗାଡ଼ି ପୁଣି ଦ୍ରୁତ ଗତିରେ ଛୁଟିବାକୁ ଆରମ୍ଭ କରିଦେଲା ।

: ଆମେ ବର୍ତ୍ତମାନ କୁଆଡ଼କୁ ଯାଉଛେ ?

: ନନ୍ଦନଗଡ଼ର ରାଜବାଟୀ ଆଡ଼କୁ ।

: ରାଜବାଟୀ ? ସଙ୍ଗେ ସଙ୍ଗେ ମୋ ପଞ୍ଜାବି ପକେଟରେ ହାତ ଭରି ଦେଖିଲି, ଏକମାତ୍ର ବିଶ୍ୱସ୍ତ ସାଥୀ ରିଭଲଭରଟକୁ ମୁଁ ହରାଇ ନାହିଁ । ମୋର ମନେହେଲା, ମୁଁ ବୋଧହୁଏ ନନ୍ଦନଗଡ଼ର କର୍ତ୍ତୃପକ୍ଷଙ୍କ ଜାଲରେ ପଡ଼ି ଯାଇଛି । ଏଥର ମୋର ଆଉ ନିସ୍ତାର ନାହିଁ ।

ଶର୍ମାଜୀ କହିଲେ : ନନ୍ଦନଗଡ଼ ଆଉ ଅଳ୍ପ ବାଟ ଅଛି । ଆପଣ ଚୁପ୍ ହୋଇ ବସନ୍ତୁ, କିଛି ପାଟି ତୁଣ୍ଡ କରିବେ ନାହିଁ । ମୋତେ ଅନୁସରଣ କରି ମୋ ପଛେ ପଛେ ଆଗେଇ ଯିବେ । ମୁଁ ଆପଣଙ୍କୁ ନିରାପଦ ସ୍ଥାନକୁ ନେଇଯିବି ।

ମୋର ଉତ୍ତର ଦେବାର କିଛି ନ ଥିଲା । ମୁଁ ବୁଝି ପାରିଥିଲି, ଏଥର ମୋତେ ଆତ୍ମରକ୍ଷା କରିବା ପାଇଁ ପ୍ରସ୍ତୁତ ରହିବାକୁ ହେବ ।

ଶର୍ମାଜୀ କହିଲେ : ନନ୍ଦନଗଡ଼ର ପରିଖା ସେ ପାଖରେ ଲକ୍ଷ୍ମୀ ନାରାୟଣଙ୍କ ମନ୍ଦିର । ରାଜା ବଞ୍ଚିଥିବା ବେଳେ ସେଠାରେ ଖୁବ୍ ଧୂମ୍‌ଧାମ୍‌ରେ ପୂଜାପାର୍ବଣ ପାଳିତ ହେଉଥିଲା । ବର୍ତ୍ତମାନ ଠାକୁର ଅଛନ୍ତି, ପୂଜା ହୁଏ; କିନ୍ତୁ ସବୁ ଅବହେଳିତ । ରାତିରେ

ସେ ମନ୍ଦିର ଆଡ଼େ କେବେ କେହି ଆସନ୍ତି ନାହିଁ । ଆମେ ସେଇଠି ଯାଇ ଆତ୍ମଗୋପନ କରିବା ।

ଶର୍ମାଜୀଙ୍କର କଥା ଶେଷ ହେଲା ଏବଂ ଗାଡ଼ି ଅଟକିଲା । ସେ ମୋତେ ଶୀଘ୍ର ଓହ୍ଲେଇ ପଡ଼ିବାକୁ କହିଲେ । ମୁଁ ଓହ୍ଲେଇ ପଡ଼ିଲି, ଶର୍ମାଜୀ ବି ଓହ୍ଲେଇଲେ । ସଙ୍ଗେ ସଙ୍ଗେ ସେ ଘୋଡ଼ାର ଲଗାମ ଧରି ଟାଣି ଟାଣି ଗାଡ଼ିଟା ଆଗେଇ ନେଉ ନେଉ କହିଲେ : ଆପଣ ଦୁଇ ମିନିଟ୍ ଅପେକ୍ଷା କରନ୍ତୁ, ମୁଁ ଗାଡ଼ିଟା ଉହାଡ଼ିଆ ଜାଗାରେ ରଖି ଦେଇ ଆସୁଛି ।

ସେ ଆଗେଇ ଗଲେ । ମୁଁ ସେଇଠି ଅନ୍ଧକାର ଭିତରେ ଠିଆ ହୋଇ ରହିଲି ।

ଖୁବ୍ ଅଳ୍ପ ସମୟ ମଧ୍ୟରେ ଶର୍ମାଜୀ ଫେରି ଆସିଲେ । ମୋତେ ଅନ୍ଧକାର ଭିତରେ ନୀରବରେ ଠିଆହୋଇ ଥିବାର ଦେଖି କହିଲେ, : ଆପଣଙ୍କୁ ମୋତେ ବିଶ୍ୱାସ କରିବାକୁ ହେବ ମହାପାତ୍ରଜୀ ! କାରଣ ଆମେ ବର୍ତ୍ତମାନ ଶତ୍ରୁ କବଳରେ ପଡ଼ିଛନ୍ତି । ଆମକୁ ଆତ୍ମରକ୍ଷା କରିବାକୁ ହେବ । ହେଇ ଦେଖନ୍ତୁ, ସାମନାରେ ଯେଉଁ ଆଲୋକ ଦିଶୁଛି, ସେଇଆକୁ ଅନୁସରଣ କରି ଆପଣ ଆଗେଇ ଚାଲନ୍ତୁ । ମୁଁ ଆପଣଙ୍କ ପଛେ ପଛେ ଚାଲିଛି ।

ମୁଁ ଦେଖିଲି, ଶର୍ମାଜୀଙ୍କ ହାତରୁ ଆଲୋକଶିଖାଟା ବାହାରି ଗୋଟାଏ ଜାଗାରେ ଗୋଲାକୃତି ହୋଇ ପଡ଼ିଥିଲା । ବୋଧହୁଏ ଶର୍ମାଜୀଙ୍କ ହାତରେ ମୋରି ଟର୍ଚ୍ଚଟା ଆଲୋକ ବିଚ୍ଛୁରିତ କରୁଛି !

ଆଲୋକଶିଖା ଆମକୁ ଏକ କ୍ଷୁଦ୍ର ଜଙ୍ଗଲ ଭିତର ଦେଇ ଗୋଟିଏ ଜୀର୍ଣ୍ଣ ମନ୍ଦିର ପାଖରେ ନେଇ ଠିଆ କରାଇଲା ।

ଶର୍ମାଜୀ ଗୋଟାଏ ପଥର ପାହାଚ ଉପରେ ଆଲୋକ ସ୍ଥିର କରି କହିଲେ : ଉପରକୁ ଉଠି ସେଇ କାଠ କବାଟଟାର ଶିକୁଳି ଖୋଲନ୍ତୁ । ଦରଜା ଠେଲନ୍ତୁ ଖୋଲିଯିବ ।

ମୁଁ ଯନ୍ତ୍ରଚାଳିତ ପରି କାଠ କବାଟ ଖୋଲିଲି । ଦରଜା ଖୋଲିଗଲା । ଭିତରେ ଚେମଣିଆ ଗୁଡ଼ାକ ଫଡ଼ ଫଡ଼ ହୋଇ ଉଡ଼ିବାକୁ ଲାଗିଲେ ।

ଆଲୋକର ଶିଖା କ୍ରମଶଃ ଆଗେଇ ଯାଉଥିଲା । ମୁଁ ସେଇ ଭଗ୍ନ ମନ୍ଦିର ଭିତରେ ପ୍ରବେଶ କରିସାରିଥିଲି । ମୋ ପଛରେ ଶର୍ମାଜୀ । କବାଟ ବନ୍ଦ କରିବାର ଶବ୍ଦ ଶୁଣିଲି । ଆଲୋକଟା ହଠାତ୍ ଦପ୍‌କରି ନିଭିଗଲା ।

ଆଉ ଥରେ ମୋର ସର୍ବାଙ୍ଗ କମ୍ପି ଉଠିଲା । ମୁଁ ଭାବିଲି, ଏଥର ମୋର ଆଉ ନିସ୍ତାର ନାହିଁ । ମୁଁ ବନ୍ଦୀ, ହଁ ମୁଁ ବନ୍ଦୀ !

କିନ୍ତୁ ପଛରୁ ଶର୍ମାଜୀଙ୍କର କଣ୍ଠସ୍ୱର ଶୁଣିଲି । ଶର୍ମାଜୀ କହିଲେ : ବାହାରେ ...ମାର ପାଟିଗୋଳ ଶୁଭୁଛି । ସେମାନେ ବୋଧହୁଏ ଏଇ ଆଡ଼କୁ ଆଗେଇ ଆସୁଛନ୍ତି । ଅବଶ୍ୟ ଭିତରୁ ମୁଁ ଦରଜାଟା ବନ୍ଦ କରି ଦେବି । କିନ୍ତୁ ସେମାନେ ଯଦି ଏଯାଏ ଆସି ଯାଆନ୍ତି, ଆଉ ଆମର ନିସ୍ତାର ନାହିଁ ।

ମନ୍ଦିର ଭିତରେ ଗୋଟାଏ ଭାପ୍‌ସା ଗନ୍ଧ ବାହାରି ଭୀଷଣ ଅଶ୍ୱସ୍ତିକର ମନେ ହେଉଥିଲା । ମୁଁ ଦୃଢ଼ ସଂକଳ୍ପ କରିଥିଲି ଯେ ଶର୍ମାଜୀ ଯଦି କୌଣସି ଅସଦ୍ ଉଦ୍ଦେଶ୍ୟରେ ମୋତେ ଏଠାକୁ ଘେନି ଆସି ଥାଆନ୍ତି, ତା'ହେଲେ ମୁଁ ଭୀଷଣ ଭାବରେ ପ୍ରତିଶୋଧ ନେବି ।

ପୁଣି ମୁଁ ଆଲୋକଶିଖା ଦେଖିଲି । ଏଥର ଲକ୍ଷ୍ମୀ ନାରାୟଣ ମୂର୍ତ୍ତିଙ୍କ ଉପରେ । ଗୋଟିଏ ଗୋଲାକୃତି ପଥର ଖଣ୍ଡ ଉପରେ ଲକ୍ଷ୍ମୀ ନାରାୟଣ ଯୁଗଳ ମୂର୍ତ୍ତି ଅବସ୍ଥାପିତ ।

ତା'ପରେ ଆଲୋକଶିଖାଟା ଦପ୍ କରି ନିଭିଗଲା ।

ମୁଁ ପୁଣି ଶର୍ମାଜୀଙ୍କର ଗଳା ଶୁଣିଲି । ସେ କହିଲେ : ଆମେ ପିଲାଦିନେ ଏଇ ଲକ୍ଷ୍ମୀ ନାରାୟଣଙ୍କ ଦର୍ଶନ ପାଇଁ ଆସୁଥିଲୁ । ସେତେବେଳ ରାଜେନ୍ଦ୍ର ନାରାୟଣଙ୍କ ପ୍ରଚଣ୍ଡ ପ୍ରତିପତ୍ତି । ବାର ମାସରେ ତେର ପୂଜା ଲାଗି ରହିଥିଲା । ସବୁବେଳେ ଗହଳ ଚହଳ । ଠାକୁର ଦର୍ଶନ ପାଇଁ ମନ୍ଦିର ଭିତରକୁ ପ୍ରବେଶ କରିବା କାଠିକର ପାଠ ଥିଲା । କିନ୍ତୁ ଆଜି ସେଇ ଠାକୁରଙ୍କ ଅବସ୍ଥା ନିଜ ଆଖିରେ ଦେଖିଲେ ତ ? ମୁଁ ଶର୍ମାଜୀଙ୍କର ସମସ୍ତ କଥା ଶୁଣୁଥିଲି ସତ, କିନ୍ତୁ ତାଙ୍କ ଉଦ୍ଦେଶ୍ୟ ସମ୍ବନ୍ଧରେ ମୋ ମନରେ ସନ୍ଦେହ ଥିଲା । ମୋ ମନରେ ଶର୍ମାଜୀଙ୍କ ପ୍ରତି ସ୍ୱଷ୍ଟ ଗୋଟାଏ ଧାରଣା କିଛି ଜନ୍ମି ପାରୁ ନ ଥିଲା ।

ଶର୍ମାଜୀ ପୁଣି କହିଲେ : ମହାପାତ୍ରଜୀ, ଏଇ ଲକ୍ଷ୍ମୀନାରାୟଣ ମନ୍ଦିର ସମ୍ବନ୍ଧରେ ଗୋଟାଏ ଗୋପନ ସମ୍ବାଦ ମୁଁ ମୋ ବୂଢ଼ୀ ମା'ଠାରୁ ଶୁଣିଥିଲି । ଏହି ମନ୍ଦିର ରାଜପ୍ରାସାଦର ବାହାରେ ଏପରି ନିର୍ଜନ ଏକ ଜଙ୍ଗଲ ମଧ୍ୟରେ ପ୍ରତିଷ୍ଠିତ ହେବାର ଗୋଟାଏ କାରଣ ଥିଲା । ରାଜବାଟୀରୁ କୁଆଡ଼େ ଗୋଟାଏ ସୁଡ଼ଙ୍ଗ ପଥ ...

ହଠାତ୍ ବାହାରେ ଅନେକ କଣ୍ଠର କୋଳାହଳ ଶୁଣାଗଲା ।

ଶର୍ମାଜୀଙ୍କ କଥା ଅସମାପ୍ତ ରହିଗଲା । ସେ ଆଉଥରେ ଲକ୍ଷ୍ମୀନାରାୟଣଙ୍କ ମୂର୍ତ୍ତି ଉପରେ ଆଲୋକଶିଖା ଠୁଳ କରି କହିଲେ : ଏଥର ଆପଣଙ୍କର ଏକମାତ୍ର ସହାୟ ଏଇ ଲକ୍ଷ୍ମୀନାରାୟଣ । ସେମାନେ ଆସି ଗଲେଣି । ଆଉ ନିସ୍ତାର ନାହିଁ । ବଙ୍ଗ ଗୋଟାଏ

କାମ କରନ୍ତୁ ମହାପାତ୍ରଜୀ ! ଆପଣ ସେଇଠି ଥାଆନ୍ତୁ, ମୁଁ ବାହାରି ଯାଇ ସେମାନଙ୍କ ଗତିବିଧି ଲକ୍ଷ୍ୟ କରେ ।

ବାହାରେ କୋଳାହଳ ଆହୁରି ବେଶୀ ଶୁଣାଗଲା ଏବଂ ମନେ ହେଉଥିଲା, କୋଳାହଳଟା ଧୀରେ ଏଇ ମନ୍ଦିର ଆଡ଼କୁ ମାଡ଼ି ଆସୁଛି ।

ଶର୍ମାଜୀ ଟର୍ଚ୍ଚଟା ଲିଭେଇ ମୋ ହାତରେ ଧରାଇ ଦେଇ କ୍ଷିପ୍ର ଗତିରେ ଘରୁ ବାହାରି ଯାଉ ଯାଉ କହିଲେ : ଲକ୍ଷ୍ମୀନାରାୟଣଙ୍କ ଆଶ୍ରୟ ନିଅନ୍ତୁ । ଏ ଯାତ୍ରାରୁ ଉଧୁରି ଯିବେ ।

ମୁହୂର୍ତ୍ତକ ପାଇଁ ହତବାକ୍ ହୋଇ ଯାଇଥିଲି । ଧଡ଼୍ କରି କବାଟଟା ବନ୍ଦ ହେବାକ୍ଷଣି ଟର୍ଚ୍ଚ୍‌ଟା ଜଳେଇ ଦରଜା ଆଡ଼କୁ ଆଗେଇଲି । କିନ୍ତୁ ଦରଜା ବାହାର ଆଡୁ ବନ୍ଦ । କୋଳାହଳ ଆଗେଇ ଆସୁଥିଲା । କେବଳ ଗୁଡ଼ାଏ ତୀବ୍ର କଣ୍ଠସ୍ୱର ମୁଁ ଶୁଣୁଥିଲି ।

ତା' ହେଲେ ? ହଁ ମୁଁ ବନ୍ଦୀ । ମୋତେ ଏଠାରେ ବନ୍ଦୀ କରା ହୋଇଛି । ହୁଏତ ଦୟାଲଶଙ୍କର ଶର୍ମା ନିଜେ ଏହି ଷଡ଼ଯନ୍ତ୍ର ସହିତ ଲିପ୍ତ । ଏହାପରେ ?

ମୁଁ ଟର୍ଚ୍ଚ୍‌ଟା ଜାଳି ଲକ୍ଷ୍ମୀନାରାୟଣଙ୍କ ମୁହଁକୁ ଫୋକ୍‌ସ କଲି । ଶର୍ମାଜୀ କହିଗଲେ : ମୁଁ କୁଆଡ଼େ ଲକ୍ଷ୍ମୀନାରାୟଣଙ୍କର ଆଶ୍ରୟ ନେଲେ ଏ ଯାତ୍ରାରୁ ବଞ୍ଚିଯିବି । ତା'ଛଡ଼ା ସେ କହୁଥିଲେ ରାଜବାଟୀରୁ ଗୋଟାଏ ସୁଡଙ୍ଗ ପଥ ... ପଥଟା କ'ଣ ଏଇ ଲକ୍ଷ୍ମୀନାରାୟଣ ମନ୍ଦିରରେ ଆସି ଶେଷ ହୋଇଛି ?

ମୋ ଭାବନା ଥମିଗଲା । ବାହାରେ କାହାର କଣ୍ଠସ୍ୱର ଶୁଣାଗଲା । ପରେ ପରେ କବାଟରେ କିଏ ଧକ୍‌କା ମାରି ତୀବ୍ର କଣ୍ଠରେ କହୁଥିଲା : କବାଟ ଖୋଲ୍ ବେ ଶଳା, କେତେବେଳ ଯାଏ ତୁ ସେ ଘରେ ଲୁଚି ରହିବୁ ଦେଖିବି ।

ନା, ଆଉ ନିସ୍ତାର ନାହିଁ । ଏଥର ମୋତେ ସଂଗ୍ରାମର ସମ୍ମୁଖୀନ ହେବାକୁ ହେବ । କିନ୍ତୁ ଲୋକଟା ମାତାଲ ନା କ'ଣ ? ଦରଜାଟା ତ ବାହାରୁ ଶିକୁଳି ଦିଆ ହୋଇଛି, ସେ ତ ଅକ୍ଳେଶରେ ଖୋଲି ଆସି ପାରନ୍ତା । ବୋଧହୁଏ ବୁଝି ପାରି ନାହିଁ ।

କବାଟରେ ଆହୁରି ଜୋର୍‌ରେ ଧକ୍‌କା ମାରିବାରେ ଲାଗିଲା । ହୁଏତ ଏଥର ଦୁଇ ତିନିଜଣ ମିଳି କବାଟ ବାଡ଼ଉଛନ୍ତି । ଆଉ ଅଳ୍ପ ସମୟ ପରେ ଭାଙ୍ଗିଯିବ କବାଟଟା ।

ମୁଁ ଚିନ୍ତା କରୁଥିଲି ଅନ୍ୟ କଥା । ଗୋଟାଏ ସୁଡ଼ଙ୍ଗ ପଥ ରାଜବାଟୀରୁ ବାହାରି ଏହି ମନ୍ଦିରରେ ଶେଷ ହୋଇଛି । କିନ୍ତୁ ଛୋଟ ସେହି ପଥର ନିର୍ମିତ ମନ୍ଦିରଟିରେ ମୁଁ

ବ୍ୟସ୍ତ ଭାବରେ ସୁଡ଼ଙ୍ଗ ପଥ ଖୋଜୁଥିଲି । ପୁଣି ମୋ କାନରେ ଯେପରି ପ୍ରତିଧ୍ୱନିତ ହେଲା, ଶର୍ମାଜୀଙ୍କ କଣ୍ଠସ୍ୱର 'ଲକ୍ଷ୍ମୀନାରାୟଣଙ୍କର ଆଶ୍ରୟ ନିଅନ୍ତୁ, ଏ ଯାତ୍ରାରୁ ଉଧୁରି ଯିବେ ।'

ମୋ ଟର୍ଚ୍ଚ୍‌ର ଫୋକ୍‌ସଟା ପୁଣି ଘୂରିଗଲା ଲକ୍ଷ୍ମୀନାରାୟଣଙ୍କ ମୂର୍ତ୍ତି ଉପରକୁ । ମୁଁ ଧ୍ୟାନ ସହକାରେ ଲକ୍ଷ୍ୟ କଲି, ଟର୍ଚ୍ଚ୍‌ର ଫୋକ୍‌ସ ଲକ୍ଷ୍ମୀନାରାୟଣଙ୍କ ମୂର୍ତ୍ତି ଭେଦ କରି ସାମନା ଦିଆଲରେ ଜାଲି ଜାଲି ହୋଇ ଦିଶୁଛି ।

ଆନନ୍ଦରେ ଚିତ୍‌କାର କରି ଉଠୁଥିଲି । କିନ୍ତୁ ମୋତେ ଆତ୍ମସମ୍ବରଣ କରିବାକୁ ହେଲା । ବାହାରେ କୋଳାହଳ ତୀବ୍ରରୁ ତୀବ୍ରତର ହୋଇ ଉଠିଥିଲା ।

ମୁଁ ଲକ୍ଷ୍ମୀନାରାୟଣ ମୂର୍ତ୍ତି ପାଖକୁ ଆଗେଇ ଗଲି । ଦୁଇ ହାତରେ ପରୀକ୍ଷା କରି ଦେଖିଲି, ପିତଳ ଚାଦରରେ ଏହି ମୂର୍ତ୍ତି ନିର୍ମିତ ହୋଇଛି । ଦେହଯାକ ଫୁଟାଫୁଟା ଦାଗ । ମୁଁ ନିଶ୍ଚିତ ହେଲି ଯେ ଏଇ ତା' ହେଲେ ସୁଡ଼ଙ୍ଗ ପଥ । ଏଇ ଫୁଟାବାଟେ ପବନ ଯାଏ । ଦୁଇ ହାତରେ ଧରି ମୂର୍ତ୍ତିଟିକୁ ଡାହାଣ ଆଡ଼କୁ ଘୂରାଇଲି । ଦୁଇ ହାତରେ ଉପରକୁ ଟେକି ଦେଲି । ପିତଳ ଚାଦରର ଖୋଳଟା ଉପରକୁ ଉଠି ଆସିଲା । ଚାହିଁ ଦେଖିଲି ତଳେ ଗୋଟାଏ ଗଭୀର ଗହ୍ୱର । ଟର୍ଚ୍ଚ୍ ପକାଇ ଦେଖିଲି, ପଥର ପାହାଚ ତଳକୁ ତଳକୁ ଲମ୍ବି ଯାଇଛି ।

ବାହାରେ କବାଟରେ ଜୋର୍ ଧକ୍‌କା ପଡ଼ୁଥିଲା ।

ମୋତେ ଚିନ୍ତା କରିବାର ସମୟ ନ ଥିଲା । ସଙ୍ଗେ ସଙ୍ଗେ ସେଇ ଭୟଙ୍କର ଗହ୍ୱର ଭିତରକୁ ଓହ୍ଲାଇ ପଡ଼ିଲି ଏବଂ ଲକ୍ଷ୍ମୀନାରାୟଣ ମୂର୍ତ୍ତିଟିକୁ ପୂର୍ବପରି ଗହ୍ୱର ମୁହଁରେ ଥୋଇ ଦେଲି । ସେହି ମୁହୂର୍ତ୍ତରେ କବାଟଟା ଖୋଲିଗଲା ବୋଧହୁଏ । ଅନେକ ଲୋକ ମନ୍ଦିର ଭିତରେ ପଶିବାର ପାଦଶବ୍ଦ ଶୁଣି ପାରିଲି ।

ମୁଁ ଗୋଟିଏ ଦୀର୍ଘଶ୍ୱାସ ପକାଇ ନିଶ୍ଚଳ ଭାବରେ ସେହି ଗହ୍ୱର ଭିତରେ ଠିଆ ହୋଇଥିଲି । ଲୋକମାନେ ମନ୍ଦିର ଭିତରେ ପଶି କୋଳାହଳ କଲେ । ଆଲୁଅ ଜଳେଇ ବୋଧହୁଏ ଖୋଜାଖୋଜି କଲେ । ତା' ପରେ ଜଣେ କିଏ କହିଲା : ନା, ଶଳା ଏଠି ନାହିଁ । ଚାଲ, ଚାଲ ଜଙ୍ଗଲ ଭିତରେ କେଉଁଠି ଲୁଚି ବସିଥିବ । ସେଇଠି ଧରି ଉଚିତ ଶିକ୍ଷା ଦେବା ।

ଜଣ ଜଣ କରି ମନ୍ଦିରରୁ ବାହାରି ଯିବାର ପାଦଶବ୍ଦ ମୁଁ ଶୁଣି ପାରୁଥିଲି, ପ୍ରକତରେ ମୋତେ ଲକ୍ଷ୍ମୀନାରାୟଣ ଏ ଯାତ୍ରାରୁ ବଞ୍ଚେଇ ଦେଲେ ।

କିନ୍ତୁ ଦୟାଲ ଶଙ୍କର ଶର୍ମା ? ସେ ଗଲେ କୁଆଡ଼େ ?

ଆହୁରି କିଛି ସମୟ ନିଶ୍ଚଳ ଭାବରେ ସେହି ଅନ୍ଧକାର ଗହ୍ୱର ଭିତରେ ଛିଡ଼ା ହୋଇ ରହିଲି । ଏହାପରେ ମୋର କର୍ତ୍ତବ୍ୟ ନିର୍ଦ୍ଧାରଣ କରିବାକୁ ହେବ ।

ଟର୍ଚ୍ଚ୍ ଜଳାଇ ଦେଖିଲି, ଗହ୍ୱର ଭିତରେ ତଳକୁ ପାହାଚ ଓହ୍ଲେଇ ଯାଇଛି । ହୁଏତ ରାଜବାଟୀରେ କୌଣସି ଗୁପ୍ତ କକ୍ଷରେ ଯାଇ ଏ ପଥ ଶେଷ ହୋଇଥିବ । ଅଥବା...

ମୁଁ ସାହସ କରି କେତୋଟି ପାହାଚ ତଳକୁ ଓହ୍ଲେଇ ଗଲି । ଚାରିଆଡ଼େ ବୁଢ଼ୀଆଣି ଜାଲ । କିପରି ଏଇ ବୀଭତ୍ସ ଗନ୍ଧ । ହୁଏତ ଅନେକ ଦିନରୁ ଅବ୍ୟବହୃତ ହୋଇ ପଡ଼ି ରହିଛି । ବିଷାକ୍ତ ଜନ୍ତୁମାନେ ଯେ ଏଠାରେ ଆଶ୍ରୟ ନେଇ ନ ଥିବେ କିଏ କହିବ ।

ମୋର କ'ଣ ଏହା ଭିତରେ ପଶି ଆଗେଇବା ଉଚିତ ହେବ ? ଭିତରେ ଯଦି କୌଣସି ବିପଦର ସମ୍ମୁଖୀନ ହୁଏ ? ଦେଖାଯିବ । ମନରେ ଅସୀମ ଦମ୍ଭ ଧରି ମୁଁ ପାହାଚ ପରେ ପାହାଚ ଅତିକ୍ରମ କରିବାକୁ ଲାଗିଲି ।

ଆଗେଇ ଚାଲିଲି । ବାଁ ଡାହାଣ ହୋଇ କେତେ ବାଟ ଯେ ଆଗେଇ ଚାଲିଥିଲି, ମୋର ମନେ ନାହିଁ । କିଏ ଯେପରି ମୋତେ ସମ୍ମୋହିତ କରି ଭିତରକୁ ଭିତରକୁ ଟାଣି ନେଉଥିଲା । ହଠାତ୍ ଗୋଟାଏ ଜାଗାରେ ମୋତେ ଅଟକି ଯିବାକୁ ହେଲା । ମୁଁ ଦେଖିଲି, ସମ୍ମୁଖରେ ଗୋଟାଏ ପଥର ଦିଆଲ । ଦିଆଲରେ ଲାଗିଛି ଗୋଟାଏ ଶକ୍ତ ଲୁହା ଦରଜା । ଭିତରୁ ବନ୍ଦ । କିନ୍ତୁ ଦରଜା ଉପର ଭାଗରେ ଲୁହାର ରେଲିଂ ଦିଆ ହୋଇଛି । ଖୁବ୍ ଶକ୍ତ ଏବଂ ମୋଟା । ବୋଧହୁଏ ପବନ ଯିବା ଆସିବାର ବାଟ ସେଇଟା । ହୁଏତ ଏହି ଦରଜା ସୁଡ଼ଙ୍ଗକୁ ସଂଯୋଗ ପଥ । କିନ୍ତୁ ମୁଁ କାହିଁକି ଏତେ ବାଟ ଆଗେଇ ଆସିଲି ?

ବହୁତ ଠେଲାଠେଲି କରି ଦରଜା ଖୋଲିବାକୁ ଚେଷ୍ଟା କଲି । ନା, ଦରଜାଟା ଭିତରୁ ଶକ୍ତ କିଳିଣୀ ଦିଆ ହୋଇ ବନ୍ଦ କରା ହୋଇଛି । ଆଉ କିଛି ଉପାୟ ନାହିଁ । ଏଥର ମୋତେ ଫେରି ଯିବାକୁ ହେବ । ଲୁହା ରେଲିଂ ବାଟେ ଭିତରର ପରିବେଶଟା ଦେଖି ହୁଅନ୍ତା, କିନ୍ତୁ ସେଇଟା ଏତେ ଉଚ୍ଚରେ ଯେ, ଆଖି ପାଉ ନାହିଁ ।

ଫେରି ଆସୁଥିଲି ।

ପୁଣି ଲେଉଟି ଯାଇ ସେଇ ଲୁହା ଦରଜା ପାଖରେ ଠିଆ ହେଲି । କିଛି ଗୋଟାଏ ପଦାର୍ଥ ନାହିଁ, ଯାହା ଉପରେ ଠିଆ ହୋଇ ରେଲିଂ ବାଟେ ଭିତରଟା ଦେଖି ପାରିବି ।

ଉଙ୍କି ମାରିଲି । ନା, ଆଖି ପାଉ ନାହିଁ, କିନ୍ତୁ ହାତ ତ ପାଉଛି । ହାତ ବଢ଼ାଇ ଲୁହା ରେଲିଂ ଧରି ଉହୁଙ୍କି ଗଲି । ଗୋଡ଼ ସ୍ଥିର କରି ପାରିଲି ନାହିଁ ଲୁହା କବାଟ ଉପରେ । ପୁଣି ତଳକୁ ଖସି ପଡ଼ିଲି ।

ପୁଣି ରେଲିଂ ଧରି ଉପରକୁ ଉଠିଲି । ଏଥର ଡାହାଣ ହାତରେ ରେଲିଂ ଓ ବାଁ ହାତରେ ଟର୍ଚ୍ଚ । ଦେହଟା ଶିହରି ଉଠିଲା । ହାତଟା କୋହଳ ହୋଇଗଲା । ମୁଁ ତଳକୁ ଖସି ପଡ଼ିଲି ।

ପୁଣି ରେଲିଂ ଧରି ଉଠିଲି ଉପରକୁ । ଟର୍ଚ୍ଚ ଜାଳି ଦେଖିଲି ଭିତରଟା । ତା' ଭିତରେ ଯେ ଏତେ ବଡ଼ ଶିହରଣଟାଏ ମୋ ପାଇଁ ଅପେକ୍ଷା କରି ରହିଥିଲା, ମୁଁ ମୋଟେ ବିଶ୍ୱାସ କରି ପାରି ନ ଥିଲି ! ଦେଖିଲି, ଗୋଟାଏ ମସ୍ତବଡ଼ ଲୁହା ସିନ୍ଦୁକ । ହାତ ଖସିଗଲା । ତଳେ ପଡ଼ିଗଲି । ପୁଣି କୁଦା ମାରି ଉଠିଲି ଉପରକୁ । ଲୁହା ସିନ୍ଦୁକରେ ବିରାଟ ଏକ ତାଲା । ଆଉ ସେଇ ଲୁହା ସିନ୍ଦୁକ ଭିତରେ ?

ଗୋଟାଏ ବିକଟ ଶବ୍ଦକରି ଧୀରେ ଧୀରେ ଲୁହା କବାଟଟା ଖୋଲିଗଲା । ମୁଁ ସ୍ତବ୍ଧ ହୋଇ ସେଇଆଡ଼େ ଚାହିଁଲି । ଅଳ୍ପ ଟିକିଏ ଖୋଲିଯାଇ କବାଟଟା ପୁଣି ସ୍ଥିର ହୋଇଗଲା । ମୋ ନାକରେ ଗୋଟାଏ ଭାପ୍‌ସା ଗନ୍ଧ ଆସି ବାଜିଲା । ମୋର ସର୍ବାଙ୍ଗ ଶିହରି ଉଠିଲା । ମୁଁ ଜଡ଼ ପାଲଟି ଯାଇଥିଲି ।

କିଛି ସମୟ ପରେ ମୋ କାନରେ ପୁଣି ସେଇ ପରିଚିତ କଣ୍ଠସ୍ୱର ବାଜିଲା : ଆସନ୍ତୁ ମହାପାତ୍ରଜୀ !

: କିଏ ଶର୍ମାଜୀ ! ମୁଁ ବିଚଳିତ କଣ୍ଠରେ ପ୍ରଶ୍ନ କଲି । ଆପଣ, ଆପଣ ଏଠାକୁ ଆସିଲେ କିପରି ?

ଶର୍ମାଜୀ ହସୁଥିଲେ । କହିଲେ : ମୁଁ ଅନ୍ୟବାଟେ ବୁଲିକରି ଆସିଲି । ଆପଣଙ୍କୁ ରାଜମହଲ ଦେଖାଇବି ।

: କିନ୍ତୁ ଶର୍ମାଜୀ, ଆମେ ଏପରି ଭାବରେ ଲୁଚି ଲୁଚି ରାଜମହଲ ଭିତରେ ପ୍ରବେଶ କରିବା ଉଚିତ ହେବ କି ?

ଶର୍ମାଜୀ ପୁଣି ହସିଲେ । କହିଲେ : ଉଚିତ ଅନୁଚିତ, ବିଚାର ବିବେଚନାର ଯୁଗ ଚାଲିଯାଇଛି । ଏବେ ଯିଏ ଯାହା ପାରୁଚି କରିଯିବା କଥା । ଆପଣ ସୁଡ଼ଙ୍ଗ ପଥ ଦେଇ ଆସିଛନ୍ତି ଯେତେବେଳେ, ନନ୍ଦନଗଡ଼ର ଗୁପ୍ତ ଇଲାକାତକ ଦେଖି ଯାଆନ୍ତୁ ।

: ଆପଣ କିପରି ନନ୍ଦନଗଡ଼ର ଗୁପ୍ତ ଇଲାକା ସହିତ ପରିଚିତ ହେଲେ ?

ଶର୍ମାଜୀ ମୋ ପାଖକୁ ଲାଗିଆସି ମୋ ହାତରୁ ଟର୍ଚ୍ଚଟା କାଢ଼ିନେଇ କହିଲେ : ମୋ ସମ୍ବନ୍ଧରେ ଆପଣ ବେଶୀ ଆଗ୍ରହ ପ୍ରକାଶ କରନ୍ତୁ ନାହିଁ । ମୋତେ ଦେବେନ୍ଦ୍ର ନାରାୟଣ ସବୁ ଗୋପନରେ ଦେଖେଇଛନ୍ତି ।

: ହୁଁ, ତା'ହେଲେ ଲକ୍ଷ୍ମୀନାରାୟଣ ମନ୍ଦିରରୁ ଗୋଟିଏ ସୁଡ଼ଙ୍ଗ ପଥ ରାଜମହଲକୁ ଆସିଛି ।

: ହଁ, ଏ ପଥ ନନ୍ଦନଗଡ଼ର ବହୁ ପୁରାତନ ପଥ । ରାଜପରିବାରର ନିରାପତ୍ତା ପାଇଁ ଏ ପଥ ନିର୍ମିତ ହୋଇଥିଲା । ଯଦି କୌଣସି ଶତ୍ରୁ ଆକ୍ରମଣରେ ରାଜପରିବାର ବିପନ୍ନ ହୁଅନ୍ତି, ତା'ହେଲେ ଏଇ ଗୁପ୍ତ ପଥଦେଇ ସେମାନେ ବାହାରି ଯାଇ ପାରିବେ ।

: ହୁଁ । ବୁଝିଲି । ଆପଣ ତା' ହେଲେ ରାଜପରିବାରର ଅନେକ ତଥ୍ୟ ଜାଣନ୍ତି ଶର୍ମାଜୀ । କାଲି ଯେତେବେଳେ ମୁଁ ରାଜମହଲକୁ ଆସିବି ଆପଣ ଟିକେ ମୋ ସଙ୍ଗରେ ଆସିଲେ ହୁଅନ୍ତା ନାହିଁ ?

ଦୟାଲଶଙ୍କର ଶର୍ମା ପୁଣି ହସିଲେ । କହିଲେ : କାଲି କଥା କାଲି ଚିନ୍ତା କରିଲେ ଚଳିବ । ତା'ଛଡ଼ା ଆପଣ ଯେତେବେଳେ ରାଜମାତାଙ୍କ ସହିତ ଅଫିସିଆଲି ଭାବରେ ସାକ୍ଷାତ କରିବାକୁ ଆସିବେ, ସେତେବେଳେ କିନ୍ତୁ ଆପଣ ଏହି ଗୁପ୍ତ ରାଜ୍ୟରେ ପ୍ରବେଶର ଅଧିକାର ପାଇବେ ନାହିଁ । ଯା'ହେଉ, ମୋର କିନ୍ତୁ ଏପରି ଭାବରେ ଗୋପନରେ ରାଜମହଲର ଏ ସଂରକ୍ଷିତ ଅଂଶ ସବୁ ଦେଖାଇବା ଅନ୍ୟାୟ ହେଉଚି ।

: ତଥାପି ଆପଣ ଅନ୍ୟାୟକୁ ପ୍ରଶ୍ରୟ ଦେଉଛନ୍ତି କିପରି ?

: ସେ କଥା ଆପଣ ବୁଝିବେ ନାହିଁ ମହାପାତ୍ରଜୀ । ପ୍ରତିଶୋଧ । ପ୍ରତିହିଂସା । ସଂଜୀବ ନାରାୟଣ ଠାରୁ ମୁଁ ପ୍ରତିଶୋଧ ନେବାକୁ ଚାହେ । କାହିଁକି ବା କେଉଁଥି ପାଇଁ ଆପଣ ମୋତେ ସେ କଥା ପଚାରିବେ ନାହିଁ । ଆପଣ ମୋତେ ବିଶ୍ୱାସ କରନ୍ତୁ, ମୁଁ ମୋଟେ ଆପଣଙ୍କୁ ବିପଦରେ ପକାଇବି ନାହିଁ ।

: କିନ୍ତୁ ...

କ'ଣ କହିବାକୁ ଯାଇ କହି ପାରିଲି ନାହିଁ । ଦୟାଲଶଙ୍କର ଶର୍ମା ଯେପରି ମୋତେ ବିମୋହିତ କରିଥିଲେ । ମୁଁ ତାଙ୍କ କଥାରେ କୌଣସି ପ୍ରତିବାଦ କରିପାରୁ ନ ଥିଲି କିମ୍ବା ତାଙ୍କ ପ୍ରଦର୍ଶିତ ପଥରୁ ଘୁଞ୍ଚିଯିବା ପାଇଁ ସାହସ କରୁ ନ ଥିଲି । ଯଦିଓ ଶର୍ମାଜୀଙ୍କୁ ମୁଁ ବିଶ୍ୱାସ କରିପାରୁ ନ ଥିଲି ତଥାପି ମୋ ମନରେ ଗୋଟାଏ ତୀବ୍ର ଜିଜ୍ଞାସା ଭାବ ଜାଗି ଉଠିଥିଲା । ଯଦିଓ ମୋର ମନେ ହେଉଥିଲା ଦୟାଲଶଙ୍କର ଶର୍ମା ମୋତେ ଜାଲରେ

ପକାଇ ସାରିଛନ୍ତି, ତଥାପି ମୁଁ ଭାବୁଥିଲି ଜାଲରେ ନ ପଡ଼ିଲେ ମୋର ଅସଲ ଉଦ୍ଦେଶ୍ୟ ସାଧନ ହୋଇ ପାରିବ ନାହିଁ ।

ମୁଁ ଝାପ୍‌ସା ଅନ୍ଧକାର ଭିତରେ ଦୟାଲଶଙ୍କର ଶର୍ମାଙ୍କର ଛାୟାମୂର୍ତ୍ତି ପଛେ ପଛେ ଆଗେଇ ଥିଲି । ହଠାତ୍ ସେ ଗୋଟାଏ ଜାଗାରେ ଅଟକି ଯାଇ କହିଲେ : ଏଇ ଯେଉଁ କୋଠରିଟା ଦେଖୁଛନ୍ତି, ଏଇଟା ନନ୍ଦନଗଡ଼ ରାଜାଙ୍କର ଥିଲା ଗୁପ୍ତ ବିଳାସ କକ୍ଷ । ଏହା କହି ସେ ଟର୍ଚ୍ଚ୍‌ର ଫୋକସ୍ ସେଇ କୋଠରିର ଦରଜା ଉପରେ ପକାଇଲେ ଏବଂ ଆଗେଇଯାଇ କୋଠରିର ଦରଜା ଖୋଲିଲେ । ସଙ୍ଗେସଙ୍ଗେ କୋଠରି ଭିତରକୁ ଟର୍ଚ୍ଚ ଆଲୁଅ ପକାଇ ମୋ ଦୃଷ୍ଟି ସେଇଆଡ଼େ ଆକର୍ଷଣ କରାଇଲେ । ଗୋଟାଏ ବିରାଟ କୋଠରି । ମୋ ଦୁଇ ସେଲିଆ ଟର୍ଚ୍ଚର ଫୋକ୍‌ସ ଯେତେବାଟ ଯାଏ ପଡ଼ିଥିଲା, ମୁଁ ଦେଖୁଥିଲି ଘରେ କେବଳ ବିଳାସ ସାମଗ୍ରୀର ସମ୍ଭାର ।

ଶର୍ମାଜୀ ହଠାତ୍ ଟର୍ଚ୍ଚ୍‌ଟା ନିଭେଇ ଦେଇ କହିଲେ : ସଂଜୀବ ନାରାୟଣଙ୍କ ସାଆନ୍ତ ବାପାଙ୍କ ଅମଳରେ ଏ ରାଜ୍ୟରେ କୌଣସି ଯୁବତୀ କନ୍ୟା ଘରୁ ବାହାରକୁ ବାହାରୁ ନ ଥିଲେ । ଯେଉଁମାନେ ଅତି ସୁନ୍ଦରୀ କନ୍ୟା ଜନ୍ମୁଥିଲେ, ସେମାନଙ୍କ ପିତାମାତାମାନେ ସେହି କନ୍ୟାର ସର୍ବାଙ୍ଗରେ ଚିତାକୁଟେଇ, ଲୁହା ଛିଙ୍କା ଦେଇ ସେମାନଙ୍କୁ କୁରୂପା କରି ଦେଉଥିଲେ । କାରଣ ରାଜାଙ୍କ ଗୁପ୍ତଚର ଆଖିରୁ କୌଣସି ସୁନ୍ଦରୀ କନ୍ୟା ବାଦ୍ ଯାଇ ନ ଥିଲେ ଏବଂ ରାଜାଙ୍କର ନିତି ନିତି ନୂଆ ନୂଆ କୁମାରୀ କନ୍ୟାଙ୍କର ଆବଶ୍ୟକ ହେଉଥିଲା, ସେ ପୁଣି ଗୁପ୍ତରେ । ରାଣୀ ମା'ଙ୍କ ଅଗୋଚରରେ । ଏହି ଗୁପ୍ତ କୋଠରି ସେଥିପାଇଁ ତିଆରି ହୋଇଥିଲା ।

: ହୁଁ, ସଂଜୀବ ନାରାୟଣଙ୍କ ବାପାଙ୍କ ଅମଳରେ ?

: ନା, ସେ ଦୃଷ୍ଟିରୁ ରାଜେନ୍ଦ୍ର ନାରାୟଣ ଖୁବ୍ ଚରିତ୍ରବାନ ଥିଲେ । ସେ ଏ କୋଠରିର ସେପରି ସଦ୍‌ବ୍ୟବହାର କରି ନ ଥିଲେ ।

ଅନ୍ଧକାରରେ ଶର୍ମାଜୀ ବୋଧହୁଏ କୋଠରିର ଦରଜା ବନ୍ଦ କଲେ । ମୁଁ ମନେ ମନେ ଭାବୁଥିଲି, ଶର୍ମାଜୀଙ୍କୁ ମୋର ମନର କଥା ଜଣାଇ ଦେବି କି ! ମୁଁ କାହିଁକି ଆସିଛି, ମୋର ଉଦ୍ଦେଶ୍ୟ କ'ଣ ! ଏବଂ ଯେଉଁଥିପାଇଁ ଆସିଛି, ସେହି ଗୁପ୍ତଧନର ସନ୍ଧାନ ଶର୍ମାଜୀ ଜାଣିଛନ୍ତି କି ନାହିଁ । ସେତିକି ଜାଣି ପାରିଲେ ମୋର ଯଥେଷ୍ଟ ହୁଅନ୍ତା । କିନ୍ତୁ ଶର୍ମାଜୀଙ୍କୁ ମୋ ଉଦ୍ଦେଶ୍ୟଟା ଖୋଲି କହିବା ଆଦୌ ବିଜ୍ଞତାର ପରିଚୟ ହେବ ନାହିଁ ।

ମୁଁ ଶର୍ମାଜୀଙ୍କ ପଛେ ପଛେ ଆଗେଇ ଥିଲି ।

ଶର୍ମାଜୀ କହି ଚାଲିଥିଲେ : ଏଇ ନନ୍ଦନଗଡ଼ ରାଜପରିବାରର ଇତିହାସ ଏକ କଳଙ୍କ ଆଉ ଦୁଷ୍କୃତିର ଇତିହାସ । ଯଦିଓ ରାଜେନ୍ଦ୍ର ନାରାୟଣ ସେହି କଳଙ୍କ ଇତିହାସକୁ ନନ୍ଦନଗଡ଼ କପାଳରୁ ପୋଛି ଦେବାକୁ ଚେଷ୍ଟା କରୁଥିଲେ, କିନ୍ତୁ ବର୍ତ୍ତମାନର ରାଣୀ ତାଙ୍କୁ ତାହା କରାଇ ଦେଲେ ନାହିଁ । ଶେଷ ପର୍ଯ୍ୟନ୍ତ ରାଜା ରାଣୀଙ୍କର ଅନୀତି ଓ ଅନାଚାରର ପ୍ରତିକାର କରିବାକୁ ଯାଇ ଅକାଳରେ ଜୀବନ ଦେଲେ ।

: ତା'ହେଲେ ରାଜାଙ୍କର ସ୍ୱାଭାବିକ ମୃତ୍ୟୁ ହୋଇଥିଲା ? ମୁଁ ପୁଣି ଥରେ ପଚାରିଲି ।

: କିନ୍ତୁ ମହାପାତ୍ରଜୀ ! ଏ ସମ୍ବନ୍ଧରେ ମତଭେଦ ରହିଛି । କେହି କେହି କହନ୍ତି ମୃତ୍ୟୁଟା ସ୍ୱାଭାବିକ, ମାନେ ସେ ରୋଗ ଭୋଗି ତାଙ୍କର ମୃତ୍ୟୁ ହୋଇଛି, ଆଉ କେହି କେହି କହନ୍ତି ରୋଗ ବୀଜାଣୁ ତାଙ୍କ ଦେହରେ ସଂକ୍ରମିତ କରାଇ ଦିଆହୋଇଥିଲା ।

: କିନ୍ତୁ କାହିଁକି ?

: ଉଦ୍ଦେଶ୍ୟ ସାଧନ ପାଇଁ । ବର୍ତ୍ତମାନର ରାଣୀ କୁଆଡ଼େ ରାଜାଙ୍କ ଦେହରେ ଦୁଃସାଧ୍ୟ ରୋଗ ବୀଜାଣୁ ସଂକ୍ରମିତ କରାଇ ଦେଇଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା, ଏଥିରେ ରାଜା ହଠାତ୍ ମରିବେ ନାହିଁ । କିନ୍ତୁ ଅକର୍ମଣ୍ୟ ହୋଇ ରୋଗଶଯ୍ୟାରେ ପଡ଼ି ରହିବେ । ଯନ୍ତ୍ରଣା ଭୋଗିବେ । ସେତେବେଳେ ତାଙ୍କର ସେବା କରିବାର ବାହାନାରେ ରାଣୀ ତାଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ହୋଇ ଉଠିବେ ଏବଂ ସେଇ ଅବସରରେ ରାଜାଙ୍କଠାରୁ ସେ ରାଜ୍ୟର ସମସ୍ତ ଅଧିକାର ଆଦାୟ କରି ପାରିବେ । ଖାଲି ରାଜ୍ୟର ଅଧିକାର ନୁହେଁ, ନନ୍ଦନଗଡ଼ର ଗୁପ୍ତଧନର ତଥ୍ୟ ମଧ୍ୟ ସେ ରାଜାଙ୍କଠାରୁ ପାଇ ପାରିବେ ।

: କିନ୍ତୁ ରାଣୀଙ୍କର ଏପରି ଜଘନ୍ୟ ଉପାୟ ଅବଲମ୍ବନ କରିବାର କାରଣ କ'ଣ ଥିଲା ? ରାଜା କ'ଣ ରାଣୀଙ୍କୁ ଅବିଶ୍ୱାସ କରୁଥିଲେ ?

ଶର୍ମାଜୀ ପୁଣି ଥରେ ହସିଲେ । କହିଲେ : ଏ ହେଲା ବଡ଼ଘର ବଡ଼ ଗୁମର କଥା ମହାପାତ୍ରଜୀ ! ରାଜା ରାଣୀଙ୍କୁ ସନ୍ଦେହ କରୁଥିଲେ ।

: କିପରି ? ମୁଁ ପଚାରିଲି ।

: ବର୍ତ୍ତମାନ କିଛିକ୍ଷଣ ପୂର୍ବରୁ ମୁଁ ଆପଣଙ୍କୁ ଯେଉଁ ବିଳାସକକ୍ଷଟି ଦେଖାଇଲି, ଏ ରାଜାଙ୍କ ଅମଳରେ ସେଇ କକ୍ଷଟି ପ୍ରାୟ ବନ୍ଦ ରହୁଥିଲା । କିନ୍ତୁ ରାଜା ଦିନେ କିପରି ଜାଣି ପାରିଲେ ସେହି ବିଳାସକକ୍ଷଟି ମଝିରେ ମଝିରେ ଖୋଲା ହେଉଛି ଏବଂ ତାହା ଖୋଲୁଛି ରାଣୀଙ୍କ ନିର୍ଦ୍ଦେଶରେ । ରାଜା ନିଜ ଆଖିରେ ଘଟଣା ଅନୁଧାନ କରିବାକୁ

ଚେଷ୍ଟା କଲେ । ଯଦିଓ ଦିନେ ନିଶାର୍ଦ୍ଧରେ ସେହି ବିଳାସକକ୍ଷ ମଧ୍ୟରୁ ରାଣୀଙ୍କୁ ସେ ଅସଂଯତ ଅବସ୍ଥାରେ ଉଦ୍ଧାର କରିଥିଲେ, କିନ୍ତୁ ଅନ୍ୟ କୌଣସି ପୁରୁଷ ଲୋକର ସେ ସନ୍ଧାନ ପାଇ ନ ଥିଲେ । ସେଇଦିନ ଠାରୁ ରାଣୀଙ୍କ ପ୍ରତି ରାଜାଙ୍କ ମନରେ ଗୋଟାଏ ତିକ୍ତଭାବ ଜାଗ୍ରତ ହୋଇଥିଲା । ରାଣୀଙ୍କୁ ସେ ବିଶ୍ୱାସ କରି ପାରୁ ନ ଥିଲେ । ତାଙ୍କର ମନେ ହୋଇଥିଲା, ରାଣୀ ହୁଏତ ଅସତ୍ ପଥରେ ପାଦ ବଢ଼ାଇଛନ୍ତି । ସନ୍ଦେହୀ ମନ ତାଙ୍କର ସବୁବେଳେ ରାଣୀଙ୍କର ପଛେ ପଛେ ଘୂରୁଥିଲା । ତାଙ୍କର ବିଶ୍ୱାସ ଥିଲା, ଦିନେ ନା ଦିନେ ସେ ରାଣୀଙ୍କର ଦୁର୍ନୀତି ଧରି ପାରିବେ ।

: କିନ୍ତୁ ଶେଷ ପର୍ଯ୍ୟନ୍ତ ପାରି ନ ଥିଲେ ?

: ନା ପାରିଲେ ଆଉ କେଉଁଠି ? ବୋଧହୁଏ ରାଣୀ ରାଜାଙ୍କର ମନର ଉଦ୍ଦେଶ୍ୟ ବୁଝି ପାରିଥିଲେ । ଏବଂ ସେ ହୁଏତ ଅନୁଭବ କରିଥିଲେ, ଏଥର ତାଙ୍କର ଦୁର୍ଦ୍ଦିନ ଘନେଇ ଆସିଲା । ସେ ରାଜାଙ୍କର ସ୍ନେହ ସହାନୁଭୂତି ତ ପାଇବେ ନାହିଁ, ବରଂ ଦିନ ପରେ ଦିନ ଲାଞ୍ଛିତ ଅପମାନିତ ହେବେ । ହୁଏତ ଏପରି ଦିନ ଆସିବ, ଯେତେବେଳେ ସେ ରାଜମହଲରୁ ବିତାଡ଼ିତ ହୋଇ ଦାସଦାସୀଙ୍କ ଗହଣରେ ରହିବାକୁ ବାଧ୍ୟ ହେବେ । ତେଣୁ ଏଥିପାଇଁ ତୁରନ୍ତ ପ୍ରତିକାର କରିବାକୁ ହେବ । କ'ଣ ସେହି ପ୍ରତିକାର ? ରାଜାଙ୍କ ବିଶ୍ୱାସଭାଜନ ହେବା । କିପରି ?

ରାଣୀ ହୁଏତ ଉପାୟ ଚିନ୍ତା କରି କରି ସ୍ଥିର କଲେ, ଆଉ ମନ ଦେଇ, ଯୌବନର ମୋହ ଦେଖାଇ ରାଜାଙ୍କ ମନରେ ଆସନ ପ୍ରତିଷ୍ଠା କରିହେବ ନାହିଁ । ଥରେ ନାରୀ ଚରିତ୍ର ଉପରେ କୌଣସି ପୁରୁଷର ସନ୍ଦେହ ସୃଷ୍ଟି ହେଲେ, ତାହା ଆଉ ଘୁଞ୍ଚେ ନାହିଁ । ତେଣୁ ଅନ୍ୟ ଭାବରେ ରାଜାଙ୍କୁ କରାୟତ୍ତ କରିବାକୁ ହେବ । ରାଜାଙ୍କର ବିଶ୍ୱାସଭାଜନ ହେବାକୁ ହେବ । ଉପାୟ ? ଉପାୟ ??

ଉପାୟ ସେ ଖୋଜି ପାଇଲେ । ରାଜାଙ୍କୁ କଠିନ ରୋଗଗ୍ରସ୍ତ କରାଇ ତାଙ୍କର ସେବା କରି, ମନଜୟ କରିବାକୁ ହେବ । ସେ ବି ଅକର୍ମଣ୍ୟ ହୋଇ ପଡ଼ି ରହିବେ । ଆଉ ରାଣୀଙ୍କ ପଛରେ ତାଙ୍କର ସନ୍ଦେହୀ ମନକୁ ବୁଝାଇ ପାରିବେ ନାହିଁ ।

: ସାଂଘାତିକ ପରିକଳ୍ପନା ତ !

: ହଁ ମହାପାତ୍ରଜୀ । ଇମିତି ବି ହୁଏ । ମଣିଷ ସ୍ୱାର୍ଥପର ହେଲେ ସେ ଅନ୍ଧ ହୋଇଯାଏ । ଆତ୍ମୀୟ ସ୍ୱଜନ କେହି ଆଉ ତା'ର ବୋଲି ମନେ ହୁଏନାହିଁ ।

: ତା'ପରେ ?

: ତା'ପରେ, ଏଇ ଦେଖନ୍ତୁ ଏଇ ଘରଟା ।

ଦୟାଲଶଙ୍କର ଶର୍ମା ଆଉ ଗୋଟାଏ ଘରର କବାଟ ଖୋଲିଲେ । ସେ ଘର ଖୋଲିବା ମାତ୍ରକେ ପଞ୍ଚାଏ ଚେମେଣିଆ ଫଡ଼ ଫଡ଼ ହୋଇ ଉଡ଼ି ପଳାଇଲେ । ଦୟାଲଶଙ୍କର ଶର୍ମା ଟର୍ଚ୍ଚ୍ ଜଳେଇ ଦେଖେଇଲେ ସେଇ ଘରଟା । ଗୋଟିଏ ଛୋଟ କୋଠରି । ଭିତରେ ଝରକା କବାଟ କିଛି ନାହିଁ । କେବଳ ଗୋଟାଏ ଦଉଡ଼ିଆ ଖଟ ପଡ଼ି ରହିଛି । ଆଉ ଗୋଟିଏ ଛୋଟ ଟେବୁଲ ।

: ଏଠାରେ ସେପରି ଦର୍ଶନୀୟ ତ କିଛି ନାହିଁ ଶର୍ମାଜୀ !

: ଅଛି, ଆପଣ ବୁଝି ପାରୁ ନାହାନ୍ତି । ଦର୍ଶନୀୟ ସିନା କିଛି ନାହିଁ, କିନ୍ତୁ ଏ ଘରଟି ହେଉଛି ରାଜପ୍ରାସାଦର ଏକ ଐତିହାସିକ କୋଠରି । ଏହା ରାଜକର୍ମଚାରୀମାନଙ୍କୁ ଦଣ୍ଡ ଦେବାପାଇଁ ନିର୍ମିତ ହୋଇଥିଲା । ଯେଉଁ କର୍ମଚାରୀମାନେ ରାଜଆଜ୍ଞା ଅବଜ୍ଞା କରୁଥିଲେ, ସେମାନଙ୍କୁ ଆଣି ଏଇ କୋଠରି ଭିତରେ ଭର୍ତ୍ତିକରି ଦିଆ ହେଉଥିଲା ଆଉ ବାହାରୁ ଦୁଆର ବନ୍ଦ କରି ଦିଆ ହେଉଥିଲା । ଅବଶ୍ୟ ଏଇଟା ମୃତ୍ୟୁଦଣ୍ଡରେ ଯେଉଁମାନେ ଦଣ୍ଡିତ ହେଉଥିଲେ ।

: କିନ୍ତୁ ଏଠାରେ ମୃତ୍ୟୁ ଦଣ୍ଡର ବିଶେଷ ବ୍ୟବସ୍ଥା କିଛି ଥିଲା ପରି ତ ଦେଖା ଯାଉନାହିଁ ।

: ସେଇଟା ହିଁ ତ ଏ କୋଠରିର ବିଶେଷତ୍ୱ ।

ଶର୍ମାଜୀ ଟର୍ଚ୍ଚର ଫୋକ୍ସ ଉପରକୁ ପକାଇଲେ । ଗୋଟାଏ ବଡ଼ ଛିଦ୍ର ମୋର ଦୃଷ୍ଟିଗୋଚର ହେଲା ।

ଶର୍ମାଜୀ ପୁଣି କହିଲେ : ଏଠାରେ ପ୍ରାଣଦଣ୍ଡ ଏକ ଅଭିନବ ଉପାୟରେ ହେଉଥିଲା । ଅପରାଧୀକୁ ଘରେ ବନ୍ଦ କରି ଏଇ ଛିଦ୍ର ପଥ ଦେଇ ଦୁଇ ଚାରିଟା ବିଷଧର ସର୍ପକୁ ଭିତରକୁ ଛାଡ଼ି ଦିଆ ହେଉଥିଲା । ଏଥର ବୁଝିଲେ ମହାପାତ୍ରଜୀ !

ମୁଁ ଦୟାଲଶଙ୍କର ଶର୍ମାଙ୍କ କଥା ଶୁଣି ଅବାକ୍ ହୋଇ ଯାଇଥିଲି । ଭବି ପାରୁ ନ ଥିଲି, ଏଇ ଭଦ୍ରଲୋକ ରାଜବାଟୀର ଏତେ ଗୋପନ ତଥ୍ୟ ଜାଣିଲେ କିପରି ? ମୁଁ କିନ୍ତୁ ଗୋଟାଏ ମୁହୂର୍ତ୍ତକୁ ଅପେକ୍ଷା କରୁଥିଲି । ଶର୍ମାଜୀ କେତେବେଳେ ମୋତେ ସେଇ କୋଠରିଟି ଦେଖାଇବେ, ଯେଉଁ କୋଠରିରେ ରାଜପରିବାରର ଅକଳନ ଗୁପ୍ତଧନ ଲୁଚି ରହିଛି ।

ଦୟାଲଶଙ୍କର ଶର୍ମାଙ୍କ କଥା ମୁଁ ମନ ଦେଇ ଶୁଣୁଥିଲି । କହିଲି, : ହଁ ବୁଝିଲି ଯେ, କିନ୍ତୁ ଦୋଷୀମାନଙ୍କୁ ଏପରି ହୀନ ଉପାୟରେ ପ୍ରାଣଦଣ୍ଡ ଦେବାର ଉଦ୍ଦେଶ୍ୟ କ'ଣ ଥିଲା ?

ଶର୍ମାଜୀ ମୋ ପ୍ରଶ୍ନର କିଛି ଉତ୍ତର ନ ଦେଇ କହିଲେ : ରାଜେନ୍ଦ୍ର ନାରାୟଣଙ୍କ ଅମଳରେ କିନ୍ତୁ ଏ ସବୁ ପ୍ରଥା ବନ୍ଦ ହୋଇ ଯାଇଥିଲା । ସେ ପ୍ରଜାବତ୍ସଳ ହେବା ପାଇଁ ଚେଷ୍ଟା କରୁଥିଲେ । ପ୍ରଜାମାନଙ୍କର ଉନ୍ନତି ପାଇଁ ସେ ଉଦ୍ୟମ କରୁଥିଲେ ।

ହଠାତ୍ ଶର୍ମାଜୀ ମୋ ହାତଟା ଖୁବ୍ ଜୋର୍‌ରେ ଟାଣି ନେଇଗଲେ ଏବଂ ଗୋଟାଏ ଘର ଭିତରେ ପୂରାଇ ଭିତରୁ କବାଟ ବନ୍ଦ କରିଦେଲେ ।

ଦୟାଲଶଙ୍କର ଶର୍ମାଙ୍କର ଏତାଦୃଶ ଆଚରଣରେ ମୁଁ ବିଚଳିତ ହୋଇ ଚିତ୍କାର କରିଉଠିଥିଲି । ସେ କିନ୍ତୁ ମୋ ମୁହଁରେ ହାତ ଚାପିଧରି କାନ ପାଖରେ ଧୀରେ ଧୀରେ କହିଲେ : ପାଟି କରନ୍ତୁ ନାହିଁ । ସେମାନେ ଇଆଡ଼େ ଆସୁଛନ୍ତି ।

: କୋଉମାନେ ? ମୁଁ ଧୀର ସ୍ୱରରେ ପଚାରିଲି ।

କିନ୍ତୁ ଆଉ କୌଣସି ଉତ୍ତର ଶୁଣିଲି ନାହିଁ । ଦୟାଲଶଙ୍କର ଶର୍ମା ମୋ ମୁହଁରୁ ହାତ କାଢ଼ି ନେଇଥିଲେ । କେତୋଟି ମୁହୂର୍ତ୍ତ ନୀରବରେ ଠିଆ ହେବା ପରେ ମୋର ଯେପରି ମନେ ହେଲା, ଶର୍ମାଜୀ ମୋ ପାଖରୁ ଅନ୍ୟତ୍ର ଚାଲି ଯାଇଛନ୍ତି । ହାତ ବଢ଼ାଇ ମୁଁ ତାଙ୍କୁ ଖୋଜିଲି । କିନ୍ତୁ ଶର୍ମାଜୀ କାହାନ୍ତି ?

ବାହାରେ କିନ୍ତୁ କେହି ଆସୁଥିବାର କୌଣସି ସୂଚନା ମୁଁ ଅନୁଭବ କରୁ ନ ଥିଲି । ତେବେ କ'ଣ ଶର୍ମାଜୀ ମୋ ସହିତ ଲୁଚକାଳି ଖେଳୁଛନ୍ତି ?

ମୁଁ ସେହି ଅନ୍ଧକାର ଗହ୍ୱର ଭିତରେ ସ୍ଥିର ହୋଇ ଠିଆ ହେବା ଛଡ଼ା ଅନ୍ୟ କିଛି ଉପାୟ ନ ଥିଲା । ମୋର ମନେ ହେଲା, କ୍ଷଣକ ଆଗରୁ ଶର୍ମାଜୀ ମୋତେ ଯେଉଁ ଅଭିନବ ଉପାୟରେ ମୃତ୍ୟୁ ଦଣ୍ଡାଦେଶର କୋଠରିଟି ଦେଖାଇ ଥିଲେ, ଏ ବୋଧହୁଏ ସେହିପରି ଆଉ ଏକ କୋଠରି । ହୁଏତ କିଛି ସମୟ ପରେ କେତେଟା ବିଷଧର ସର୍ପ ଆସି ମୋତେ ଦଂଶନ କରିବେ ! ମୁଁ ହୁଏତ ଆଉ କାଲିର ସୂର୍ଯ୍ୟୋଦୟ ଦେଖି ପାରିବ ନାହିଁ ।

କିନ୍ତୁ...

ହଁ, ବାହାରେ କେଉଁଠି ଯେପରି କାହାର ଧୀର କଥାବାର୍ତ୍ତା ଶୁଣା ଯାଉଛି । କେହି କଥାବାର୍ତ୍ତା ହୋଇ ମୋ ଆଡ଼େ ଆଗେଇ ଆସୁଛନ୍ତି । କଥାବାର୍ତ୍ତା କ୍ରମଶଃ ସ୍ପଷ୍ଟ ହେଉଛି ।

ପୁରୁଷ କଣ୍ଠ : ... ହେଲେ ବି ଆମ ଆଖିରେ ଧୂଳି ଫିଙ୍ଗିବା ଏତେ ସହଜ ହେବ ନାହିଁ ।

ନାରୀ କଣ୍ଠ : ତୁ ଏତେ ବଡ଼ଟିଏ ହେଲୁ, ତୋର ମୋଟେ ବୁଦ୍ଧିବୃତ୍ତି ହେଲା ନାହିଁ ।

ପୁରୁଷ କଣ୍ଠ : ମା ! ତମେ କ'ଣ ତମ ପୁଅ ଉପରେ ଆସ୍ଥା ରଖି ପାରୁନାହଁ ?

ନାରୀକଣ୍ଠ : ତୁ ବୁଝୁ ନାହୁଁ ସଞ୍ଜୁ । ଯେତେହେଲେ ବି ତୁ ପିଲାଲୋକ । ସରକାର ବିରୋଧରେ କେତେଦିନ ତୁ ମୁଣ୍ଡ ଟେକି ଠିଆ ହୋଇ ପାରିବୁ ?

ପୁରୁଷ କଣ୍ଠ : ମୁଁ ପାରିବି ମା । ତମର ଅସମ୍ମାନ ମୁଁ ହେବାକୁ ଦେବି ନାହିଁ । ତା'ଛଡ଼ା ସେମାନେ ଆମ ଗୁପ୍ତ ଗହ୍ୱରକୁ ପ୍ରବେଶ କରିବାର କୌଣସି ଉପାୟ ନାହିଁ ।

ନାରୀ କଣ୍ଠ : ତଥାପି ଆମକୁ ସାବଧାନ ହେବାକୁ ହେବ । ମୁଁ ଯେମିତି କହିଛି ତୁ ସେଇ ଅନୁସାରେ ସବୁ ବ୍ୟବସ୍ଥା କରି ରଖ । ସେ ହୁଏତ କାଲି ସକାଳୁ ଆସି ପହଞ୍ଚି ପାରେ । ଶୁଣିଛି ଲୋକଟା ବଡ଼ ଚତୁର ।

ପୁରୁଷ କଣ୍ଠ : ଚତୁରେ ଚାତୁରୀ ମୋତେ ବି ଜଣା ଅଛି । ମୁଁ ଯାହା ବ୍ୟବସ୍ଥା କରି ରଖିଛି, ଦେଖିବ ମା', କାଲି ସକାଳେ କାହିଁକି ତା' ପାଇଁ ହୁଏତ ଆଉ ରାତି ପାହିବ ନାହିଁ ।

ନାରୀ କଣ୍ଠର ଆଉ କୌଣସି ସ୍ୱର ମୋ କାନରେ ବାଜିଲା ନାହିଁ ସତ, କିନ୍ତୁ ମୋର ସର୍ବାଙ୍ଗ କମ୍ପି ଉଠିଲା । ସତରେ କ'ଣ ଏ ରାତି ମୋ ଜୀବନରେ ଆଉ ପାହିବ ନାହିଁ ?

ମୁଁ ପୁଣି ପକେଟରେ ହାତମାରି ଦେଖିଲି । ନା ମୋ ଅଗ୍ନେୟାସ୍ତ୍ରଟି ଏ ପର୍ଯ୍ୟନ୍ତ ମୋର ବିଶ୍ୱସ୍ତ ଭୃତ୍ୟ ପରି ମୋ ପାଖେ ପାଖେ ରହିଛି ।

କିନ୍ତୁ ବର୍ତ୍ତମାନ ଯଦି କୌଣସି ବିଷଧର ସର୍ପ ଆସି ମୋତେ ଦଂଶନ କରେ ?

ମୁଁ ସ୍ଥିର ହୋଇ ବୋଧହୁଏ ଗୋଟାଏ ଦିଆଲକୁ ଆଉଜି ଠିଆ ହୋଇଥିଲି । ଆଗକୁ ବା ପଛକୁ ପାଦ ପକାଇବାର ସତ୍‌ସାହସ ମୋର ନ ଥିଲା । ଏହିପରି କେତେ ସମୟ ମୁଁ ଠିଆ ହୋଇଥିଲି ମୋର ମନେ ନାହିଁ । କିନ୍ତୁ ପୁଣି ମୋ କାନରେ ସେଇ କଣ୍ଠସ୍ୱର ଆସି ପ୍ରବେଶ କଲା ।

ନାରୀ କଣ୍ଠ : ତୁ ବୋଧହୁଏ କାମଟା ଠିକ୍ କଲୁ ନାହିଁ ସଞ୍ଜୁ !

ପୁରୁଷ କଣ୍ଠ : ମୁଁ ଯାହା କରିଛି, ଠିକ୍ କରିଛି ମା ! ତମେ ମୋଟେ ବ୍ୟସ୍ତ ହୁଅ ନାହିଁ ।

ନାରୀ କଣ୍ଠ : କିନ୍ତୁ ସରକାର ଯେତେବେଳେ ଜାଣିପାରିବେ ଯେ ତାଙ୍କ ପ୍ରତିନିଧି ନନ୍ଦନଗଡ଼ରୁ ଆଉ ଫେରିନାହିଁ, ସେତେବେଳେ ଆମର ଅବସ୍ଥା କ'ଣ ହେବ ?

ପୁରୁଷ କଣ୍ଠ : ଆମ ଅବସ୍ଥା କାହିଁକି ଖରାପ ହେବ ? କେଉଁ ସରକାର ପ୍ରତିନିଧି ନନ୍ଦନଗଡ଼କୁ କେବେ ବା କାହିଁକି ଆସିଥିଲେ, ସେ କଥା ତ ଆମକୁ ସରକାର ଜଣାଇ ନାହାନ୍ତି । ତେଣୁ ଆମେ ସେ ସବୁ ସମସ୍ୟାରେ ପଡ଼ିବା କାହିଁକି ?

ନାରୀକଣ୍ଠ : ନା ସଞ୍ଜୁ, ମୋ ମନ କହୁଛି, ତୁ ଯାହା କରିଲୁ ବୋଧହୁଏ ଠିକ୍ କରିଲୁ ନାହିଁ । ଏଥିପାଇଁ ଆମକୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ।

ପୁରୁଷ କଣ୍ଠ : ତମେ ଚୁପ୍‌କର ତ ମା ! ଯେତେବେଳେ ଯାହା ହେବ ସେତେବେଳେ ଦେଖାଯିବ । ମୁଁ ଆଗ ସମ୍ବାଦ ପାଏ ମୋ ପ୍ଲାନ କାର୍ଯ୍ୟକାରୀ ହୋଇଛି, ତା'ପରେ ଯାଇ ସେ ସମ୍ବନ୍ଧରେ ଚିନ୍ତା କରିବା ।

ସେତେବେଳକୁ ଚିନ୍ତା ଭାବନା ସବୁ ମୋର ହଜି ଯାଇଥିଲା । ଦୁଇଜଣଙ୍କ କଥାବାର୍ତ୍ତାରୁ ମୁଁ ବୁଝି ପାରିଥିଲି ଯେ ସେମାନେ ନନ୍ଦନଗଡ଼ର ରାଜମାତା ଆଉ ରାଜକୁମାର ସଂଜୀବ । ଏବଂ ସଂଜୀବ ନାରାୟଣର ଷଡ଼ଯନ୍ତ୍ର ମୋରି ବିରୋଧରେ । ମୋତେ ସେ ଇହଜଗତରୁ ଘୁଞ୍ଚେଇ ଦେବାପାଇଁ ସବୁ ପ୍ରକାର ଷଡ଼ଯନ୍ତ୍ର କରିଛି । ଏହାପରେ ମୋର ସମଗ୍ର ଶରୀର ଯେପରି ହେମ-ଶୀତଳ ହୋଇଗଲା । ମୋର ପ୍ରତି ମୁହୂର୍ତ୍ତରେ ମନେ ହେବାକୁ ଲାଗିଲା, ହଁ ଆଉ ଟିକକ ପରେ ବିଷଧର ସର୍ପ ଆସି ମୋତେ ଦଂଶନ କରିବ ! ମୋର ରିଭଲଭର ମୋ ପକେଟରେ ସେମିତି ଅକାମୀ ହୋଇ ରହିଯିବ । ମୁଁ ଶତ୍ରୁ ସହିତ ମୁକାବିଲା କରିବାର ସୁଯୋଗ ପାଇବି ନାହିଁ । ଦୟାଲଶଙ୍କର ଶର୍ମା ଯେ ଛଦ୍ମବେଶୀ ଷ୍ଟେସନ ମାଷ୍ଟର, ସେ କଥା ମୋର ବହୁ ପୂର୍ବରୁ ବୁଝିବା ଉଚିତ ଥିଲା । କିନ୍ତୁ ଏଇ ମୁହୂର୍ତ୍ତରେ ମୋର ଉପାୟ କ'ଣ ? ସଂଜୀବ ନାରାୟଣର ଷଡ଼ଯନ୍ତ୍ରରୁ ବଞ୍ଚିବି କିପରି ?

ହଠାତ୍ ମୋ କାନରେ ବାଜିଲା କିଏ ଯେପରି ଦାନ୍ତ ଚିପି ଚିପି ହସୁଚି । ମୋରି ପାଖରେ, ମୋରି ଠାରୁ ଅଳ୍ପ ଦୂରରେ ହୁଏତ ସେ ଠିଆ ହୋଇଛି ।

: କିଏ ? ମୁଁ ଏକ ପ୍ରକାର ଚିତ୍କାର କରି ଉଠିଲି ।

: ମୁଁ ଦୟାଲଶଙ୍କର ଶର୍ମା । ଆପଣ ଡରିଗଲେ ବୋଧହୁଏ ।

: ନା, ତେବେ ...

: ରାଜକୁମାର ଆଉ ରାଜମାତା ବାହାରିଥିଲେ । ସେମାନେ ମଝିରେ ମଝିରେ ନିଶାର୍ଦ୍ଧରେ ହଠାତ୍ ଏହିପରି ଗୋପନ ପରିକ୍ରମାରେ ବାହାରି ପଡ଼ନ୍ତି ।

: କିନ୍ତୁ ଆପଣ, ଆପଣ ସେତେବେଳେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ?

: ମୁଁ ଏଇଠି, ଅଳ୍ପ ଦୂରରେ ଥିଲି ।

: ଏହାପରେ ?

: ହଁ, ଏହାପରେ ଆପଣଙ୍କୁ ନନ୍ଦନଗଡ଼ର କୁବେରପୁରୀ ଦେଖାଇବି ।

: କୁବେରପୁରୀ ମାନେ ?

: ଆସନ୍ତୁ ମୋ ସହିତ ।

ଶର୍ମାଜୀ ଘରର ଦରଜା ଖୋଲି ଆଗେଇଲେ । କୁବେରପୁରୀର ନା ଶୁଣି ମୋ ଭିତରେ କିପରି ଏକ ଶିହରଣ ଜାଗି ଉଠିଲା, ମୁଁ ମୋର ଉଦ୍ଦେଶ୍ୟ ସାଧନ ପଥରେ ଆଗେଇ ପାରିବି ବୋଲି ।

ଦୟାଲଶଙ୍କର ଶର୍ମା କହିଲେ : ଆମେ ବର୍ତ୍ତମାନ ଯେଉଁଠାକୁ ଯାଉଛେ, ସେଇଟା ହେଉଛି ନନ୍ଦନଗଡ଼ର ରତ୍ନଭଣ୍ଡାର, ପୁରୁଷାନୁକ୍ରମେ ଏଠାରେ ରାଜବଂଶୀମାନେ ବହୁ ସମ୍ପଦ ଠୁଳ କରି ରଖିଛନ୍ତି । ମୁଁ ଆପଣଙ୍କୁ ସେଇ ଅତୀବ ଗୋପନ ସ୍ଥାନଟି ଦେଖାଇବି, ଯେଉଁ ସ୍ଥାନଟି ରାଜମାତା ଛଡ଼ା ଅନ୍ୟ କେହି ଦେଖି ନାହାନ୍ତି ।

ମୋର ମନେ ହେଉଥିଲା, ମୁଁ ପ୍ରଶ୍ନ କରିବି - ଆପଣ କିନ୍ତୁ ସେ ସ୍ଥାନଟି ଦେଖିଲେ କିପରି ? କିନ୍ତୁ ପଚାରିବାକୁ ସାହସ ହେଲା ନାହିଁ । କାଳେ ଯଦି ଶର୍ମାଜୀ ଅନ୍ୟ କିଛି ମନେ କରନ୍ତି । କିନ୍ତୁ ପ୍ରସଙ୍ଗ ବଦଳାଇ ପଚାରିଲି : ଆପଣ କହୁଥିଲେ ନା, ଜଣେ ସନ୍ନ୍ୟାସୀ କିଏ ସେହି ରତ୍ନଭଣ୍ଡାର ଖବର ପାଇଥିଲେ ?

: ହଁ ସନ୍ନ୍ୟାସୀ । ମୁଁ ସେହି ସନ୍ନ୍ୟାସୀଙ୍କ କଥା ଆପଣଙ୍କୁ କହିଛି । କିନ୍ତୁ ସନ୍ନ୍ୟାସୀଙ୍କର ଅସଲ ପରିଚୟ କ'ଣ ସେ ବିଷୟରେ ଆପଣଙ୍କୁ କହିନାହିଁ ।

: ନା, ସେ ସନ୍ନ୍ୟାସୀ କିଏ ଥିଲେ ?

: ସେ ଦେବେନ୍ଦ୍ର ନାରାୟଣ । ମାନେ ରାଜେନ୍ଦ୍ର ନାରାୟଣଙ୍କର ପ୍ରଥମ ସ୍ତ୍ରୀର ସନ୍ତାନ । ଦଶବର୍ଷ ପରେ ସେ ସନ୍ନ୍ୟାସୀ ବେଶରେ ଆସିଥିଲେ ନନ୍ଦନଗଡ଼କୁ । ରାଜମାତାଙ୍କଠାରୁ ପ୍ରତିଶୋଧ ନେବା ପାଇଁ । କିନ୍ତୁ...

ହଠାତ୍ ଦୟାଲଶଙ୍କର ଶର୍ମା ଗୋଟାଏ ଜାଗାରେ ଅଟକି ଯାଇ କହିଲେ : ଏଇ ହେଉଛି ସେହି ଗୁପ୍ତ କକ୍ଷ, ଯେଉଁଠି ନନ୍ଦନଗଡ଼ର ଅକଳନ ରତ୍ନଭଣ୍ଡାର ଲୁଚି ରହିଛି । ଆପଣ ଟିକିଏ ଅପେକ୍ଷା କରନ୍ତୁ । ଏ ଘରଦ୍ୱାର ଖୋଲିବା ପାଇଁ ନାନା କୌଶଳ ରହିଛି । ଟିକିଏ ସମୟ ଲାଗିବ, ଆପଣ ମୋଟେ ଉଦ୍‌ଗ୍ରୀବ ହେବେ ନାହିଁ ।

ଦୟାଲଶଙ୍କର ଶର୍ମା ମୋ ହାତରେ ପୁଣି ଟର୍ଚ୍ଚଟା ଧରେଇ ଦେଇ ଆଗେଇ

ଗଲେ । ମୁଁ କେବଳ ତାଙ୍କର ଛାୟାମୂର୍ତ୍ତିଟା ଆଡ଼େ ଚାହିଁଥିଲି । କିଛି ସମୟ ପରେ ଛାୟାଟା ବି ଅନ୍ତର୍ଦ୍ଧାନ ହୋଇଗଲା ।

ତା'ପରେ ବହୁ ଦୂରରୁ ଦୟାଲଶଙ୍କର ଶର୍ମା ଡାକିବାର ମୁଁ ଶୁଣିଲି : ଏଥର ଆଗେଇ ଆସନ୍ତୁ । ଦ୍ୱାର ଉନ୍ମୁକ୍ତ । ଆପଣ ରତ୍ନପୁରୀରେ ପ୍ରବେଶ କରନ୍ତୁ ।

ମୁଁ ଆଉ ଆତ୍ମସମ୍ବରଣ କରି ପାରିଲି ନାହିଁ । ଆଗେଇ ଗଲି ସେଇ ରତ୍ନପୁରୀ ଭିତରକୁ । ମୋ ହାତର ଟର୍ଚ୍ଚଟା ଜଳି ଉଠିଲା । ମୁଁ କ'ଣ ଦେଖିଲି ? ଖାଲି ଲୁହା ସିନ୍ଦୁକ । ଗୋଟାକ ପରେ ଗୋଟାଏ । ଗଣି ଚାଲିଲି । ଏକ୍ ଦୁଇ, ତିନି .... ଅଠର, ଉଣେଇଶ... କୋଡ଼ିଏ, ଆଉ ଗଣି ପାରିଲି ନାହିଁ ।

କୋଡ଼ିଏ ନମ୍ବର ବାକ୍ସ ଉପରେ ଗୋଟାଏ ନରକଙ୍କାଳ ଝୁଲୁଛି !

ମୁଁ ଶିହରୀ ଉଠିଲି ।

ଦୟାଲଶଙ୍କର ଶର୍ମା କେଉଁଠୁ ଯେପରି ଅଟ୍ଟହାସ କରି ଉଠିଲେ । କହିଲେ : ସେ ହେଉଛି ଦେବେନ୍ଦ୍ର ନାରାୟଣର କଙ୍କାଳ ! ଦେବେନ୍ଦ୍ର ନାରାୟଣ କିନ୍ତୁ ରାଜମାତାଙ୍କ ଆଖିରେ ଧୂଳି ଛାଟି ପାରିଲେ ନାହିଁ । ସନ୍ନ୍ୟାସୀଙ୍କୁ ରତ୍ନଭଣ୍ଡାର ଦେଖାଇବାକୁ ଆଣି ଏଇ ଘରେ ଅଟକ ବନ୍ଦୀ କରି ରଖିଗଲେ । ସନ୍ନ୍ୟାସୀରୂପୀ ଦେବେନ୍ଦ୍ର ନାରାୟଣ ଆଉ ସୂର୍ଯ୍ୟାଲୋକ ଦେଖି ନାହାନ୍ତି ।

: ଶର୍ମାଜୀ !! ଆପଣ କେଉଁଠି ?

ଦୟାଲଶଙ୍କର ଶର୍ମା କିନ୍ତୁ ଆଉ କିଛି ଉତ୍ତର ଦେଲେ ନାହିଁ । ତାଙ୍କର ଛାୟା ବି ମୁଁ ଆଉ ଦେଖିବାକୁ ପାଇଲି ନାହିଁ । ତେବେ ସେ କ'ଣ ଖସି ପଳାଇଲେ ?

ହଠାତ୍ ମୋର ଷଷ୍ଠ ଚେତନା ଜାଗି ଉଠିଲା । ନା ନା, ଆଉ ନୁହେଁ, ଏଠାରେ ଆଉ ବେଶୀ ସମୟ ରହିବା ଉଚିତ ହେବ ନାହିଁ । ମୁଁ ଯେଉଁ ପଥ ଦେଇ ଆସିଥିଲି, ସେହି ପଥରେ କ୍ଷିପ୍ର ଗତିରେ ପାଦ ଲେଉଟାଇଲି । ମୋତେ ଏଠାରୁ ବାହାରି ଯିବାକୁ ହେବ । ଯାହା ସନ୍ଧାନରେ ମୁଁ ଛୁଟି ଆସିଛି ନନ୍ଦନଗଡ଼ ଯାଏ, ତାକୁ ଉଦ୍ଧାର କରିବାକୁ ହେବ ।

ଉତ୍ତେଜନାର ଅସ୍ଥିରତାରେ ମୁଁ ଛୁଟିଥିଲି ପାହାଚ ପରେ ପାହାଚ ଅତିକ୍ରମ କରି । ଲକ୍ଷ୍ମୀନାରାୟଣ ମନ୍ଦିର ଯାଏ ।

ଶେଷରେ ମୋର ଧ୍ୟାନ ଭଙ୍ଗ ହୋଇଥିଲା । ଲକ୍ଷ୍ମୀନାରାୟଣ ଆବରଣ ଉଠାଇ ମୋତେ ବାହାରିବାକୁ ହେବ । ସେମାନେ କେବେ ଅପେକ୍ଷା କରି ନ ଥିବେ ତ ବାହାରେ ?

କାନ ଡେରି ଠିଆ ହେଲି ଅନେକ ସମୟ ।

ନା, ଶାନ୍ତ ପରିବେଶ ।

ସେମାନେ ସବୁ ଫେରି ଯାଇଛନ୍ତି ।

ମୁଁ ଲକ୍ଷ୍ମୀନାରାୟଣଙ୍କର ପିତଳ ଆବରଣଟା ଠେଲି ଉଠାଇ ଦେଲି । ବାହାରେ ଆଲୋକର ବନ୍ୟା । ତେବେ କ'ଣ...

ହଁ, ସକାଳ ହୋଇ ଯାଇଛି । ଘରର କବାଟ ଖୋଲା ।

ମୁଁ ପୁଣି ଲକ୍ଷ୍ମୀ ନାରାୟଣଙ୍କ ପିତଳ ଆବରଣଟି ଯଥା ସ୍ଥାନରେ ସାବଧାନ ସହକାରେ ଲଗାଇ ଦେଲି । ଘରର କବାଟ ବନ୍ଦ କଲି । ବାହାରି ପଡ଼ିଲି ବାହାରକୁ ।

ବାହାରେ ଜନମାନବର ଚିହ୍ନ ନାହିଁ । ଲକ୍ଷ୍ମୀ ନାରାୟଣଙ୍କ ମନ୍ଦିର ଗୋଟିଏ ଥୁଣ୍ଟା ପାହାଡ଼ ଉପରେ ଅବସ୍ଥାପିତ । ମୁଁ ଧୀରେ ଧୀରେ ତଳକୁ ଓହ୍ଲାଇଲି । ବୁଦିବୁଦିକିଆ ଜଙ୍ଗଲ । ଶେଷରେ ରାସ୍ତାକୁ ଓହ୍ଲାଇ ଏଣେତେଣେ ଚାହିଁ ଆଗେଇ ଚାଲିଲି ।

କିଛି ଦୂର ଆଗେଇ ଯିବା ପରେ ଜଣେ ବୟସ୍କ ବ୍ୟକ୍ତିଙ୍କ ସହିତ ଭେଟ ହେଲା । ମୁଁ ତାଙ୍କୁ ଥାନାକୁ ଯିବାର ବାଟ ପଚାରିଲି । ସେ ମୋତେ ପଥ ଦେଖାଇ ଦେଲେ ।

ମୁଁ ପ୍ରକୃତରେ ଉତ୍ତେଜିତ ହୋଇପଡ଼ିଥିଲି । ମୋର ଦୃଢ଼ ଧାରଣା ହୋଇଥିଲା ଯେ ଗୁପ୍ତଧନର ସନ୍ଧାନ ମୁଁ ପାଇଛି । ପୋଲିସ ଷ୍ଟେସନରୁ ଅମରନାଥ ଶାସ୍ତ୍ରୀଙ୍କୁ ଧରି ସଦଳ ବଳେ ସେଇ ଗୁପ୍ତଧନ ଉଦ୍ଧାର କରିବାକୁ ହେବ ।

ମୁଁ ଯେତେବେଳେ ଯାଇ ଥାନାରେ ପହଞ୍ଚିଲି, ଦେଖିଲି ଦୁଇ ତିନିଜଣ କନେଷ୍ଟବଳ ତଳକୁ ମୁହଁ ପୋତି ବସିଛନ୍ତି । କିପରି ଏକ ଗଭୀର ନିରବତା ।

ଜଣେ କନେଷ୍ଟବଳ ମୋତେ ଶାସ୍ତ୍ରୀଙ୍କ କ୍ୱାଟର ଭିତରକୁ ନେଇଗଲା । ମୁଁ ପ୍ରଥମେ ଯାଇ ଯେଉଁ ଘରଟିରେ ପ୍ରବେଶ କଲି, ସେଇଟା ବୋଧହୁଏ ଶାସ୍ତ୍ରୀଜୀଙ୍କର ଡ୍ରଇଂରୁମ୍ । ମୋତେ ସେଇଠି ଛାଡ଼ି ଦେଇ କନେଷ୍ଟବଳଟି ଭିତରକୁ ଚାଲିଗଲା ।

ମୁଁ ଘର ଭିତରକୁ ପଶିଯିବା ମାତ୍ରକେ ଅବାକ୍ ହୋଇ ଦେଖିଲି ଦୟାଲଶଙ୍କର ଶର୍ମା ଘରର ଗୋଟିଏ କୋଣରେ କାଲି ରାତିର ସେଇ ବର୍ଷାତି ଓ ଟୋପି ପିନ୍ଧି ଠିଆ ହୋଇଛନ୍ତି । ପର ମୁହୂର୍ତ୍ତରେ ମୋର ଭ୍ରମ ଦୂର ହେଲା । ସେ ଦୟାଲଶଙ୍କର ଶର୍ମା ନୁହଁନ୍ତି, ତାଙ୍କର ବର୍ଷାତି ଆଉ ଟୋପି ସେଠାରେ ଝୁଲା ହୋଇଛି । ମନେ ମନେ ଭାବିଲି, ଦୟାଲଶଙ୍କର ଶର୍ମା ତା' ହେଲେ ନିରାପଦରେ ...

ହଠାତ୍ ମୋର ଧ୍ୟାନ ଭଙ୍ଗକରି ଗୃହ ମଧ୍ୟରେ ଯିଏ ପ୍ରବେଶ କଲେ, ସେ ଯୋଡ଼ ହାତରେ ଅଶ୍ରୁସିକ୍ତ କଣ୍ଠରେ କହିଲେ : କ୍ଷମା କରିବେ ମିଷ୍ଟର ମହାପାତ୍ର ! ମୁଁ ହତଭାଗ୍ୟ

ଅମରନାଥ ଶାସ୍ତ୍ରୀ । ନନ୍ଦନଗଡ଼ର ଥାନା ଇନ୍‌ଚାର୍ଯ । ମୁଁ ଜାଣେ କାଲି ରାତିରେ ଆପଣ ଅଶେଷ ଦୁର୍ଗତି ଭୋଗ କରିଥିବେ । କିନ୍ତୁ ମୋର କିଛି ଉପାୟ ନ ଥିଲା । ମୋର ମାମୁ ପୁଅ ଭାଇ ଦୟାଲଶଙ୍କର ଶର୍ମା ଗତକାଲି ସନ୍ଧ୍ୟା ଛଅଟା ବେଳେ ହଠାତ୍ ହାର୍ଟଫେଲ କରି ମୃତ୍ୟୁ ବରଣ କରିଛି ।

ଅମରନାଥ ଶାସ୍ତ୍ରୀଙ୍କ ଆଖିରୁ ଝର ଝର ହୋଇ ଲୁହ ଝରି ପଡ଼ିଥିଲା ।

ମୁଁ ବିସ୍ମୟ ବିସ୍ଫାରିତ କଣ୍ଠରେ ପଚାରିଲି : କୋଉ ଦୟାଲଶଙ୍କର ଶର୍ମା କଥା କହୁଛନ୍ତି ?

: ମୁଁ ନନ୍ଦନଗଡ଼ର ଷ୍ଟେସନ ମାଷ୍ଟର ଦୟାଲଶଙ୍କର ଶର୍ମା କଥା କହୁଛି । ଯାହା ଉପରେ ଆପଣଙ୍କୁ ଆଣି ମୋ ପାଖରେ ପହୁଞ୍ଚାଇବାର ଦାୟିତ୍ୱ ଥିଲା ।

ମୁଁ ଅସହାୟଙ୍କ ପରି ସେଇଠି ଗୋଟାଏ ସୋଫା ଉପରେ ଧଡ଼୍ କରି ବସି ପଡ଼ିଥିଲି ।

ମୋ ଆଖି ଆଗରେ ଦିଆଲରେ ଟଙ୍ଗା ହୋଇଥିବା ସେଇ ବର୍ଷାତିଟା ଯେପରି ନୃତ୍ୟ ଆରମ୍ଭ କରି ଦେଇଥିଲା ।

ଅମରନାଥ ଶାସ୍ତ୍ରୀଙ୍କର ଆଉ କୌଣସି କଥା ମୁଁ ଶୁଣି ପାରି ନ ଥିଲି ।

•••

ରଚନାକାଳ : ୧୯୬୮




: ଯେତେ ଦୂର ଜାଣେ ସଞ୍ଜୟ ବେବିକୁ ଭଲ ପାଉଥିଲା ଏବଂ ସେମାନେ ବିବାହ କରିବାକୁ ଠିକ୍ କରିଥିଲେ । ମିଷ୍ଟର ବହିଦାର ମଧ ଏ ପ୍ରସ୍ତାବରେ ଏକମତ ଥିଲେ ।

ମିଃ ତାଲୁକ୍‌ଦାର କହିଲେ : ତା' ହେଲେ ତ ସମସ୍ୟାର ସମାଧାନ ହେବ ନାହିଁ । ଯଦି ସେଇଆ ଘଟଣା, ତେବେ ମିଷ୍ଟର ବହିଦାରଙ୍କ ହତ୍ୟା ଅପରାଧରେ ସଞ୍ଜୟ ଫେରାର୍ ହେଲା କାହିଁକି ? ସେ ଯଦି ନିର୍ଦ୍ଦୋଷ, ତା' ହେଲେ ନିଶ୍ଚୟ ସେ ଫେରାର ହୋଇ ନ ଥାଆନ୍ତା ।

ସଞ୍ଜୟ ସେଦିନ ଅଫିସ୍ ଯାଇ ନ ଥିଲା । ଭଲ ନ ଥିଲା ମନଟା । ବିଛଣାରେ ଶୋଇଶୋଇ ଛଟପଟ ହେଉଥିଲା । ସେ ବିଶ୍ୱାସ କରିପାରୁ ନ ଥିଲା ଚନ୍ଦ୍ରଶେଖର ବହିଦାର ତାକୁ ଏପରି ନିରାଶ ବାଣୀ ଶୁଣାଇବେ ।

ଚନ୍ଦ୍ରଶେଖର ବହିଦାର 'ଭାରତ ମେସିନାରୀ'ର ମାଲିକ । ବିରାଟ ବ୍ୟବସାୟ । ପ୍ରଚୁର ଟଙ୍କାର ମାଲିକ ।

ଅବଶ୍ୟ ଚନ୍ଦ୍ରଶେଖର ବହିଦାରଙ୍କ ଶୁଭଦୃଷ୍ଟି ଯୋଗୁଁ ସଞ୍ଜୟ ଆଜି ଭାରତ ମେସିନାରୀର ସେଲ୍ସ ମ୍ୟାନେଜର ହୋଇପାରିଛି । ଚନ୍ଦ୍ରଶେଖର ବହିଦାରଙ୍କ ଅଗାଧ ବିଶ୍ୱାସ ସଞ୍ଜୟ ଉପରେ । ସେ ତାକୁ ଆଶା ଦେଇ, ଭରସା ଦେଇ ଏତେ ଉପରକୁ ଉଠାଇ ଆଣିଛନ୍ତି ।

କିନ୍ତୁ କାଲି ହଠାତ୍....

ନା ନା, ସଞ୍ଜୟର ହୁଏତ ବୁଝିବାର ଭୁଲ ହୋଇଛି । ଚନ୍ଦ୍ରଶେଖର ବହିଦାରଙ୍କର ସେତେବେଳେ ହୁଏତ ମିଜାଜଟା ଭଲ ନ ଥିଲା କିମ୍ବା ବେବି ତାଙ୍କୁ କୌଣସି ଅସଙ୍ଗତ କଥା କହି ଆଘାତ ଦେଇଥିଲା ।

-- ବେବିଟା କୋଉ ଭଲ । ସେ ଟିକିଏ ବାପାର ମନ ଚିହ୍ନି ପାରନ୍ତା ନାହିଁ । ବେଳେବେଳେ ବେବି ଚନ୍ଦ୍ରଶେଖର ବହିଦାରଙ୍କ ସହିତ ଯେପରି ବ୍ୟବହାର କରେ, ସେଥିରେ ଯେ କୌଣସି ଲୋକ ଆଘାତ ପାଇବାର କଥା । ଯେତେବେଳେ ସେ ବାପା, ଗୁରୁଜନ । ଟିକିଏ ସମୀହ ହୋଇ କଥାବାର୍ତ୍ତା କରିବା ଉଚିତ ! କିନ୍ତୁ ଯେହେତୁ

ଚନ୍ଦ୍ରଶେଖର ବହିଦାର ପିଲାଟି ଦିନରୁ ବେବିକୁ ସାଧୀନତା ଦେଇଛନ୍ତି, ସେଇଥିପାଇଁ ବେବି ତାଙ୍କୁ ଆଘାତ ହାଣିବ ! !

କିନ୍ତୁ ସେ ତ ତାଙ୍କ କନ୍ୟା ପିତାର ସମ୍ପର୍କ । ସଞ୍ଜୟ ତ କୌଣସି ଅପରାଧ କରିନାହିଁ । ଅଥଚ ଚନ୍ଦ୍ରଶେଖର ବହିଦାରଙ୍କ ବ୍ୟବହାର ସଞ୍ଜୟକୁ ବହୁତ କଷ୍ଟ ଦେଲା । ସଞ୍ଜୟ ହାତଘଡ଼ିକୁ ଚାହିଁଲା । ସାଢ଼େ ପାଁଟା ବାଜିଗଲାଣି । ଆଜିର ଦିନଟା ଉତ୍ତୀର୍ଣ୍ଣ ହୋଇଗଲା । ବିଛଣାରେ ଶୋଇଶୋଇ ଆଉ ଛଟପଟ ହେବାକୁ ଭଲ ଲାଗୁ ନ ଥିଲା ।

ବାହାରେ ସନ୍ଧ୍ୟା ନଇଁଆସିଲାଣି । ଏଥର ଟିକିଏ ବାହାରି ଯାଇ କିଛିଟା ବୁଲାଚଲା କରି ଫ୍ରେସ୍ ହୋଇ ଆସିବା ଉଚିତ ।

ସଞ୍ଜୟ ବାଥ୍ରୁମ୍‌କୁ ଉଠି ଯାଇ ମୁହଁ ହାତ ଧୋଇ ଆସିଲା । ଗୋଟାଏ ସେଟ୍ ହାଲ୍‌କା ପୋଷାକ ବାହାର କରି ପିନ୍ଧିଲା । ଏଥର ଧୀରେ ଧୀରେ ବାହାରିଯିବ ।

କିନ୍ତୁ ହଠାତ୍ ଟେଲଫୋନ୍‌ଟା ବାଜି ଉଠିଲା ।

-- ହ୍ୟାଲୋ ?

ସଞ୍ଜୟ ରିସିଭରଟା ଉଠାଇ କାନରେ ଦେଲା । ଅପରପ୍ରାନ୍ତରୁ ସେ ଶୁଣିଲା ତାଙ୍କ ଅଫିସ୍ ରିସେପ୍‌ସନିଷ୍ଟର କଣ୍ଠସ୍ୱର । ମିସ୍ ଭାଟିଆ କହିଲା, 'ମିଷ୍ଟର ବହିଦାର ଜରୁରୀ ଦରକାରରେ ଆପଣଙ୍କୁ ଫୋନ୍ କରିବାକୁ କହିଲେ । ସେ ଚେମ୍ବରରେ ଆପଣଙ୍କ ପାଇଁ ଅପେକ୍ଷା କରିଛନ୍ତି । ଆପଣ ଶୀଘ୍ର ଆସନ୍ତୁ ।'

ସଞ୍ଜୟ ଗ୍ୟାରେଜ୍‌ରୁ କାର୍‌ଟା ବାହାର କରି ଆଗେଇଗଲା । ମନଟା ଟିକିଏ ହାଲ୍‌କା ହୋଇ ଆସିଲା ସଞ୍ଜୟର ।

ସେ ଜାଣେ ମିଷ୍ଟର ବହିଦାର ମୁହଁରେ ଯେତେ କଡ଼ା ହେଲେ ମଧ୍ୟ ଅନ୍ତରଟା ତାଙ୍କର ଭୀଷଣ ନରମ । ତା'ଛଡ଼ା ମିଷ୍ଟର ବହିଦାରଙ୍କର ସଞ୍ଜୟ ଛଡ଼ା ଦିନଟିଏ ବି ଚଳିବ ନାହିଁ ।

ବେବି ମିଷ୍ଟର ବହିଦାରଙ୍କର ଏକମାତ୍ର କନ୍ୟା ।

ସଞ୍ଜୟକୁ ସେ ଭଲ ପାଏ । ମିଷ୍ଟର ବହିଦାର ମଧ୍ୟ ପ୍ରଶ୍ରୟ ଦେଇଛନ୍ତି ସେଇ ଭଲ ପାଇବାକୁ ।

ବେବିଟା ମନ୍ଦ ଝିଅ ନୁହେ, କିନ୍ତୁ ବେଳେବେଳେ ତା'ର ବଡ଼ଲୋକିର ଅହମିକା ତାକୁ ଭିନ୍ନ ପଥଗାମୀ କରିଦିଏ ।

ତଥାପି ସଞ୍ଜୟ ତାକୁ ଭଲ ପାଏ ।

ବେବି ସଞ୍ଜୟକୁ ମଧ୍ୟ ।

କାର୍‌ଟା ଆଗେଇ ଚାଲିଥିଲା । ସଞ୍ଜୟ ମନରେ ଉତ୍କଣ୍ଠା । କାଲିର ସେହି କଥା କଟାକଟି ପରେ ମିଷ୍ଟର ବହିଦାର ଆଜି ତାକୁ କିପରି ଗ୍ରହଣ କରିବେ କେଜାଣି !

କିନ୍ତୁ କାର୍‌ଟି ଶୀଘ୍ର ଆଗେଇବାର ଉପାୟ ନାହିଁ ।

ରାସ୍ତାଘାଟ ଭୀଷଣ ଭିଡ଼ ।

ତଥାପି ଠିକ୍ ଛଅଟା ବେଳେ ସଞ୍ଜୟ 'ଭାରତ ମେସିନାରୀ'ର ସେଲ୍‌ସ ଅଫିସ୍ ଦୁଆରେ ଗାଡ଼ି ଠିଆ କରାଇଲା ।

ଦରବାନ୍ ସବୁଦିନ ପରି ସାଲ୍ୟୁଟ ଜଣାଇଲା ।

ଲିଫ୍ଟରେ ଉଠି ତିନି ତାଲାରେ ସଞ୍ଜୟ ଦେଖିଲା, ଦୁଇଜଣ ଅପରିଚିତ ଲୋକ ତଳକୁ ଓହ୍ଲାଇବା ପାଇଁ ଅପେକ୍ଷା କରିଛନ୍ତି ।

ସଞ୍ଜୟ ସେମାନଙ୍କୁ ଚାହିଁଲା, ସେମାନେ ସଞ୍ଜୟକୁ ଚାହିଁଲେ ।

ନୀରବରେ ସଞ୍ଜୟ ଓହ୍ଲେଇଗଲା ଲିଫ୍ଟରୁ ।

ଲିଫ୍ଟ ସେଇ ଦୁଇଜଣ ପ୍ୟାସେଞ୍ଜରକୁ ଧରି ଓହ୍ଲେଇଗଲା ତଳକୁ ।

ସଞ୍ଜୟ ଆଗେଇଗଲା ମିଷ୍ଟର ବହିଦାରଙ୍କ ଚେମ୍ବର ଆଡ଼କୁ ।

ମିଷ୍ଟର ବହିଦାର ଗ୍ଲାସ ଚେମ୍ବର ଭିତରେ ବସନ୍ତି ।

ସଞ୍ଜୟ ଗ୍ଲାସ ଚେମ୍ବର ଦୁଆରେ ଠିଆ ହେଲା ମୁହୂର୍ତ୍ତେ । ଏଣେ ତେଣେ ଚାହିଁଲା । ଅଫିସର କର୍ମଚାରୀମାନେ ଚାଲିଗଲେଣି ।

ରିସେପ୍‌ସନିଷ୍ଟ ମିସ୍ ଭାଟିଆର ସିଟ୍‌ଟା ମଧ୍ୟ ଖାଲି ।

ସଞ୍ଜୟ ଗ୍ଲାସ ଚେମ୍ବର ଦୁଆରେ ଠିଆ ହୋଇ ମୁହୂର୍ତ୍ତେ ଚିନ୍ତାକଲା ।

ତା'ପରେ ଦରଜା ଠେଲି ଭିତରକୁ ପଶିଲା ।

କିନ୍ତୁ....

ମିଷ୍ଟର ବହିଦାର ଟେବୁଲ ଉପରେ ମୁଣ୍ଡ ରଖି ଶୋଇଛନ୍ତି କାହିଁକି ? ହଠାତ୍ କ'ଣ ସେ ଅସୁସ୍ଥ ହୋଇ ପଡ଼ିଛନ୍ତି ?

ସଞ୍ଜୟ କ୍ଷିପ୍ରପାଦରେ ଆଗେଇଗଲା ମିଷ୍ଟର ବହିଦାରଙ୍କ ଟେବୁଲ ପାଖକୁ ।

ଇସ୍....

ସଞ୍ଜୟ ଚମକି ଉଠିଲା ।

ଫ୍ଲୋର ଉପର କାର୍ପେଟଟା ରକ୍ତରେ ଭିଜିଯାଇଛି । ଟେବୁଲ ଉପରେ ଏଠି ସେଠି ରକ୍ତର ଛିଟା ।

ସଞ୍ଜୟର ହୃଦୟଟା ଦୁର୍ବଳ ହୋଇ ପଡ଼ିଲା । ହଠାତ୍ ତା'ର ଦୃଷ୍ଟି ପଡ଼ିଲା ମିଷ୍ଟର ବହିଦାର ଟେବୁଲ ଉପରେ ମୁହଁମାଡ଼ି ଶୋଇଛନ୍ତି । ତାଙ୍କ ପିଠିରେ ଗୋଟାଏ ଛୁରୀ ଲାଖି ରହିଛି । ସଞ୍ଜୟ ଆଗପଛ କିଛି ବିଚାର ନ କରି ଛୁଟି ଯାଇ ଛୁରୀଟାକୁ ମିଷ୍ଟର ବହିଦାରଙ୍କ ପିଠିରୁ ଟାଣିଆଣିଲା ।

ଆଉ ଝଲକାଏ ରକ୍ତ ବାହାରି ସଞ୍ଜୟର ହାଓ୍ୱାଇ ସାର୍ଟଟା ଭିଜେଇ ଦେଲା । ସେ ଫେରି ଆସିଲା ପଛକୁ । ନା ନା, ବର୍ତ୍ତମାନ ତା'ର ପ୍ରଥମ କର୍ତ୍ତବ୍ୟ ପୋଲିସକୁ ଖବରଟା ଜଣାଇବା ।

କିନ୍ତୁ ବାହାରେ ଭାରି ବୁଟ୍ ଜୋତାର ଆବାଜ୍ ଯେ....

ତା' ହେଲେ.....

ସଞ୍ଜୟ ରକ୍ତାକ୍ତ ହାତରେ ଗ୍ଲାସ ଚେମ୍ବର ଦୁଆର ଖୋଲି ବାହାରି ଯିବା ବେଳକୁ ଦେଖିଲା, ପୋଲିସ ଅଫିସର ସଦଳେବଳେ ତା'ରି ଆଡ଼କୁ ଆଗେଇ ଆସୁଛନ୍ତି ।

ସଞ୍ଜୟ କେଜାଣି କିପରି ଅସହାୟ ଅନୁଭବ କଲା ।

ଗୋଡ଼ ଦୁଇଟା ତା'ର ସେଇଠି କିଏ ପୋତି ଦେଇଥିଲା ପରି ତା'ର ମନେ ହେଲା ।

ପୋଲିସ ଅଫିସର ଆଗେଇ ଆସିଲେ । ଚେମ୍ବର ଭିତରେ ପଶି ମିଷ୍ଟର ବହିଦାରଙ୍କ ଅବସ୍ଥା ଦେଖିନେଲେ । ତା'ପରେ ସଞ୍ଜୟ ମୁହଁକୁ ଚାହିଁ ସ୍ମିତ ହସି କହିଲେ, 'ଆପଣ ଟିକିଏ ଡେରି କରିଦେଲେ । ତା' ନ ହେଲେ ଆମ ଆଖିରେ ଧୂଳି ଦେଇ ଅନ୍ତର୍ଦ୍ଧାନ ହୋଇଯିବାର ସମୟ ଆପଣଙ୍କ ହାତରେ ଯଥେଷ୍ଟ ଥିଲା ।'

ସଞ୍ଜୟ କେବଳ ଅସହାୟ ଆଖିରେ ପୋଲିସ ଅଫିସରଙ୍କ ଆଖିକୁ ଚାହିଁଥିଲା ।

ଦୁଇଜଣ କନେଷ୍ଟବଳ ଆସି ସଞ୍ଜୟର ଦୁଇ ହାତକୁ ଦୁଇ ପାଖରୁ ଧରିଲେ ।

ନୀରବରେ ଦୁଇ ମିନିଟ୍ ଭିତରେ ସମସ୍ତ କାର୍ଯ୍ୟ ସାଧିତ ହୋଇଗଲା ।

ସଞ୍ଜୟ କନେଷ୍ଟବଳଙ୍କ ସହ ଗ୍ଲାସ ଚେମ୍ବର ଭିତରୁ କେଇପାଦ ଆଗେଇ ଆସି ଦେଖିଲା, ହଲ୍ ଭିତରେ ଗୋଟିଏ ଛୋଟ ଭିଡ଼ ଜମି ଯାଇଛି । ସେଗୁଡ଼ିକ ସବୁ ପ୍ରାୟ ପରିଚିତ ମୁହଁ । ତଳିଆ କର୍ମଚାରୀ । ଅଫିସ୍ ମେଣ୍ଟେନାନ୍ସ ଷ୍ଟାଫ୍ । ସମସ୍ତେ ଅବାକ୍ ହୋଇ ସଞ୍ଜୟ ମୁହଁକୁ ଚାହିଁ ରହିଛନ୍ତି ।

ସଞ୍ଜୟର ମୁଣ୍ଡଟା ଗୋଳମାଳ ହୋଇ ଯାଇଥିଲା ।

ସେ ଏଇଭଳି ଏକ ଅଭାବନୀୟ ପରିସ୍ଥିତିର ସମ୍ମୁଖୀନ ହେବା କଥା ଦୁଃସପ୍ନରେ ସୁଦ୍ଧା କେବେ ଚିନ୍ତା କରିପାରି ନଥିଲା ।

ପୋଲିସ ଅଫିସର ତାଙ୍କର ଜଣେ ସହକାରୀକୁ ଗ୍ଲାସ ଚେମ୍ବରରେ ମୁତୟନ କରି ନିଜେ ସଞ୍ଜୟ ପଛେ ପଛେ ଆଗେଇ ଆସିଲେ । ଆସାମୀ ଘଟଣାସ୍ଥଳରେ ଧରାପଡ଼ିଛି ଯେତେବେଳେ, ବିଶେଷ ଆଉ ଚିନ୍ତାର କିଛି କାରଣ ନାହିଁ ।

ତଥାପି ପୋଲିସ ଅଫିସର ଆଗେଇ ଆସିଥିଲେ । ସଞ୍ଜୟକୁ ତଳେ ନେଇ ପୋଲିସ ଭ୍ୟାନରେ ନିରାପଦରେ ପହଞ୍ଚାଇ ଦେଇ ଆସିବେ ।

ଲିଫ୍‌ଟ୍‌ଟା ଅପେକ୍ଷା କରିଥିଲା ।

ଦୁଇଜଣ କନେଷ୍ଟବଳ ପରିବେଷ୍ଟିତ ହୋଇ ସଞ୍ଜୟ ଲିଫ୍‌ଟକୁ ଉଠିଲା । ତା'ପରେ ପୋଲିସ ଅଫିସର ପାଦ ବଢ଼ାଇଲେ ।

ଲିଫ୍‌ଟ ଚାଳକ ହାତ ହଲାଇ ମନା କଲା । କହିଲା, 'ଏ ଲିଫ୍‌ଟରେ ମୋତେ ଲଗେଇ ଚାରିଜଣ ଉଠିବାର କଥା । ପାଞ୍ଚଜଣ ଯାଇପାରିବେ ନାହିଁ ।

ଶେଷରେ ଜଣେ କନେଷ୍ଟବଳକୁ ବାହାରି ଆସିବାକୁ ହେଲା । ପୋଲିସ ଅଫିସର ନିଜେ ସଞ୍ଜୟ ସଙ୍ଗରେ ତଳକୁ ଓହ୍ଲେଇବାକୁ ଲିଫ୍‌ଟରେ ଉଠିଲେ ।

ଲିଫ୍‌ଟ ଚାଳକ ଦରଜା ବନ୍ଦ କଲା ।

ଲିଫ୍‌ଟର ହ୍ୟାଣ୍ଡଲ ଘୂରାଇଲା ।

ଲିଫ୍‌ଟ ଧୀରେ ଧୀରେ ତଳକୁ ଖସିବାକୁ ଲାଗିଲା ।

କେତୋଟି ମୁହୂର୍ତ୍ତ ପରେ ହଠାତ୍ ଲିଫ୍‌ଟ ଭିତରଟା ଅନ୍ଧକାର ହୋଇଗଲା । ପର ମୁହୂର୍ତ୍ତରେ ଦୋତାଲାରେ ଲିଫ୍‌ଟଟା ଅଟକି ଗଲା । ଲିଫ୍‌ଟର ଦରଜା ଖୋଲିଗଲା ଏବଂ ସାମାନ୍ୟ ଧସ୍ତାଧସ୍ତି ପରେ ଦୋତାଲାର ଅନ୍ଧକାର ଭିତରେ ଯେପରି କ'ଣ ଗୋଟାଏ ଘଟଣା ଘଟିଗଲା ।

ପର ମୁହୂର୍ତ୍ତରେ ପୋଲିସ ଅଫିସରଙ୍କର ହୁଇସିଲ୍‌ଟା ବାଜି ଉଠିଲା । ଲିଫ୍‌ଟର ଆଲୋକ ମଧ୍ୟ ଜଳି ଉଠିଲା ଏବଂ ଦେଖାଗଲା କନେଷ୍ଟବଳଟି ଆଣ୍ଠୁମାଡ଼ି ଲିଫ୍‌ଟ ଭିତରେ ପଡ଼ିଛି ଏବଂ ଲିଫ୍‌ଟ ଚାଳକ ଲିଫ୍‌ଟର ହ୍ୟାଣ୍ଡେଲଟି ଖୋଜି ପାଉ ନାହିଁ ।

ଆଉ ସଞ୍ଜୟ ?

ସେ ଲିଫ୍‌ଟରୁ ଅଦୃଶ୍ୟ ହୋଇଯାଇଛି ।

ଦୋତାଲାରେ ଲିଫ୍‌ଟ୍‌ଟା ଠିଆ ହୋଇଛି ।

ପୋଲିସ ଅଫିସର ଓହ୍ଲାଇଗଲେ । କିନ୍ତୁ କିଟିକିଟିଆ ଅନ୍ଧାର । ଦୋତାଲାଟା ବୋଧହୁଏ ଭାରତ ମେସିନାରୀର ଗୋଦାମ ଘର । କିନ୍ତୁ ଅଫିସ୍ ବନ୍ଦ ପରେ ସେଠାକାର ସମସ୍ତ ଲାଇଟ୍ ଇତ୍ୟାଦି ଲିଭିଯାଇଛି ।

କିନ୍ତୁ ସଞ୍ଜୟ ଗଲା କେଉଁଆଡ଼େ ?

ପୋଲିସ ଅଫିସରଙ୍କ ହୁଇସିଲ୍ ଶୁଣି ଅନ୍ୟାନ୍ୟ ପୋଲିସ କର୍ମଚାରୀମାନେ ଛୁଟି ଆସିଲେ । ଦୋତାଲାର ସମସ୍ତ ଆଲୋକ ମଧ୍ୟ ଜଳି ଉଠିଲା ।

କିନ୍ତୁ ସଞ୍ଜୟ କାହିଁ ?

ନା, ଦୋତାଲାର ଅନ୍ଦିକନ୍ଦି, ଗୋଦାମ ଘର, ବାରଣ୍ଡା, ସ୍ଥାନ ଅସ୍ଥାନ ସବୁ ତନ୍ନ ତନ୍ନ କରି ଖୋଜି ମଧ୍ୟ ପୋଲିସ ଅଫିସର ସଞ୍ଜୟକୁ ଆବିଷ୍କାର କରିପାରିଲେ ନାହିଁ ।

ତା'ପରେ ଥାନାରୁ ଆହୁରି ପୋଲିସ ଆସିଲେ । ସମଗ୍ର ପାଁଚତାଲା କୋଠାକୁ ପୋଲିସ ବାହିନୀ ଘେରାଉ କରି ନେଲେ ।

ବାହାରେ ୱାରଲେସ୍ ଭ୍ୟାନମାନଙ୍କୁ ଖବର କରି ଦିଆହେଲା ।

ସଞ୍ଜୟ ଜଣେ ଖୁଣୀ, ଚେହେରାର ବର୍ଣ୍ଣନା ଦେଇ ପୋଲିସ ଅଫିସର ସବୁଆଡ଼େ ପ୍ରହରାରତ ପୋଲିସମାନଙ୍କ ପାଖକୁ ଖବର ପଠାଇଦେଲେ ।

ସଞ୍ଜୟ ଯେପରି ସହରର ବାହାରକୁ ବାହାରି ଯାଇ ନ ପାରେ ।

ସଞ୍ଜୟ ଖୁଣୀ ।

ସଞ୍ଜୟ ଚନ୍ଦ୍ରଶେଖର ବାହିଦାରଙ୍କର ହତ୍ୟାକାରୀ ।



.......................................................................................................

ଦିଆଲ ଘଡ଼ିରେ ଦଶଟା ବାଜିଲା । ରାତି ।

ମିସ୍ ଭାଟିଆର ଟେଲିଫୋନ୍‌ଟା ବାଜି ଉଠିଲା ।

ଭାରତ ମେସିନାରୀର ଷ୍ଟେନୋ କମ୍ ରିସେପ୍‌ସନିଷ୍ଟ ଆସି ଫୋନ୍ ଉଠାଇଲା ।

ହ୍ୟାଲୋ, ମୁଁ ମିସ୍ ଭାଟିଆ କହୁଛି ।

ଅପରପ୍ରାନ୍ତରୁ କାହାର କଣ୍ଠସ୍ୱର ଶୁଣି ମିସ୍ ଭାଟିଆ ମୁହଁର ରଙ୍ଗ ବଦଳିଗଲା ।

ସେ କହିଲା : ନା ନା ମୁଁ କିଛି ଜାଣି ନାହିଁ । ଆପଣ ବିଶ୍ୱାସ କରନ୍ତୁ । କିନ୍ତୁ ଏତେ ବଡ଼ ଗୋଟାଏ ଦୁର୍ଘଟଣା ଘଟିଗଲା କିପରି ?

... ... ... ... ... ....

: ମୁଁ, ମୁଁ ଆପଣଙ୍କୁ ଫୋନ୍ କରିଥିଲି । ବସ୍ ମୋତେ ଆପଣଙ୍କୁ ଡାକିବାକୁ କହିଲେ । ତା'ପରେ ପରେ ମୁଁ ତ ଅଫିସ୍ ଛାଡ଼ି ଚାଲି ଆସିଲି ।

: ନା, ନା, ଆପଣ ଯଦି ବିଶ୍ୱାସ ନ କରିବେ ମୁଁ ଆଉ କ'ଣ କରିବି । ଅବଶ୍ୟ ସେତେବେଳେ ବସ୍‌ଙ୍କ ଘରେ ଦୁଇ ଜଣ ଲୋକ ବସି କ'ଣ କଥାବାର୍ତ୍ତା କରୁଥିଲେ ଜଣଙ୍କ ନାଁ ମିଷ୍ଟର ସରାଫ୍ । ଆଉଜଣଙ୍କ ନାଁ ମୁଁ ଜାଣି ନାହିଁ । ଦୁଇଜଣଯାକ ଖୁବ୍ ଲମ୍ବା ଚଉଡ଼ା ଲୋକ । ବସ୍ ମୋତେ ଡାକି ସେଇମାନଙ୍କ ସାମ୍ନାରେ ଆପଣଙ୍କୁ ଫୋନ୍ କରିବାକୁ କହିଲେ । ମୁଁ ଭାବିଲି, ବୋଧହୁଏ କୌଣସି ଜରୁରୀ କାମ ପାଇଁ ଆପଣଙ୍କୁ ଡାକୁଛନ୍ତି ।

ସତ ଯେ ! ମୋର ଜଣେ ବାନ୍ଧବୀଙ୍କର ଆଜି ଜନ୍ମଦିନ ଥିଲା । ସେଥିପାଇଁ ବସ୍‌ଙ୍କଠାରୁ ମୁଁ ସକାଳୁ ଛୁଟି ନେଇଥିଲି । ବସ୍ ଅଫିସ୍ ଛାଡ଼ିବା ପୂର୍ବରୁ ମୁଁ ଚାଲି ଆସିଥିଲି । ଆଉ ଫେରୁଛି ହେଇ ଏଇକ୍ଷିଣା । ମାତ୍ର ଦଶ ମିନିଟ୍ ହେବ ।

: କିଏ ? ମିସ୍ ଭାଟିଆ ହଠାତ୍ ଦରଜା ଖୋଲିବାର ଶବ୍ଦ ଶୁଣି ବାହାରକୁ ଚାହିଁ ଦେଖିଲା, କେତେଜଣ ପୋଲିସ ଲୋକ ।

ଜଣେ ଇଙ୍ଗିତରେ ନୀରବ ରହିବାକୁ କହୁଛି ।

ମିସ୍ ଭାଟିଆ କାନରେ ଅପର ପ୍ରାନ୍ତର କଥା ଆଉ କିଛି ଶୁଭୁ ନାହିଁ । ସେ ଯେପରି ଜଡ଼ ପାଲଟି ଯାଇଛି ।

ରିସିଭରଟା କାନରେ ଦେଇ ଗୋଟିଏ ପିତୁଳା ପରି ସେ ଠିଆ ହୋଇଛି ।

ପୋଲିସ ଅଫିସର ପୁଣି ଇଙ୍ଗିତରେ କହିଲେ : କଥାବାର୍ତ୍ତା କରିବା ପାଇଁ । ମିସ୍ ଭାଟିଆ କହିଲା, 'ମୁଁ ଏପରି ଏକ ଦୁର୍ଘଟଣା ଘଟିବ ବୋଲି ମୋଟେ ଆଶା କରି ନ ଥିଲି । ଯଦି ଏହି ଦୁର୍ଘଟଣାର ସାମାନ୍ୟତମ ଇଙ୍ଗିତ ପାଇଥାଆନ୍ତି । ହ୍ୟାଲୋ ହ୍ୟାଲୋ... ।

ମିସ୍ ଭାଟିଆ ରିସିଭରଟା କାନ ମୂଳରୁ କାଢ଼ି ଧରି ଅସହାୟ ଦୃଷ୍ଟିରେ ପୋଲିସ ଅଫିସରଙ୍କ ମୁହଁକୁ ଚାହିଁଲା ।

- କ'ଣ ହେଲା ? ପୋଲିସ ଅଫିସର ପଚାରିଲେ ।

- ସଞ୍ଜୟ ଛାଡ଼ି ଦେଇଛନ୍ତି ସାର୍ ।

ପୋଲିସ ଅଫିସର କ୍ଷିପ୍ର ହସ୍ତରେ ରିସିଭରଟା ମିସ୍ ଭାଟିଆ ହାତରୁ ଟାଣିନେଇ କାନରେ ଦେଲେ । ତାଙ୍କର ଯେପରି ମନେହେଲା, ସେହି ମୁହୂର୍ତ୍ତରେ ଅପରପ୍ରାନ୍ତରୁ ଟେଲିଫୋନ୍‌ର ଲାଇନ୍‌ଟା କାଟି ଦିଆହେଲା ।

ସେ ମିସ୍ ଭାଟିଆ ମୁହଁକୁ ମୁହୂର୍ତ୍ତେ ସନ୍ଦେହ ଦୃଷ୍ଟିରେ ଚାହିଁ ରିସିଭରଟା କଟାଡ଼ି ଦେଇ କହିଲେ : ହୁଁ, ତୁମେ ତା' ହେଲେ ସଞ୍ଜୟର ଠିକଣା ଜାଣ ।

: ଜାଣେ ସାର୍ । ସେ ୧୫ ନମ୍ବର ଇଷ୍ଟ ଚ୍ୟାନେଲ ରୋଡ୍‌ରେ ରହନ୍ତି ।

: ଏଇକ୍ଷିଣା କୋଉଁଠୁ କଥା କହୁଥିଲା ? ପୋଲିସ ଅଫିସରଙ୍କର ଗମ୍ଭୀର ସ୍ୱର ।

: ତାଙ୍କ ଘରେ ଫୋନ୍ ଅଛି ସାର୍ ।

: ଚୁପ୍ କର । ତୁମେ ସବୁ ଜାଣି ବି ଯଦି ଆମ ଆଖିରେ ଧୂଳି ଫିଙ୍ଗିବାକୁ ଚେଷ୍ଟା କର, ତା'ହେଲେ ପରିଣତି ତମର ଭଲ ହେବ ନାହିଁ ।

ମିସ୍ ଭାଟିଆ ପୋଲିସ ଅଫିସରଙ୍କର ରୁଦ୍ରମୂର୍ତ୍ତି ଦେଖି ଦବି ଯାଇଥିଲା । ସେ ଧୀରେ ଧୀରେ କହିଲା, 'ଆପଣ ମୋଠାରୁ କ'ଣ ଜାଣିବାକୁ ଚାହାନ୍ତି ପଚାରନ୍ତୁ । ମୁଁ ଯାହା ଜାଣିଥିବି, ସବୁ ସତ ସତ କହିଯିବି ।'

- ଚନ୍ଦ୍ରଶେଖର ବହିଦାରଙ୍କ ଖୁଣ୍ ହୋଇଥିବା କଥା ତୁମେ ଜାଣ ନାହିଁ ?

- ହଁ, ଏଇ ମୁହୂର୍ତ୍ତକ ଆଗରୁ ଫୋନ୍‌ରେ ମୁଁ ସଞ୍ଜୟଙ୍କ ମୁହଁରୁ ଶୁଣିଲି ।

: ତା ଆଗରୁ ?

: ନା ସାର୍, ବିଶ୍ୱାସ କରନ୍ତୁ । ମିଷ୍ଟର ବହିଦାର ଅଫିସ୍ ଛାଡ଼ିବା ପୂର୍ବରୁ ମୁଁ ଚାଲି ଆସିଥିଲି ।

: ସଞ୍ଜୟ ସେଠାରେ ଥିଲା ?

: ନା ସଞ୍ଜୟ ଆଜି ଅଫିସ୍ ଆସି ନ ଥିଲେ । କିନ୍ତୁ ମିଷ୍ଟର ବହିଦାର ମୋତେ ତାଙ୍କୁ ଫୋନ୍ କରି ଡାକିବା ପାଇଁ କହିଥିଲେ । ମୁଁ ଫୋନ୍ କରିଥିଲି । ତା'ପରେ କ'ଣ ଘଟିଛି ଜାଣିନାହିଁ ।

: ତା'ପରେ ମିଷ୍ଟର ବହିଦାର ଖୁଣ୍ ହୋଇଛନ୍ତି । ଖୁଣୀ କିଏ ନିଶ୍ଚୟ ତୁମେ ଜାଣ ମିସ୍ ଭାଟିଆ ।

: ନା ସାର୍, ମିସ୍ ଭାଟିଆ ଯେପରି ଆର୍ତ୍ତ ଚିତ୍କାର କରି ଉଠିଲା । ମୋତେ ବିଶ୍ୱାସ କରନ୍ତୁ ସାର୍, ମୁଁ କିଛି ଜାଣିନାହିଁ । ଖୁଣୀ କିଏ ମୁଁ ଆଦୌ ଜାଣିନାହିଁ ।

ପୋଲିସ ଅଫିସର ଏତେ ବେଳଯାଏ ଠିଆ ହୋଇ କଥା କହୁଥିଲେ । ବର୍ତ୍ତମାନ ସେ ଚେଆର ଉପରେ ବସିପଡ଼ି କହିଲେ : "ହୁଁ, ଖୁଣୀ କିଏ ତମେ ଜାଣ ନାହିଁ, କିନ୍ତୁ ସଞ୍ଜୟକୁ ନିଶ୍ଚୟ ଭଲ ଭାବରେ ଚିହ୍ନ ।"

: ସଞ୍ଜୟ ଆମ କମ୍ପାନୀର ସେଲ୍ସ ମ୍ୟାନେଜର ।

: ସେ କଥା ମୁଁ ଜାଣେ । ତା' ଛଡ଼ା ସଞ୍ଜୟ ସମ୍ବନ୍ଧରେ ତମେ ଆଉ ଅଧିକ କ'ଣ ଜାଣ ?

: ସେ ଜଣେ କର୍ମଠ, ନିଷ୍ଠାବାନ୍ ଲୋକ । ଆମ କମ୍ପାନୀର ତାଙ୍କ କର୍ମନିଷ୍ଠତା ପାଇଁ ଅନେକ ଉନ୍ନତି ହୋଇଛି ।

: ଆଉ ସେଇ ସୁଯୋଗରେ ସଞ୍ଜୟ ଚାହୁଁଥିଲା ସମଗ୍ର କମ୍ପାନୀଟାକୁ ନିଜର କରିନେବା ପାଇଁ । ପୋଲିସ ଅଫିସରଙ୍କ କଣ୍ଠରେ ତାଚ୍ଛଲ୍ୟ ଫୁଟି ଉଠିଥିଲା ।

: ମୁଁ ଆପଣଙ୍କ କଥା ଠିକ୍ ବୁଝିପାରୁ ନାହିଁ ସାର୍ ।

: ସଞ୍ଜୟ ଚାହୁଁ ନ ଥିଲା ମିଷ୍ଟର ବହିଦାରଙ୍କର ଏକମାତ୍ର କନ୍ୟା ବେବିକୁ ବିବାହ କରି ସମସ୍ତ ସମ୍ପତ୍ତିର ଉତ୍ତରାଧୀକାରୀ ହେବା ପାଇଁ ?

: ଘଟଣାଟା ସତ୍ୟ । ମିଷ୍ଟର ବହିଦାର ମଧ୍ୟ ସେଇଆ ଚାହୁଁଥିଲେ ।

: ନା ନା, ମିଷ୍ଟର ବହିଦାର ମୋଟେ ତାହା ଚାହୁଁ ନ ଥିଲେ । ସେ ଯଦି ସଞ୍ଜୟର ଏହି ପ୍ରସ୍ତାବରେ ରାଜି ହୋଇଥାଆନ୍ତେ, ତେବେ ତାଙ୍କୁ ଅକାଳରେ ମୃତ୍ୟୁବରଣ କରିବାକୁ ପଡ଼ି ନ ଥାନ୍ତା ।

ମିସ୍ ଭାଟିଆ ଯେପରି ଆଉ ଥରେ ଚମକି ଉଠିଲା ।

ସେ କିଛି କହିବା ପୂର୍ବରୁ ପୋଲିସ ଅଫିସର ପୁଣି ଥରେ ଆରମ୍ଭ କଲେ-

: ମୁଁ ଜାଣେ ତମେ ସମ୍ପୂର୍ଣ୍ଣ ସତକଥା କହିବ ନାହିଁ । ତଥାପି ତୁମକୁ କେତୋଟି ପଏଣ୍ଟ ସମ୍ପର୍କରେ ଆମ ପାଖରେ ସତକଥା କହିବାକୁ ହେବ । ମିଷ୍ଟର ବହିଦାରଙ୍କ କନ୍ୟା ବେବିକୁ ତୁମେ ଚିହ୍ନ ?

: ହଁ, ଚିହ୍ନେ ।

: ତା' ସହିତ ତମର ଆନ୍ତରିକତା ଅଛି ?

: ନା ସାର୍ । ସେ ମାଲିକଙ୍କ କନ୍ୟା ! ମୁଁ ଜଣେ କର୍ମଚାରୀ । ତେଣୁ ବେବି ମୋ ଭିତରେ ଆପଣ ଆନ୍ତରିକତା ଆଶା କରୁଛନ୍ତି କିପରି ?

: ମୁଁ କିନ୍ତୁ ଜାଣିଛି ବେବି ସହିତ ତମର ଖାଲି ଆନ୍ତରିକତା ନୁହେଁ, ବନ୍ଧୁତ୍ୱ ବି ଥିଲା ।

ମୁହୂର୍ତ୍ତକର ନୀରବତା ପରେ ମିସ୍ ଭାଟିଆର କଣ୍ଠ ଦୃଢ଼ ଶୁଣାଗଲା ।

: ଧରି ନିଅନ୍ତୁ, ମୋର ବେବି ସହିତ ଆନ୍ତରିକତା ଆଉ ବନ୍ଧୁତା ଦୁଇଟିଯାକ ଥିଲା । ତା' ହେଲେ ଆପଣ କ'ଣ ଆଶା କରୁଛନ୍ତି ?

ପୋଲିସ ଅଫିସର ସ୍ମିତ ହସି କଣ୍ଠସ୍ୱର କୋମଳ କରିବାକୁ ଚେଷ୍ଟା କରି କହିଲେ,

ହଁ, ଧୀରେ ଧୀରେ ବାଟକୁ ଆସ ମିସ୍ ଭାଟିଆ । ଆମେ ସତ୍ୟ ଆଦାୟ ନ କରି କାହାରିକୁ ଛାଡ଼ି ପାରିବୁ ନାହିଁ । ଏଥର କୁହ ବେବି ମୁହଁରୁ ତୁମେ ସଞ୍ଜୟ ସମ୍ବନ୍ଧରେ କ'ଣ ଶୁଣିଥିଲ ?

: ବେବି ସଞ୍ଜୟକୁ ଭଲ ପାଉଥିଲେ ।

: ଆଉ ସଞ୍ଜୟ ତୁମକୁ । ପୋଲିସ ଅଫିସର ହୋ ହୋ ହୋଇ ହସିଉଠିଲେ ।

ମିସ୍ ଭାଟିଆ ହଠାତ୍ କୌଣସି ଉତ୍ତର ଦେଇ ନ ପାରି ଗମ୍ଭୀର ହୋଇ ଯାଇଥିଲା ।

ଠିକ୍ ସେହି ମୁହୂର୍ତ୍ତରେ ଟେବୁଲ ଉପରର ଟେଲିଫୋନ୍‌ଟା ବାଜି ଉଠିଲା ।

ମିସ୍ ଭାଟିଆ ହାତ ବଢ଼ାଇବା ଆଗରୁ ପୋଲିସ ଅଫିସର ରିସିଭରଟା ଉଠାଇ ନେଇ କାନରେ ଦେଲେ, ହ୍ୟାଲୋ...

ଅପରପ୍ରାନ୍ତରୁ ଶୁଣାଗଲା : ମିସ୍ ଭାଟିଆ ଅଛନ୍ତି କି ?

: ହଁ ହଁ, ସେ ବାଥରୁମ୍ ଯାଇଛନ୍ତି । ଆପଣ....

: ମୁଁ ଅଗରୱାଲା କହୁଛି । ଆପଣ କହିବେ, ମିସ୍ ଭାଟିଆ ମୋତେ ଆଜି ଯେତେ ରାତି ହେଉ ଦେଖା କରିବେ । ଖୁବ୍ ଜରୁରୀ । ତାଙ୍କର ଜଣେ ଅନ୍ତରଙ୍ଗ ବିପଦରେ ପଡ଼ିଛନ୍ତି । ମନେ କରି କହିଦେବେ ।

: କିନ୍ତୁ ଠିକଣାଟା...

: ହଁ ୧୭ ନମ୍ବର ପାର୍କ ଲେନ୍ । ଫାଷ୍ଟ ଫ୍ଲୋର । ଖୁବ୍ ଜରୁରୀ । ଆପଣ ନିଶ୍ଚୟ ତାଙ୍କୁ ଜଣେଇଦେବେ ।

ଏହାପରେ ପୋଲିସ ଅଫିସର ସ୍ମିତ ହସି ରିସିଭରଟା ମିସ୍ ଭାଟିଆ ହାତକୁ ବଢ଼ାଇ ଦେଲେ ।

ମିସ୍ ଭାଟିଆ ଥରିଲା ହାତରେ ରିସିଭରଟା କାନରେ ଦେଇ ଶୁଣିଲା, ଅପର ପ୍ରାନ୍ତରୁ ଲାଇନ୍‌ଟା ସେଇ ମୁହୂର୍ତ୍ତରେ କଟିଗଲା ।

ପୋଲିସ ଅଫିସର ହସୁ ହସୁ ଚେଆରରୁ ଉଠିପଡ଼ି କହିଲେ : ଗୁଡ୍‌ନାଇଟ୍ ମିସ୍ ଭାଟିଆ ! ଆଜି ଆଉ ଆପଣଙ୍କୁ ବିରକ୍ତ କରିବି ନାହିଁ । ଆରେ, ରାତି ଏଗାରଟା ବାଜିଲାଣି ଯେ ! ଆପଣ ଏଥର ବିଶ୍ରାମ କରନ୍ତୁ । ହଁ, ବାଇ ଦି ବାଇ । ଆପଣ କ'ଣ ଏଇ ଫ୍ଲାଟରେ ଏକା ରୁହନ୍ତି ?

: ନା, ମୋର ମା' ଆଉ ସାନ ଭାଇ ରୁହନ୍ତି ।

: କାହିଁ ସେମାନଙ୍କୁ କାହାରିକୁ ଦେଖୁ ନାହିଁ ତ !

: ସେମାନେ ଆମ ଗାଁକୁ ଯାଇଛନ୍ତି । ଆଠ ଦଶ ଦିନ ପରେ ଫେରିବେ ।

: ତା'ହେଲେ ବର୍ତ୍ତମାନ ଆପଣ ଏକା ?

: ହଁ ।

: ଯଦି ଭୟ କରୁଥାଆନ୍ତି, ତା' ହେଲେ ମୁଁ ଜଣେ ପୋଲିସ ପୋଷ୍ଟିଂ କରି ଦେଇ ଯାଇପାରେ । ଅବଶ୍ୟ ଆପଣଙ୍କର ଏହି ହତ୍ୟାକାଣ୍ଡରେ ଭୟର କିଛି କାରଣ ନାହିଁ । ତଥାପି...

: ଅଶେଷ ଧନ୍ୟବାଦ । ଆପଣ ମୋ ପାଇଁ ଚିନ୍ତା ନ କରିଲେ ଚଳିବ ।

: କିନ୍ତୁ ମିସ୍ ଭାଟିଆ !

: କୁହନ୍ତୁ ।

: ତମେ ନିଜକୁ ଯେତେ ନିର୍ଦ୍ଦୋଷ ମନେ କରୁଛ, ସେତେଟା କିନ୍ତୁ ନୁହେଁ । ମୁଁ ଇଚ୍ଛା କରିଲେ ବର୍ତ୍ତମାନ ତୁମକୁ ମିଷ୍ଟର ବହିଦାରଙ୍କ ହତ୍ୟା ଅପରାଧରେ ଗ୍ରେଫତାର କରିପାରେ ।

: ମୋତେ ଦୟା କରିଛନ୍ତି, ସେଥିପାଇଁ ମୁଁ ଆପଣଙ୍କ ନିକଟରେ କୃତଜ୍ଞ ।

ପୋଲିସ ଅଫିସର ନୀରବରେ ଫେରି ଯାଉଥିଲେ । ପୁଣି ଆସି କହିଲେ : ହଁ, ଗୋଟାଏ କଥା ଭୁଲି ଯାଉଥିଲି । ମିଷ୍ଟର ଅଗରଓ୍ୱାଲା ଫୋନ୍ କରିଥିଲେ ।

: ମିଷ୍ଟର ଅଗରଓ୍ୱାଲା ? ମିସ୍ ଭାଟିଆର ସ୍ୱରରେ କମ୍ପନ ଖେଳି ଯାଉଥିଲା ।

: ହଁ ମିଃ ଅଗରଓ୍ୱାଲା । ଏଇ କିଛି ସମୟ ଆଗରୁ ଯେଉଁ ଫୋନ୍‌ଟି ଆସିଥିଲା, ସେଇଟା ମିଃ ଅଗରଓ୍ୱାଲାଙ୍କର । ସେ ଖବରଟା ଜଣାଇ ଦେବା ପାଇଁ କହିଥିଲେ । ତମର ଜଣେ ବନ୍ଧୁ ଖୁବ୍ ବିପଦରେ ପଡ଼ିଛନ୍ତି, ତମେ ଆଜି ତାଙ୍କୁ ଯେପରି ହେଉ ଦେଖା କରିବ ।

ମିସ୍ ଭାଟିଆ ନୀରବରେ କ'ଣ ଯେପରି ଚିନ୍ତା କରୁଥିଲା ।

ପୋଲିସ ଅଫିସର ପୁଣି କହିଲେ, ତମେ ମୋ ସହିତ ଆସିପାର । ମୁଁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇ ଦେଇ ଚାଲିଯିବି ।

: ମୋତେ ଆପଣ କ୍ଷମା କରନ୍ତୁ ସାର୍ । ଆଉ ଯଦି କିଛି ପଚାରିବାର ଥାଏ ପଚାରି ମୋତେ ଆପଣ ମୁକ୍ତି ଦିଅନ୍ତୁ । ମିସ୍ ଭାଟିଆ ବିନୀତ ସ୍ୱରରେ କହିଲା ।

: କିନ୍ତୁ ମିଃ ଅଗରଓ୍ୱାଲା ଯେ ଫୋନ୍ କରିଥିଲେ ।

: ମୋ କଥା ମୁଁ ବୁଝିବି । ମୋ ପାଇଁ ଆପଣ ଏତେ ଚିନ୍ତା ନ କରିଲେ ଚଳିବ ।

: ଅଗରଓ୍ୱାଲାଙ୍କୁ ଆପଣ ଚିହ୍ନନ୍ତି ?

: ହଁ ଚିହ୍ନେ ।

: ତାଙ୍କର ପରିଚୟ ?

: ରାମସୁଭଗ ଅଗରଓ୍ୱାଲା ।

: ସେ କ'ଣ କରନ୍ତି ?

: ମୁଁ କହିପାରିବି ନାହିଁ ।

: ଭଦ୍ରଲୋକ ବିବାହିତ ?

: ମୋତେ କ୍ଷମା କରିବେ ସାର୍, ମୁଁ ତାଙ୍କର ଘରୋଇ ଜୀବନ ସହିତ ପରିଚିତ ନୁହେଁ ।

: ତା'ହେଲେ ରାତିରେ ସେ ଆପଣଙ୍କୁ ଡାକିଛନ୍ତି କାହିଁକି ?

: ସେ ବେଳେବେଳେ ଡାକନ୍ତି ।

: ଡାକନ୍ତି ମାନେ ?

: ହୁଁ, ମୋର ତାଙ୍କ ସହିତ ବନ୍ଧୁତ୍ୱ ଅଛି ।

: ଆପଣଙ୍କର ମିଃ ଅଗ୍ରୱାଲାଙ୍କ ସହିତ ବନ୍ଧୁତ୍ୱ ଅଛି ଅର୍ଥ ? ଆପଣ ତାଙ୍କ ପାରିବାରିକ ଜୀବନ ସମ୍ପର୍କରେ କିଛି ଜାଣନ୍ତି ନାହିଁ ?

: ନା, ମୁଁ ଜାଣେ ନାହିଁ ।

: ବେଶ୍, ମୁଁ ଆସୁଛି । ଆପଣ କିନ୍ତୁ ମୋ ସନ୍ଦେହ ଭିତରେ ରହିଗଲେ ।

ପୋଲିସ ଅଫିସର ରଣଜିତ୍ ତାଲୁକଦାର ସଦର୍ପ ଭଙ୍ଗୀରେ ଘରୁ ବାହାରି ଚାଲିଗଲେ । ମନେ ହେଲା, ଯେପରି ସେ ଗଡ଼ ଜିତି ଯାଇଛନ୍ତି । ମିସ୍ ଭାଟିଆ ତାଙ୍କର ଯିବା ପଥକୁ ଶୂନ୍ୟ ଦୃଷ୍ଟିରେ ଚାହିଁ ରହିଥିଲା ।



୧୭ ନମ୍ବର ପାର୍କ ଲେନ୍ ।

ପୋଲିସ ଅଫିସର ମିଃ ତାଲୁକଦାରଙ୍କ ଜିପ୍‌ଟା ଯାଇ ସେଠାରେ ଠିଆ ହେଲା ।

ତଳ ତାଲାଟା ମନେହେଲା ଅନ୍ଧକାର ।

କିନ୍ତୁ ଏକ ତାଲାର ଝରକା ଭିତରୁ, କାଚ ଖିଡ଼ିକିର ଆସ୍ତରଣ ଭେଦ କରି ଏକ ନୀଳ ଆଲୋକ ବାହାରିକୁ ଭାସି ଆସୁଥିଲା ।

ମିଷ୍ଟର ତାଲୁକଦାର ଜିପ୍‌ରୁ ଓହ୍ଲାଇ ତଳେ ଠିଆ ହେଲେ । କିଛି ସମୟ ଉପରକୁ ଚାହିଁଲେ । ସମଗ୍ର ୧୭ ନମ୍ବରଟାରେ ଯେପରି ନୀରବତା ଜମି ରହିଥିଲା ।

ରାସ୍ତାରେ ଆଖ ପାଖରେ କିଛି ଦୋକାନପତ୍ର ନାହିଁ । ମିଷ୍ଟର ତାଲୁକଦାର ଏଣେତେଣେ ଚାହିଁଲେ ।

ସେ ମନେ ମନେ ସନ୍ଦେହ କରୁଥିଲେ, ହୁଏତ ସଞ୍ଜୟ ଏହିଠାରେ ଲୁଚି ରହିଚି, ଅଥବା ଏହି ଗୃହର ମାଲିକ ସଞ୍ଜୟର ବର୍ତ୍ତମାନ ଅବସ୍ଥାନ ସମ୍ପର୍କରେ କିଛି ଜାଣନ୍ତି । ମିସ୍ ଭାଟିଆ ଘରେ ଟେଲିଫୋନ୍ ପାଇବା ପରଠାରୁ, ତାଲୁକଦାରଙ୍କ ମନରେ ସେହିପରି ଏକ ଧାରଣା ଦୃଢ଼ ହୋଇଥିଲା ।

କିନ୍ତୁ ଠିକଣା ଜାଗାକୁ ଆସି ମିଷ୍ଟର ତାଲୁକଦାର ଯେପରି ସୂତ୍ର ହରାଇ ବସିଲେ ।

୧୭ ନମ୍ବର ଘରଟାର ଯେ ଏକ ଧ୍ୟାନଗମ୍ଭୀର ମୂର୍ତ୍ତି !

ତଥାପି ମିଷ୍ଟର ତାଲୁକ୍‌ଦାର ଘର ଭିତରକୁ ପଶିଲେ । ଠିକ୍ ଦରଜା ପାଖରେ ଡାହାଣ ପାଖକୁ ଗୋଟାଏ ଛୋଟ ଘର । ଦରଜା ବନ୍ଦ, କିନ୍ତୁ ଘର ଭିତରେ ଏକ କ୍ଷୀଣ ଆଲୋକଶିଖା ଦେଖି, ତାଲୁକ୍‌ଦାର ସେଇ ଆଡ଼କୁ ଆଗେଇ ଗଲେ । ବୋଧହୁଏ ଏହି ଘରଟାରେ ଦରବାନ୍ ରୁହେ

ମିଷ୍ଟର ତାଲୁକ୍‌ଦାର କିନ୍ତୁ ଦେଖିଲେ ଶୂନ୍ୟ ଘର ।

ଗୋଟାଏ ଦଉଡ଼ିଆ ଖଟ ଭିତରେ ପଡ଼ିଛି । ଦୁଇ ଚାରିଖଣ୍ଡ କଂସାବାସନ ଏପାଖ ସେପାଖ ହୋଇ ଥୁଆ ହୋଇଛି, କିନ୍ତୁ ଘରର ମାଲିକ ଘରେ ନାହିଁ ।

ମିଷ୍ଟର ତାଲୁକଦାର ଫେରି ଆସିଲେ ।

ତଳତାଲାର ଘରଗୁଡ଼ିକ ସବୁ ବନ୍ଦ ଥିଲା ପରି ଜଣାପଡ଼ିଲା ।

ଏଥର ମିଷ୍ଟର ତାଲୁକଦାର ସିଧାସଳଖ ଉପରକୁ ଉଠିବା ପାଇଁ ଶିଡ଼ିରେ ପାଦେ ଦେଲେ ।

କେତୋଟି ପାହାଚ ଆଗେଇ ଯିବା ପରେ ଗୋଟିଏ ବନ୍ଦ ଦରଜା ପାଖରେ ସେ ଠିଆ ହୋଇ ପଡ଼ିଲେ ।

ଦରଜାରେ ଗୋଟିଏ ପ୍ଲାଷ୍ଟିକ ପ୍ଲେଟରେ ଲେଖାଥିଲା 'ମିସେସ୍ ଡି'ସୁଜା ।'

ମିଷ୍ଟର ତାଲୁକଦାର ଧୀର ସ୍ଥିର ଭାବରେ କେତୋଟି ମୁହୂର୍ତ୍ତ ଠିଆ ହେଲେ । ଦରଜାର ଡାହାଣ ପାଖକୁ ଗୋଟିଏ ସୁଇଚ୍, ବୋଧ ହୁଏ କଲିଂବେଲର । ତାଲୁକଦାର ଚିନ୍ତା କରୁଥିଲେ ସୁଇଚ୍‌ଟା ଚିପିବେ କି ନାହିଁ ।

ଶେଷରେ ସେ କଲିଂବେଲର ସୁଇଚ୍‌ଟାରେ ଆଙ୍ଗୁଳି ଦାବିଲେ ।

ଭିତରୁ ଏକ ଶାନ୍ତ ନାରୀକଣ୍ଠର ଶବ୍ଦ ଭାସି ଆସିଲା : କାମ୍‌ଇନ୍ ।

ମିଷ୍ଟର ତାଲୁକ୍‌ଦାର ଦରଜା ଠେଲି ଭିତରକୁ ପଶିଲେ ।

ଘର ଭିତରେ ଏକ ଶାନ୍ତ ପରିବେଶ ପୂରି ରହିଥିଲା । ଧୀର ନୀଳ ଆଲୋକର ଆସ୍ତରଣ, ରଜନୀଗନ୍ଧାର ମୃଦୁ ଗନ୍ଧ, ସୁସଜ୍ଜିତ କୋଠରି । କିନ୍ତୁ....

ମିଷ୍ଟର ତାଲୁକ୍‌ଦାର ଏଣେ ତେଣେ ଚାହୁଁଥିଲେ ।

ମୃଦୁ ହାସ୍ୟଧ୍ୱନିରେ ତାଙ୍କର ଧ୍ୟାନ ଭଙ୍ଗ ହେଲା ।

: ମୁଁ ଏଇଠି । ଆପଣ ଆହୁରି ଆଗେଇ ଆସନ୍ତୁ ।

ମିଷ୍ଟର ତାଲୁକ୍‌ଦାର ଆଗେଇ ଗଲେ । ବାଁ ପାଖରେ ଗୋଟିଏ କେବିନ୍‌ରେ ଏକ ଧୂମାୟିତ ପରିବେଶ ଭିତରେ ଜଣେ ଭଦ୍ରମହିଳା ବସିଛନ୍ତି ।

ସାମ୍‌ନାରେ ଏକ ଟି' ଟେବୁଲ ଉପରେ ପାନୀୟ ଓ ପାନପତ୍ର । ଆଉ କିଛି ଖାଦ୍ୟ ପଦାର୍ଥ ।

ଭଦ୍ର ମହିଳା ସିଗାରେଟ୍‌ଟା ଟାଣି ସାରି ସପ୍ରଶ୍ନ ଦୃଷ୍ଟିରେ ଚାହିଁ କହିଲେ : ମୁଁ ମିସେସ୍ ଡିସୁଜା । ସାଧାରଣତଃ ରାତି ଆଠଟା ପରେ ମୋ ଘରକୁ କୌଣସି ଆଗନ୍ତୁକ ଆସନ୍ତି ନାହିଁ । ଆପଣ ଯେ ଏକ ବ୍ୟତିକ୍ରମ, ଆପଣଙ୍କ ପୋଷାକ ଦେଖି ତାହା ବୁଝିପାରୁଛି । ଦୟାକରି....

: ଶୁଣନ୍ତୁ ମିସେସ୍ ଡି ସୁଜା । ମୁଁ ଆପଣଙ୍କୁ ମୋଟେ ବିରକ୍ତ କରିବାକୁ ଆସି ନାହିଁ । କିନ୍ତୁ ଜାଣନ୍ତି ତ ଆମ ଚାକିରି କଥା । ଆମେ ବାଧ୍ୟ ନ ହେଲେ....

: ଆପଣ ବସନ୍ତୁ । ଠିଆ ହୋଇ ରହିଲେ କାହିଁକି ?

: ନା, ମୁଁ ଚାଲିଯିବି । ଖାଲି ଗୋଟିଏ ପ୍ରଶ୍ନ ।

: ପଚାରନ୍ତୁ ।

: କିଛି ସମୟ ପୂର୍ବରୁ କୌଣସି ଏକ ସ୍ଥାନରେ ମୁଁ ଗୋଟାଏ ଫୋନ୍ ରିସିଭ୍ କଲି । ଅବଶ୍ୟ ଫୋନ୍‌ଟା ଥିଲା ମିସ୍ ଭାଟିଆଙ୍କର । ଫୋନ୍ କରିଥିଲେ ମିଷ୍ଟର ଅଗରୱାଲ । ମିସ୍ ଭାଟିଆଙ୍କୁ ଏହିଠାକୁ ଆସିବାକୁ କହିଲେ ।

: ତା'ପରେ ?

ମିସେସ୍ ଡି'ସୁଜା ଆଉ ଗୋଟାଏ ସିଗାରେଟ୍‌ରେ ଅଗ୍ନି ସଂଯୋଗ କରୁ କରୁ ପଚାରିଲେ ।

: ନା, ଆଉ କିଛି ନୁହେଁ, ମୁଁ ଖାଲି ଜାଣିବାକୁ ଚାହେଁ, ମିସ୍ ଭାଟିଆ ଆଉ ମିଷ୍ଟର ଅଗରୱାଲାଙ୍କ ସହିତ ଆପଣଙ୍କର ପରିଚୟ ଅଛି କି ?

ମିସେସ୍ ଡି' ସୁଜା ପାନପାତ୍ରରେ ଆଉ କିଛି ପାନୀୟ ଢାଳି ଓ ଏକ ଶୂନ୍ୟ

ଗ୍ଲାସରେ ପାନୀୟ ପୂର୍ଣ୍ଣ କରି ମିଷ୍ଟର ତାଲୁକଦାରଙ୍କ ମୁହଁକୁ ସ୍ନିଗ୍ଧ ଆଖିରେ ଚାହିଁ ଶାନ୍ତ ସ୍ୱରରେ କହିଲେ : ଆପଣ ବସନ୍ତୁ । ବସନ୍ତୁ ମିଷ୍ଟର...

: ତାଲୁକ୍‌ଦାର । ମୋ ନାଁ ରଣଜିତ୍ ତାଲୁକ୍‌ଦାର । ମିଷ୍ଟର ତାଲୁକ୍‌ଦାର ଏକ ଶୂନ୍ୟ ଚେୟାର ଅଧିକାର କରି ବସୁ ବସୁ କହିଲେ ।

ମିସେସ୍ ଡି' ସୁଜା ତାଙ୍କ ଆଡ଼କୁ ସେହି ପୂର୍ଣ୍ଣପାତ୍ରଟି ବଢ଼ାଇ ଦେଇ କହିଲେ : ଆପଣ ମିଷ୍ଟର ଅଗରୱାଲା ଆଉ ମିସ୍ ଭାଟିଆଙ୍କ କଥା ମୋତେ ପଚାରୁଛନ୍ତି । କିନ୍ତୁ କିଏ ସେମାନେ ? ମୋ ସହିତ ତାଙ୍କର ସମ୍ପର୍କ କ'ଣ ?

: ନୋ ଥ୍ୟାଙ୍କସ୍ । ମିଷ୍ଟର ତାଲୁକ୍‌ଦାର ପାନପାତ୍ରଟି ଫେରାଇ ଦେଇ କହିଲେ : ମିସ୍ ଭାଟିଆ ଭାରତ ମେସିନାରୀ କମ୍ପାନୀର ରିସେପ୍‌ନିଷ୍ଟ, କିନ୍ତୁ ମିଷ୍ଟର ଅଗରୱାଲାଙ୍କର କୌଣସି ପରିଚୟ ମୁଁ ଜାଣିନାହିଁ । କେବଳ ଫୋନ୍‌ରେ ତାଙ୍କର କଣ୍ଠସ୍ୱର ଶୁଣିଛି ।

ଏଥର ମିସେସ୍ ଡି' ସୁଜା ଟିକିଏ ସଜାଡ଼ି ହୋଇ ବସିଲେ ଏବଂ ସିଗାରେଟ ଟିଣଟି ଉଠାଇ ତାଲୁକ୍‌ଦାରଙ୍କ ଆଡ଼କୁ ବଢ଼ାଇ କହିଲେ : ଏମାନେ ମୋର କେହି ପରିଚିତ ନୁହଁନ୍ତି । ତେବେ କେବେ ଯଦି କୌଣସି ବିଶେଷ ସ୍ଥାନରେ ସେମାନଙ୍କ ସହିତ ଭେଟ ହୋଇଥିବ କହିପାରିବି ନାହିଁ । ଦେଖିଲେ ହୁଏତ ଚିହ୍ନିପାରିବି । ଏହାପରେ ଆଉ କିଛି ଜାଣିବାକୁ ଚାହାନ୍ତି ?

: ନା ତେବେ ଫୋନ୍‌ରେ ମିଷ୍ଟର ଅଗରୱାଲା ଆପଣଙ୍କ ଠିକଣା କହିଲେ । ଆଚ୍ଛା, ଏ କୋଠାରେ ତଳେ ଆଉ କିଏ ରୁହନ୍ତି ?

: ନା, ଆଉ କେହି ନୁହେଁ, ଏଇ ସମଗ୍ର କୋଠାଟିରେ ମୁଁ ଏକା ରୁହେ । ଆଉ ଗେଟ୍‌ରେ ରୁହେ ମୋର ଦରୱାନ୍ ।

: ତା' ହେଲେ ମୁଁ ଆସୁଛି । ଅସମୟରେ ଆସି ଆପଣଙ୍କୁ ବିରକ୍ତ କରିଗଲି । କ୍ଷମା କରିବେ । ମିଷ୍ଟର ତାଲୁକଦାର ଉଠି ଆଗେଇ ଯାଉଥିଲେ ।

ହଠାତ୍ କେଉଁଠୁ ଟେଲିଫୋନ୍‌ଟା ବାଜି ଉଠିଲା ।

ମିଷ୍ଟର ତାଲୁକ୍‌ଦାର ଅଟକି ଗଲେ ।

ମିସେସ୍ ଡି' ସୁଜାଙ୍କ ମୁହଁରେ ବିରକ୍ତିର ଚିହ୍ନ ଫୁଟି ଉଠିଲା । ସେ ଉଠି ଠିଆ ହେଉଥିଲେ, କିନ୍ତୁ ସାମ୍‌ନାରେ ତାଲୁକ୍‌ଦାରଙ୍କୁ ଦେଖି କହିଲେ : ପ୍ଲିଜ୍ ମିଷ୍ଟର ତାଲୁକ୍‌ଦାର । ଫୋନ୍‌ଟା ଟିକିଏ ଧରି କହି ଦିଅନ୍ତୁ ମିସେସ୍ ଡି'ସୁଜା ଶୋଇପଡ଼ିଲେଣି । ଅସମୟରେ ଏଇ ସବୁ ଅନିୟମିତ ବିରକ୍ତି ମୋତେ ମୋଟେ ଭଲ ଲାଗେ ନାହିଁ ।

ମିଷ୍ଟର ତାଲୁକଦାର ପାଖ ଘରକୁ ଆଗେଇ ଯାଇ ଟେଲିଫୋନ୍‌ର ରିସିଭରଟା ଉଠାଇ ନେଇ କାନରେ ଦେଲେ । ଅତ୍ୟନ୍ତ ଧୀର ସ୍ୱରରେ କହିଲେ : ହ୍ୟାଲୋ !

ଅପରପ୍ରାନ୍ତରୁ ଏକ ନାରୀକଣ୍ଠର ଉତ୍ତର ଆସିଲା : ଆପଣଙ୍କ କାମ ସରିଲାଣି ?

: ମୋ କାମ ମାନେ ? ଆପଣ କାହାକୁ ଖୋଜୁଛନ୍ତି ?

: ଆପଣଙ୍କୁ ।

: ମୋତେ ମାନେ ? ମିସେସ୍ ଡି' ସୁଜା....

: ନା ନା, ମିସେସ୍ ଡି' ସୁଜା ନୁହଁନ୍ତି, ମିଷ୍ଟର ତାଲୁକଦାରଙ୍କ ସହିତ ମୋର କାମ ଅଛି । ଆପଣ ମିଷ୍ଟର ତାଲୁକ୍‌ଦାର ତ !

: ହଁ, ମୁଁ ମିଷ୍ଟର ତାଲୁକ୍‌ଦାର । କିନ୍ତୁ ଆପଣ କିଏ କହୁଛନ୍ତି ?

: ମୁଁ ବେବି କହୁଛି । ମୃତ ଚନ୍ଦ୍ରଶେଖର ବହିଦାରଙ୍କ କନ୍ୟା ? ଆପଣ ଯଥା ସମ୍ଭବ ଶୀଘ୍ର ଆମ ଘରକୁ ଚାଲିଆସନ୍ତୁ ।

: କିନ୍ତୁ ଆପଣ କିପରି ଜାଣିଲେ ଯେ ମୁଁ ମିସେସ୍ ଡ଼ି' ସୁଜାଙ୍କ ଘରକୁ ଆସିଛି ।

: ସେ ସମ୍ବନ୍ଧରେ ପରେ ସବୁ କଥା ଜାଣିଲେ ଚଳିବ । ବର୍ତ୍ତମାନ ଆପଣ ଶୀଘ୍ର ଆମ ଘରକୁ ଚାଲି ଆସନ୍ତୁ । ମୁଁ ଖୁବ୍ ବିପଦରେ ପଡ଼ିଛି ।

: ଆଚ୍ଛା, ଆଚ୍ଛା ।

ମିଷ୍ଟର ତାଲୁକ୍‌ଦାର ଟେଲିଫୋନ୍ ରିସିଭରଟା ରଖିବାକୁ ଯାଇ କାହା ହାତର ସ୍ପର୍ଶ ପାଇଲେ । ପାଖରେ ଠିଆ ହୋଇଛନ୍ତି ମିସେସ୍ ଡି' ସୁଜା ।

: ଆପଣ ଉଠି ଆସିଲେ ଯେ !

: ମୋର ମନେ ହେଲା, ଫୋନ୍‌ଟା ଯେପରି ଖୁବ୍ ଜରୁରୀ । କିନ୍ତୁ ବର୍ତ୍ତମାନ ଦେଖୁଛି, ଫୋନ୍‌ଟା...

ମିସେସ୍ ଡି' ସୁଜା କଥା ଅସମାପ୍ତ ରଖି ସାମାନ୍ୟ ହସିଲେ ।

: ଆପଣଙ୍କ ଅନୁମାନ ସତ୍ୟ ମିସେସ୍ ଡି' ସୁଜା । ଫୋନ୍‌ଟା ଅତ୍ୟନ୍ତ ଜରୁରୀ, କିନ୍ତୁ ଆପଣଙ୍କର ନୁହେଁ, ମୋର ।

: ହୁଁ । ଆପଣ କ'ଣ ବର୍ତ୍ତମାନ ଚାଲିଯିବେ ମିଷ୍ଟର ତାଲୁକ୍‌ଦାର ?

: ହଁ, ମୋତେ ଏଇ ମୁହୂର୍ତ୍ତରେ ଚାଲିଯିବାକୁ ହେବ । ବେବିର ଖୁବ୍ ବିପଦ ।

: କିନ୍ତୁ ଜାଣନ୍ତି ମିଷ୍ଟର ତାଲୁକ୍‌ଦାର, ବର୍ତ୍ତମାନ ଥ୍ରୀ ଏକ୍ସର ବୋତଲଟା ଖୋଲିବାକୁ ଯାଇ ମୋର ଜଣେ ଲୋକ ମନେ ପଡ଼ିଲା । ତା' ନାଁ ଯେପରି ମୋତେ ସେ କହିଥିଲା ସମ୍ ଅଗରୱାଲା, କିନ୍ତୁ କି ଅଗରୱାଲା ଠିକ୍ ମନେ ପଡୁନାହିଁ ।

ମିଷ୍ଟର ତାଲୁକଦାରଙ୍କୁ ଏଥର କାହିଁକି ମିସେସ୍ ଡି' ସୁଜାଙ୍କର କଣ୍ଠସ୍ୱରଟା କିପରି ଅସ୍ୱାଭାବିକ ଶୁଣାଯାଉଥିଲା । ତଥାପି ସେ କହିଲେ : ଆପଣ ମିଷ୍ଟର ଅଗରୱାଲାଙ୍କର ପୂରା ନାଁଟା ମନେ ପକାନ୍ତୁ । ମୁଁ କାଲି ସକାଳେ ଆସି ବୁଝିଯିବି ।

: କିନ୍ତୁ କ'ଣ ଜାଣନ୍ତି ମିଷ୍ଟର ତାଲୁକଦାର । ମୋ ଘରକୁ କୌଣସି ଅତିଥି ଆସି ଖାଲି ମୁହଁରେ ଫେରିଯାଉ, ଏହା ମୁଁ ଚାହେଁନା । ଆପଣ ମୋ ଡ୍ରିଙ୍କକୁ ଅନର କଲେ ନାହିଁ, ସିଗାରେଟ ବି ଟାଣିଲେ ନାହିଁ । ମୁଁ ଭାବୁଛି ମିଷ୍ଟର ଅଗରୱାଲାଙ୍କ ସହିତ ଆପଣଙ୍କର ପରିଚୟଟା କରାଇଦେଲେ... କିନ୍ତୁ କେଉଁ ଅଗରୱାଲାଙ୍କୁ ଆପଣ ଖୋଜୁଛନ୍ତି ?

ମିଷ୍ଟର ତାଲୁକଦାର ଲକ୍ଷ୍ୟ କଲେ ମିସେସ୍ ଡି'ସୁଜା ଧୀରେ ଧୀରେ ଅପ୍ରକୃତିସ୍ଥ ହୋଇ ଆସୁଛନ୍ତି । ଆଉ ଏଠାରେ ବେଶି ସମୟ ରହିବା ଆଦୌ ଉଚିତ ନୁହେଁ । କିନ୍ତୁ ସାମ୍‌ନାରେ ଯେ ତାଙ୍କର ପଥରୋଧ କରି ମିସେସ୍ ଡି'ସୁଜା ଠିଆ ହୋଇଛନ୍ତି ।

: ମୋତେ ଆଜି ବିଦାୟ ଦିଅନ୍ତୁ ମିସେସ୍ ଡି' ସୁଜା । ଖୁବ୍ ଜରୁରୀ କାମ ଅଛି । ମୁଁ ପୁଣି କାଲି ଆସି ଆପଣଙ୍କଠାରୁ ମିଷ୍ଟର ଅଗ୍ରୱାଲଙ୍କ ପରିଚିତି ସଂଗ୍ରହ କରିବି ।

ମିସେସ୍ ଡି' ସୁଜା ଯେପରି ମିଷ୍ଟର ତାଲୁକ୍‌ଦାରଙ୍କର କୌଣସି କଥା ଶୁଣିପାରୁ ନ ଥିଲେ । ସେ ହସି ହସି କହିଲେ : ଆପଣ ଆସନ୍ତୁ । ଆପଣ ଯେଉଁ ଅଗରୱାଲାଙ୍କୁ ଖୋଜୁଛନ୍ତି ମୁଁ ତାଙ୍କୁ ଜାଣେ । ତା' ନାଁ ରାମସୁଭଗ ଅଗରୱାଲା ତ ? ସେ ମୋର ପରିଚିତ, ବିଶେଷ ପରିଚିତ ।

ମିଷ୍ଟର ତାଲୁକ୍‌ଦାର ରାମସୁଭଗ ଅଗରୱାଲାଙ୍କ ନାମ ଶୁଣି ଯେପରି ସଚେତନ ହୋଇ ଉଠିଲେ । ବର୍ତ୍ତମାନର ଏହି ଅସ୍ୱସ୍ତିକର ପରିସ୍ଥିତି ଭିତରେ ସେ ଯେପରି ସ୍ୱସ୍ତି ଖୋଜି ପାଇଲେ । କହିଲେ : ଆପଣ ରାମସୁଭଗ ଅଗରୱାଲାଙ୍କୁ ଚିହ୍ନନ୍ତି ?

: ଚିହ୍ନେ ବୋଲି କହୁଛି ତ ଆପଣଙ୍କୁ ।

: ସେ କେଉଁଠି ଥାଆନ୍ତି ?

: ଜାଣି ନାହିଁ ।

: ତେବେ ?

: ତାଙ୍କ ସହିତ ମୋର ବିଲିୟାର୍ଡ଼ ଟେବ୍ଲରେ ବେଳେ ବେଳେ ଦେଖାହୁଏ ।

: ତାଙ୍କ ସମ୍ବନ୍ଧରେ ଆଉ ଅଧିକ କିଛି ଜାଣନ୍ତି ?

: ଜାଣେ । ସେ ଧନୀ ଲୋକ । ବିରାଟ ବ୍ୟବସାୟୀ । ବେଶ୍ ଅମାୟିକ ଆଉ ବନ୍ଧୁବତ୍ସଳ ।

: ତାଙ୍କ ସହିତ ଆପଣଙ୍କର ସମ୍ପନ୍ଧ କ'ଣ ?

ମିସେସ୍ ଡି' ସୁଜା ହସିଲେ । ଜଡ଼ିତ କଣ୍ଠରେ କହିଲେ : ବନ୍ଧୁତ୍ୱର ।

ମିଷ୍ଟର ତାଲୁକଦାର ଲକ୍ଷ୍ୟ କରୁଥିଲେ ମିସେସ୍ ଡି' ସୁଜା ଧୀରେ ଧୀରେ ନିଜତ୍ୱ ହରାଉଛନ୍ତି ଆଉ ତାଙ୍କ ଦେହ ମୁହଁରେ କିପରି ଏକ କାମନାର ବହ୍ନି ଫୁଟି ଉଠୁଛି । ସେ କହିଲେ ଅଶେଷ ଧନ୍ୟବାଦ ମିସେସ୍ ଡି' ସୁଜା । ଆପଣଙ୍କଠାରୁ ମିଷ୍ଟର ଅଗରୱାଲାଙ୍କର ସମ୍ବାଦ ପାଇ ବିଶେଷ ଖୁସି ହେଲି ।

: କିନ୍ତୁ ମିଷ୍ଟର ତାଲୁକ୍‌ଦାର... ମିସେସ୍ ଡି' ସୁଜା କିପରି ଏକ ଅସ୍ୱାଭାବିକ କଣ୍ଠରେ ତାଲୁକ୍‌ଦାରଙ୍କର ଗୋଟାଏ ହାତ ଧରି ପକାଇଲେ ।

: କ୍ଷମା କରିବେ ମିସେସ୍ ଡି' ସୁଜା । ମୋ ହାତରେ ବର୍ତ୍ତମାନ ଅନେକ କାମ । ଆମ ପୋଲିସ ଡିପାର୍ଟମେଣ୍ଟର ଦାୟିତ୍ୱ କଥା ଆପଣ ଜାଣନ୍ତି ନାହିଁ, ବରଂ ମୁଁ କାଲି ଆସିବି ।

ମିଷ୍ଟର ତାଲୁକ୍‌ଦାର ଏକ ପ୍ରକାର ମିସେସ୍ ଡି' ସୁଜାଙ୍କ ହାତରୁ ନିଜ ହାତଟା ଟାଣି ନେଇ ଛୁଟି ପଳାଇଗଲେ ।

ମିସେସ୍ ଡି' ସୁଜା ସେହିପରି ଜଡ଼ିତ କଣ୍ଠରେ କହିଉଠିଲେ : ପୋଲିସ ।

ତା'ପରେ ହୋ ହୋ ହୋଇ ହସି ଉଠିଲେ ।



ମିଷ୍ଟର ତାଲୁକଦାର ଚନ୍ଦ୍ରଶେଖର ବହିଦାରଙ୍କ ଘରେ ପହଞ୍ଚି ଆଶ୍ଚର୍ଯ୍ୟ ହୋଇଗଲେ ।

ଘରର ମେନ୍‌ଗେଟ୍‌ରେ ତାଲା ପଡ଼ିଛି ।

ରାତିର ନିଃସ୍ତବ୍ଧତା ଭିତରେ କୋଠାଟା ଯେପରି ଘୁମେଇ ପଡ଼ିଛି ।

ମିଷ୍ଟର ତାଲୁକ୍‌ଦାର ଘଡ଼ି ଦେଖିଲେ । ସମୟ ସାଢ଼େ ଦଶଟାରୁ ଅଳ୍ପ ଟିକିଏ ବେଶି ହୋଇଛି । ଏହାରି ଭିତରେ ସମସ୍ତେ ଶୋଇ ପଡ଼ିଲେଣି ?

ତା' ଛଡ଼ା ବେବି ତାଙ୍କୁ କିଛି ସମୟ ଆଗରୁ ଫୋନ୍ କରିଥିଲା । ଭଦ୍ରତା ଦୃଷ୍ଟିରୁ ତା'ର ତ ଟିକିଏ ଅପେକ୍ଷା କରିବାର କଥା ।

ମିଷ୍ଟର ତାଲୁକଦାର ଠିଆ ହୋଇ ସେଇ କୋଠା ଆଡ଼େ ଚାହିଁଥିଲେ । ଏ କ୍ଷେତ୍ରରେ ତାଙ୍କର କ'ଣ କରିବା ଉଚିତ । କାହାକୁ ଡାକିବେ ନା ଫେରିଯିବେ ?

ମିଷ୍ଟର ତାଲୁକଦାର ଦେଖିଲେ ସେଇ ଧ୍ୟାନମଗ୍ନ ଘରଟାର ହଠାତ୍ ଯେପରି ଧ୍ୟାନ ଭଙ୍ଗ ହେଲା । ଗୋଟାଏ ରୁମ୍ ଭିତରେ ଆଲୋକ ଜଳି ଉଠିଲା । ତା'ପରେ ଖୋଲିଗଲା କାଚ ଝରକା । ତାଲୁକ୍‌ଦାର ଲକ୍ଷ୍ୟ କଲେ, ସେଇ ଝରକା ପାଖରେ କିଏ ଜଣେ ଠିଆ ହୋଇ ହାତଠାରି କାହାକୁ ଡାକୁଛି । ଲୋକଟି ସ୍ପଷ୍ଟ ନ ହେଲେ ମଧ୍ୟ ସେ ଯେ ଜଣେ ନାରୀ, ତାହା ବୁଝାଯାଉଥିଲା ।

ମିଷ୍ଟର ତାଲୁକଦାର ସେଇଆଡ଼େ ଚାହିଁ ରହିଥିଲେ ।

କିଏ କାହାକୁ ଡାକୁଛି ?

ପରିଷ୍କାର ଭାବରେ ସବୁ କଥା ବୁଝିପାରିବା ପୂର୍ବରୁ ସେଇ ନାରୀମୂର୍ତ୍ତିଟି ଅଦୃଶ୍ୟ ହୋଇଗଲା । ଝରକା ବନ୍ଦ ହୋଇଗଲା ଏବଂ ଆଲୋକ ମଧ୍ୟ ଲିଭିଗଲା ।

ଏଥର ମିଷ୍ଟର ତାଲୁକ୍‌ଦାର ଠିକ୍ କଲେ, ଆଉ ଅପେକ୍ଷା କରିବା ଉଚିତ ନୁହେଁ । କୋଠା ଭିତରେ ଗୋଟାଏ କିଛି ଘଟଣା ଘଟିବାକୁ ଯାଉଛି ।

ଲୁହା ଦରଜା ଆଗରେ ଗୋଟାଏ ବିରାଟ ଲନ୍ । ଲନ୍ ଶେଷରେ ଦୋତାଲାକୋଠା । କିନ୍ତୁ ଏହି ଲୁହା ଦରଜା ଡାହାଣ ପାଖକୁ ଗୋଟିଏ ଛୋଟ ଘର ଅଛି । ସେଇ ଘରେ ଦରବାନ୍ ରୁହେ ।

ମିଷ୍ଟର ତାଲୁକ୍‌ଦାର ଚିତ୍କାର କରି ଦରବାନ୍‌କୁ ଡାକିଲେ ।

କିନ୍ତୁ ଦରବାନ୍‌ଠାରୁ କୌଣସି ଉତ୍ତର ପାଇବା ପୂର୍ବରୁ ପୁଣି କୋଠାର ଲାଇଟ୍‌ଟା ଜଳି ଉଠିଲା ଏବଂ ସଙ୍ଗେସଙ୍ଗେ ଜଣେ ମହିଳାଙ୍କର କଣ୍ଠସ୍ୱର ଶୁଣାଗଲା ।

ଆଉ ମୁହୂର୍ତ୍ତକ ପରେ ଦେଖାଗଲା, ସେ ଆଗେଇ ଆସୁଛନ୍ତି । ତାଙ୍କ ପଛେ ପଛେ ଦୁଇଜଣ କର୍ମଚାରୀ ।

ସେମାନେ ଆସି ଲୁହା ଦରଜାର ଚାବି ଖୋଲିଦେଲେ ।

ସାମନାରେ ବେବି ।

ରଣଜିତ୍ ତାଲୁକ୍‌ଦାର ପଚାରିଲେ : ହଠାତ୍ ଏତେ ରାତିରେ ମୋତେ ଫୋନ୍ କରିଲେ ଯେ ?

: ଫୋନ୍ ? ବେବି ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲା ।

: ଆପଣ ମୋତେ ଫୋନ୍ କରି ନାହାନ୍ତି ?

: ନା ତ !

: ଆଉ କିପରି ଜାଣିଲେ ମୁଁ ଆସିଛି ବୋଲି ?

: ନା, ମୁଁ କିଛି ଜାଣି ନାହିଁ । ମୁଁ ଟିକିଏ ବାହାରକୁ ଯିବା ପାଇଁ ବାହାରିଛି । ଦେଖୁଛି, ଆପଣ ଆସି ଠିଆ ହୋଇଛନ୍ତି ।

: ଏତେ ରାତିରେ ଆପଣ ବାହାରକୁ ବାହାରିଛନ୍ତି, କୁଆଡ଼େ ଯିବେ ?

: ଗୋଟିଏ ଜରୁରୀ କାମରେ ।

ସେଇ ମୂହୂର୍ତ୍ତରେ ଲନ୍ ଭିତରେ ଗୋଟାଏ ଗାଡ଼ି ଆସି ସେମାନଙ୍କ ପାଖରେ ଠିଆ ହେଲା ।

ମିଷ୍ଟର ତାଲୁକ୍‌ଦାରଙ୍କ ସାମ୍‌ନାରେ ବେବିର କାର୍‌ଟି ବାହାରି ଚାଲିଗଲା । ମିଷ୍ଟର ତାଲୁକ୍‌ଦାର କିଛି ସମୟ ସେଇଆଡ଼େ ସ୍ତବ୍‌ଧ ହୋଇ ଅନାଇ ରହିଲେ ।

ଚାକରଟି ଲୁହାଗେଟ୍‌ରେ ତାଲା ପକାଉଥିଲା ।

ତାଲୁକ୍‌ଦାର ତାକୁ ଇଙ୍ଗିତରେ ଡାକିଲେ । କହିଲେ, ଏଠି ତମେ କେତେ ବର୍ଷ ହେବ କାମ କରୁଛ ?

ଲୋକଟି ଦେହମୁହଁରେ କୌଣସି ଲକ୍ଷଣ ପରିଲକ୍ଷିତ ହେଲା ନାହିଁ । ସେ ତାଲୁକ୍‌ଦାରଙ୍କ କଥା ନ ଶୁଣି ପାରିଥିବା ପରି ନିଜ କାମରେ ମନ ଦେଇଥିଲା ।

ମିଷ୍ଟର ତାଲୁକ୍‌ଦାର ଗେଟ୍ ପାଖକୁ ଆଗେଇ ଗଲେ ।

କହିଲେ, ତମେ ମୋ କଥା ଶୁଣିପାରୁ ନାହଁ ?

ଲୋକଟି ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

: ତା' ହେଲେ ମୋ କଥାର ଉତ୍ତର ଦେଉ ନାହଁ ଯେ !

ଲୋକଟିର କାମ ଶେଷ ହୋଇଥିଲା । ସେ ଧୀରେ ଧୀରେ ଲନ୍ ଭିତରେ ଦୂରେଇ ଯିବାକୁ ଲାଗିଲା ।

ମିଷ୍ଟର ତାଲୁକ୍‌ଦାର ଲୁହା ଗେଟ୍ ପାଖରେ ସ୍ତବ୍‌ଧ ହୋଇ ଲୋକଟିର ଗତିପଥକୁ ଅନାଇ ରହିଥିଲେ ?

ସେ ଚାଲିଗଲା । ବେବି ମଧ୍ୟ ଚାଲିଗଲା । ଆଉ ସେ କାହିଁକି ଏଠାରେ ଅଯଥାରେ ଠିଆ ହୋଇ ନଷ୍ଟ କରିବେ ।

କିନ୍ତୁ ଆଶ୍ଚର୍ଯ୍ୟ ଲାଗୁଥିଲା । କିଏ ତାଙ୍କୁ ଟେଲିଫୋନ୍‌ରେ ବାରମ୍ବାର ପ୍ରତାରଣା

କରୁଛି ? ଲୋକଟା ଯେ ତାଲୁକ୍‌ଦାରଙ୍କ ଗତିବିଧି ଉପରେ ସଜାଗ ଦୃଷ୍ଟି ରଖିଛି, ଏହା ଅସ୍ୱୀକାର କରି ହେବ ନାହିଁ ।

କିନ୍ତୁ କିଏ ସେଇ ଲୋକ, କ'ଣ ତା'ର ଉଦ୍ଦେଶ୍ୟ ?

ମିଷ୍ଟର ତାଲୁକ୍‌ଦାର କ୍ଳାନ୍ତ ପାଦ ଓ ଅବସାଦଗ୍ରସ୍ତ ମନ ନେଇ ଗାଡ଼ିରେ ଉଠିଲେ ।

ଏ ସମସ୍ୟାର ସମାଧାନ କରିବାକୁ ହେବ ।

ଗାଡ଼ି ତାଙ୍କର ଥାନା ଅଭିମୁଖେ ଫେରି ଯାଉଥିଲା । ଥାନାରେ ପହଞ୍ଚିବା କ୍ଷଣି କନେଷ୍ଟବଳ ଛୁଟି ଆସି କହିଲା, ଆପଣଙ୍କର ଫୋନ୍ ଆସିଛି ।

ମିଷ୍ଟର ତାଲୁକ୍‌ଦାର କୌଣସି କଥା ନ କହି ସିଧା ଫୋନ୍ ପାଖକୁ ଆଗେଇ ଗଲେ । ରିସିଭରଟା କାନରେ ଦେଇ କହିଲେ, ହ୍ୟାଲୋ, ଇନ୍ସପେକ୍ଟର ତାଲୁକଦାର କହୁଛି ।

ଅପର ପ୍ରାନ୍ତରୁ ଏକ ଭୟାର୍ତ୍ତ ନାରୀକଣ୍ଠର ସ୍ୱର ଭାସି ଉଠିଲା- ମୁଁ ମିସ୍ ଭାଟିଆ କହୁଛି । ମୁଁ ଭୀଷଣ ଅସୁବିଧାରେ ପଡ଼ି ଯାଇଛି ସାର୍ । ଫୋନ୍‌ରେ କିଛି କହିବା ସମ୍ଭବ ହେଉ ନାହିଁ । ମୋର ଭାରି ବିପଦ, ଆପଣ ଟିକିଏ ଆସିପାରିବେ ?

ମିଷ୍ଟର ତାଲୁକ୍‌ଦାର କୌଣସି ଉତ୍ତର ଦେବା ପୂର୍ବରୁ ଅପର ପ୍ରାନ୍ତରୁ ଯେପରି ସେ ଆର୍ତ୍ତ ଚିତ୍କାର ଶୁଣିଲେ ଏବଂ ତା' ପରେ ଟେଲିଫୋନ୍ ଲାଇନ୍‌ଟା କଟିଗଲା ।

ମିଷ୍ଟର ତାଲୁକ୍‌ଦାର ବିବ୍ରତ ହୋଇ ରିସିଭରଟା ଯଥା ସ୍ଥାନରେ ରଖିଦେଇ ନୀରବରେ, ଭାରି ଭାରି ପାଦ ପକାଇ ନିଜର ଆସନରେ ଯାଇ ବସିଲେ ।

ଘଟଣାଟା କିଛି ବୁଝି ହେଲା ନାହିଁ । ମିସ୍ ଭାଟିଆର ପୁଣି କି ବିପଦ ପଡ଼ିଲା ?

ମିଷ୍ଟର ତାଲୁକ୍‌ଦାରଙ୍କ ଟେବୁଲ ଉପରେ ଦୁଇ ଚାରିଟା ଫାଇଲ୍ ଥୁଆ ହୋଇଥିଲା । ସେଗୁଡ଼ିକ ଗୋଟିଗୋଟି କରି ଉଠାଇ, ତହିଁରେ ଗୋଟିଏ ଗୋଟିଏ ନୋଟ୍ ଦେଇ ପୁଣି ରଖିଦେଲେ ।

ପୁଣି ଉଠି ଠିଆ ହେଲେ ।

ମିସ୍ ଭାଟିଆର ତା' ହେଲେ କ'ଣ ହେଲା ? ତାଲୁକ୍‌ଦାର ଯେତେବେଳେ ମିସ୍ ଭାଟିଆ ସହିତ ଦେଖା କରିଥିଲେ, ସେତେବେଳେ ମନେ ହୋଇଥିଲା, ଅନ୍ତର ମନରେ ସେ ଖୁବ୍ ଶକ୍ତ । କିନ୍ତୁ କେଇ ଘଣ୍ଟା ବ୍ୟବଧାନରେ ଏ କ'ଣ ହେଲା ? ଫୋନ୍‌ଟା ଅନ୍ୟାନ୍ୟ ଫୋନ୍ ପରି ଭିତ୍ତିହୀନ ନୁହେଁ ତ ?

ତଥାପି ମିଷ୍ଟର ତାଲୁକ୍‌ଦାର ମନ ସ୍ଥିର କଲେ । ଯାହା ହେଉ, ଥରେ ସେ ମିସ୍ ଭାଟିଆ ଘରକୁ ଯିବେ ।

ବାହାରେ ଯାଇ ଜିପ୍‌ରେ ଉଠିଲେ ।

ଦୁଇ ଜଣ କନେଷ୍ଟବଲ ନେଲେ ସଙ୍ଗରେ ।

ଦରଜାରେ ନକ୍ କରିବା ସଙ୍ଗେସଙ୍ଗେ ଭିତରୁ ଗୋଟାଏ କରୁଣ କଣ୍ଠସ୍ୱର ଶୁଣାଗଲା : କିଏ ?

: ଇନ୍‌ସପେକ୍ଟର ତାଲୁକ୍‌ଦାର ।

ସଙ୍ଗେସଙ୍ଗେ ଦରଜା ଖୋଲିଗଲା ।

ଭିତରେ ଭୀତଚକିତ ମିସ୍ ଭାଟିଆ ଗୋଟାପଣ ଥରୁଥିଲା । ମିଷ୍ଟର ତାଲୁକ୍‌ଦାରଙ୍କୁ ଦେଖି ତା'ର ଯେପରି ପ୍ରାଣ ସଞ୍ଚାର ହେଲା । ସେ କହିଲା, ଆପଣ ମୋତେ ରକ୍ଷା କରନ୍ତୁ ମିଷ୍ଟର ତାଲୁକ୍‌ଦାର ।

: କ'ଣ ହେଲା ? କୌଣସି ଦୁର୍ଘଟଣା...

: ହଁ ସେଇପରି । ମୋର ପ୍ରାଣହାନିର ଆଶଙ୍କା । ଆପଣ ମୋତେ ଏଠାରୁ ନେଇ ଚାଲନ୍ତୁ । ଆଉ ମୁହୂର୍ତ୍ତେ ମୁଁ ଏ ଫ୍ଲାଟରେ ରହିବି ନାହିଁ ।

: କିନ୍ତୁ ହେଲା କ'ଣ ?

: ସିଏ ମୋତେ ଫୋନ୍ କରିଥିଲା । ଫୋନ୍‌ରେ ମୋତେ ଶାସନ କରି କହିଲା, ଦେଖ ମିସ୍ ଭାଟିଆ, ତମେ ଯଦି ମୋ କଥାମାନି ନ ଚଳିବ ତା' ହେଲେ ତମେ ବିପଦରେ ପଡ଼ିବ ।

: କିନ୍ତୁ କିଏ ସେ ? ଇନ୍ସିପେକ୍ଟର ତାଲୁକ୍‌ଦାର ପଚାରିଲେ ।

: ଶୁଣନ୍ତୁ, ସେ ପୁଣି କହିଲା, ଚନ୍ଦ୍ରଶେଖର ବହିଦାରଙ୍କ ହତ୍ୟା ରହସ୍ୟ ସମ୍ବନ୍ଧରେ ତମେ ଯାହା ଜାଣିଛ, ପୋଲିସକୁ କିଛି କହିବ ନାହିଁ । ଯଦି ହତ୍ୟା ସମ୍ବନ୍ଧରେ ଗୋଟାଏ ଶବ୍ଦ ତମ ମୁହଁରୁ ବାହାରେ, ତା' ହେଲେ....

ମିଷ୍ଟର ତାଲୁକ୍‌ଦାର ଦେଖିଲେ ମିସ୍ ଭାଟିଆର ମୁହଁ କିପରି ଭୟଙ୍କର ହୋଇ ଉଠିଛି । ଆଖି ଆଗରେ ସେ ଯେପରି ମୃତ୍ୟୁର ବିଭୀଷିକା ଦେଖୁଛି ।

ମିଷ୍ଟର ତାଲୁକ୍‌ଦାର କହିଲେ, ମୁଁ ସାମ୍‌ନାରେ ଅଛି ମିସ୍ ଭାଟିଆ । ତମର ଭୟର କିଛି କାରଣ ନାହିଁ । ତା'ପରେ କ'ଣ ହେଲା କୁହ ।

: ହଁ ତା'ପରେ, ମିସ୍ ଭାଟିଆ ପ୍ରକୃତିସ୍ଥ ହୋଇ କହିଲା, ତା'ପରେ ମୁଁ କୌଣସି

ଉତ୍ତର ଦେବା ପୂର୍ବରୁ ଅପର ପ୍ରାନ୍ତଟି ଫୋନ୍‌ରୁ କଟିଗଲା । ମୁଁ ଚିନ୍ତିତ ହୋଇପଡ଼ିଲି । ଫୋନ୍ ମୋତେ କିଏ କରିଥିଲା, ତାହା ମଧ୍ୟ ଜାଣିପାରିଲି ନାହିଁ । କିନ୍ତୁ ମୋର ମନେ ହେଲା, ମୋତେ କେନ୍ଦ୍ର କରି ଯେପରି ବିରାଟ କିଛି ଗୋଟାଏ ଚକ୍ରାନ୍ତ ଚାଲିଛି ।

ଏପରି ଅବସ୍ଥାରେ ସମୟ ନଷ୍ଟ ନ କରି ସଙ୍ଗେସଙ୍ଗେ ମୁଁ ଟେଲିଫୋନ୍ ଉଠାଇ ଆପଣଙ୍କ ସହିତ ସଂଯୋଗ ସ୍ଥାପନ କଲି । ପଦେ କି ଦୁଇପଦ କଥା ହୋଇଛି, ଦେଖିଲି ଗୋଟାଏ ଭୟଙ୍କର ଛାୟାମୂର୍ତ୍ତି ମୋ ଫ୍ଲାଟର ଦରଜା ଖୋଲି ଆଗେଇ ଆସୁଛି । ମୁଁ ଚିତ୍କାର କରି ଉଠିଲି । ତା'ପରେ କ'ଣ ଘଟିଲା ମୁଁ ଜାଣିନାହିଁ । କିନ୍ତୁ ମୁଁ ଅନୁଭବ କଲି ଯେପରି ସେହି ବିଶାଳକାୟ ଲୋକଟା ମୋର ଗଳାଟାକୁ ଚିପି ଧରି ମୋତେ ହତ୍ୟା କରିବାକୁ ଚେଷ୍ଟା କରିଥିଲା ।

ମିସ୍ ଭାଟିଆ ନୀରବ ହୋଇଗଲା ।

ମିଷ୍ଟର ତାଲୁକ୍‌ଦାର କେତୋଟି ମୁହୂର୍ତ୍ତ ମିସ୍ ଭାଟିଆର ଭୟାର୍ତ୍ତ ମୁଖମଣ୍ଡଳ ଆଡ଼େ ଚାହିଁ ରହିଲେ - ହୁଁ, ଶତ୍ରୁ ତା' ହେଲେ ତମର ପିଛା ଧରିଛି ।

: ହଁ ସାର୍ । ମୋତେ ବଞ୍ଚାନ୍ତୁ ।

: କିନ୍ତୁ ମିସ୍ ଭାଟିଆ, ତମେ ଚନ୍ଦ୍ରଶେଖର ବହିଦାରଙ୍କ ହତ୍ୟା ରହସ୍ୟ ସମ୍ବନ୍ଧରେ ମୋତେ କିଛି ନ କହିଲେ, ମୁଁ ତୁମକୁ କିପରି ସାହାଯ୍ୟ କରିପାରିବି ?

: କିନ୍ତୁ ଆପଣ ବିଶ୍ୱାସ କରନ୍ତୁ ସାର୍ । ମୁଁ ସେ ସମ୍ବନ୍ଧରେ କିଛି ଜାଣି ନାହିଁ । ତା' ଛଡ଼ା ଘଟଣାସ୍ଥଳରେ ମୁଁ ନ ଥିଲି ।

ମିଷ୍ଟର ତାଲୁକ୍‌ଦାର ହସିଲେ । କହିଲେ : ଘଟଣାସ୍ଥଳରେ ଥିଲେ ତ ଆମେ ତମକୁ ଆରେଷ୍ଟ କରିପାରି ଥାଆନ୍ତୁ । ତା' ଛଡ଼ା ସଞ୍ଜୟ ସମ୍ବନ୍ଧରେ ତୁମେ ବହୁତ କଥା ଜାଣିଥିବ । ସଞ୍ଜୟ ଯେ ହତ୍ୟାକାରୀ ନୁହେଁ, ସେ ସମ୍ବନ୍ଧରେ ତମେ କୌଣସି ଯୁକ୍ତି ଦର୍ଶାଇ ପାରିବ ?

: ଦେଖନ୍ତୁ ସାର୍, ମୁଁ ହେଲି ଭାରତ ମେସିନାରୀର ଜଣେ ସାମାନ୍ୟ କର୍ମଚାରୀ । ସେମାନେ ହେଲେ ଉଚ୍ଚସ୍ତରର ଅଫିସର । ସେମାନଙ୍କ ସମ୍ବନ୍ଧରେ କୌଣସି ମନ୍ତବ୍ୟ ପ୍ରକାଶ କରିବା ମୋ ପକ୍ଷରେ ଦୁଃସାହସିକତାର କଥା ହେବ ।

: ତଥାପି ତମେ କିଛି କହିବା ଉଚିତ । ସଞ୍ଜୟ ସହିତ ବେବିର ସମ୍ବନ୍ଧ ଏବଂ ମିଷ୍ଟର ବହିଦାରଙ୍କ ସହିତ ସଞ୍ଜୟର ସମ୍ବନ୍ଧ । ଏଗୁଡ଼ିକ ଆମକୁ ଭଲ ଭାବରେ ବିଶ୍ଳେଷଣ କରିବାକୁ ହେବ ।

: ଯେତେ ଦୂର ଜାଣେ ସଞ୍ଜୟ ବେବିକୁ ଭଲ ପାଉଥିଲା ଏବଂ ସେମାନେ ବିବାହ କରିବାକୁ ଠିକ୍ କରିଥିଲେ । ମିଷ୍ଟର ବହିଦାର ମଧ୍ୟ ଏ ପ୍ରସ୍ତାବରେ ଏକମତ ଥିଲେ ।

ମିଃ ତାଲୁକ୍‌ଦାର କହିଲେ : ତା' ହେଲେ ତ ସମସ୍ୟାର ସମାଧାନ ହେବ ନାହିଁ । ଯଦି ସେଇଆ ଘଟଣା, ତେବେ ମିଷ୍ଟର ବହିଦାରଙ୍କ ହତ୍ୟା ଅପରାଧରେ ସଞ୍ଜୟ ଫେରାର୍ ହେଲା କାହିଁକି ? ସେ ଯଦି ନିର୍ଦ୍ଦୋଷ, ତା' ହେଲେ ନିଶ୍ଚୟ ସେ ଫେରାର ହୋଇ ନ ଥାଆନ୍ତା । ଯା'ହେଉ ମୋର ଧାରଣା ତମେ ସମ୍ଭବତଃ ମିଷ୍ଟର ବହିଦାରଙ୍କ ହତ୍ୟା ରହସ୍ୟ ସମ୍ବନ୍ଧରେ ଅନେକ କଥା ଜାଣ । ଆଚ୍ଛା ସେଦିନ ସଞ୍ଜୟ ଅଫିସ୍ ଆସି ନ ଥିଲା କାହିଁକି ?

: ନ ଆସିବାର କାରଣ ମୁଁ ଜାଣିନାହିଁ । ତେବେ ମିଷ୍ଟର ବହିଦାରଙ୍କୁ ସେଦିନ ମୁଁ ଖୁବ୍ ଅନ୍ୟମନସ୍କ ଦେଖିଥିଲି । ସେ କିପରି ଚିନ୍ତିତ ମନେ ହେଉଥିଲେ ।

: ତା'ପରେ ?

: ପ୍ରାୟ ଅଫିସ୍ ଛୁଟି ହେବା ସମୟରେ ମୋତେ ଡାକି କହିଲେ, ସଞ୍ଜୟଙ୍କୁ ଖବର ଦେବା ପାଇଁ । ଖୁବ୍ ଜରୁରୀ । ଶୀଘ୍ର ଆସିବାକୁ ହେବ ।

: ତା'ପରେ ?

: ମୁଁ ଟେଲିଫୋନ୍‌ରେ ମିଷ୍ଟର ସଞ୍ଜୟଙ୍କୁ ସେ କଥା ଜଣେଇଦେଲି ।

: ସେତେବେଳେ ମିଷ୍ଟର ବହିଦାରଙ୍କ ଘରେ ଆଉ କିଏ ଥିଲେ ?

: ଦୁଇଜଣ ଅପରିଚିତ ଲୋକ । ଜଣଙ୍କ ନା ମିଷ୍ଟର ସରାଫ୍, ଆଉ ଜଣଙ୍କ ନା କ'ଣ ମୁଁ ଜାଣି ନାହିଁ ।

: ସେମାନେ କାହିଁକି ଆସିଥିଲେ ?

: ସେ କଥା ମଧ୍ୟ ଜାଣି ନାହିଁ ।

: ମିଷ୍ଟର ବହିଦାର କ'ଣ ସେମାନଙ୍କର ଉପସ୍ଥିତିରେ ସଞ୍ଜୟକୁ ଡାକିବାକୁ କହିଥିଲେ ?

: ହଁ ।

: ତା'ପରେ ତମେ କେତେ ସମୟ ଥିଲ ?

: ମୁଁ ସଞ୍ଜୟଙ୍କୁ ଟେଲିଫୋନ୍ କରି ସଙ୍ଗେ ସଙ୍ଗେ ଚାଲି ଆସିଥିଲି । ସେ କଥା ତ ମୁଁ ପୂର୍ବରୁ ଆପଣଙ୍କୁ କହିଛି ।

: ହୁଁ, ତୁମେ ଚାଲି ଆସିଲ । ତା'ପରେ ସଞ୍ଜୟ ତମ ଟେଲିଫୋନ୍ ପାଇ ଅଫିସ୍ ଆସିଲା । ଏବଂ....

ମିଷ୍ଟର ତାଲୁକଦାର ମୁହୂର୍ତ୍ତେ ନୀରବ ରହି ପୁଣି କହିଲେ ।

: ଆଚ୍ଛା ମିସ୍ ଭାଟିଆ, ମିଷ୍ଟର ବହିଦାରଙ୍କୁ ହତ୍ୟା କରିବା ମୂଳରେ ସଞ୍ଜୟ ଛଡ଼ା ଆଉ କାହାର କିଛି ସ୍ୱାର୍ଥ ଆଇପାରେ, କହି ପାରିବେ କି ?

: ଶୁଣନ୍ତୁ ସାର୍, ସେ ସବୁ ଗଭୀର ସମସ୍ୟାର କଥା । ସେମାନେ ହେଲେ ବଡ଼ ଲୋକ, ସମସ୍ୟା ମଧ୍ୟ ସେମାନଙ୍କର ବଡ଼ ବଡ଼ । ତେଣୁ ସେ ସମ୍ବନ୍ଧରେ କାହା ସହିତ କାହାର କି ସ୍ୱାର୍ଥ ଜଡ଼ିତ ରହିଛି, ମୋ ଭଳି ଜଣେ ସାମାନ୍ୟ କର୍ମଚାରୀ ତାହା ଜାଣିବା ଦୁଷ୍କର ।

: ତଥାପି.... ମିଷ୍ଟର ବହିଦାର ଜଣେ ପ୍ରତିଷ୍ଠିତ ବ୍ୟବସାୟୀ । ତାଙ୍କର ଅଗାଧ ସମ୍ପତ୍ତି । ଏକମାତ୍ର କନ୍ୟା ତା'ର ଉତ୍ତରାଧିକାରୀ । ତେଣୁ ଅନେକଙ୍କର ଦୃଷ୍ଟି ମିଷ୍ଟର ବହିଦାରଙ୍କ ଉପରେ ରହିବାର କଥା । ଆଚ୍ଛା ମିଷ୍ଟର ବହିଦାରଙ୍କର ବିଜ୍‌ନେସ୍ ପାର୍ଟନରମାନଙ୍କୁ ଆପଣ ନିଶ୍ଚୟ ଚିହ୍ନିଥିବେ ।

: ନା, ଭାରତ ମେସିନାରୀର ଯଦିଓ କେତେଜଣ ବିଜ୍‌ନେସ୍ ପାର୍ଟନର ଅଛନ୍ତି, ତେବେ ସେମାନେ କେହି ଆକ୍‌ଟିଭ ନୁହଁନ୍ତି, ସମସ୍ତେ ସ୍ଲିପିଙ୍ଗ ପାର୍ଟନର ।

: ତା' ହେଲେ ଆପଣଙ୍କ ମତରେ ସେହିସବୁ ପାର୍ଟନରମାନଙ୍କ ତରଫରୁ କୌଣସି ଦୁଷ୍କର୍ମର ସମ୍ଭାବନା ନାହିଁ ।

: ଏ ସମ୍ବନ୍ଧରେ ମୋର କୌଣସି ମତାମତ ନାହିଁ । କାରଣ ମୁଁ ଯାହା ଜାଣି ନାହିଁ, ସେ ସମ୍ବନ୍ଧରେ କିଛି କହିବା ଠିକ୍ ହେବ ନାହିଁ ।

: ହୁଁ, ତମେ ସିନା ମିଷ୍ଟର ବହିଦାରଙ୍କର ଅଜ୍ଞାତ ଶତ୍ରୁ ସମ୍ବନ୍ଧରେ କିଛି କହିପାରିବ ନାହିଁ, ଏଥର ନିଜର ଶତ୍ରୁ ସମ୍ବନ୍ଧରେ କିଛି କୁହ ।

: ଆପଣ ବିଶ୍ୱାସ କରନ୍ତୁ ସାର୍ । ମୋତେ ବିଶ୍ୱାସ ନ କରିଲେ ମୁଁ କେଉଁ କୂଳର ହେବି ନାହିଁ ।

: ତା' ହେଲେ ତମେ କହିବାକୁ ଚାହ, ତମ ନିଜ ସମ୍ବନ୍ଧରେ ବି ତମେ କିଛି ଜାଣି ନାହଁ ।

: ହଁ ସାର୍ ।

: ବେଶ୍ ଭଲ କଥା । ମୋର ଏଠାରେ ଆଉ କରଣୀୟ କ'ଣ ଅଛି ? ରାତି ଅନେକ ହେଲାଣି । ଆଜି ମୁଁ ଉଠୁଛି । କାଲି ଯାହା ହେବ ଦେଖାଯିବ ।

ମିଷ୍ଟର ତାଲୁକଦାର୍ ଉଠି ଠିଆହେଲେ ।

ମିସ୍ ଭାଟିଆ ଅତ୍ୟନ୍ତ ଅସହାୟ ସ୍ୱରରେ କହିଲା, କିନ୍ତୁ ସାର୍ ଆଜି ରାତିରେ ସେ ଯଦି ମୋତେ ଖୁଣ୍ କରେ ? ନା ନା ସାର୍ । ଆପଣ ମୋ ପାଇଁ କିଛି ଗୋଟାଏ ବ୍ୟବସ୍ଥା କରି ଯାଆନ୍ତୁ ।

ମିଷ୍ଟର ତାଲୁକଦାର୍ ମିସ୍ ଭାଟିଆର ରକ୍ତଶୂନ୍ୟ ମୁହଁ ଆଡ଼କୁ କିଛି ସମୟ ଅନାଇ ରହି ଧୀରେ ଧୀରେ ଟେଲିଫୋନ୍ ଆଡ଼କୁ ଆଗେଇ ଯାଉ ଯାଉ କହିଲେ : ମୁଁ ତା' ହେଲେ ଆଜି ରାତି ପାଇଁ ଏଠାରେ ଜଣେ ପୋଲିସ ପୋଷ୍ଟିଂ କରି ଯାଉଛି । କାଲି ପୁଣ ଆସିବି । ଆଜି ରାତିରେ ତମେ ଭାବିଚିନ୍ତି ମନସ୍ଥିର କରି ରଖିବ । କାଲି ମୋ ଆଗରେ ସମସ୍ତ ସତ୍ୟ ଘଟଣା ପ୍ରକାଶ ନ କରିଲେ, ତେଣିକି ମୋ ଦୋଷ ଦେବ ନାହିଁ ।

ମିଷ୍ଟର ତାଲୁକ୍‌ଦାର ଟେଲିଫୋନ୍ ଡାଏଲ୍ ଘୁରାଇଲେ ।



ଆରି ଦିନ ସକାଳ ଆଠଟା ବେଳେ ମିଷ୍ଟର ତାଲୁକଦାର ଥାନାରେ ପହଞ୍ଚି ଶୁଣିଲେ, ଗତ ରାତ୍ରିରେ ମିସ୍ ଭାଟିଆ ଫ୍ଲାଟରେ କୌଣସି ଦୁର୍ଘଟଣା ଘଟି ନାହିଁ ।

କିନ୍ତୁ ସଞ୍ଜୟର କୌଣସି ଖବର ମିଳି ନାହିଁ । ସମସ୍ତ ପ୍ରକାର ସମ୍ଭାବ୍ୟ ଉପାୟରେ ସଞ୍ଜୟକୁ ଖୋଜା ହୋଇ ସାରିଥିଲେ ମଧ୍ୟ କିଛି ଫଳ ଫଳି ନାହିଁ ।

ମିଷ୍ଟର ତାଲୁକଦାରଙ୍କ ସହକାରୀ ଅବନୀ ବରାଳ ଆସି ପହଞ୍ଚିଲେ । ତାଲୁକ୍‌ଦାର ପଚାରିଲେ : ଆପଣ ଆଉ ନୂତନ କୌଣସି ତଥ୍ୟ ପାଇଲେ ନାହିଁ ଅବନୀବାବୁ ?

ଅବନୀ ବାବୁ ଚିନ୍ତିତ ମନେ ହେଉଥିଲେ । କହିଲେ : କାଲି ରାତିରେ ଆପଣଙ୍କ ସହିତ ପରାମର୍ଶ କରି ଫେରିଲା ପରେ ମୋର ଖାଲି ଗୋଟିଏ କଥା ମନେ ହୋଇଥିଲା । ଆପଣଙ୍କୁ କିଏ ବାରମ୍ବାର ଫୋନ୍ କରି ବିଭିନ୍ନ ସ୍ଥାନ ପ୍ରତି ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି । ମୁଁ କାଲି ଅନେକ ରାତିରେ ୧୭ ନମ୍ବର ପାର୍କ ଲେନ୍‌କୁ ଯାଇଥିଲି । ପୁଣି ଯାଇଥିଲି ମିଷ୍ଟର ବହିଦାରଙ୍କ ଘରକୁ । ତା'ପରେ ମିସ୍ ଭାଟିଆର ଫ୍ଲାଟକୁ ମଧ୍ୟ ଯାଇଥିଲି । କିନ୍ତୁ ସବୁଠି ନୀରବତା ବିରାଜମାନ କରୁଛି ।

: ହୁଁ, ଘଟଣାଟା ବଡ଼ ରହସ୍ୟମୟ ମନେ ହେଉଛି ଅବନୀବାବୁ । ସଞ୍ଜୟ ଆମ ହାତରୁ ଖସି ଯାଇ ଆମର ଦାୟିତ୍ୱ ବଢ଼ାଇ ଦେଇଛି । ସଞ୍ଜୟ ସମ୍ବନ୍ଧରେ ଆପଣଙ୍କର କ'ଣ ମନେ ହେଉଛି ? ତାଲୁକ୍‌ଦାର ପଚାରିଲେ ।

: ବେବିର ଷ୍ଟେଟ୍‌ମେଣ୍ଟରୁ ମୁଁ ଯାହା ଜାଣିଲି, ବେବିର ସଞ୍ଜୟ ବିରୁଦ୍ଧରେ କୌଣସି ଅଭିଯୋଗ ନାହିଁ । ସେ ସ୍ପଷ୍ଟ କହିଲା ଯେ, ସଞ୍ଜୟ ତା' ବାପାର ହତ୍ୟାକାରୀ ହୋଇପାରେ ନାହିଁ । ଅବନୀବାବୁ କହିଲେ ।

: ଆଉ ବେବି କାହାକୁ ସନ୍ଦେହ କରୁଛି ?

: ନାଁ, ତା'ମୁହଁରୁ ସେପରି କିଛି ମୁଁ ଶୁଣିଲି ନାହିଁ ।

: ହୁଁ, ଆପଣ ଗୋଟାଏ କାମ କରନ୍ତୁ । ବର୍ତ୍ତମାନ ଅଫିସ୍‌ରେ ରୁହନ୍ତୁ । ମୁଁ ଟିକିଏ ସବୁଆଡ଼ୁ ବୁଲିଆସେ । ପ୍ରଥମେ ମୁଁ ବେବି ଘରକୁ ଯାଉଛି । ତା'ଠାରୁ ଆଜି ଭଲ କରି ଗୋଟାଏ ଷ୍ଟେଟମେଣ୍ଟ ନେବାକୁ ହେବ । ତା'ପରେ ଭାରତ ମେସିନାରୀ ଅଫିସ୍ ଏବଂ ପରେ ପରେ...

ଗୋଟିଏ କନେଷ୍ଟବଳ ଆସି କହିଲା : ଆପଣଙ୍କ ଫୋନ୍ ଆସିଛି ।

ମିଷ୍ଟର ତାଲୁକ୍‌ଦାର ଅବନୀ ବାବୁଙ୍କ ମୁହଁକୁ ଚାହିଁ ଚେୟାରରୁ ଉଠୁ ଉଠୁ କହିଲେ : ଦେଖେ ପୁଣି କେଉଁଠୁ ଡାକରା ଆସିଲା ।

ମିଷ୍ଟର ତାଲୁକ୍‌ଦାର ଫୋନ୍ ରିସିଭର କାନରେ ଦେଇ ନିଜର ପରିଚୟ ଦେବା ପରେ ନୀରବ ହୋଇ ଅନେକ ସମୟ କ'ଣ ଶୁଣିଲେ । ତା'ପରେ କହିଲେ : ଆଚ୍ଛା, ମୁଁ ବର୍ତ୍ତମାନ ସାଙ୍ଗେ ସାଙ୍ଗେ ଆସୁଛି ।

ସେ କ୍ଷିପ୍ର ପାଦରେ ନିଜର ଅଫିସ୍ ରୁମ୍‌କୁ ପଶି ଆସିଲେ । ଅବନୀ ବାବୁଙ୍କୁ କହିଲେ : ବେବି ଫୋନ୍ କରିଥିଲା । କାଲି ରାତିରେ କେହି ଯେପରି ତାଙ୍କ ଘର ଭିତରେ ପଶି ମିଷ୍ଟର ବାହିଦାରଙ୍କ ଶୟନକକ୍ଷରେ ପ୍ରବେଶ କରିଥିଲା । ବହୁ କାଗଜପତ୍ର ଘଣ୍ଟା ଚକଟା ହୋଇ ଏପାଖ ସେପାଖ ପଡ଼ିଥିବାରୁ ବେବିର ସେହିପରି ମନେ ହେଉଛି । ମୁଁ ଅବଶ୍ୟ ବର୍ତ୍ତମାନ ଯାଉଛି । କିନ୍ତୁ କାଲି ରାତିରେ ବେବିର ବ୍ୟବହାରରେ ମୁଁ କ୍ଷୁନ୍ନ ହୋଇଛି ।

: କାହିଁକି ସାର୍ ? ଅବନୀ ବାବୁ ପଚାରିଲେ ।

: ମୁଁ କାଲି ରାତିରେ ୧୭ ନମ୍ବର ପାର୍କଲାଇନ୍‌ରେ ଥିବା ବେଳେ ଗୋଟିଏ ଫୋନ୍ ପାଇଲି । ଫୋନ୍‌ରେ ବେବି ମୋତେ ଡାକୁଥିଲା । କିନ୍ତୁ ସେଠାକୁ ଯାଇ ଦେଖିଲି ବେବି ମୋତେ ଫୋନ୍ କରିନାହିଁ । କିନ୍ତୁ ମୋରି ଆଖି ଆଗରେ ବେବି ମୋତେ ଅବଜ୍ଞା

କରି ଗାଡ଼ିରେ ଚଢ଼ି କୁଆଡ଼େ ବାହାରିଗଲା । ମୋର ମନେ ହେଲା, ସେ ଯେପରି ତା'ରା ବାପାଙ୍କ ମୃତ୍ୟୁରେ ମୋଟେ ଦୁଃଖିତ ନୁହେଁ । ଯା ହେଉ, ବର୍ତ୍ତମାନ ମୁଁ ଉଠୁଛି ।

ମିଷ୍ଟର ତାଲୁକଦାର ଘରୁ ବାହାରି ଯାଇ ଜିପ୍‌ରେ ବସିଲେ ଏବଂ ସିଧା ବାହାରିଗଲେ ମିଷ୍ଟର ବହିଦାରଙ୍କ ଘରକୁ ।

ଆଜି କିନ୍ତୁ ଗେଟ୍‌ର ଲୁହା ଫାଟକ ଖୋଲା ଥିଲା ଏବଂ ଦୋତାଲା ବାରଣ୍ଡା ଉପରେ ବେବି ଠିଆ ହୋଇ ଯେପରି ପ୍ରତୀକ୍ଷା କରିଥିଲା ।

ମିଷ୍ଟର ତାଲୁକ୍‌ଦାର ବହିଦାରଙ୍କ ଶୟନକକ୍ଷରେ ଯାଇ ବୁଲି ଦେଖିଲେ, ବେବିର ସନ୍ଦେହ ମିଥ୍ୟା ନୁହେଁ ।

ମିଷ୍ଟର ତାଲୁକଦାର ପଚାରିଲେ : ଆପଣ କାଲି କେତେ ରାତିରେ ବାହାରୁ ଫେରିଲେ ?

: ସାଢ଼େ ଦଶଟା ଭିତରେ, ବେବି କହିଲା ।

: କିନ୍ତୁ ଏତେ ରାତିରେ ଆପଣ କୁଆଡ଼େ ଯାଇଥିଲେ ?

ବେବି ଟିକିଏ କୁଣ୍ଠିତ ହୋଇ କହିଲା : ଗୋଟାଏ ଖୁବ୍ ଦରକାରୀ କାମରେ । ଅବଶ୍ୟ ଆପଣଙ୍କ ଆଖିରେ ତାହା ଅତ୍ୟନ୍ତ ଅପ୍ରାସଙ୍ଗିକ ମନେ ହେଲେ ମଧ୍ୟ, ମୋର ନ ଯାଇ ଉପାୟ ନ ଥିଲା ।

: କାଲି ରାତିରେ ଆପଣ ଫେରିବା ପରେ କେତେବେଳ ଯାଏ ଚେଇଁଥିଲେ ?

: ଅନେକ ରାତିଯାଏ । ଘଡ଼ିରେ ତିନିଟା ବାଜିବା ଶବ୍ଦ ମୁଁ ଶୁଣିଥିଲି । ତା'ପରେ ବୋଧହୁଏ ଶୋଇ ପଡ଼ିଥିଲି ।

: ହୁଁ, ରାତିରେ ତ ଆପଣଙ୍କର ମେନ୍ ଗେଟ୍ ବନ୍ଦ ରୁହେ । ବାହାରୁ କୌଣସି ଲୋକ ଭିତରେ ପଶିବାର ସମ୍ଭାବନା ଅତ୍ୟନ୍ତ କମ୍ । ତେଣୁ ମୋର ମନେ ହେଉଛି କାଲି ରାତିରେ ମିଷ୍ଟର ବହିଦାରଙ୍କ ଶୋଇବା ଘରେ ଯଦି କେହି ପଶିଥାଏ, ତା'ହେଲେ ସେ ଏହି କୋଠାରେ ବାସ କରୁଥିବା କୌଣସି ଲୋକ ହୋଇଥିବ । ଆପଣଙ୍କର ସେପରି କୌଣସି ଲୋକକୁ ସନ୍ଦେହ ହୁଏ ?

ବେବି ଅନେକ ସମୟ କ'ଣ ଚିନ୍ତା କଲା । ତା'ପରେ ଧୀରେ ଧୀରେ କହିଲା : ଆମ ଏ କୋଠାରେ ଖାଲି ଚାକରବାକର ଛଡ଼ା ତ ଅନ୍ୟ କେହି ନାହାନ୍ତି । ତେବେ ଯେଉଁ କେତେଜଣ ଟିକିଏ ଉଚ୍ଚଶ୍ରେଣୀର କର୍ମଚାରୀ ରହନ୍ତି, ସେମାନେ ସମସ୍ତେ ଅତି ପୁରୁଣା ଲୋକ । ସେମାନଙ୍କୁ ସନ୍ଦେହ କରିବା ମୋ ମତରେ ଉଚିତ ହେବ ନାହିଁ ।

ମିଷ୍ଟର ତାଲୁକଦାର ମଧ୍ୟ କିଛି ସମୟ ନୀରବରେ ଚିନ୍ତା କଲେ । ତା'ପରେ ସେ ଧୀରେ ଧୀରେ କହିଲେ : ମୁଁ କାଲି ରାତିରେ ଯେତେବେଳେ ଏଠାକୁ ଆସିଥିଲି, ସେତେବେଳେ ଗୋଟିଏ ଛୋଟ ଘଟଣା ମୋର ଦୃଷ୍ଟି ଆକର୍ଷଣ କରିଥିଲା । ମୁଁ ବାହାରୁ ଥାଇ ଲକ୍ଷ୍ୟ କରିଥିଲି ଦୋତାଲାର ଗୋଟିଏ କୋଠରିରେ ହଠାତ୍ ଲାଇଟ୍‌ଟା ଜଳି ଉଠିଲା । ତା'ପରେ ଝିଡ଼ିକିର ଦରଜାଟା ଖୋଲିଗଲା ଏବଂ କିଏ ଯେପରି, ଖୁବ୍ ସମ୍ଭବତଃ ଗୋଟିଏ ନାରୀ ହାତ ଠାରି ଇସାରାରେ କାହାକୁ କ'ଣ କହିଲା । ତା'ପରେ ସେ ଚାଲିଗଲା ଏବଂ ଘର ଅନ୍ଧାର ହୋଇଗଲା ।

: ସେ କିଛି ନୁହେଁ । ସଙ୍ଗେ ସଙ୍ଗେ ବେବି ଉତ୍ତର ଦେଲା । ପୁଣି କହିଲା, ଆମ ଘରେ ଗୋଟିଏ ଚାକରାଣୀ ଅଛି, ସେ ଏକ ଅର୍ଦ୍ଧ ପାଗଳ । ତା'ର ଗୋଟିଏ ପୁଅ ଥିଲା, ସେଇ ପୁଅର ଆକସ୍ମିକ ମୃତ୍ୟୁ ପରେ ଚାକରାଣୀଟିର ମୁଣ୍ଡ ଖରାପ ହୋଇଯାଇଛି । ସମୟ ଅସମୟରେ ସେ ଏପରି ଅଘଟଣ ସବୁ ଘଟାଇ ବସେ ଯେ, ସେଗୁଡ଼ା କହିବାର କଥା ନୁହେଁ । ତେଣୁ କାଲି ରାତିରେ ଆପଣ ଯାହା ଦେଖିଛନ୍ତି, ତାହା ସେହି ଯଶୋଦାର କାଣ୍ଡ ଛଡ଼ା ଅନ୍ୟ କିଛି ନୁହେଁ ।

: ତା'ହେଲେ ବର୍ତ୍ତମାନ ଆମେ ସବୁ ଦିଗରୁ ନିରସ୍ତ୍ର । ମାନେ ମିଷ୍ଟର ବହିଦାର ହତ୍ୟାକାରୀ ସମ୍ବନ୍ଧରେ ଆମେ କୌଣସି ସୂତ୍ର ପାଇବା ନାହିଁ । ତା'ଛଡ଼ା ସଞ୍ଜୟ ସମ୍ବନ୍ଧରେ ଆପଣଙ୍କ ଷ୍ଟେଟମେଣ୍ଟ ଆହୁରି ଟିକିଏ କ୍ଲିୟର ହେବା ଉଚିତ । ମୋର କହିବାର କଥା, ସେ ଯଦି ଅପରାଧୀ ନୁହେଁ, ତେବେ ସେ ଏପରି ଭାବରେ ଫେରାର ହେଲା କାହିଁକି ?

: ସେଇଟା ଅବଶ୍ୟ ଚିନ୍ତାର ବିଷୟ । ବେବି କହିଲା । କିନ୍ତୁ ମୋର କହିବାର କଥା ସଞ୍ଜୟର ବାପାଙ୍କ ପ୍ରତି କୌଣସି ଆକ୍ରୋଶ ନ ଥିଲା, ଆକ୍ରୋଶା କାରଣ ମଧ୍ୟ କିଛି ନ ଥିଲା ।

: ତା'ହେଲେ ସଞ୍ଜୟ ସମ୍ବନ୍ଧରେ ଆପଣଙ୍କର ଧାରଣା ଖୁବ୍ ଭଲ । ଆପଣଙ୍କ ମତରେ ସେ ମିଷ୍ଟର ବହିଦାରଙ୍କ ହତ୍ୟାକାରୀ ହୋଇ ନ ପାରନ୍ତି ।

ବେବି କିଛି ଉତ୍ତର ଦେଲା ନାହିଁ ।

ମିଷ୍ଟର ତାଲୁକଦାର କହିଲେ : ବର୍ତ୍ତମାନ ଭାରତ ମେସିନାରୀ କମ୍ପାନୀର ଏକମାତ୍ର ଉତ୍ତରାଧିକାରୀ ଆପଣ । ତା'ର ପରିଚାଳନା ସମ୍ବନ୍ଧରେ କିଛି ଚିନ୍ତା କରୁଛନ୍ତି ?

ବେବି କହିଲା : ବେଳ ପଡ଼ିଲେ ନିଶ୍ଚୟ ଚିନ୍ତା କରିବି । କିନ୍ତୁ ବର୍ତ୍ତମାନ ମୋର ପ୍ରଧାନ ଚିନ୍ତା ହେଉଛି, ବାପାଙ୍କର ହତ୍ୟାକାରୀକୁ ଖୋଜି ବାହାର କରିବା । ମୋର

ମନେ ହେଉଛି କୌଣସି ଲୋକ କୌଣସି ସ୍ୱାର୍ଥ ସାଧନ ଆଶାରେ ବାପାଙ୍କୁ ଖୁନ୍ କରିଛି ।

ତାଲୁକ୍‌ଦାର କହିଲେ : ସେଇଟା ନିପଟ ସତ କଥା । ତେବେ ହତ୍ୟାକାରୀର ସ୍ୱାର୍ଥଟା କେଉଁ ଧରଣର, ସେଇଆ ଆମେ ଯେତେଦିନ ଯାଏ ଆବିଷ୍କାର କରି ନ ପାରିଛନ୍ତି, ସେତେଦିନ ଯାଏ ଆମ ଅନୁସନ୍ଧାନର ପଥ ସହଜ ହେବ ନାହିଁ ।

ବେବି କହିଲା : ଆପଣ ପୋଲିସ ଅଫିସର । ଅପରାଧୀର ଅପରାଧ ସମ୍ବନ୍ଧରେ ଅନେକ କିଛି ଜଣାଥିବ ଆପଣଙ୍କୁ । ତେଣୁ ସେ ସମ୍ବନ୍ଧରେ ମତ ଦେବା ଭଳି ଧୃଷ୍ଟତା ମୋର ନାହିଁ । ଯାହା ହେଉ ଆପଣଙ୍କ ଗୁରୁଦାୟିତ୍ୱ ସମ୍ବନ୍ଧରେ ଆପଣ ନିଶ୍ଚୟ ସଚେତନ ! ତେଣୁ ମୋର ଏ କ୍ଷେତ୍ରରେ ଅନୁଶୋଚନା ଛଡ଼ା କରଣୀୟ କିଛି ନାହିଁ ।

ମିଷ୍ଟର ତାଲୁକଦାର ବ୍ୟଥିତ ସ୍ୱରରେ କହିଲେ, ମୋର କର୍ତ୍ତବ୍ୟ ସମ୍ବନ୍ଧରେ ମୁଁ ଯଥେଷ୍ଟ ସଚେତନ ହେଲେ ମଧ୍ୟ କେସ୍‌ଟା ଟିକିଏ ଗୋଳମାଳିଆ ମନେ ହେଉଛି । ସେ ଯାହାହେଉ, ଆପଣଙ୍କ ଏଠାରେ ଯେଉଁ କେତେଜଣ ଟିକିଏ ଉଚ୍ଚଶ୍ରେଣୀର କର୍ମଚାରୀ ଅଛନ୍ତି ବୋଲି କହୁଥିଲେ, ସେମାନଙ୍କ ସହିତ ଟିକିଏ କଥାବାର୍ତ୍ତା କରିବାକୁ ଇଚ୍ଛା ଅଛି । ସେଥିରେ ଆପଣଙ୍କର କିଛି ଆପତ୍ତି ଅଛି ?

: ନା, ନା । ସଙ୍ଗେ ସଙ୍ଗେ ବେବି ହୁକୁମ୍ ସିଂହଙ୍କୁ ଡାକି କହିଲା - ପୁରୁଷୋତ୍ତମ ଦାସ, ନଟବର କାନୁନ୍‌ଗୋ ଓ ବସନ୍ତ ମହାରାଜକୁ ଡାକି ଦେବା ପାଇଁ ।

ସେମାନେ ଆସିଲେ ।

ମିଷ୍ଟର ତାଲୁକଦାର ବେବିକୁ ଲକ୍ଷ୍ୟ କରି କହିଲେ : ଆପଣ ଏଥର ଯାଇପାରନ୍ତି । ଏମାନଙ୍କୁ କେତୋଟି ପ୍ରଶ୍ନ କରିସାରି ଯିବା ବେଳକୁ ମୁଁ ଆପଣଙ୍କୁ ଦେଖାକରି ଯିବି ।

ବେବି ଆଉ କିଛି ନ କହି ସେଠାରୁ ଚାଲିଗଲା ।

ପ୍ରଥମେ ପୁରୁଷୋତ୍ତମ ଦାସଙ୍କୁ ଘର ଭିତରକୁ ଡାକି ତାଲୁକ୍‌ଦାର ପଚାରିଲେ, ଆପଣ ଏଠାରେ କେତେ ବର୍ଷ ହେବ ଅଛନ୍ତି ?

: ପ୍ରାୟ ସାତବର୍ଷରୁ ଅଧିକ ହେବ ।

: ଆପଣ କ'ଣ କରନ୍ତି ?

: ଅଫିସ୍‌ରେ ଚାକିରି କରେ । ବାକି ସମୟରେ ଘରର ହାନି ଲାଭ ବୁଝେ । ଏଠାକାର ଚାକରବାକରଙ୍କର ଖବର ବୁଝେ ।

: ମିଷ୍ଟର ବହିଦାରଙ୍କ ମୃତ୍ୟୁ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

: ମୁଁ ଆଜ୍ଞା ଘଟଣା ଶୁଣି ଆଶ୍ଚର୍ଯ୍ୟ ହୋଇ ଯାଇଥିଲି । ଏପରି ଦେବପ୍ରତିମ ଲୋକଙ୍କର କେହି ଯେ ଶତ୍ରୁ ଥାଆନ୍ତି, ମୁଁ ଏବେବି ବିଶ୍ୱାସ କରିପାରୁ ନାହିଁ ।

: ଆପଣ ସଞ୍ଜୟଙ୍କୁ ଚିହ୍ନନ୍ତି ?

: ଚିହ୍ନେ ଆଜ୍ଞା ।

: ତା ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

: ଭଲ ।

: ଭଲ ମାନେ ?

: ସଞ୍ଜୟ ବାବୁ ଖୁବ୍ ଭଲ ଲୋକ ଥିଲେ । କର୍ମଠ. ସାହସୀ, ନିଷ୍ଠାବାନ୍ । ସେଥିପାଇଁ ବହିଦାର ସାହେବ ତାଙ୍କୁ ଖୁବ୍ ପସନ୍ଦ କରୁଥିଲେ ।

: ସଞ୍ଜୟର ପ୍ରତିଦ୍ୱନ୍ଦ୍ୱୀ ଆଉ କେହି ନ ଥିଲେ ?

: ପୁରୁଷୋତ୍ତମ ଦାସ ମୁହୂର୍ତ୍ତେ ଚିନ୍ତା କରି କହିଲେ, ପ୍ରତିଦ୍ୱନ୍ଦ୍ୱୀ କେହି ଥିଲେ କି ନଥିଲେ  ଜାଣି ନାହିଁ, ତେବେ ଠାକୁର ସାହେବଙ୍କ ସହିତ ତାଙ୍କର ମୋଟେ ପଡ଼ୁ ନ ଥିଲା ।

: ଠାକୁର ସାହେବ ! ସେ କିଏ ?

: ସେ ଭାରତ ମେସିନାରୀର ଜଣେ ସ୍ଲିପିଂ ପାର୍ଟନରଙ୍କର ପୁତୁରା । ତାଙ୍କର ପୂରା ନାଁଟା ହେଉଛି ଆର୍.କେ. ଠାକୁର । ସମସ୍ତେ ତାଙ୍କୁ ଠାକୁର ସାହେବ ବୋଲି ଡାକନ୍ତି । ସେ ଅବଶ୍ୟ ସଞ୍ଜୟବାବୁଙ୍କ ଠାରୁ ସିନିଅର୍ । ବୟସରେ ବି ବଡ଼ ।

: ସେ କେଉଁ ପୋଷ୍ଟରେ ଥିଲେ ?

: ଏକାଉଣ୍ଟସ୍ ଅଫିସର ।

: ହୁ. ତା' ହେଲେ ଆପଣଙ୍କ କହିବା କଥା, ଠାକୁର ସାହେବଙ୍କ ସହିତ ସଞ୍ଜୟର ମୋଟେ ପଡ଼ୁ ନ ଥିଲା । ଆଚ୍ଛା ଆପଣ ଏଥର ଯାଆନ୍ତୁ । ନଟବର ବାବୁଙ୍କୁ ଟିକିଏ ଡାକିଦେବେ ।

ନଟବର କାନୁନ୍‌ଗୋ ଭିତରକୁ ଆସିଲେ ।

ଛୋଟ ବାଙ୍ଗର ଲୋକଟି ।

ମନେ ହେଉଥିଲା ମିଷ୍ଟର ତାଲୁକ୍‌ଦାରଙ୍କ ସାମ୍ନାକୁ ଆସିବା ପାଇଁ ସେ ଖୁବ୍ ଭୟ ପାଇ ଯାଇଛନ୍ତି ।

ମିଷ୍ଟର ତାଲୁକ୍‌ଦାର ନଟବର ବାବୁଙ୍କୁ ସାମ୍ନା ଚେଆର୍‌ରେ ବସିବା ପାଇଁ ନିର୍ଦ୍ଦେଶ ଦେଇ ପଚାରିଲେ : ଆପଣ ଏଠାରେ କେତେ ବର୍ଷ ହେବ ଅଛନ୍ତି ?

: ମୁଁ ? ପ୍ରାୟ ଅନେକ ବର୍ଷ ହେବ । ମୋର ଠିକ୍ ମନେ ପଡୁନାହିଁ ।

: ଆପଣ ଏଠାରେ କ'ଣ କରନ୍ତି ?

: ମୁଁ ଏ ଘରର କେଆର ଟେକର । ବହିଦାର ସାହେବ ମୋତେ ଖୁବ୍ ଭଲ ପାଉଥିଲେ । ତାଙ୍କରି ଦୟାରୁ ମୁଁ ଏତେ ବଡ଼ ହୋଇଛି ।

: ଆପଣ ତା' ହେଲେ ଭାରତ ମେସିନାରୀରେ ଚାକିରି କରନ୍ତି ନାହିଁ ।

: ନା ସାର୍ । ଅଫିସ୍ ସହିତ ମୋର କୌଣସି ସମ୍ପର୍କ ନାହିଁ । ତେବେ ଏଇ କୋଠାରେ ମୋର ଗୋଟିଏ ଅଫିସ ଅଛି । ସେଇଠି ମୋର ସବୁ କାମଦାମ ହୁଏ ।

: ମିଷ୍ଟର ବହିଦାରଙ୍କ ହତ୍ୟା ସମ୍ବନ୍ଧରେ ଆପଣ କ'ଣ ମନେ କରନ୍ତି ?

: ଏଥିରେ ମନେ କରିବାର କ'ଣ ଅଛି ସାର୍ । ତାଙ୍କର କେହି ଶତ୍ରୁ ତାଙ୍କୁ ହତ୍ୟା କରିଛି । ବଡ଼ ଲୋକମାନଙ୍କର ଶତ୍ରୁର ତ ଅଭାବ ନ ଥାଏ ।

: ହୁଁ, ଆପଣ ମିଷ୍ଟର ବହିଦାରଙ୍କର ଦୁଇ ତିନୋଟି ଶତ୍ରୁଙ୍କର ନାମ କୁହନ୍ତୁ ତ !

ନଟବର ବାବୁ ଏଥର ବିଚଳିତ ହୋଇ ଉଠିଲେ । ଥଙ୍ଗ ଥଙ୍ଗ ହୋଇ କହିଲେ : ବହିଦାର ସାହେବ ମୋତେ ସେମାନଙ୍କର କାହାରି ନାମ କହିନାହାନ୍ତି ସାର୍ । ତେଣୁ....

ମିଷ୍ଟର ତାଲୁକଦାରଙ୍କ ସ୍ୱର ବିରକ୍ତିରେ ଭରିଗଲା । ସେ କହିଲେ : ଆପଣମାନେ ଯାହାର ଖାଇବେ ତା'ରି ସର୍ବନାଶ କରିବେ । ଆପଣମାନଙ୍କଦ୍ୱାରା ଶାଗ ଶିଝିବ ନାହିଁ । ଚାଲିଯାଆନ୍ତୁ ଏଠୁ ।

ନଟବରବାବୁ ସେଠାରୁ ଛୁଟି ପଳାଇ ଯାଇ ଯେପରି ଆତ୍ମରକ୍ଷା କଲେ । ତା'ପରେ ଘର ଭିତରେ ପ୍ରବେଶ କଲେ ବସନ୍ତ ମହାରାଜ୍ ।

ପ୍ରକୃତରେ ମହାରାଜଙ୍କ ନାମ ସାର୍ଥକ କରିଥିଲେ ଭଦ୍ରଲୋକ । ବିଶାଳ ଚେହେରା । ବିରାଟ ନିଶ । ଆଖି ଯୋଡ଼ାକ ଅପେକ୍ଷାକୃତ ବଡ଼ ବଡ଼ । ସେ ଘର ଭିତରେ ପ୍ରବେଶ କରି ତାଲୁକ୍‌ଦାରଙ୍କୁ ଯୋଡ଼ ହାତରେ ନମସ୍କାର ଜଣାଇ ଠିଆ ହୋଇ ରହିଲେ ।

ମିଷ୍ଟର ତାଲୁକଦାର ତାଙ୍କ ମୁହଁକୁ ନୀରବରେ କିଛି ସମୟ ଅନାଇ ରହି କହିଲେ : ଆପଣଙ୍କ ନାଁ ବସନ୍ତ ମହାରାଜ୍ ।

: ଇଏସ୍ ସାର୍ ।

: ଆପଣ ଏଠାରେ କ'ଣ କରନ୍ତି ।

ବସନ୍ତ ମହାରାଜ ଟିକିଏ ହସିବାକୁ ଚେଷ୍ଟା କରି କହିଲେ : କ'ଣ ନ କରେ, ସେଇ କଥା ପଚାରନ୍ତୁ ସାର୍ । ମୋର ତ ଏଠାରେ ସର୍ବମୟ କର୍ତ୍ତୃତ୍ୱ । ମୋତେ ଆପଣ

ବହିଦାର ସାହେବଙ୍କ ବଡ଼ିଗାର୍ଡ଼ କହିପାରନ୍ତି, ଏହି ଘରର ନିରାପତ୍ତା ରକ୍ଷି କହିପାରନ୍ତି । ମୋତେ ବହିଦାର ସାହେବ ସବୁ କ୍ଷମତା ଦେଇଥିଲେ ।

: ହୁଁ, ତା'ହେଲେ ଆପଣ ବହିଦାର ସାହେବଙ୍କ ପର୍ସନାଲ ଲୋକ ଥିଲେ ।

: ହଁ ସାର୍ ।

: ତାଙ୍କର ଏହି ଆକସ୍ମିକ ମୃତ୍ୟୁ ସମ୍ବନ୍ଧରେ ଆପଣ କିଛି ଜାଣନ୍ତି ?

: ନା ଆଜ୍ଞା । ଦୁର୍ଘଟଣାଟା ଅଫିସ୍‌ରେ ଘଟିଥିଲା । ଘରେ ଯଦି ଘଟିଥାଆନ୍ତା, ମୁଁ ଦେଖି ନେଇଥାଆନ୍ତି ହତ୍ୟାକାରୀ କେତେ ଚାଲାଖ । ମୁଁ ଘଟଣାସ୍ଥଳରେ ହତ୍ୟାକାରୀକୁ ଏପରି ଶିକ୍ଷା ଦେଇଥାଆନ୍ତି ଯେ ସେ ଜୀବନରେ ଆଉ ଏପରି କାମ କରିବାକୁ ଦୁଃସାହସ କରିନଥାଆନ୍ତା ।

: ହୁଁ, ଆପଣଙ୍କ ବାହାଦୁରି ଶୁଣି ଅତ୍ୟନ୍ତ ପ୍ରୀତ ହେଲି । ଏଥର କୁହନ୍ତୁ ତ ଆପଣ ଠାକୁର ସାହେବଙ୍କୁ ଚିହ୍ନନ୍ତି ?

ବସନ୍ତ ମହାରାଜ କିଛି ସମୟ ଚିନ୍ତା କରି କହିଲେ : ନା ସାର୍ । ଠାକୁର ସାହେବଙ୍କ ସମ୍ବନ୍ଧରେ ସାହେବ ମୋତେ କିଛି କହିନାହାନ୍ତି ।

: ଆଉ କାହା ସମ୍ବନ୍ଧରେ କହିଥିଲେ ?

: ବିଶେଷ କରି ସେ ମୋତେ ବେବି ଆଉ ସଞ୍ଜୟ ସାହେବଙ୍କ କଥା କହିଥିଲେ । ସେମାନଙ୍କର ଯେପରି କିଛି ଅନିଷ୍ଟ ନ ହୁଏ । ସେଥିପାଇଁ ସବୁବେଳେ ସେମାନଙ୍କ ଉପରେ ନଜର ରଖିବାକୁ କହିଥିଲେ ।

: ଆଉ.....

ହଠାତ୍ କଥା ମଝିରେ ଜଣେ ଲୋକ ଆସି ବାଧା ଦେଲା । କହିଲା : ଆପଣଙ୍କର ଫୋନ୍ ଆସିଛି ହଜୁର । ବେବି ଦିଦି ଆପଣଙ୍କୁ ଡାକୁଛନ୍ତି ।

: ମୋର ଫୋନ୍ ?

ମିଷ୍ଟର ତାଲୁକଦାର ସଙ୍ଗେ ସଙ୍ଗେ ଉଠି ଠିଆ ହେଲେ । ଆଗେଇ ଗଲେ ଲୋକଟି ସାଙ୍ଗରେ ।

: ହ୍ୟାଲୋ ।

ମିଷ୍ଟର ତାଲୁକଦାର ଅପରପ୍ରାନ୍ତରୁ ଯେପରି ଅନେକ କଥା ଶୁଣିଲେ । ତା'ପରେ ଧୀରେ ଧୀରେ ରିସିଭରଟି ଯଥା ସ୍ଥାନରେ ରଖିଦେଇ କହିଲେ : ବଡ଼ ଆଶ୍ଚର୍ଯ୍ୟ ତ !

: କ'ଣ ହେଲା ମିଃ ତାଲୁକଦାର୍ । ବେବି ପଚାରିଲା ।

: ଫୋନ୍‌ରେ ମନେହେଲା ଯେପରି କାହାର ପ୍ରତିଧ୍ୱନି ।

: ମାନେ ?

: ମତେ କେହି ଜଣେ ପ୍ରଥମେ ପ୍ରଶ୍ନ କଲା - ଆପଣ ମିଷ୍ଟର ତାଲୁକଦାର କହୁଛନ୍ତି ? ମୁଁ କହିଲି- ହଁ । ତା'ପରେ ସେ କହିଲା, ତା'ହେଲେ ଶୁଣନ୍ତୁ ।

: ମୁଁ ଶୁଣିଲି । ଦୁଇଜଣଙ୍କ କଥାବାର୍ତ୍ତା । ଖୁବ୍ ଇଙ୍ଗିତପୂର୍ଣ୍ଣ । କିନ୍ତୁ ମୁଁ ବୁଝିପାରୁ ନାହିଁ ଏହା କିପରି ସମ୍ଭବ ହେଲା ।

: କ'ଣ ଶୁଣିଲେ ?

: ଶୁଣିଲି ଅନେକ କଥା । କିନ୍ତୁ ମୁଁ ବୁଝିପାରୁ ନାହିଁ ଏହି ସବୁ କଥା ଶୁଣାଇବାର ଉଦ୍ୟମକାରୀ କିଏ ?

: କେହି ଆପଣଙ୍କର ବନ୍ଧୁ ହୋଇଥିବେ । ବେବି କହିଲା ।

: ଆଚ୍ଛା ମୁଁ ଏଥର ଉଠୁଛି । ମୋତେ ଆଉ ଗୋଟିଏ ବିଶେଷ କାମରେ ବାହାରିବାକୁ ହେବ । ଆପଣ ଟିକିଏ ସତର୍କ ଥିବେ । ମୁଁ ମଧ ଜଣେ ଦି'ଜଣ ପୋଲିସ ଆପଣଙ୍କ ଏଠାରେ ପୋଷ୍ଟିଂ କରିଦେଉଛି । ଦରକାର ପଡ଼ିଲେ ମୋତେ ଫୋନ୍ କରିବେ ।

ବେବି କହିଲା : ଆପଣ ଆଉ ଟିକେ ତତ୍ପର ହୁଅନ୍ତୁ । ସଞ୍ଜୟ ସମ୍ବନ୍ଧରେ କିଛି ଖବର ପାଇଲେ ନାହିଁ ?

: ନା, ସଞ୍ଜୟକୁ ପାଇଥିଲେ ଆମର ଅନେକ ଉପକାର ହୋଇଥାଆନ୍ତା । କିନ୍ତୁ ସଞ୍ଜୟ ନିଜେ ନିର୍ଦ୍ଦୋଷ ଜାଣି ସୁଦ୍ଧା କାହିଁକି ଯେ ଫେରାର ହେଲା, ତାହା ହିଁ ସବୁଠାରୁ ବଡ଼ ଚିନ୍ତାର ବିଷୟ । ତେବେ ଏହା ଭିତରେ ହୁଏତ ସଞ୍ଜୟ ଆପଣଙ୍କ ପାଖକୁ ଆସିପାରେ । ଆସିଲେ ତାକୁ ସବୁ କଥା ପଚାରିବେ । ସେ ଯଦି କୌଣସି ସୂତ୍ର ଦେଇପାରେ....

ବେବୀ ନୀରବରେ ଠିଆ ହୋଇ ତାଲୁକ୍‌ଦାରଙ୍କ କଥା ଶୁଣୁଥିଲା ।

ତାଲୁକ୍‌ଦାର ପୁଣି କହିଲେ : ଆଚ୍ଛା, ଆପଣ ମିସ୍ ଭାଟିଆକୁ ଚିହ୍ନନ୍ତି ?

ବେବି ସମ୍ମତି ଜଣାଇ କହିଲା : ଆମ ଅଫିସ୍‌ର ରିସେପ୍‌ସନିଷ୍ଟ ତ ?

: ହଁ । ତା' ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

: ମୁଁ ତା' ସମ୍ବନ୍ଧରେ କ'ଣ କହିବି । ଆମ ଅଫିସ୍‌ର ଜଣେ କର୍ମଚାରୀ । ତେଣୁ ତା' ସହିତ ମିଶିବାର ସୁଯୋଗ ମୋର ଆଦୌ ନ ଥିଲା । ତା'ଛଡ଼ା ବାପାଙ୍କ ଶାସନ ମୋ ପ୍ରତି ଏତେ କଡ଼ା ଥିଲା ଯେ, ଅଫିସକୁ ଯିବା ମୋର ଏକଦମ୍ ମନା ଥିଲା । ତେଣୁ ଅଫିସର କର୍ମଚାରୀମାନଙ୍କ ସମ୍ବନ୍ଧରେ ମୋର କିଛି ଧାରଣା ନାହିଁ ।

: ହୁଁ ।

ମିଷ୍ଟର ତାଲୁକଦାର ଅତ୍ୟନ୍ତ ସନ୍ତର୍ପଣରେ ଯାଇ ଗେଟ୍ ଖୋଲିଲେ । ଦରବାନ୍ ସାଲ୍ୟୁଟ ଜଣାଇ କହିଲା- କାହାକୁ ଖୋଜୁଛନ୍ତି ?

ମିଷ୍ଟର ତାଲୁକ୍‌ଦାର ଆଜି ସାଦା ପୋଷାକରେ ଯାଇଥିଲେ । ତେଣୁ ଦରବାନ୍‌ର ଏହି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିଲା । ସେ କହିଲେ, ମିସେସ୍ ଡି' ସୁଜା ଅଛନ୍ତି ?

: ମୋ ସାଙ୍ଗରେ ପାରିବେ । ମିଷ୍ଟର ତାଲୁକଦାର ଅଳ୍ପ ହସିଲେ ।

: କିନ୍ତୁ ମୋତେ ତ ସେପରି କିଛି ଅର୍ଡ଼ର ନାହିଁ ସାର୍ । ମୁଁ ଆପଣଙ୍କୁ ଭିତରକୁ ଛାଡ଼ିପାରିବି ନାହିଁ ।

: ତୁମେ ମିସେସ୍ ଡି'ସୁଜାଙ୍କୁ ଯାଇ କୁହ ଯେ, ମିଷ୍ଟର ତାଲୁକଦାର ଆସିଛନ୍ତି । ସେ ଆପଣଙ୍କ ସହିତ ଦେଖା କରିବାକୁ ଚାହାନ୍ତି ।

ଦରବାନ୍‌ଟି ବାଧ ହୋଇ ମିସେସ୍ ଡି' ସୁଜାଙ୍କ ଅନୁମତି ଆଣିବା ପାଇଁ ଭିତରକୁ ଗଲା । ତାଲୁକ୍‌ଦାର ପ୍ରତୀକ୍ଷା କରିଥିଲେ ।

କିଛି ସମୟ ପରେ ଦରବାନ୍ ଫେରି ଆସି କହିଲା : ଆପଣ ଯାଆନ୍ତୁ । ତଳେ ସେ ବିଲିଆର୍ଡ଼ ଖେଳୁଛନ୍ତି ।

: ବିଲିଆର୍ଡ଼ ! ହଠାତ୍ ବିଲିଆର୍ଡ଼ ନାଁ ଶୁଣି ତାଲୁକଦାରଙ୍କ ଦେହ ଯେପରି ରୋମାଂଚିତ ହୋଇ ଉଠିଲା । କିନ୍ତୁ କାହିଁକି ସେ କିଛି ଜାଣିପାରିଲେ ନାହିଁ । ଦରବାନକୁ ଆଉ କିଛି ନ କହି ସିଧା ଭିତରକୁ ପଶିଗଲେ ।

ପ୍ରଥମେ ମିସେସ୍ ଡି' ସୁଜା ବୋଧହୁଏ ତାଲୁକ୍‌ଦାରଙ୍କୁ ଚିହ୍ନି ପାରିଲେ ନାହିଁ । ତାଲୁକ୍‌ଦାର ମଧ୍ୟ ବିସ୍ଫାରିତ ନୟନରେ ମିସେସ୍ ଡି' ସୁଜାଙ୍କ ଆଡ଼େ ଅନାଇ ରହିଥିଲେ । ବିଲିଆର୍ଡ଼ ଟେବୁଲରେ ଆଉ ଦୁଇଜଣ ସୁପୁରୁଷ ବଲ୍‌କୁ ଲକ୍ଷ୍ୟ କରି ଖେଳରେ ମନ ଦେଇଥିଲେ ।

ମିଷ୍ଟର ତାଲୁକ୍‌ଦାର ପାଦେ ପାଦେ କରି ଆଗେଇ ଯାଇଥିଲେ ।

ମିସେସ୍ ଡି' ସୁଜା ହାତ ବଢ଼ାଇ କରମର୍ଦ୍ଦନ କରି କହିଲେ : ଆପଣଙ୍କୁ ଏହି ପ୍ଲେନ ଡ୍ରେସରେ ଚିହ୍ନିପାରିଲି ନାହିଁ ।

ତାଲୁକଦାର କହିଲେ : ମୁଁ ବି । କାରଣ କାଲି ରାତିରେ ଆପଣଙ୍କୁ ମୁଁ ପ୍ରଥମେ ଭେଟିଥିଲି । ଆଉ ଆଜି ଏଇ ବିଲିଆର୍ଡ଼ ଟେବୁଲରେ.....

ମିସେସ୍ ଡି' ସୁଜା ହସିଲେ । କହିଲେ : ଆସନ୍ତୁ ମୁଁ ଆପଣଙ୍କୁ ଏମାନଙ୍କ ସହିତ ପରିଚୟ କରାଇଦିଏ । ଇଏ ମିଷ୍ଟର ଭଗତ୍ । ଆଉ ଇଏ ମିଷ୍ଟର ଠାକୁର ।

ମିଷ୍ଟର ଭଗତ ଓ ମିଷ୍ଟର ଠାକୁର ତାଲୁକ୍‌ଦାରଙ୍କ ସହିତ ହାତ ମିଳାଇଲେ ।

ମିସେସ୍ ଡି' ସୁଜା ପୁଣି କହିଲେ : ଇଏ ମିଷ୍ଟର ତାଲୁକଦାର, ପୋଲିସ ଇନ୍‌ସପେକ୍ଟର ।

ସେତେବେଳେ ମିଷ୍ଟର ଠାକୁରଙ୍କର ହାତ ତାଲୁକ୍‌ଦାରଙ୍କ ହାତ ସହିତ ମିଶିଥିଲା । ମିଷ୍ଟର ତାଲୁକ୍‌ଦାର ଅନୁଭବ କଲେ, ମିଷ୍ଟର ଠାକୁରଙ୍କ ହାତଟା ଯେପରି କମ୍ପି ଉଠିଲା । ତାଲୁକ୍‌ଦାର ପଚାରିଲେ : ଆପଣଙ୍କୁ ସମସ୍ତେ ଠାକୁର ସାହେବ ବୋଲି ଡାକନ୍ତି, ନା ମିଷ୍ଟର ଠାକୁର ?

ମିଷ୍ଟର ଠାକୁରଙ୍କ ମୁଖଟା ଯେପରି ଆରକ୍ତ ହୋଇ ଉଠିଲା । ସେ ଚଁ଼କ କଣ୍ଠରେ ପ୍ରଶ୍ନ କଲେ : ଆପଣ କିପରି ଜାଣିଲେ ?

ତାଲୁକ୍‌ଦାର ଟିକିଏ ହସିବାକୁ ଚେଷ୍ଟା କରି କହିଲେ, ଆମର ପ୍ରଫେସନ୍ ହେଲା ଅନ୍ୟମାନଙ୍କ ସମ୍ବନ୍ଧରେ ଖବର ରଖିବା ।

: ତା' ବୋଲି ମୋ ସମ୍ବନ୍ଧରେ...

: ଆପଣ ଉତ୍କଣ୍ଠିତ ହେବାର କିଛି କାରଣ ନାହିଁ ଠାକୁର ସାହେବ । ଆପଣଙ୍କ ସମ୍ବନ୍ଧରେ ଦି'ଚାରି କଥା ଜାଣିବା ଅତି ସ୍ୱାଭାବିକ । କାରଣ ଆପଣ ଭାରତ ମେସିନାରୀର ଏକାଉଣ୍ଟସ୍ ଅଫିସର ।

: କିନ୍ତୁ ମିଷ୍ଟର ତାଲୁକ୍‌ଦାର, ଠାକୁର ସାହେବଙ୍କ ସ୍ୱର କିପରି କର୍କଶ ଶୁଣାଯାଉଥିଲା । ସେ କହିଲେ, ଆପଣ ଯଦି ମୋତେ ମିଷ୍ଟର ବହିଦାରଙ୍କ ହତ୍ୟା ମାମଲା ସହିତ ସମ୍ପୃକ୍ତ କରିବାକୁ ଭାବୁଥାନ୍ତି, ତା' ହେଲେ ଭୁଲ କରିବେ ।

: ଓଃ, ନା ନା ଠାକୁର ସାହେବ । ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣ ସେଦିନ ତ ଅନୁପସ୍ଥିତ ଥିଲେ । ତେଣୁ ଆପଣଙ୍କ ପ୍ରଶ୍ନ ମୋଟେ ଉଠୁ ନାହିଁ । ମୋତେ ଦେଖି ଆପଣଙ୍କର ଭୟ କରିବାର କାରଣ କିଛି ନାହିଁ ।

: ମୁଁ ସେଦିନ ଅନୁପସ୍ଥିତ ଥିଲି, ଆପଣଙ୍କୁ କିଏ କହିଲା ? ଆପଣ ତା' ହେଲେ ମୋ ସମ୍ବନ୍ଧରେ ଯଥେଷ୍ଟ ଖୋଜଖବର ନେଇନେଲେ ।

: ନା ଠାକୁର ସାହେବ । ମୁଁ ମୋଟେ କିଛି ଖୋଜ ଖବର ନେଇ ନାହିଁ । ସମ୍ବାଦଗୁଡ଼ିକ ଆପଣାଛାଏଁ ମୋ କାନକୁ ଆସିଛି । ଛାଡ଼ନ୍ତୁ ସେ ସବୁ କଥା । ଆପଣ ଖେଳରେ ମନ ଦିଅନ୍ତୁ । ମୋର ମିସେସ୍ ଡି' ସୁଜା ସହିତ ଟିକିଏ କାମ ଅଛି । ଶେଷ ହେଲେ ଚାଲିଯିବି । ଆପଣଙ୍କୁ ଡିଷ୍ଟର୍ବ କରିବାକୁ ଆସି ନାହିଁ ।

କିନ୍ତୁ ଠାକୁର ସାହେବଙ୍କର ଖେଳରୁ ସମସ୍ତ ଉତ୍ସାହ ଯେପରି ମରି ଯାଇଥିଲା । ମିଷ୍ଟର ଭଗତ୍ ଠାକୁର ସାହେବଙ୍କର ହାତ ଟାଣି ଟାଣି ବିଲିଆର୍ଡ଼ ଟେବୁଲ ଆଡ଼କୁ ଟାଣି ନେଇଗଲେ ।

ମିସେସ୍ ଡି' ସୁଜା ବିସ୍ଫାରିତ ନୟନରେ ଏମାନଙ୍କ କଥାବାର୍ତ୍ତା ଶୁଣୁଥିଲେ । ହଠାତ୍ ପ୍ରଶ୍ନ କଲେ - ଆପଣ ହଠାତ୍.... ଆପଣଙ୍କର ଯେ ସକାଳେ ଆସିବାର କଥା ଥିଲା !

: ସମୟ ହେଲା ନାହିଁ । ଯାହା ହେଉ ମିଷ୍ଟର ଅଗରୱାଲାଙ୍କୁ ଖବର ଦେଇଥିଲେ ?

ମିସେସ୍ ଡି' ସୁଜା କହିଲେ, ଆରେ ନା ନା, ମୁଁ ତ ଏକଦମ୍ ଭୁଲିଯାଇଛି । ତା' ଛଡ଼ା ମିଷ୍ଟର ଅଗରୱାଲାଙ୍କ ଠିକଣାଟା ମୋ ପାଖରେ ନାହିଁ । ସେ ବେଳେବେଳେ ଆସନ୍ତି ବିଲିଆର୍ଡ଼ ଖେଳିବାକୁ । ତା'ପରେ ହଠାତ୍ ମିଷ୍ଟର ଠାକୁରଙ୍କ ଉପରେ ଆପଣ ଅତ୍ୟାଚାର ଆରମ୍ଭ କରିଦେଲେ ଯେ ।

ମିଷ୍ଟର ତାଲୁକଦାର ହସିଲେ । କହିଲେ : ଅପରାଧୀ ପଛରେ ଧାଇଁବା ଆମର ଅଭ୍ୟାସ । କୌଣସି ଭଦ୍ରଲୋକଙ୍କୁ ଆମେ କେବେ ବିରକ୍ତ କରି ନ ଥାଉ । ତେଣୁ ଠାକୁର ସାହେବଙ୍କ ଉପରେ ଅତ୍ୟାଚାର କରିବାର ପ୍ରଶ୍ନ ମୋଟେ ଉଠୁ ନାହିଁ ।

ଠାକୁର ସାହେବ ଓ ମିଷ୍ଟର ଭଗତ ବିଲିଆର୍ଡ଼ ଟେବୁଲରେ ଖେଳ ଆରମ୍ଭ କରିଦେଇଥିଲେ । ମିସେସ୍ ଡି' ସୁଜା ସାମ୍ନାର ଗୋଟିଏ ଚେୟାର ଉପରେ ତାଲୁକଦାରଙ୍କୁ ବସିବାକୁ କହି ନିଜେ ବସିଲେ ।

ମିସେସ୍ ଡି' ସୁଜା କହିଲେ : ମିଷ୍ଟର ଅଗରୱାଲାଙ୍କ ସହିତ ଆପଣଙ୍କର କ'ଣ ଖୁବ୍ ଜରୁରୀ କାମ ଅଛି ?

ତାଲୁକ୍‌ଦାର କହିଲେ : ଖୁବ୍ ଜରୁରୀ ନ ହେଲେ ବି ଦରକାରୀ । ଦେଖା ହୋଇଥିଲେ ଗୋଟାଏ ସମସ୍ୟାର ସମାଧାନ ହୋଇପାରି ଥାଆନ୍ତା ।

ମିସେସ୍ ଡି' ସୁଜା ଟିଣରୁ ଗୋଟାଏ ସିଗାରେଟ୍ ବାହାର କରି ଅଗ୍ନି ସଂଯୋଗ କଲେ । କହିଲେ : ମୁଁ ତାଙ୍କର ଗୋଟାଏ ଠିକଣା ଦେଇପାରେ । ରାତି ୮ଟାରୁ ୯ଟା ଯାଏ ସେ ପ୍ରାୟ ସେଇଠି ଥାଆନ୍ତି । ତେବେ ଆଜି ଆପଣ ତାଙ୍କୁ ଯେ ସେଉଠୁ ପାଇବେ, ସେପରି କିଛି ନିଶ୍ଚୟତା ନାହିଁ ।

: ସେଥିପାଇଁ ଆପଣ ଚିନ୍ତା କରନ୍ତୁ ନାହିଁ ମିସେସ୍ ଡି' ସୁଜା । ଅନିଶ୍ଚିତତା ପଛରେ ଧାଇଁବା ହିଁ ଆମର ଧର୍ମ । ତାଲକ୍‌ଦାର ଉତ୍ସାହିତ ହୋଇ କହିଲେ ।

ମିସେସ୍ ଡି' ସୁଜା କହିଲେ, ତା' ହେଲେ ଲେଖନ୍ତୁ ।

ମିସେସ୍ ଡି' ସୁଜା ଗୋଟିଏ ଟେଲିଫୋନ୍ ନମ୍ବର ଦେଇ କହିଲେ: ଆପଣ ଏହି ନମ୍ବରରେ ଡାଏଲ କରିପାରନ୍ତି ।

: କିନ୍ତୁ ଠିକଣାଟା ?

: ମୁଁ ଜାଣି ନାହିଁ ।

: ହୁଁ, ମିଷ୍ଟର ତାଲୁକଦାର ଲକ୍ଷ୍ୟ କରୁଥିଲେ, ବିଲିଆର୍ଡ଼ ଟେବୁଲରେ ଠାକୁର ସାହେବଙ୍କର ମୋଟେ ମନ ଲାଗୁ ନ ଥିଲା । ସେ ରହି ରହି ମିଷ୍ଟର ତାଲୁକଦାରଙ୍କ ଆଡ଼େ ଚାହିଁ ପୁଣି ଦୃଷ୍ଟି ଫେରାଇ ନେଉଥିଲେ ।

ମିଷ୍ଟର ଭଗତ ଶେଷରେ ଖେଳ ବନ୍ଦ କରି ଦେଇ କହିଲେ : ଆଜି ଆଉ ଖେଳଟା ଜମିଲା ନାହିଁ । ମିଷ୍ଟର ତାଲୁକ୍‌ଦାର, ଆସନ୍ତୁ ବାଜିଏ ହେଇଯାଉ ।

: ସରି । ମିଷ୍ଟର ତାଲୁକ୍‌ଦାର କହିଲେ । ମୋ ଭଳି ଅନାଡ଼ି ଖେଳୁଆଡ଼୍ ସଙ୍ଗରେ ଆପଣଙ୍କ ମୋଟେ ଜମିବ ନାହିଁ ।

ମିଷ୍ଟର ଭଗତ ଗୋଟାଏ ଚେୟାରରେ ବସୁ ବସୁ କହିଲେ : ଆଜି ହଠାତ୍ ମିଷ୍ଟର ଠାକୁରଙ୍କର ଯେ କ'ଣ ହେଲା ଠିକ୍ ବୁଝିପାରୁ ନାହିଁ । ସେ ତ କେବେ ଏତେ ଅନ୍ୟମନସ୍କ ମନେ ହୁଅନ୍ତି ନାହିଁ ।

ଠାକୁର ସାହେବ କିନ୍ତୁ ସେହି ବିଲିଆର୍ଡ଼ ଟେବୁଲରେ ଏକା ଏକା ଖେଳିବାକୁ ଚେଷ୍ଟା କରୁଥିଲେ ।

ତାଲୁକ୍‌ଦାର ମିସେସ୍ ଡି' ସୁଜାଙ୍କୁ ଲକ୍ଷ୍ୟ କରି କହିଲେ, ଅନେକ ଧନ୍ୟବାଦ । ଆଜି ମୁଁ ଉଠୁଛି । ପୁଣି ଦେଖା ହେବ ।

ମିସେସ୍ ଡି' ସୁଜା ହଠାତ୍ ତାଲୁକ୍‌ଦାରଙ୍କ ହାତଟାକୁ ମୁଠାଇ ଧରି କହିଲେ : ନା, ତା' ହୁଏନା ମିଷ୍ଟର ତାଲୁକଦାର । କାଲି ଆପଣ ମୋତେ ଠକି ଦେଇ ଚାଲିଯାଇଥିଲେ ବୋଲି ଆଜି ଯାଇପାରିବେ ନାହିଁ । ଅନ୍ତତଃ କପେ କଫି ପିଇବାକୁ ହେବ ।

ମିଷ୍ଟର ତାଲୁକଦାର ଆଉ କିଛି ପ୍ରତିବାଦ କଲେ ନାହିଁ ।

ସେତିକିବେଳେ ଘର ମଧ୍ୟରେ ପ୍ରବେଶ କଲେ ଆଉ ଜଣେ ରୂପସୀ ମହିଳା । ସେ ଯେପରି ବ୍ୟସ୍ତ ବିବ୍ରତ ହୋଇ ଘର ମଧ୍ୟରେ ପ୍ରବେଶ କଲେ । ହଠାତ୍ ତାଲୁକ୍‌ଦାରଙ୍କ ଉପରେ ଆଖି ପଡ଼ିବା ମାତ୍ରକେ ସେ ସ୍ଥିର ହୋଇଗଲେ ।

ମିସେସ୍ ଡି' ସୁଜା ଅତ୍ୟନ୍ତ ସରଳ କଣ୍ଠରେ ପ୍ରଶ୍ନ କଲେ : ଖବର କ'ଣ ସୁଜାତା ! ଅନେକ ଦିନ ହେଲା ଦେଖା ନ ଥିଲା ଯେ ।

ସୁଜାତା ପାଦର ଗତି ଧୀର କରି ଗୋଟିଏ ଚେୟାର ଉପରେ ବସୁ ବସୁ କହିଲେ : ଟିକିଏ ବାହାରକୁ ଚାଲି ଯାଉଥିଲି । ଆଉ ଖବର କ'ଣ ? ଆପଣଙ୍କର ସବୁ ଭଲ ?

: ଅଛି ମୋଟାମୋଟି । ତୋ ସ୍ୱାସ୍ଥ୍ୟଟା ଟିକିଏ ଖରାପ ହୋଇ ଯାଇଥିଲା ପରି ମନେ ହେଉଛି । ଦେହ ଫେହ କିଛି ଖରାପ ଥିଲା କି ?

: ନା, ସେପରି କିଛି ନୁହେଁ । ତେବେ ମଝିରେ ଟିକିଏ ସର୍ଦ୍ଦି ଫର୍ଦ୍ଦି ହୋଇଥିଲା ।

ସାମାନ୍ୟ ନୀରବତା ପରେ ମିସେସ୍ ଡି' ସୁଜା କହିଲେ : ଆସନ୍ତୁ ମିଷ୍ଟର ତାଲୁକ୍‌ଦାର । ମୋ ସହିତ ଆସନ୍ତୁ । ଆପଣ ଟିକିଏ ବ୍ୟସ୍ତ ଅଛନ୍ତି ପରା !

ମିଷ୍ଟର ତାଲୁକ୍‌ଦାର ଉଠୁ ଉଠୁ ଥରେ ସୁଜାତା ମୁହଁକୁ ଓ ଥରେ ଠାକୁର ସାହେବଙ୍କ ଆଡ଼କୁ ଚାହୁଁ ଚାହୁଁ ଘରୁ ବାହାରି ଆସିଲେ ।

ମିସେସ୍ ଡି' ସୁଜା ତାଲୁକ୍‌ଦାରଙ୍କୁ କଫି ପିଇବା ପାଇଁ ଉପର ମହଲାକୁ ଡାକୁଥିଲେ । ସେ କିନ୍ତୁ ରାଜି ହେଲେ ନାହିଁ । କହିଲେ : ଅନେକ ଧନ୍ୟବାଦ । ଆପଣ ଆତିଥେୟତା ମୁଁ ଆଉ ଦିନେ ରକ୍ଷା କରିବି । ଆଚ୍ଛା, ଏଇ ସୁଜାତା ଝିଅଟି କିଏ ?

ମିସେସ୍ ଡି' ସୁଜା ଟିକିଏ ହସିବାକୁ ଚେଷ୍ଟା କରି କହିଲେ : ମୋର ଏଠାକୁ ଯେଉଁମାନେ ଆସନ୍ତି, ସମସ୍ତଙ୍କର ପରିଚୟ ଦେବା ମୋ ପକ୍ଷରେ ଅସମ୍ଭବ । କାରଣ ମୁଁ ଅନେକଙ୍କର ପରିଚୟ ଜାଣି ନାହିଁ । ସେମାନେ ଆସନ୍ତି, ଜଣକ ସାଙ୍ଗରେ ଆଉ ଜଣେ, ଆଉ ଜଣକ ସାଙ୍ଗରେ ଆଉ ଜଣେ । ମୁଁ ସମସ୍ତଙ୍କୁ ଭଲ ପାଏ । କାହାରି ପରିଚୟ ସହିତ ମୋର କିଛି ଆବଶ୍ୟକ ନ ଥାଏ । ତେଣୁ ସମସ୍ତଙ୍କ ପରିଚୟ ଜାଣିବା ମୋ ପକ୍ଷରେ ସମ୍ଭବ ହୁଏ ନାହିଁ ।

ମିଷ୍ଟର ତାଲୁକଦାର ମୁହୂର୍ତ୍ତେ ଚିନ୍ତା କଲେ । ତା'ପରେ ଧୀରେ ଧୀରେ କହିଲେ : ହୁଁ ଆଚ୍ଛା, ଅସନ୍ତୁ ଆପଣ । ମୁଁ ଆଜି କଫି ପିଇବି ଆଉ ଆପଣଙ୍କ ସହିତ ଅନେକ ସମୟ ଯାଏ ଗଳ୍ପ କରିବି ।

ମିସେସ୍ ଡି' ସୁଜା ଭିତରକୁ ପଶିଯାଇ ବୋଧହୁଏ କଫି କରିବାର ନିର୍ଦ୍ଦେଶ ଦେଇ ଆସିଲେ । ତା'ପରେ ଗୋଟିଏ ସିଗାରେଟ୍‌ରେ ଅଗ୍ନି ସଂଯୋଗ କରି ଗୋଟିଏ ସୋଫା ଉପରେ ବସୁ ବସୁ କହିଲେ: ମିଷ୍ଟର ତାଲୁକ୍‌ଦାର, ମୁଁ ଭାବୁଛି ଆପଣଙ୍କୁ ଗୋଟିଏ କଥା କହିବି, ଆପଣ ଯଦି କିଛି ମନେ ନ କରିବେ । ତା' ହେଲେ ମୁଁ କହିବାକୁ ଭରସା ପାଇବି ।

: ନା ନା, ଆପଣ କୁହନ୍ତୁ । ମୁଁ ମୋଟେ କିଛି ମନେ କରିବି ନାହିଁ ।

ମିସେସ୍ ଡି' ସୁଜା ବହୁତ ବେଳ ଯାଏ ନୀରବରେ କ'ଣ ଚିନ୍ତା କଲେ । ତା'ପରେ ଧୀରେ ଧୀରେ କହିଲେ : ଏହି ଦୁନିଆରେ ମଣିଷ ଜୀବନ ଧରି ବଞ୍ଚି ରହିବା ବହୁ ସାଧ ସାଧନାର କଥା । ବିଶେଷତଃ ମଣିଷ ଯେତେବେଳେ ଆଶ୍ରୟହୀନ ହୋଇପଡ଼େ ।

ମିସେସ୍ ଡି' ସୁଜାଙ୍କ ମୁହଁରେ କାଳିମା ଘୋଟି ଆସିଥିଲା ।

: କିନ୍ତୁ ହଠାତ୍ ଆପଣ... ତାଲୁକ୍‌ଦାର କ'ଣ କହିବାକୁ ଯାଇ ନୀରବ ହୋଇଗଲେ ।

ମିସେସ୍ ଡି' ସୁଜା କହିଲେ : ଆପଣ ଜାଣିନାହାନ୍ତି ବୋଧ ହୁଏ ମିଷ୍ଟର ଡି' ସୁଜା ଅନେକ ଦିନ ହେବ ନାହାନ୍ତି । ମାନେ ସେ ଏଇ ଇହଜଗତ ଛାଡ଼ି ଚାଲି ଯାଇଛନ୍ତି ।

ମିଷ୍ଟର ତାଲୁକ୍‌ଦାର ସଜାଡ଼ି ହୋଇ ବସିଲେ ।

: ସେ ଅନେକ ଦିନ ତଳର କଥା । ଅବଶ୍ୟ ସେଦିନଗୁଡ଼ାକ ଧୀରେ ଧୀରେ ମୁଁ ଭୁଲି ସାରିଲିଣି । ତଥାପି ଏବେ ବି ବେଳେ ବେଳେ ମୋତେ ନିରାଶ୍ରୟ ମନେ ହୁଏ । ବେଳେ ବେଳେ ମୁଁ ଅନୁଭବ କରେ, ହୁଏତ ଆଉ ନୁହେଁ ଆଜିଠାରୁ ମୋର ରଥଚକ ବନ୍ଦ ହୋଇଯିବ । କିନ୍ତୁ ବନ୍ଦ ହୋଇ ନାହିଁ ମିଷ୍ଟର ତାଲୁକଦାର । ଏଇ ସବୁ ମିଷ୍ଟର ଭଗତ, ଠାକୁର ସାହେବ ଆଉ ଅଗରୱାଲ, କାନୋଡ଼ିଆ, ଜାଯୋଡ଼ିଆ ଏଇମାନେ ମୋ ରଥକୁ ଟାଣି ଟାଣି ଆଗେଇ ଚାଲିଛନ୍ତି । ଆପଣ ଜଣେ ପୋଲିସ ଅଫିସର । ସରକାରୀ ଲୋକ । ଅନ୍ୟାୟ ଅନାଚାର ବିରୁଦ୍ଧରେ ଆପଣଙ୍କର ଅଭିଯାନ । କିନ୍ତୁ ମିଷ୍ଟର ତାଲୁକ୍‌ଦାର, ମୁଁ ମୋରି କଥା କହୁଛି । ମୋତେ ଏଇ ଦୁନିଆରେ ବଞ୍ଚି ରହିବା ପାଇଁ ଏପରି କେତେଗୁଡ଼ିଏ କର୍ମ କରିବା ପାଇଁ ପଡୁଛି, ଯାହା ଆପଣମାନଙ୍କ ଦୃଷ୍ଟିରେ, ଆପଣମାନଙ୍କ ଭାଷାରେ ଅନ୍ୟାୟ, ଅପରାଧ । କିନ୍ତୁ ମୁଁ ତାହା ନ କଲେ ବଞ୍ଚି ପାରିବି ନାହିଁ । ଆପଣମାନଙ୍କର ଶରଣାପନ୍ନ ହେଲେ ଆପଣ ମୋତେ ପେଟଭରି ଗଣ୍ଡାଏ ଖାଇବାକୁ ବି ଦେବେ ନାହିଁ । ଛାଡ଼ନ୍ତୁ । ସେ ସବୁ କହି ଆପଣଙ୍କର ସମୟ ନଷ୍ଟ କରିବାକୁ ମୁଁ ଚାହେ ନାହିଁ । ତେବେ ଗୋଟିଏ ଅନୁରୋଧ ମୁଁ ଆପଣଙ୍କ ପାଖରେ କରିବି । ଆପଣଙ୍କୁ ମୁଁ ବନ୍ଧୁ ଭାବରେ ଗ୍ରହଣ କରିଛି । ପୋଲିସ ଅଫିସର ଭାବରେ ନୁହେଁ । ତେଣୁ ଆଶା କରୁଛି ଅନ୍ୟ କିଛି ଭାବିବେ ନାହିଁ । ଚାକର କଫିପଟ୍ ଧରି ପହଞ୍ଚିଲା । ମିସେସ୍ ଡି' ସୁଜା ନୀରବ ହେଲେ । କଫିପଟ୍‌ରୁ କଫି ଢାଳୁ ଢାଳୁ ତାଲୁକ୍‌ଦାରଙ୍କ ମୁହଁକୁ ଚାହିଁଲେ ।

ମିଷ୍ଟର ତାଲୁକ୍‌ଦାର କହିଲେ: ଆପଣ କୁହନ୍ତୁ ମିସେସ୍ ଡି' ସୁଜା । ମୁଁ ଆପଣଙ୍କ କଥା ଆନ୍ତରିକତା ସହକାରେ ଶୁଣିଛି । ପୋଲିସ ଅଫିସର ଭାବରେ ନୁହେଁ, ବନ୍ଧୁ ଭାବରେ ।

ମିସେସ୍ ଡି' ସୁଜା କହିଲେ : ପେଟ ପୋଷିବା ପାଇଁ ସମସ୍ତଙ୍କର ଗୋଟାଏ ଗୋଟାଏ ପ୍ରଫେସନ ଅଛି । ଯେପରି ଆପଣ ଚାକିରି କରୁଛନ୍ତି, ଆଉ କିଏ ବ୍ୟବସାୟ କରୁଛି, ଆଉ କିଏ ଚୋରି କରୁଛି, କେହି ପେଟ ପୋଷିବା ପାଇଁ ଖୁଣ୍ କରୁଛି । ସେମିତି ମୋର ବି ଗୋଟେ ପ୍ରଫେସନ ଅଛି । ସେଇ ଆୟରୁ ମୁଁ ଘରଭଡ଼ା ଦିଏ, ପେଟ ପୋଷେ, ଆଉ ବଞ୍ଚି ରହିବାର ସ୍ୱପ୍ନ ଦେଖେ । ମୋର ସେଇ ପ୍ରଫେସନ୍‌ଟା ଅନେକଙ୍କ ଆଖିରେ ଅସାମାଜିକ ହେଲେ ବି ମୋର କିନ୍ତୁ ସେଇଟା ପ୍ରଫେସନ ।

ମିସେସ୍ ଡି' ସୁଜା ତାଲୁକ୍‌ଦାରଙ୍କ ଆଡ଼କୁ କଫି କପେ ବଢ଼େଇ ଦେଇ ନୀରବ ହେଲେ ।

ମିଷ୍ଟର ତାଲୁକଦାର କହିଲେ : ତା'ପରେ ?

ମିସେସ୍ ଡି' ସୁଜା ସେହିପରି ଗମ୍ଭୀର କଣ୍ଠରେ କହିଲେ : ତା'ପରେ ଆଉ କ'ଣ ? ଅସଲ କଥା ହେଉଛି ମୋର ଏଇ ପ୍ରଫେସନ୍ ସ୍ଥାନକୁ ବାରମ୍ବାର ଯଦି ଆପଣମାନଙ୍କ ପରି ସରକାରୀ ଅଫିସିଆଲମାନେ ଆସନ୍ତି, ତେବେ ଦୁଇ ମାସ ପରେ ପେଟରେ ଓଦାକନା ଦେବାକୁ ପଡ଼ିବ ।

ମିଷ୍ଟର ତାଲୁକଦାର ମିସେସ୍ ଡି' ସୁଜାଙ୍କର ଅଭିଯୋଗଟା କେଉଁଠି ବୁଝିପାରିଲେ । ଦରଦୀ ସ୍ୱରରେ କହିଲେ : ଆପଣ ମୋତେ ଭୁଲ ବୁଝନ୍ତୁ ନାହିଁ ମିସେସ୍ ଡି' ସୁଜା । ମୁଁ ଆସିନାହିଁ ଆପଣଙ୍କ ପ୍ରଫେସନରେ ବାଧା ଦେବା ପାଇଁ । ତେବେ ବେଳେ ବେଳେ ନାନା କାରଣରୁ ଆମକୁ ଆପଣମାନଙ୍କ ଦ୍ୱାରସ୍ଥ ହେବାକୁ ପଡ଼ିବ । ମୁଁ କଥା ଦେଉଛି, ଆପଣଙ୍କ ପ୍ରଫେସନ୍‌ରେ ବାଧା ଉପୁଜିଲା ଭଳି କୌଣସି କାମ ମୁଁ କରିବି ନାହିଁ । କେବେ କେହି ଅପରାଧୀ ଯଦି ଆପଣଙ୍କ ଶୀତଳ ଛାୟା ତଳେ ଆତ୍ମଗୋପନ କରିବାକୁ ଚେଷ୍ଟା କରେ, ମୁଁ ତାକୁ କ୍ଷମା କରିପାରିବି ନାହିଁ ।

ମିସେସ୍ ଡି' ସୁଜା କିଛି ଉତ୍ତର ଦେଲେ ନାହିଁ । ସେ ନୀରବରେ କଫି ପିଉଥିଲେ ।

ମିଷ୍ଟର ତାଲୁକଦାର ମଧ୍ୟ କଫି କପ୍‌ଟି ଶେଷ କରିବା ପାଇଁ ଚଞ୍ଚଳ ହୋଇ ଉଠିଥିଲେ ।

ଶେଷରେ ମିସେସ୍ ଡି' ସୁଜା ଗୋଟିଏ ଦୀର୍ଘଶ୍ୱାସ ଛାଡ଼ି କହିଲେ : ଓଏଲ ମିଷ୍ଟର ତାଲୁକ୍‌ଦାର । ଆପଣ ଆସନ୍ତୁ । ମୋ ଉପରେ ଟିକିଏ ଶୁଭଦୃଷ୍ଟି ରଖିଥିବେ । ମୁଁ ମଧ କୌଣସି ଅତି ଅସାମାଜିକ କାର୍ଯ୍ୟକୁ ପ୍ରଶ୍ରୟ ଦେବାକୁ ଚାହେନା । କେହି ଅପରାଧ କରି ମୋ ଶୀତଳ ଛାୟାତଳେ ଆତ୍ମଗୋପନ କରୁ ଏହା ମଧ ମୁଁ ଚାହେ ନାହିଁ । ମୁଁ ଆପଣଙ୍କୁ ସେଥିପାଇଁ ସାହାଯ୍ୟ କରିବି । ତେବେ ମୋର ଗୋଟାଏ ଅନୁରୋଧ, ଆପଣ ଠିକ୍ ଏଇ ସମୟଟାରେ ଏଠାକୁ ନ ଆସିବାକୁ ଚେଷ୍ଟା କରିବେ ।

: ଠିକ୍ ଅଛି । ମିଷ୍ଟର ତାଲୁକ୍‌ଦାର ଉଠିଲେ । କହିଲେ, ଆଜି ମୁଁ ଆସୁଛି । ଖୁବ୍ ଦରକାର ନ ପଡ଼ିଲେ ମୁଁ ଆପଣଙ୍କୁ ବିରକ୍ତ କରିବାକୁ ଆସିବି ନାହିଁ ।

ମିସେସ୍ ଡି' ସୁଜା ମଧ ଉଠି ଠିଆ ହେଲେ । କହିଲେ : ଆପଣ କିଛି ମନେ କରିବେ ନାହିଁ ମିଷ୍ଟର ତାଲୁକଦାର । ବେଳେ ବେଳେ ମୁଁ ନିଜକୁ ବଡ଼ ଅସହାୟ ମନେ କରେ । ଫଳରେ ଅନେକ ସମୟରେ ମୁଁ ବଡ଼ ଦୁର୍ବଳ ହୋଇପଡ଼େ । ଆଉ ସେଇ ଦୁର୍ବଳ ମୁହୂର୍ତ୍ତଗୁଡ଼ାକ ମୋ ପକ୍ଷରେ ଖୁବ୍ ଯନ୍ତ୍ରଣାଦାୟକ ହୋଇ ଉଠେ । ଆପଣ ମୋତେ କ୍ଷମା କରିବେ ମିଷ୍ଟର ତାଲୁକଦାର । ଦୁନିଆରେ ମଣିଷ ବଞ୍ଚି ରହିବା ଗୋଟାଏ ଯନ୍ତ୍ରଣା ।

ମିଷ୍ଟର ତାଲୁକ୍‌ଦାର ଅଳ୍ପ ହସି ମିସେସ୍ ଡି' ସୁଜାଙ୍କଠାରୁ ବିଦାୟ ନେଇ ଚାଲିଗଲେ ।



ମିଷ୍ଟର ତାଲୁକଦାର ଠିକ୍ ସାଢ଼େ ଆଠଟା ବେଳେ ଟେଲିଫୋନ୍ ଡାଏଲ୍ ଘୁରାଇଲେ ।

: ହ୍ୟାଲୋ ? ହୋଟେଲ ଲିଡ଼ୋ । ଅପର-ପ୍ରାନ୍ତରୁ ଉତ୍ତର ଆସିଲା ।

: ମିଷ୍ଟର ଅଗରୱାଲ ଅଛନ୍ତି, ତାଲୁକଦାର ପଚାରିଲେ ।

: କେଉଁ ଅଗରୱାଲ ।

: ରାମସୁଭଗ ଅଗରୱାଲ ।

: କେତେ ନମ୍ବର ସୁଇଟ୍‌ରେ ରୁହନ୍ତି ?

: ମୁଁ ଜାଣି ନାହିଁ, ତେବେ ଖବର ପାଇଛି ସେ ସବୁଦିନ ପ୍ରାୟ ୮ଟାରୁ ୯ଟା ପର୍ଯ୍ୟନ୍ତ ଆପଣଙ୍କ ସେଇଠି ଥାଆନ୍ତି ।

: ଆପଣ ତା' ହେଲେ ଭୁଲ ସମ୍ବାଦ ପାଇଛନ୍ତି ।

ସଙ୍ଗେ ସଙ୍ଗେ ଅପର-ପ୍ରାନ୍ତରୁ ଟେଲିଫୋନ୍ ରିସିଭରଟା ରଖିଦେବାର ଶବ୍ଦ ହେଲା । ମିଷ୍ଟର ତାଲୁକ୍‌ଦାର ଦୁଇ ଚାରିଥର 'ହ୍ୟାଲୋ ହ୍ୟାଲୋ' କରିବା ପରେ, ପୁଣି ସେହି ନମ୍ବରକୁ ଡାଏଲ କଲେ ।

ଅପରପ୍ରାନ୍ତରୁ ଶୁଣାଗଲା । ହ୍ୟାଲୋ ? ଲିଡ଼ୋ ।

: ମୁଁ ମିଷ୍ଟର ତାଲୁକ୍‌ଦାର କହୁଛି ।

: ଲିଡ଼ୋରେ କିଛି ସୁଇଟ୍ ଖାଲି ନାହିଁ । ଆପଣ ଅନ୍ୟ କେଉଁଠି ଚେଷ୍ଟା କରନ୍ତୁ ।

ମୁଁ ପୋଲିସ ଇନ୍ସପେକ୍ଟର ତାଲୁକ୍‌ଦାର କହୁଛି ।

: କୁହନ୍ତୁ ସାର୍ ।

: ମୋତେ ଟିକିଏ ମିଷ୍ଟର ଅଗରୱାଲଙ୍କ ସହିତ କଥା କହିବାକୁ ଦିଅନ୍ତୁ ।

: କିନ୍ତୁ ସାର୍, ମିଷ୍ଟର ଅଗରୱାଲ ନାମରେ ଏ ସପ୍ତାହରେ କେହି ଆମ ଏଠି ଉଠି ନାହାନ୍ତି । ଆପଣ କେଉଁଠୁ ରଙ୍ଗ ଇନ୍‌ଫରମେସନ୍ ପାଇଛନ୍ତି ।

: କିନ୍ତୁ ମୋ ଇନ୍‌ଫରମେସନ୍ ରଙ୍ଗ୍ ହେବାର ତ କଥା ନୁହେଁ । ଆଚ୍ଛା, ଆପଣଙ୍କ 'ଲିଡ଼ୋ'ର ଠିକଣାଟା କହିଲେ ।

: ପାର୍କ ଷ୍ଟ୍ରୀଟ୍ ।

: ମ୍ୟାନେଜରଙ୍କୁ ଟିକିଏ ଦିଅନ୍ତୁ ତ !

: ସେ ବାହାରକୁ ଯାଇଛନ୍ତି ।

: ଠିକ୍ ଅଛି, ପରେ ପୁଣି ମୁଁ ଫୋନ୍ କରିବି ।

ମିଷ୍ଟର ତାଲୁକ୍‌ଦାର ରିସିଭରଟା ରଖିଦେଇ ଚିନ୍ତିତ ହୋଇପଡ଼ିଲେ ।

ଅବନୀ ବାବୁଙ୍କୁ ଘର ଭିତରେ ପ୍ରବେଶ କରୁଥିବାର ଦେଖି ପଚାରିଲେ : ମିସ୍ ଭାଟିଆର କିଛି ଖବର ପାଇଲେ ?

: ନା, ସେ ଏ ପର୍ଯ୍ୟନ୍ତ ଫେରି ନାହାନ୍ତି ।

: ବଡ଼ ଚିନ୍ତାର ବିଷୟ । ଅଫିସ୍‌କୁ ସେ ଯାଇ ନାହିଁ । ସକାଳ ଦଶଟାରୁ ବାହାରି ଯାଇ ବର୍ତ୍ତମାନ ସୁଦ୍ଧା ଫେରିଲା ନାହିଁ । ତା' ହେଲେ କ'ଣ...

: ନା ନା, ଆପଣ ଯାହା ଭାବୁଛନ୍ତି ତାହା ନୁହେଁ ସାର୍ । ମୁଁ ଭାବୁଛି ମିସ୍ ଭାଟିଆ ଇଚ୍ଛା କରି କେଉଁଠି ଆତ୍ମଗୋପନ କରିଛନ୍ତି ।

: ଉଦ୍ଦେଶ୍ୟ ?

: ଉଦ୍ଦେଶ୍ୟ । ହଁ ଉଦ୍ଦେଶ୍ୟ କିଛି ଗୋଟାଏ ନିଶ୍ଚୟ ଅଛି ମିସ୍ ଭାଟିଆଙ୍କର ।

: ସେ କ'ଣ ମୃତ୍ୟୁ ଭୟ କରି ଆତ୍ମଗୋପନ କରିଛି ? ସେ କ'ଣ ଭାବିଛି କେଉଁଠି ଆତ୍ମଗୋପନ କରି ରଖିଲେ ହତ୍ୟାକାରୀ ତା'ର ସନ୍ଧାନ ପାଇବ ନାହିଁ ?

: ନା ସାର୍, ମୋ ଧାରଣା କିନ୍ତୁ ଭିନ୍ନ । ମୋର କାହିଁକି ମନେ ହେଉଛି, ମିସ୍ ଭାଟିଆ ଆତତାୟୀର ଭୟରେ ନୁହେଁ, ପୋଲିସ ଭୟରେ ଆତ୍ମଗୋପନ କରିଛନ୍ତି ।

: କ'ଣ ? ମିଷ୍ଟର ତାଲୁକ୍‌ଦାରଙ୍କ ସ୍ୱର କିପରି ଅସ୍ୱାଭାବିକ ଜଣାପଡ଼ିଲା ।

: ହଁ ସାର୍ ଆଜି ସକାଳେ ମିସ୍ ଭାଟିଆ ସହିତ ଦେଖା କରିଥିଲି । ଯେଉଁ କନେଷ୍ଟବଲଟିକୁ ସେଠାରେ ରାତି ଡିଉଟିରେ ପୋଷ୍ଟିଂ କରା ହୋଇଥିଲା, ତା' ମୁହଁରୁ ଯାହା ଶୁଣିଲି, ମିସ୍ ଭାଟିଆର ଗତିବିଧି ଖୁବ୍ ସନ୍ଦେହଜନକ । ଖାଲି ସେତିକି ନୁହେଁ, ରାତିରେ ମିସ୍ ଭାଟିଆର ଦୁଇ ଚାରୋଟି ଟେଲିଫୋନ୍ ଆସିଥିଲା । ମିସ୍ ଭାଟିଆ ସେହି ଫୋନ୍‌ରେ ଅନେକ ବେଳ ଯାଏ ଆଳାପ କରିଥିଲେ ।

: ହୁଁ, ତା' ହେଲେ ମିସ୍ ଭାଟିଆ ତା'ର ଅସହାୟ ଅବସ୍ଥା କଥା ବର୍ଣ୍ଣନା କରି ଆମ ପାଖରେ ଆତ୍ମସମର୍ପଣ କଲା କାହିଁକି ?

: ହୁଏତ ଆମର ଆସ୍ଥାଭାଜନ ହେବା ପାଇଁ ।

: ତା' ହେଲେ...

: ହଁ ସାର୍ । ସକାଳେ ମୁଁ ଯେତେବେଳେ ମିସ୍ ଭାଟିଆ ସହିତ ଦେଖା କରିଲି, ସେତେବେଳେ ଚା' ଖାଉଥିଲେ । ମୋତେ ଦେଖି ଖୁବ୍ ଆନନ୍ଦ ପ୍ରକାଶ କରି କହିଲେ, ଆପଣଙ୍କୁ ଧନ୍ୟବାଦ । ରାତିଟା କାଲି ମୋର ନିରାପଦରେ କଟିଛି । ମିଷ୍ଟର ତାଲୁକଦାରଙ୍କ ଋଣ ମୁଁ ଜୀବନରେ ଶୁଝିପାରିବି ନାହିଁ ।

ମୁଁ ପଚାରିଲି : ଆପଣ ଆଜି କ'ଣ ଅଫିସ୍ ଯିବେ ?

ମିସ୍ ଭାଟିଆ କହିଲେ : ଯିବାକୁ ଭାବୁଛି । ଆପଣ କ'ଣ କହୁଛନ୍ତି ?

ମୁଁ କହିଲି : ମୋର କିଛି କହିବାର ନାହିଁ । ଆପଣଙ୍କ ଇଚ୍ଛା ହେଲେ ଯିବେ ।

ଆମେ ଏହିପରି କଥାବାର୍ତ୍ତା ହେଉଥିବା ବେଳେ କିଏ ଜଣେ ଭଦ୍ରଲୋକ ଆସି ପହଞ୍ଚିଲେ । ମିସ୍ ଭାଟିଆ ତାଙ୍କୁ ଦେଖି ଉଲ୍ଲସିତ ହୋଇ ଉଠିଲେ । ଭଦ୍ରଲୋକ ଘର ଭିତରେ ପ୍ରବେଶ କରି ଆମ ଆଡ଼କୁ ନ ଚାହିଁ ଅନ୍ୟ ଘର ଭିତରକୁ ଚାଲିଗଲେ ।

ମିସ୍ ଭାଟିଆଙ୍କ ଦେହରେ ଚଞ୍ଚଳତା ଫୁଟି ଉଠିଥିଲା । ସେ କହିଲେ : ଏ ମୋର

ଜଣେ ଆତ୍ମୀୟ । ମୁଁ ତାଙ୍କୁ ଫୋନ୍ କରିଥିଲି । ତାଙ୍କ ସହିତ କେତେକ ଜରୁରୀ କଥାବାର୍ତ୍ତା ଅଛି, ଆପଣ ବସନ୍ତୁ... ।

ମୁଁ ଉଠି ଠିଆ ହେଲି ।

ମିସ୍ ଭାଟିଆ ଅନ୍ୟ ଘର ଆଡ଼େ ଚାଲିଗଲେ ।

ତା'ପରେ କନେଷ୍ଟବଲଟି କହୁଥିଲା, ତାଙ୍କର ସେହି ଆତ୍ମୀୟଟି ସହିତ ମିସ୍ ଭାଟିଆ ବାହାରି ଗଲାବେଳେ କହି ଯାଇଥିଲେ, ଅଫିସ୍ ଯାଉଛନ୍ତି ।

କିନ୍ତୁ ବର୍ତ୍ତମାନ ଜଣାପଡୁଛି ସେ ଅଫିସ୍ ଯାଇ ନାହାନ୍ତି । ତେଣୁ ମନେହେଉଛି, ସେ ଆମକୁ ଆତ୍ମଗୋପନ କରି ରହିଛନ୍ତି ।

: ଆମକୁ ଫାଙ୍କିଦେବା କ'ଣ ଏତେ ସହଜ ଅବନୀବାବୁ ! ସେ ସର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିଭୁବନରେ ଯେଉଁଠି ଆତ୍ମଗୋପନ କଲେ ମଧ୍ୟ ଆମେ ଏତେ ସହଜରେ ଛାଡ଼ିଦେବା ?

ଅବନୀବାବୁ କ'ଣ କହିବାକୁ ଯାଉଥିଲେ । କିନ୍ତୁ ଗୋଟିଏ କନେଷ୍ଟବଲ ଆସି କହିଲା: ଆପଣଙ୍କର ଫୋନ୍ ସାର୍ ।

ମିଷ୍ଟର ତାଲୁକ୍‌ଦାର ସଙ୍ଗେ ସଙ୍ଗେ ଚେୟାରରୁ ଉଠି ଛୁଟି ଗଲେ ।

ଅବନୀବାବୁଙ୍କର ମନେ ହେଲା, ସେ ଯେପରି ଏଇ ଫୋନ୍‌ଟି ପାଇଁ ପ୍ରତୀକ୍ଷା କରିଥିଲେ ।

ମିଷ୍ଟର ତାଲୁକଦାର ରିସିଭରଟି କାନରେ ଦେଇ, ହ୍ୟାଲୋ କହିବା ମାତ୍ରକେ ଅପରପ୍ରାନ୍ତରୁ ସେଇ ପରିଚିତ କଣ୍ଠଟି ଶୁଣାଗଲା ।

: କିଏ ମିଷ୍ଟର ତାଲୁକଦାର ?

: ଇଏସ୍ ତାଲୁକଦାର ସ୍ପିକିଂ ।

: ଶୁଣନ୍ତୁ ।

ନୀରବରେ ମି: ତାଲୁକଦାର ଧ୍ୟାନମଗ୍ନ ହୋଇ କ'ଣ ଯେପରି କେତୋଟି ମିନିଟ୍ ଶୁଣିଲେ । ତା'ପରେ ରିସିଭରଟା ରଖିଦେଇ ସେ କ୍ଷୁପ୍ରଗତିରେ ଛୁଟି ଆସିଲେ ନିଜର ଅଫିସ୍ ରୁମ୍‌କୁ ।

ଅବନୀ ବାବୁ ଉଠି ଠିଆ ହୋଇ ପଡ଼ିଲେ । ସାର୍ କିଛି ଜରୁରୀ ସମ୍ବାଦ....

: ହଁ ଅଛି । ଆପଣ ପ୍ରସ୍ତୁତ ହୋଇ ପଡ଼ନ୍ତୁ ଅବନୀବାବୁ । ସଞ୍ଜୟର ଗୋଟାଏ ଖବର ମିଳିଛି । ହୁଏତ ସେ ବର୍ତ୍ତମାନ ସେଠାରେ ଥାଇପାରେ ।

: କେଉଁଠି ?

: ହୋଟେଲ ଲିଡ଼ୋରେ । କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଉଛି ଟେଲିଫୋନ୍‌ରେ କିଏ ମୋତେ ଅନ୍ୟମାନଙ୍କର କଥାବାର୍ତ୍ତା ଶୁଣାଉଛି । ବେଳେବେଳେ ରଙ୍ଗ କନେକ୍‌ସନ୍ ହୋଇଗଲେ ଯେପରି ଅନ୍ୟମାନଙ୍କର କଥାବାର୍ତ୍ତା ଆରାମ୍‌ରେ ବସି ବସି ଶୁଣିହୁଏ, ଏଇଟା ଠିକ୍ ସେହିପରି ଘଟଣା ।

: ଆପଣ କ'ଣ ଶୁଣିଲେ ?

: ଦୁଇଜଣଙ୍କର କଥାବାର୍ତ୍ତା । ଗୋଟିଏ ପୁରୁଷ କଣ୍ଠ ଓ ଅନ୍ୟଟି ନାରୀର । ପୁରୁଷଟି କହୁଥିଲା - ବର୍ତ୍ତମାନ ସୁଦ୍ଧା ସମୟ ହୋଇନାହିଁ । ଲିଡ଼ୋ ଅପେକ୍ଷା ନିରାପଦ ସ୍ଥାନ ମୋର ଆଉ କେଉଁଠି ନାହିଁ । ତମେ ଆଉ ଦିନେ ଦୁଇଦିନ ଅପେକ୍ଷା କର । ମୁଁ ଆଶା କରୁଛି... ।

: ନା, ନା, ତୁମେ ଭୁଲ କରୁଛ । ପୋଲିସ ଡିପାର୍ଟମେଣ୍ଟର ଧାରଣା ଆପଣଙ୍କ ପ୍ରତି ଭୁଲ । ତା'ଛଡ଼ା ତମେ ଏପରି ଲୁଚି ରହିଲେ ତ ସମସ୍ୟା ସମାଧାନ ହେବ ନାହିଁ ।

: ଠିକ୍ ଅଛି । ତୁମେ ଆସ । ତା'ପରେ ବାହାରିବା । ଅଧିକ ରାତି ହେଲେ କୁଆଡ଼େ ବାହାରିବା ନିରାପଦ ନୁହେଁ । ଆସୁଛ ତ ?

: ହଁ ହଁ, ମୁଁ ଠିକ୍ ସମୟରେ ଯିବି ।

ତା'ପରେ ଲାଇନ୍ କଟିଗଲା । କିନ୍ତୁ ଜାଣ ଅବନୀ, ମୋତେ କେହି ଜଣେ ତୃତୀୟ ବ୍ୟକ୍ତି ଏ ସବୁ ଶୁଣିବାର ସୁଯୋଗ କରାଇ ଦେଉଛି ।

: କିପରି ?

: ସେକଥା ପରେ ହେବ, ତମେ ଉଠିଲ । 'ହୋଟେଲ ଲିଡ଼ୋ' ସମ୍ପର୍କରେ ଆଗରୁ ମୁଁ ଗୋଟାଏ ଇନ୍‌ଫର୍‌ମେସନ୍ ପାଇଥିଲି । ସେ କିନ୍ତୁ ଆଉ ଜଣକ ସମ୍ପର୍କରେ । ବର୍ତ୍ତମାନ ଦେଖୁଛି ସେଠାରେ ଆହୁରି ଏକ ସୂତ୍ର ମିଳିଲାଣି ।

ମିଷ୍ଟର ତାଲୁକ୍‌ଦାର ଅବନୀ ବାବୁଙ୍କ ସଙ୍ଗରେ ଧରି ଯାଇ ଜିପ୍‌ରେ ଉଠିଲେ ।

ସେ ଭାବୁଥିଲେ, ଟେଲିଫୋନ୍‌ରେ ଦୁଇଜଣଙ୍କ କଥାବାର୍ତ୍ତାରୁ ଯାହା ମନେ ହେଲା, ପୁରୁଷ କଣ୍ଠଟି ସଞ୍ଜୟର ହୋଇପାରେ, ଆଉ ନାରୀ କଣ୍ଠଟି ? ବେବିର ? ମିସେସ୍ ଭାଟିଆର ନା ମିସ୍ ଡି' ସୁଜାଙ୍କର ? ଫୋନ୍‌ରୁ ସେ ଠିକ୍ ସ୍ୱରଟି ବାରି ପାରିଲେ ନାହିଁ । କିନ୍ତୁ ସେଇ କଥାବାର୍ତ୍ତା ଯେ ଏଇ କେତେଜଣଙ୍କ ଭିତରେ ହୋଇପାରେ, ଏପରି କରିବାର କାରଣ କ'ଣ ଥାଇପାରେ ? ଅନ୍ୟ କେହି କଥାବାର୍ତ୍ତା ହୋଇ ପାରୁଥାଆନ୍ତି ତ !

ଅବନୀବାବୁ କହିଲେ : ସଞ୍ଜୟକୁ ଧରି ପାରିଲେ, ଆମ ଦାୟିତ୍ୱ ଲାଘବ ହୋଇଯିବ ।

ମିଷ୍ଟର ତାଲୁକଦାର କିନ୍ତୁ କିଛି ଉତ୍ତର ଦେଲେ ନାହିଁ । ନୀରବରେ ଜିପ୍‌ରେ ବସି ଚିନ୍ତା କରୁଥିଲେ ।

ଏକ ସମୟରେ ଜିପ୍ ଯାଇ ଲିଡ୍ରୋରେ ପହଞ୍ଚିଲା ।

'ଲିଡ୍ରୋ' ପାର୍କଷ୍ଟ୍ରୀଟ୍‌ର ଏକ ଅଭିଜାତ ହୋଟେଲ ।

ମିଷ୍ଟର ତାଲୁକ୍‌ଦାର ଜିପ୍‌ରୁ ଓହ୍ଲାଇ ଯେତେବେଳେ 'ଲିଡ୍ରୋ'ରେ ପ୍ରବେଶ କଲେ, ସେତେବେଳକୁ ପ୍ରାୟ ରାତି ନଅଟା ।

ରିସେପ୍‌ନିଷ୍ଟ ତାଲୁକଦାରଙ୍କୁ ଦେଖିବା କ୍ଷଣି ଚେୟାରରୁ ଉଠିପଡ଼ି କହିଲା : ଆପଣଙ୍କ ଫୋନ୍ ପାଇବା ପରେ ମୁଁ ବହୁତ ଭାବରେ ଅନୁସନ୍ଧାନ କରି ଦେଖିଛି, କିନ୍ତୁ କୌଣସି ଅଗରୱାଲଙ୍କ ସନ୍ଧାନ ପାଇଲି ନାହିଁ ।

: ଧନ୍ୟବାଦ, ଆପଣ ମୋ ପାଇଁ ଯଥେଷ୍ଟ କରିଛନ୍ତି । ଆଚ୍ଛା ମ୍ୟାନେଜର ଫେରିଲେଣି ?

: ହଁ ସାର୍, ସେ ଦୋତାଲାରେ ତାଙ୍କ ଅଫିସ୍ ରୁମ୍‌ରେ ଅଛନ୍ତି । ଅବଶ୍ୟ ସେ ଟିକିଏ ବିଜି ଥିଲେ । ପଚାରି ବୁଝିବି ?

ମିଷ୍ଟର ତାଲୁକଦାର କହିଲେ : ଦରକାର ନାହିଁ । ଆମେ ଯାଉଛୁ, ରୁମ୍‌ରେ ଦେଖାହେବ ।

ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ମିଷ୍ଟର ତାଲୁକଦାର ଉପରକୁ ଉଠିବାକୁ ଲାଗିଲେ । ତାଙ୍କ ପଛେ ପଛେ ଅବନୀବାବୁ ।

ଲିଡ୍ରୋର ମ୍ୟାନେଜର ମିଷ୍ଟର ତରଫଦାର ରୁମ୍‌ରେ ବସି ଷ୍ଟେନୋକୁ ନୋଟ୍ ଦେଉଥିଲେ ।

ମିଷ୍ଟର ତାଲୁକଦାରଙ୍କ ଅତର୍କିତ ଆଗମନରେ ସେ ବିଚଳିତ ହେଲେ ନାହିଁ । ଚେୟାରରୁ ଉଠି ଦୁଇଜଣଙ୍କ ସହିତ କରମର୍ଦ୍ଦନ କରି ସ୍ମିତ ହସି କହିଲେ : ବସନ୍ତୁ ।

ଷ୍ଟେନୋଟି ଘରୁ ବାହାରି ଚାଲିଗଲା ।

ମିଷ୍ଟର ତରଫଦାର ସିଗାରେଟ୍ କେସ ବାହାର କରି ଦୁଇଜଣଙ୍କୁ ଅଫର କରି ନିଜେ ଗୋଟିକରେ ଅଗ୍ନିସଂଯୋଗ କଲେ ।

: ତା'ପରେ, କ'ଣ ମନେ କରି ? ମିଷ୍ଟର ତରଫଦାର ଶାନ୍ତ ସ୍ୱରରେ ପଚାରିଲେ ।

ମିଷ୍ଟର ତାଲୁକଦାର କହିଲେ : ହୋଟେଲ ଲିଡ଼ୋରେ ଆମର ଗୋଟାଏ ସୁଇଟ୍ ଦରକାର । ଅନ୍ତତଃ ସପ୍ତାଏ ଖଣ୍ଡ ପାଇଁ ହେଲେ ଚଳିବ ।

: ଓଃ, ଠିକ୍ ଅଛି । ଏଇଥିପାଇଁ ଆପଣ ଏତେ କଷ୍ଟ କରି ଆସିଲେ । ଫୋନ୍ କରି ଦେଇଥିଲେ ତ ଚଳିଥାଆନ୍ତା ।

ମିଷ୍ଟର ତାଲୁକଦାର କହିଲେ : ଆଉ ଗୋଟାଏ କଥା ମିଷ୍ଟର ତରଫଦାର । ଆପଣ ଆମକୁ ଟିକିଏ ସାହାଯ୍ୟ କରିବାକୁ ପଡ଼ିବ ।

: କିପରି ସାହାଯ୍ୟ ?

: ଆମର ମନେ ହେଉଛି, ବିଶେଷ ଏକ କେସ ସହିତ ସମ୍ପୃକ୍ତ ଥିବା କେତେଜଣ ଆସାମୀ ବେଳେ ଆପଣଙ୍କର ଏହି ହୋଟେଲକୁ ଆସନ୍ତି । ସେମାନଙ୍କୁ ଧରିବାଂରେ ଆପଣଙ୍କୁ ଆମକୁ  ସାହାଯ୍ୟ କରିବାକୁ ପଡ଼ିବ ।

: ନିଶ୍ଚୟ, ନିଶ୍ଚୟ, ମିଷ୍ଟର ତରଫଦାର ଉତ୍ସାହିତ ହୋଇ କହିଲେ, ଅପରାଧୀକୁ ଶାସ୍ତି ଦେବା ସହିତ ସମାଜ ସଚେତନ ଲୋକଙ୍କର କର୍ତ୍ତବ୍ୟ ହେବା ଆବଶ୍ୟକ । ମୁଁ ଆପଣଙ୍କୁ ନିଶ୍ଚୟ ସାହାଯ୍ୟ କରିବି ମିଷ୍ଟର ତାଲୁକଦାର । ବର୍ତ୍ତମାନ ମୋତେ କ'ଣ କରିବାକୁ ହେବ କୁହନ୍ତୁ ?

: ନା, ବର୍ତ୍ତମାନ କିଛି କରିବାକୁ ହେବ ନାହିଁ । ତେବେ ଯଥା ସମୟରେ ମୁଁ ଆପଣଙ୍କୁ ଯେଉଁ ଅନୁରୋଧ କରିବି, ଆପଣ ରକ୍ଷା କରିବେ, ଏଇ ପ୍ରତିଶ୍ରୁତି ଦେଲେ ହେଲା ।

: ଓଃ ସିଓର, ମିଷ୍ଟର ତରଫଦାର ଉତ୍ସାହିତ ହୋଇ କହିଲେ ।

ଏହା ଭିତରେ ଆହୁରି ଚାରିଦିନ ଅତିବାହିତ ହୋଇ ଯାଇଛି ।

କିନ୍ତୁ ମିଷ୍ଟର ତାଲୁକ୍‌ଦାର ସବୁଠାରୁ ନିରାଶ ହୋଇ ଫେରିଛନ୍ତି । ଚନ୍ଦ୍ରଶେଖର ବହିଦାରଙ୍କ ହତ୍ୟାକାରୀ ବୋଲି ସନ୍ଦେହ କରୁଥିବା କୌଣସି ଲୋକକୁ ସେ ଆବିଷ୍କାର କରିପାରିନାହାନ୍ତି ।

ମିସେସ୍ 'ଡି' ସୁଜାଙ୍କ ଘରକୁ ଫୋନ୍ କରି ମିଷ୍ଟର ତାଲୁକ୍‌ଦାର ନିରାଶ ହୋଇଛନ୍ତି । ଅବଶ୍ୟ ମିସ୍ ଭାଟିଆ ଫେରି ଆସିଛନ୍ତି । ତାଙ୍କର ଅନ୍ତର୍ଦ୍ଧାନର କାରଣ ସମ୍ବନ୍ଧରେ ସେ କହୁଥିଲେ, ତାଙ୍କର ସେହି ଆତ୍ମୀୟଟି ସହିତ ତାଙ୍କ ଘରକୁ ସେ

ଯାଇଥିଲେ । ସେଠାରେ ହଠାତ୍ ଅସୁସ୍ଥ ହୋଇ ପଡ଼ିବାରୁ ସେଦିନ ଆଉ ଫେରିବା ସମ୍ଭବ ହୋଇନଥିଲା ।

ଆଉ ବେବି ।

ସେ ଅଧୀର ଆଗ୍ରହରେ ମିଷ୍ଟର ତାଲୁକ୍‌ଦାରଙ୍କୁ ଅପେକ୍ଷା କରି ରହିଛି । କେବେ ତା'ର ବାପାଙ୍କର ହତ୍ୟାକାରୀ ଆରେଷ୍ଟ ହେବ ।

ମିଷ୍ଟର ତାଲୁକ୍‌ଦାରଙ୍କୁ ମଧ୍ୟ ଅଧୀର ଆଗ୍ରହରେ ଫୋନ୍‌କୁ ପ୍ରତୀକ୍ଷା କରି ବସିଛନ୍ତି । ଏ କେତେଦିନ ହେବ ସେ ଆଉ ସେହି ଅଜ୍ଞାତ ଲୋକଟିର କଣ୍ଠସ୍ୱର ଶୁଣି ନାହାନ୍ତି ।

ହୋଟେଲ 'ଲିଡ୍ୱୋ'ରେ ଯେଉଁ ସୁଇଟ୍‌ଟି ତାଙ୍କ ପାଇଁ ରିଜର୍ଭ ଅଛି, ସେଇଠି ସେ ଅଧିକାଂଶ ସମୟ ଅତିବାହିତ କରୁଛନ୍ତି । ବିଶେଷ କରି ଛଦ୍ମବେଶରେ ହୋଟେଲର ସମସ୍ତ ଲୋକମାନଙ୍କ ସିହିତ ମିଶିବାକୁ ଚେଷ୍ଟା କରୁଛନ୍ତି । କିନ୍ତୁ....

ବୟ ଆସି ଖବର ଦେଲା, ଆପଣଙ୍କର ଟେଲିଫୋନ୍ ସାବ୍ ।

ମିଷ୍ଟର ତାଲୁକ୍‌ଦାରଙ୍କ ଚିନ୍ତା ଛିନ୍ନ ହୋଇଗଲା । ସେ ଉଠି ଟେଲିଫୋନ୍ ପାଖକୁ ଧାଇଁଲେ ।

: ହ୍ୟାଲୋ ? ମିଷ୍ଟର ତାଲୁକ୍‌ଦାର ଅତ୍ୟନ୍ତ ଆଗ୍ରହରେ ଅପରପ୍ରାନ୍ତର କଥାକୁ ଅପେକ୍ଷା କରିଥିଲେ ।

ଅପର ପ୍ରାନ୍ତରୁ ଶୁଣାଗଲା : ମିଷ୍ଟର ତାଲୁକ୍‌ଦାର କହୁଛନ୍ତି ?

: ହଁ ତାଲୁକ୍‌ଦାର ସ୍ପିକିଂ ।

: ଶୁଣନ୍ତୁ ।

ମିଷ୍ଟର ତାଲୁକ୍‌ଦାର ଅନ୍ୟାନ୍ୟ ଥର ପରି ଏଥର ନୀରବରେ ଶୁଣିଲେ କାହା କଣ୍ଠର ପ୍ରତିଧ୍ୱନି ।

: ନା ନା ଆଉ ଡେରି କଲେ ଚଳିବ ନାହିଁ ।

: କିନ୍ତୁ ସୁବିଧା ନ ଆସିବା ଯାଏଁ...

: ଆଉ ସୁବିଧାକୁ ପ୍ରତୀକ୍ଷା କରି ବସିଲେ ଚଳିବ ନାହିଁ । ଆମେ ଯେତେଦିନ ସୁବିଧାକୁ ପ୍ରତୀକ୍ଷା କରି ବସିଥିବା, ସେତେଦିନ ଆମର ପ୍ଲାନ ପ୍ରୋଗ୍ରାମ ଲମ୍ୱି ଲମ୍ୱି ଯାଉଥିବ ।

: ତା' ହେଲେ ?

: ଆଗାମୀ ଶନିବାର ରାତି ଏଗାରଟାରେ ଆମର ପୂର୍ବ ପ୍ଲାନ ଅନୁସାରେ

ସମସ୍ତ କାମ ଶେଷ କର । ମୁଁ ରାତି ଏଗାରଟା ବେଳେ ଡି' ସୁଜା ଘରେ ଅପେକ୍ଷା କରିଥିବି । ତମେ ତାକୁ ସେଠାକୁ ଧରି ଆସ । ଦେଖିବା କିପରି ସେ ଆମ କଥାରୁ ବାହାରିଯିବ ।

: କିନ୍ତୁ ସେ ମୋଟେ ଧରା ଛୁଆଁ ଦେଉ ନାହିଁ !

: ଦେବ, ଦେବ । ଦେବାକୁ ବାଧ୍ୟ ହେବ । ଏହା ଭିତରେ ସାତ ଆଠଦିନ ଗତ ହୋଇଗଲାଣି । ପୋଲିସ ଡିପାର୍ଟମେଣ୍ଟ ତ ଆଉ ନିଷ୍କ୍ରିୟ ହୋଇ ବସିନାହିଁ । ଆମର ଯେତିକି ଡେରି ହେବ, ସେମାନେ ସେତିକି ଆଗେଇ ଯିବେ ।

: ତା' ହେଲେ ଶନିବାର ରାତିରେ ଆମେ ଆପଣଙ୍କ ପାଖକୁ ନେଇଯିବୁ ?

: ହଁ, ସେଇଦିନ ଆମେ ଶେଷ ଚେଷ୍ଟା କରିବା । ଯଦି ନ ହୁଏ ତା' ହେଲେ ..... ହଠାତ୍ କଥାବାର୍ତ୍ତା ବନ୍ଦ ହୋଇଗଲା ।

ମିଷ୍ଟର ତାଲୁକ୍‌ଦାର ଟେଲିଫୋନ୍ ରିସିଭରଟା ଆଉ କିଛି ସମୟ କାନରେ ଲଗାଇ ରଖି ତା'ପରେ ଛାଡ଼ିଦେଲେ ।

ଶନିବାର ରାତି ଏଗାରଟା ।

ଆଜି ଯେ ଶୁକ୍ରବାର । ଆଉ ଦିନକ ପରେ ମିସେସ୍ ଡି'ସୁଜାଙ୍କ ଘରେ ଗୋଟାଏ ବିଶେଷ ଘଟଣା ଘଟିବ । କ'ଣ ସେ ଘଟଣା ? କିଏ ସେ ଘଟଣାର ଅଧିନାୟକ ?

ମିଷ୍ଟର ତାଲୁକ୍‌ଦାର ଚଞ୍ଚଳ ହୋଇଉଠିଲେ । ତାଙ୍କୁ ସବୁ ପ୍ରକାର ପ୍ରସ୍ତୁତ ହେବାକୁ ପଡ଼ିବ । କିନ୍ତୁ ରାତି ଏଗାରଟାରେ ମିସେସ୍ ଡି' ସୁଜାଙ୍କ ଘରେ ପ୍ରବେଶ କରିବା ଆଦୌ ସହଜ କଥା ହେବ ନାହିଁ । ଯଦି ଜୋର୍ କରି ବା ଘୋଷଣା କରି ସେଠାରେ ପ୍ରବେଶ କରାହୁଏ, ତା' ହେଲେ ହୁଏତ ସେମାନଙ୍କର ସେହି ଅସଲ ପ୍ରୋଗ୍ରାମ୍ ଆଉ କାର୍ଯ୍ୟକାରୀ ହେବ ନାହିଁ । ତେଣୁ...

ମିଷ୍ଟର ତାଲୁକ୍‌ଦାର ମହାଚିନ୍ତାରେ ପଡ଼ିଗଲେ ।

କିନ୍ତୁ ଯେପରି ହେଉ ତାଙ୍କୁ ଠିକ୍ ସମୟରେ ମିସେସ୍ ଡି' ସୁଜାଙ୍କ ଘରେ ଆତ୍ମଗୋପନ କରି ବସି ରହିବାକୁ ହେବ ।

ମନେ ମନେ ସେ ପ୍ଲାନ ଓ ପ୍ରୋଗ୍ରାମ ଚିନ୍ତା କରିବାକୁ ଲାଗିଲେ ।

ଶନିବାର ଠିକ୍ ରାତି ଏଗାରଟା ବେଳେ ୧୭ ନମ୍ବର ପାର୍କଲେନ୍‌ରେ ଗୋଟାଏ କଳା ଆମ୍ବାସଡ଼ର ଯାଇ ଲାଗିଲା । ମିସେସ୍ ଡି' ସୁଜା ନିଜେ କବାଟ ଖୋଲିଦେଲେ ।

ଚାରିଜଣ ସବଳକାୟ ଲୋକ ଗାଡ଼ିରୁ ଓହ୍ଲାଇ ପଡ଼ିଲେ । ତା'ପରେ ସେମାନେ ଭିତରୁ ଜଣକୁ ହାତଗୋଡ଼ ଓ ମୁହଁବନ୍ଧା ହୋଇଥିବା ଅବସ୍ଥାରେ ଟାଣି ବାହାର କଲେ ।

ସେମାନେ ଲୋକଟିକୁ ଧରାଧରି କରି ନେଇ ଚାଲିଗଲେ ।

ମିସେସ୍ ଡି' ସୁଜା କବାଟ ବନ୍ଦ କରି ଭିତରୁ ତାଲା ଲଗେଇଲେ । ଦରବାନ୍ ଘରର କବାଟ ବନ୍ଦ ଥିଲା ।

ମିସେସ୍ ଡି' ସୁଜା ସେଠାକୁ ଯାଇ ବାହାରୁ ଥାଇ କହିଲେ : ଯିଏ ଯେତେ ଡାକିଲେ ବି କବାଟ ଖୋଲିବୁ ନାହିଁ । କହିବୁ - ମେମ୍ ସାହେବ ଶୋଇ ପଡ଼ିଛନ୍ତି ।

ଦରବାନ୍ ଭିତରୁ ଥାଇ ଉତ୍ତର ଦେଲା : ଜି ହଜୁର ।

ମିସେସ୍ ଡି' ସୁଜା ଘର ଭିତରକୁ ଆଗେଇ ଗଲେ ।

ସେମାନେ ଲୋକଟିକୁ ନିର୍ଦ୍ଦିଷ୍ଟ ସ୍ଥାନରେ ରଖି ଅପେକ୍ଷା କରୁଥିଲେ । ମିସେସ୍ ଡି' ସୁଜା ସେଠାରେ ପହଞ୍ଚି କହିଲେ : ଲୋକଟାର ମୁହଁ ଫିଟାଇ ଦିଅ ।

ସେମାନେ ଆଦେଶ ପାଳନ କଲେ ।

ବନ୍ଧା ହୋଇଥିବା ଲୋକଟି ଥରେ ମିସେସ୍ ଡି' ସୁଜାଙ୍କ ମୁହଁକୁ ଚାହିଁ ପୁଣି ଆଖି ବନ୍ଦ କରିଦେଲା ।

ମିସେସ୍ ଡି' ସୁଜା କହିଲେ : ଅଣ୍ଡର ଗ୍ରାଉଣ୍ଡକୁ ନେଇଚାଲ ।

ସେହି ଚାରିଜଣ ବିଶାଳକାୟ ଲୋକ ଧରାଧରି କରି ସେହି ଲୋକଟିକୁ ଏକ ଗୁପ୍ତ ଦ୍ୱାରବାଟେ ଅଣ୍ଡର ଗ୍ରାଉଣ୍ଡକୁ ନେଇ ଚାଲିଗଲେ ।

ସେମାନଙ୍କ ପଛେ ପଛେ ମିସେସ୍ ଡି' ସୁଜା ମଧ ତଳକୁ ଓହ୍ଲାଇଗଲେ ।

ଅଣ୍ଡର ଗ୍ରାଉଣ୍ଡରେ ଗୋଟିଏ ଖଟ ଉପରେ ସେହି ଲୋକଟିକୁ ଶୁଆଇ ଦିଆ ହେଲା ।

ଅଧା ଅନ୍ଧାର ଅଧା ଆଲୁଅ ଭିତରେ ଆଉଜଣେ ଲୋକ ଆସି ଏମାନଙ୍କୁ ଅପେକ୍ଷା କରିଥିଲା ।

ସେ ଲୋକଟିର ହାତପାଦରୁ ବନ୍ଧନ ଖୋଲି ଦେବା ପାଇଁ ନିର୍ଦ୍ଦେଶ ଦେଲା । ତା'ପରେ ଗୁରୁଗମ୍ଭୀର କଣ୍ଠରେ କହିଲା, କ'ଣ ମିଷ୍ଟର ସଞ୍ଜୟ, ମୋତେ ଚିହ୍ନି ପାରୁଛ ?

ହସ୍ତପଦ ବନ୍ଧନ ମୁକ୍ତ ହୋଇ ଲୋକଟି ଯେପରି ସ୍ୱସ୍ତିର ନିଃଶ୍ୱାସ ମାରି, ଟିକିଏ ଶାନ୍ତ ହୋଇ ବସି କହିଲା : ମୁଁ ଆପଣଙ୍କୁ ଚିହ୍ନି ପାରିବି ନାହିଁ ଠାକୁର ସାହେବ ! ଆପଣ ମୋର ଅନ୍ନଦାତା ହେବାକୁ ଯାଉଛନ୍ତି । ଆପଣଙ୍କୁ ଚିହ୍ନି ନ ପାରିଲେ ମୋର ଅପରାଧ ହେବ ।

: ତା' ହେଲେ ଆପଣ ତ ସବୁ ଜାଣନ୍ତି ମିଷ୍ଟର ସଞ୍ଜୟ । ମିଷ୍ଟର ବହିଦାରଙ୍କ ମୃତ୍ୟୁ ପରେ ଭାରତ ମେସିନାରୀର ମ୍ୟାନେଜିଂ ଡାଇରେକ୍ଟର ଯେ ମୁଁ ହେବି, ଏଥିରେ ସନ୍ଦେହର ଅବକାଶ ନାହିଁ । ଆପଣ ମୋ ସହିତ ଗୋଟିଏ ଚୁକ୍ତିରେ ଆସନ୍ତୁ । ବେବିକୁ ଆପଣ ଜୀବନସଙ୍ଗିନୀ କରି ସୁଖୀ ରୁହନ୍ତୁ, ମୁଁ ମୋଟେ ହସ୍ତକ୍ଷେପ କରିବି ନାହିଁ । କିନ୍ତୁ ଏହି ଡିଡ୍‌ରେ ଆପଣ ସାକ୍ଷର କରି ଦିଅନ୍ତୁ ।

ଠାକୁର ସାହେବ ଗୋଟାଏ ଡିଡ୍ ନେଇ ସଞ୍ଜୟଙ୍କ ଆଗରେ ଧରିଲେ ।

ସଞ୍ଜୟ ହସିଲା । କହିଲା : ଯେତେ ସହଜରେ କାମଟା ହାସଲ କରିନେବେ ବୋଲି ଭାବିଛନ୍ତି ଠାକୁର ସାହେବ, ସମସ୍ୟାଟା ମୋଟେ ସେତେ ସହଜ ନୁହେଁ । ମିଷ୍ଟର ବହିଦାର ମୋତେ ଯେତେବେଳେ ପାୱାର ଅଫ୍ ଆଟର୍ଣ୍ଣି ଦେଇଥିଲେ, ସେତେବେଳେ ସେ ନିଶ୍ଚୟ ମୋ ସମ୍ବନ୍ଧରେ ଅନେକ କଥା ଚିନ୍ତା କରିଥିବେ । ଆଉ ମୁଁ କିଛି ଚିନ୍ତା ନ କରି ଏତେ ସହଜରେ ଏଇ ଡିଡ୍‌ରେ ସହି କରିଦେବି, ଏହା କିପରି ସମ୍ଭବ ?

ଠାକୁର ସାହେବ ଆହୁରି କୁଟିଳ ହସ ହସି କହିଲେ : ଆପଣ ଏହି ଡିଡ୍‌ରେ ସାକ୍ଷର କରିବାକୁ ବାଧ ମିଷ୍ଟର ସଞ୍ଜୟ । ଏହି ସମାଜରେ ସୁସ୍ଥ ଓ ଭଦ୍ର ଭାବରେ ଜୀବନ ଯାପନ କରିବାକୁ ହେଲେ, ବେବିକୁ ଜୀବନସଙ୍ଗିନୀ କରି ଆରାମ୍‌ରେ ବଞ୍ଚି ରହିବାକୁ ହେଲେ, ଆମର ଏହି ସର୍ତ୍ତରେ ଆପଣଙ୍କୁ ରାଜି ହେବାକୁ ହେବ । ତା' ନ ହେଲେ

ଆପଣ ଜାଣନ୍ତି ତ, ସମାଜ ଆଖିରେ ଆପଣ ଖୁଣୀ, ପୋଲିସ ଆଖିରେ ଆପଣ ଅପରାଧୀ, ଆଜି ବି ଆପଣ ଫେରାର୍ ଆସାମୀ । ଯେକୌଣସି ମୁହୂର୍ତ୍ତରେ ଆମେ ଆପଣଙ୍କୁ ପୋଲିସ ହାତରେ ସମର୍ପଣ କରିଦେଇ ପାରିବୁ ।

ସଞ୍ଜୟ କିଛି ସମୟ ନୀରବରେ ଚିନ୍ତା କଲା । ତା'ପରେ କହିଲା : ଗୋଟାଏ ସିଗାରେଟ୍ ଦେଇ ପାରିବେ ଠାକୁର ସାହେବ ?

: ନିଶ୍ଚୟ ନିଶ୍ଚୟ । ଠାକୁର ସାହେବ ସିଗାରେଟ୍ କେସ୍ ଖୋଲି ସଞ୍ଜୟ ଆଡ଼କୁ ଦେଖାଇ ଦେଲା ଏବଂ ଲାଇଟର ଜଳାଇ ଅଗ୍ନିସଂଯୋଗ କରାଇ ଦେଲେ ।

ସଞ୍ଜୟ କିଛି ସମୟ ସିଗାରେଟ ଟାଣିବା ପରେ ମିସେସ୍ ଡି' ସୁଜାଙ୍କ ଆଡ଼େ ଚାହିଁ କହିଲା : କପେ କଫି ଖୁଆଇ ପାରିବେ ମ୍ୟାଡ଼ାମ୍ !

: ଓଃ ସିଓର !

ମିସେସ୍ ଡି' ସୁଜା ଘରୁ ବାହାରିଗଲେ ।

ସଞ୍ଜୟ କେବଳ ନୀରବରେ ସିଗାରେଟ୍ ଟାଣିବାକୁ ଲାଗିଲା ।

ଠାକୁର ସାହେବ ସଞ୍ଜୟ ଆଡ଼େ ଏକ ଦୃଷ୍ଟିରେ ଚାହିଁଥିଲେ ।

କିଛି ସମୟ ପରେ ମିସେସ୍ ଡି' ସୁଜା ଫେରି ଆସିଲେ ।

ସଞ୍ଜୟ କହିଲା : ଆଚ୍ଛା ଠାକୁର ସାହେବ ! ମୁଁ ଯଦି ଆପଣଙ୍କ ପ୍ରସ୍ତାବରେ ରାଜି ନ ହୁଏ, ମାନେ ଆପଣଙ୍କର ଏହି ଡିଡ୍‌ରେ ସହି ନ କରେ, ତା' ହେଲେ ଆପଣ କ'ଣ ମୋତେ ପୋଲିସ ହାତରେ ଧରାଇ ଦେବେ ?

ସେତିକିବେଳେ ଟ୍ରେ'ରେ କଫି ପଟ୍ ଧରି ଗୋଟାଏ ବୟ ଆସି ଘରେ ପ୍ରବେଶ କଲା । ସାଦା ଚପ୍‌କନ୍ ପିନ୍ଧା, ପଗଡ଼ି ବନ୍ଧା ବୟଟି ମିସେସ୍ ଡି' ସୁଜାଙ୍କ ଆଡ଼େ ଚାହିଁ ଆଦେଶର ପ୍ରତୀକ୍ଷା କରୁଥିଲା ।

ଠାକୁର ସାହେବ ସେତିକିବେଳେ ହସି ଉଠିଲେ : ଆପଣ ମୋତେ ଏତେ ସହଜ ଭାବିଛନ୍ତି ମିଷ୍ଟର ସଞ୍ଜୟ ! ମୁଁ ଆପଣଙ୍କୁ ଆଦୌ ପୋଲିସରେ ଧରାଇ ଦେବି ନାହିଁ । ଆପଣ ଏହି ଡିଡ୍‌ରେ ସହି ନ କରିବା ପର୍ଯ୍ୟନ୍ତ ଆପଣଙ୍କର ନିସ୍ତାର ନାହିଁ ।

ବୟଟି ପଟ୍‌ରୁ କଫି ଢାଳି ଧୀରେ ଧୀରେ ପ୍ରସ୍ତୁତ କରୁଥିଲା ।

ସଞ୍ଜୟ ହସି ହସି କହିଲା: ମିସ୍ ଭାଟିଆଙ୍କ ସହିତ ଆପଣ କେବେ ବିବାହ ବନ୍ଧନରେ ବନ୍ଧୀ ହେଉଛନ୍ତି ? ନା, କାର୍ଯ୍ୟ ହାସଲ ପରେ ତାଙ୍କୁ ବି ଫାଙ୍କି ଦେବେ ?

ଠାକୁର ସାହେବ କହିଲେ : କାହାରିକୁ ଫାଙ୍କି ଦେବାର ମନୋବୃତ୍ତି ମୋର

ନାହିଁ । କିନ୍ତୁ ମୋ କାର୍ଯ୍ୟ ହାସଲ ପଥରେ ଯିଏ ବାଧା ଦେବ, ମୁଁ ତାକୁ କ୍ଷମା କରିପାରିବି ନାହିଁ ।

ସଞ୍ଜୟ କହିଲା :ସେଦିନ ଯେଉଁଦିନ ମିଷ୍ଟର ବହିଦାରଙ୍କ ମର୍ଡ଼ରର ସମସ୍ତ ଆୟୋଜନ ଆପଣ କରିଥିଲେ, ସେଦିନ ସେହି ସମୟରେ ଆପଣ କେଉଁଠି ଥିଲେ ?

ବୟ ସଞ୍ଜୟ ହାତକୁ କପେ କଫି ବଢ଼ାଇ ଦେଇ, ଅନ୍ୟମାନଙ୍କୁ ମଧ୍ୟ କପେ କପେ କଫି ଦେଲା ।

ଠାକୁର ସାହେବ କହିଲେ : ସେ ପ୍ରସଙ୍ଗ ଉଠାଇ ଆଜି ଆଉ କିଛି ଲାଭ ନାହିଁ । ଆପଣ ମନ ସ୍ଥିର କରି ଏହି ଡିଡ଼୍‌ରେ ଦସ୍ତଖତ କରି ଦିଅନ୍ତୁ । ତା'ପରେ ଆପଣଙ୍କର ମୁକ୍ତି ।

ସଞ୍ଜୟ କଫି କପ୍‌ରୁ ଢୋକେ ପିଇ କହିଲା : ତା'ପରେ ମୋର ମୁକ୍ତି ହେବ କିପରି ? ମୁଁ ଯେ ବହିଦାରଙ୍କର ହତ୍ୟାକାରୀ । ଫେରାର୍ ଆସାମୀ ।

ଠାକୁର ସାହେବ ଏଥର ହୋ ହୋ ହୋଇ ହସିଉଠିଲେ । କହିଲେ: ସେଥିପାଇଁ ଚିନ୍ତା କରନ୍ତୁ ନାହିଁ ମିଷ୍ଟର ସଞ୍ଜୟ । କୋଟରେ ମୁଁ ମିଷ୍ଟର ବହିଦାରଙ୍କର ଅସଲ ହତ୍ୟାକାରୀକୁ ହାଜର କରାଇ, ଆପଣଙ୍କୁ ନିର୍ଦ୍ଦୋଷରେ ମୁକ୍ତି ଦିଆଇ ଦେବି । ଏତ ଭରସା ଆପଣ ଅନ୍ତତଃ ମୋ ଉପରେ ରଖିପାରନ୍ତି ।

ସଞ୍ଜୟ ବି ହୋ ହୋ ହୋଇ ହସି କହିଲା : ମିଷ୍ଟର ବହିଦାରଙ୍କର ଅସଲ ହତ୍ୟାକାରୀଙ୍କୁ ମୁଁ ଚିହ୍ନେ ଠାକୁର ସାହେବ । ସେମାନେ ଏଇ ଘରେ ଉପସ୍ଥିତ ଅଛନ୍ତି ।

: କିନ୍ତୁ ସେଥିରେ ଆପଣଙ୍କର ତ କିଛି ଲାଭ ହେବ ନାହିଁ ମିଷ୍ଟର ସଞ୍ଜୟ । କାରଣ ପୋଲିସ ତ ସେମାନଙ୍କୁ ସନ୍ଦେହ କରିନାହିଁ ।

ସଞ୍ଜୟ ହସିଲା । କହିଲା : ସେଦିନ ମୁଁ ମିସ୍ ଭାଟିଆଙ୍କର ଟେଲିଫୋନ୍ ପାଇ ଯେତେବେଳେ ଭାରତ ମେସିନାରୀ ଅଫିସ୍‌ରେ ଲିଫ୍‌ଟରୁ ଓହ୍ଲାଇଲି, ସେତେବେଳେ ଏଇ ଦୁଇ ଜଣଙ୍କୁ ଦେଖିଥିଲି, ସେମାନେ ଲିଫ୍ଟରେ ତଳକୁ ଓହ୍ଲାଇ ଆସିଲେ ।

ସଞ୍ଜୟ ହାତ ବଢ଼ାଇ ଦୁଇଜଣଙ୍କୁ ଦେଖାଇ ଦେଲା ।

ଯେଉଁ ଚାରିଜଣ ସବଳକାୟ ଲୋକ ସଞ୍ଜୟକୁ ଧରାଧରି କରି ଗାଡ଼ିରୁ ଆଣିଥିଲେ, ସଞ୍ଜୟ ସେମାନଙ୍କ ଭିତରୁ ଦୁଇଜଣଙ୍କୁ ଚିହ୍ନଟ କରାଇଦେଲା ।

ଠାକୁର ସାହେବ କହିଲେ : ଆପଣ ଠିକ୍ ଲୋକକୁ ଚିହ୍ନଟ କରିଛନ୍ତି, କିନ୍ତୁ ଲାଭ କ'ଣ ? ଏ ଘରେ ତ ପୋଲିସ ନାହିଁ କିମ୍ବା ଏଇଟା କୋର୍ଟ କଚେରୀ ନୁହେଁ । ଆପଣ ଆଉ ଡେରି କରନ୍ତୁ ନାହିଁ ।

: ନା ନା, ସଞ୍ଜୟ ବ୍ୟସ୍ତ ହୋଇ କଫି ପିଇବାରେ ଲାଗିଲା ।

ବୟଟି ଠାକୁର ସାହେବଙ୍କ ହାତରୁ ଖାଲି କପ୍ ନେଇ ଟ୍ରେ'ରେ ରଖୁଥିଲା । ମିସେସ୍ ଡି' ସୁଜାଙ୍କର କଫି ଶେଷ ହୋଇ ନ ଥିଲା ।

ହଠାତ୍ ବାହାରୁ ଦରବାନ୍‌ର ଚିତ୍କାର ଶୁଣି ମିସେସ୍ ଡି' ସୁଜା ଚଞ୍ଚଳ ହୋଇଉଠିଲେ ।

ଦରବାନ୍‌ଟା 'ପୋଲିସ' 'ପୋଲିସ' ଚିତ୍କାର କରି ଭିତରକୁ ଛୁଟି ଆସୁଥିଲା ।

ମିସେସ୍ ଡି' ସୁଜା ଚିତ୍କାର କରି ଉଠିଲେ : ସୁଇଚ୍ ଅଫ୍ ।

କିନ୍ତୁ ସେଇ ମୁହୂର୍ତ୍ତରେ ଏକ ଅଭାବିତ କାଣ୍ଡ ଘଟିଗଲା । ଚପକନ୍ ପଗିଡ଼ି ପରିହିତ ବୟଟି ହାତରେ ଗୋଟାଏ ରିଭଲଭର ଝଲସି ଉଠିଲା ଏବଂ ଶକ୍ତ କଣ୍ଠର ଆଦେଶ ଭାସି ଉଠିଲା : ହ୍ୟାଣ୍ଡସ୍ ଅପ୍ ।

ମିସେସ୍ ଡି' ସୁଜା ମୁଣ୍ଡ ଉପରେ ଯେମିତି ବଜ୍ରପାତ ହେଲା । ପର ମୁହୂର୍ତ୍ତରେ ଦେଖାଗଲା, ପୋଲିସ ବାହିନୀ ଦରବାନ୍‌କୁ ଅନୁସରଣ କରି ସେହି ଅଣ୍ଡରଗ୍ରାଉଣ୍ଡ ମଧ୍ୟରେ ପ୍ରବେଶ କରିଛନ୍ତି ।

ସମସ୍ତେ ନିସ୍ତବ୍ଧ ହୋଇ ରହିଗଲେ ।

ଏତେ ଅତର୍କିତ ଭାବରେ ଯେ ଏପରି ଏକ ଅଭାବିତ ଘଟଣା ଘଟିଯିବ, କେହି ଆଶା କରିପାରି ନ ଥିଲେ ।

ବୟଟି ଯେତେବେଳେ ଦେହ ଓ ମୁଣ୍ଡରୁ ପଗଡ଼ି ଚପ୍‌କନ୍ ଖୋଲି ପକାଇ ସ୍ମିତ ହସି ମିସେସ୍ ଡି' ସୁଜାଙ୍କ ଆଡ଼କୁ ଆଗେଇ ଆସିଲା, ମିସେସ୍ ଡି' ସୁଜା ଦେଖିଲେ ତାଙ୍କ ଆଖି ଆଗରେ ମିଷ୍ଟର ତାଲୁକ୍‌ଦାର ଠିଆ ହୋଇ ହସୁଛନ୍ତି !

ମିସେସ୍ ଡି' ସୁଜା ଆଖି ନତ କଲେ ।

ପୋଲିସ ବାହିନୀ ସମସ୍ତଙ୍କୁ ଆରେଷ୍ଟ କଲେ ।

ସଞ୍ଜୟ ଖଟ ଉପରୁ ଉଠିଆସି ମିଷ୍ଟର ତାଲୁକ୍‌ଦାରଙ୍କ ସହିତ କରମର୍ଦ୍ଦନ କରି କହିଲା : ମୋତେ କ୍ଷମା କରିବେ ସାର୍ । ମୁଁ ବାଧ୍ୟ ହୋଇ ଫେରାର୍ ହୋଇଥିଲି । ମୁଁ ଯଦି ଆପଣଙ୍କ ହାତରେ ବନ୍ଦୀ ହୋଇ ଲକ୍‌ଅପ୍‌ରେ ଥାଆନ୍ତି, ତେବେ ଠାକୁର ସାହେବଙ୍କ ଚକ୍ରାନ୍ତ ଆପଣ ଏତେ ଶୀଘ୍ର ଭେଦି ପାରି ନ ଥାନ୍ତେ ।

ଠାକୁର ସାହେବ ହୋ ହୋ ହୋଇ ହସି ଉଠି କହିଲେ : ଆପଣ ନିଜକୁ ଏତେ ବିଜ୍ଞ ମନେ କରନ୍ତୁ ନାହିଁ ମିଷ୍ଟର ସଞ୍ଜୟ । ଏହାପରେ କୋର୍ଟ କଚେରୀ ତ ଅଛି ।

ମିଷ୍ଟର ତାଲୁକ୍‌ଦାର କହିଲେ : କୋର୍ଟ କଚେରୀ ଆପଣଙ୍କୁ ବଞ୍ଚେଇ ପାରିବ ନାହିଁ ଠାକୁର ସାହେବ । କାରଣ ଆଜିର ଏହି ଅଣ୍ଡରଗ୍ରାଉଣ୍ଡର ସମସ୍ତ କଥାବାର୍ତ୍ତା ଟେପ୍ ରେକର୍ଡ୍ ହୋଇ ସାରିଛି । ଆପଣ ମିଷ୍ଟର ସଞ୍ଜୟଙ୍କ ପାଖରେ ନିଜକୁ ମିଷ୍ଟର ବହିଦାରଙ୍କର ହତ୍ୟାକାରୀ ରୂପେ ପ୍ରମାଣିତ କରି ସାରିଛନ୍ତି । ତେଣୁ କୋର୍ଟ ଆପଣଙ୍କୁ କ୍ଷମା କରିପାରିବ ନାହିଁ ।

ମିସେସ୍ ଡି' ସୁଜା ତଳକୁ ମୁହଁ ପୋତି ଠିଆ ହୋଇଥିଲେ ।

ମିଷ୍ଟର ତାଲୁକ୍‌ଦାର ତାଙ୍କ ମୁହଁକୁ ଚାହିଁ ହସି ହସି କହିଲେ : ଆପଣଙ୍କ ମୁକ୍ତି ପାଇଁ ମୁଁ ଆପ୍ରାଣ ଚେଷ୍ଟା କରିବି ମିସେସ୍ ଡି' ସୁଜା । କାରଣ ଆପଣଙ୍କର ଏଇଟା ପ୍ରଫେସନ୍ । ପେଟ ପୋଷ ନାହିଁ ଦୋଷ ।



ରଚନାକାଳ : ୧୯୭୦



ପ୍ରବେଶ : ୨୫ ଡିସେଂବର ୧୯୨୯ ● ପ୍ରସ୍ଥାନ : ୨୬ ମେ ୨୦୧୪

କସ୍ତୁରିଚରଣଙ୍କୁ ମନେରଖିବାର ଅନେକ କାରଣ ।

ଅଦ୍ଭୁତ ଏକ ଜଳତରଂଗର କଳଧ୍ୱନି ତାଂକର ଅଧିକାଂଶ ରହସ୍ୟ-ଉପନ୍ୟାସକୁ ବିବର୍ତ୍ତିତ କରିଦେଇପାରିଥିଲା ଗୋଟିଏ ଗୋଟିଏ ଉଦାସ-ଉପନ୍ୟାସରେ ! ଗଳଦ୍‌ଘର୍ମ ଗୋଏଂଦା ଗହ୍ୱର ଗୋଳଂଦାଜୀ ଗୋଲକଧଂଦାରୁ ଶତପ୍ରତିଶତ ମୁକ୍ତ ଥିଲା, ତାଂକ ଅର୍ଦ୍ଧଶତାଧିକ ଶୀର୍ଷକାଧୀନ ଅପୂର୍ବ କଥନ-କଳା । ତାଂକର ଅନେକ ରହସ୍ୟ-ଉପନ୍ୟାସରେ ସେଥିପାଇଁ ବୁଂଦାଏ ବି ରକ୍ତ ବୋହିନି କେଉଁଠି - ଅଥଚ ଧାରଧାର ଅଶ୍ରୁ ଝରିଯାଇଛି ନିଃଶବ୍ଦରେ । ମନ ମଂଥିହୋଇଚି ଗୁଣୁଗୁଣୁ ଗୀତିନାୟିକାର ଗୋପନ ବ୍ୟଥାରେ । ଗୋଟିଏ ବି ଗୁଳି ଫୁଟିନି କେଉଁଠି ... ବହୁତ ବେନାମୀ ଫୁଲ କିଂତୁ ଫୁଟିଉଠିଚି ପଥପ୍ରାଂତରେ - ଝୁରିଝୁରି ଝରିପଡ଼ିବାର ମୁହୂର୍ମୁହୁ ମର୍ମବେଦନାରେ ।

କେତେ କଥାକୁହା କଳାଆଖିର କୋହଲା କାରୁଣ୍ୟ... ହଁ, ଏଇଠି ହିଁ ଅଲଗା ଭାବରେ ଉକୁଟି ଉଠଂତି ଉନ୍ନିଦ୍ର ରାତ୍ରିର ରହସ୍ୟକାର କସ୍ତୁରିଚରଣ !

ଅର୍ଦ୍ଧପ୍ରସ୍ଫୁଟିତ ଓଡ଼ିଶାର କୈଶୋରକୁ ସେଦିନ କସ୍ତୁରିଚରଣ ହିଁ କରିପାରିଥିଲେ ମଧ୍ୟରାତ୍ରିର ପଠନ-ପ୍ରେମିକ ।

.................................................................


ISBN 93-81756-23-2
9789381756232

କାହାଣୀ